# ଶ୍ରୀଭରତ ଦର୍ପଣ




ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦଶର୍ମା

# ଅଗ୍ରଲେଖ

ଶ୍ରୀ ଭାରତ ଦର୍ପଣ ପରି ପାଣ୍ଡିତ୍ୟପୂର୍ଣ୍ଣ ସମାଲୋଚନା ଓଡ଼ିଶାରେ ଅତ୍ୟଳ୍ପ ମାତ୍ର ପ୍ରକାଶିତ ହୋଇଅଛି । ଯେଉଁ ସମୟରେ ସଂସ୍କୃତ ପଣ୍ଡିତମାନଙ୍କର ଓଡ଼ିଆ ଭାଷା ପ୍ରତି ବିଶେଷ ଅନୁରାଗ ନ ଥିଲା, ସେତିକବେଳେ ସାରଳାଦାସ ତାଙ୍କର ପ୍ରକାଣ୍ଡ ମହାଭାରତ ଲେଖିଥିଲେ । ପୁଣି ଯେଉଁ ସମୟରେ ସଂସ୍କୃତ ପଣ୍ଡିତମାନେ ଓଡ଼ିଆ ସାହିତ୍ୟର ଅନୁଶୀଳନରେ ସେ ଭଳି ଆଦର ପ୍ରଦର୍ଶନ କରୁ ନ ଥିଲେ ସେତିକବେଳେ ପଣ୍ଡିତ ଗୋପୀନାଥ ନନ୍ଦ ଏହି ଗ୍ରନ୍ଥ ପ୍ରଣୟନ କରିଥିଲେ । ଏହାର ସାହିତ୍ୟିକ ମୂଲ୍ୟ ବିଷୟରେ ବିଶେଷ କିଛି କହିବା ଅନାବଶ୍ୟକ । ଏହାର ପୁନଃ ପ୍ରକାଶ କରି ଓଡ଼ିଶା ସାହିତ୍ୟ ଏକାଡେମୀ ଏକ ଅଭାବ ଦୂର କରି ଦେଇଛନ୍ତି । ଏଥିରେ ମୁଁ ଆନନ୍ଦିତ । ଇତି ।

ଭୁବନେଶ୍ୱର
୧୪—୯—୬୪

ସନ୍ତୋଷ କୁମାର ସାହୁ
ସଭାପତି,
ଓଡ଼ିଶା ସାହିତ୍ୟ ଏକାଡେମୀ

# ଦୁଇ ପଦ

ସ୍ୱର୍ଗତ ଗୋପୀନାଥ ନନ୍ଦ ଓଡ଼ିଆ ଭାଷାତତ୍ତ୍ୱ ଓ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଜଣେ ଅସାଧାରଣ ପଣ୍ଡିତ ଓ ପ୍ରତିଷ୍ଠା ସମ୍ପନ୍ନ ଲେଖକ । ତାଙ୍କର ଏହି ପୁସ୍ତକର ଅଭାବ ବହୁ ଦିନରୁ ଅନୁଭୂତ ହେଉଥିଲା । ତାଙ୍କ 'ଦାଣ୍ଡୀ ରାମାୟଣ' ସମାଲୋଚନାର ପ୍ରକାଶ ନିମନ୍ତେ ଏକାଡେମୀ ପକ୍ଷରୁ ଉଦ୍ୟମ ହେଉଅଛି । ଆଶା, ଏହି ପୁସ୍ତକଗୁଡ଼ିକ ଓଡ଼ିଆ ସାହିତ୍ୟର ମୂଲ୍ୟ କଳନା ଦିଗରେ ତରୁଣ ଓ ପ୍ରବୀଣ ପାଠକଙ୍କର ବିଶେଷ ସହାୟକ ହେବ ।

ଭୁବନେଶ୍ୱର
୧୫—୪—୭୪

ଗୌରୀକୁମାର ବ୍ରହ୍ମା
ସେକ୍ରେଟାରୀ

# ଉତ୍ସର୍ଗପତ୍ର

ଅଶେଷ ସଦ୍‌ଗୁଣନିଧାନ ବିଦ୍ୟୋତ୍ସାହିପ୍ରବର, ସ୍ୱଦେଶବତ୍ସଳ,
ପ୍ରତିଭାବିନୋଦ ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ
ମହାରାଜ ମହୋଦୟ ମହାମାନ୍ୟ ଚରଣେଷୁ ।

ବିନୟ ପୁରଃସର ନିବେଦନଂ

ଶ୍ରୀମନ୍ ମହାରାଜ ମହୋଦୟ,

ବିଶ ବର୍ଷ ପୂର୍ବେ ମୁଁ ଯେତେବେଳେ 'ଓଡ଼ିଆ ଭାଷାତତ୍ତ୍ୱ'ର ପ୍ରକାଶ ସମ୍ପର୍କରେ ଶ୍ରୀଛାମୁଙ୍କ ନିକଟରେ କେତେକ ବିଷୟ ଜଣାଇବାକୁ ଯାଇଥିଲି ସେତେବେଳେ ଛାମୁଙ୍କ ଆଜ୍ଞା ହୋଇଥିଲା, "ତୁମ ଅଗ୍ରଜଙ୍କ ଅପ୍ରକାଶିତ ଗ୍ରନ୍ଥମାନ ପ୍ରକାଶ କରିବାପାଇଁ ଯତ୍‌କିଞ୍ଚିତ୍ ଯତ୍ନ କରୁଥିବ।" ସେହି ଉତ୍ସାହପ୍ରଦ ଓ ସହାନୁଭୂତି-ବ୍ୟଞ୍ଜକ ସଦୁପଦେଶ ମୁଁ ଭୁଲି ନାହିଁ । କିନ୍ତୁ "ଭାଷାତତ୍ତ୍ୱ" ପ୍ରକାଶିତ ହେବାପାଏ ନାନାବିଧ ଅଭାବସତ୍ତ୍ୱେ ଅଗ୍ରଜଙ୍କର ଅନ୍ୟ କୌଣସି ଅପ୍ରକାଶିତ ଗ୍ରନ୍ଥ ମୁଦ୍ରଣ କରାଇବାକୁ ଅବସର ପାଇପାରି ନ ଥିଲି । ପ୍ରୋକ୍ତ ବିରାଟ ଗ୍ରନ୍ଥର ମୁଦ୍ରଣ ଶେଷ ହେବାକ୍ଷଣି ଏହି "ଶ୍ରୀ ଭାରତ ଦର୍ପଣ" (ସାରଳା ମହାଭାରତ ସମାଲୋଚନା) ଶୀର୍ଷକ ପୁସ୍ତକ ଛପାଇବାରେ ବ୍ୟାପୃତ ହେଲି ।

ଅପାରପାରାବାରକଳ୍ପ ଅନଳ୍ପଗୁଣ ସାଧାରଣ କଳ୍ପନାତୀତ ମହାଭାରତର ବିଷୟାଦିର ଅବବୋଧରେ ଶ୍ରୀଛାମୁ କୁଶଳ ଏବଂ ସୁନିପୁଣ । ପୁଣି ଇତଃପୂର୍ବରୁ ମୋର ଅଗ୍ରଜ ଉବଦାୟ ଛାମୁରେ

ନିବେଦନ କରି ଅଛନ୍ତି କି, ଆମ୍ଭେମାନେ ଆସପ୍ତପୁରୁଷରୁ ଶ୍ରୀଛାମୁଙ୍କର ଏବଂ ଭବଦୀୟ ପୂର୍ବପୁରୁଷ ମହାରାଜାମାନଙ୍କର ଅନୁକମ୍ପାନୁକମ୍ପାରେ ପରିପୁଷ୍ଟ, ପରିତୁଷ୍ଟ ଓ ସମାଦୃତ ହୋଇ ଆସୁଅଛୁଁ । ପରନ୍ତୁ ଶ୍ରୀଛାମୁ ମୋ ପ୍ରତି ଅକୃତ୍ରିମ ଶ୍ରଦ୍ଧାପ୍ରଦର୍ଶନ କରି ଆସୁ ଅଛନ୍ତି । ସୁତରାଂ ଛାମୁଙ୍କ ପ୍ରତି ଭକ୍ତି ଏବଂ କୃତଜ୍ଞତା ପ୍ରଦର୍ଶନ କରିବା ମୋର ନିତାନ୍ତ କର୍ତ୍ତବ୍ୟ ।

ଓଡ଼ିଆ ଭାଷାରେ କୌଣସି ଏକ ରଚନା ପ୍ରଣୟନ କରି ଉପହାର ଦେଲେ ତାହା ଶ୍ରୀଛାମୁଙ୍କର କଥଞ୍ଚିତ୍ ଉପଯୁକ୍ତ ହୁଅନ୍ତା । କିନ୍ତୁ ଜାତୀୟ ସାହିତ୍ୟ ସମାଜରେ ମୋର ସ୍ଥାନ ଅତି ନୀଚ ତଥା ନଗଣ୍ୟ । ଅତଏବ ମୋ ପରି ଲୋକର ଲେଖା ସାହିତ୍ୟ ରାଜ୍ୟରେ ଆଦୃତ ହେବ ନାହିଁ । ପକ୍ଷାନ୍ତରରେ ଶ୍ରୀଛାମୁ କଳ୍ପଦ୍ରୁମଙ୍କ ବାହୁଚ୍ଛାୟାରେ ସୁଖୋପବିଷ୍ଟ ରହି ମୋର ଅଗ୍ରଜ ଏହି 'ଶ୍ରୀ ଭାରତ ଦର୍ପଣ' ଶୀର୍ଷକ ଗ୍ରନ୍ଥ ପ୍ରଣୟନ କରିଥିଲେ । ମୁଁ ସେହି ଗ୍ରନ୍ଥକୁ ମୁଦ୍ରଣ କରି ଶ୍ରୀଛାମୁଙ୍କ ନାମରେ ଉତ୍ସୃଷ୍ଟ କରିବାକୁ ସାହସୀ ହୋଇ ସବିନୟରେ ପ୍ରାର୍ଥନା କରୁଅଛି ଯେ, "ଓଡ଼ିଆ ଭାଷାତତ୍ତ୍ୱ" ପ୍ରତି ଶ୍ରୀଛାମୁଙ୍କର ଯେମନ୍ତ ଅନୁକୂଳ ଦୃଷ୍ଟି ପତିତ ହୋଇଥିଲା, "ଶ୍ରୀ ଭାରତ ଦର୍ପଣ" ପ୍ରତି ସେହି ଆନୁକୂଲ୍ୟ ପ୍ରଦର୍ଶିତ ହେଉ ।

ସାହିତ୍ୟ କୁଟୀର, ପାରଳାଖେମୁଣ୍ଡି<br>୧୯—୭—୧୯୨୮

ଭବଦୀୟ ଅନୁଗ୍ରହାକାଂକ୍ଷୀ<br>ଶ୍ରୀ ବଳଭଦ୍ର ନନ୍ଦଶର୍ମା

# ଅବତରଣିକା

ବକ୍ଷ୍ୟମାଣ ବିଷୟର ସୂଚନାର୍ଥି ଅବତରଣିକା ବା ଭୂମିକା ନାମରେ କଥିତ । କୌଣସି ବିଷୟର ଭୂମିକା ଲେଖିବାକୁ ହେଲେ ସେହି ବକ୍ତବ୍ୟ ବିଷୟର ସ୍ଥୂଳ ପରିଚୟ ଦେବାଦ୍ୱାରା ଭୂମିକାର ଉଦ୍ଦେଶ୍ୟ ରକ୍ଷା ହୁଏ । ଏହି ନୀତିର ଯେପରି ଅବମାନନା ନ ହୁଏ, ଭୂମିକା ଲେଖକଙ୍କୁ ସେଥିପ୍ରତି ବିଶେଷ ଦୃଷ୍ଟି ଦେବାକୁ ହେବ । ସୁତରାଂ ଗ୍ରନ୍ଥକର୍ତ୍ତା କେବଳ ଯେ ନିଜ ଗ୍ରନ୍ଥର ଭୂମିକା ଲେଖିବାରେ ଅଧିକାରୀ ତାହା କହିବା ବାହୁଲ୍ୟ ।

ଅଧିକାରିଭେଦରେ ତାହାର ଅପବ୍ୟବହାର ଯେପରି, ଅଧିକାରୀଙ୍କ ଅଧିକାରରେ ତାହାର ସଦ୍‌ବ୍ୟବହାର ମଧ୍ୟ ସେହିପରି ସ୍ୱାଭାବିକ । ବିଶେଷତଃ ବକ୍ଷ୍ୟମାଣ ଗ୍ରନ୍ଥର ମୀମାଂସା—ପ୍ରକରଣଦ୍ୱୟ (ସମାଲୋଚନା ଓ ସିଦ୍ଧାନ୍ତ ପ୍ରକରଣଦ୍ୱୟ) ସତ୍ତ୍ୱେ ତଦୀୟ ଅନୁବନ୍ଧ ଚତୁଷ୍ଟୟ ଅର୍ଥାତ୍ ବିଷୟ, ସମ୍ବନ୍ଧ, ପ୍ରୟୋଜନ ପ୍ରଭୃତି ଗ୍ରନ୍ଥସାମାନ୍ୟ ଧର୍ମଦ୍ୱାରା ତଦନ୍ତର୍ନିହିତ ବିଶେଷ ଭାବେ ନିର୍ଭର କରୁଥିବା ନୀତିର ଯେପରି ଅପଳାପ ନ ହୁଏ, ସେଥିପାଇଁ ପାଣ୍ଡିତ୍ୟ ସତର୍କତା ସଙ୍ଗେ ଯେଉଁ ଉଦ୍‌ବୋଧନ ଆବଶ୍ୟକ, ତାହା ଗ୍ରନ୍ଥାଧିକାରୀଙ୍କଠାରେ କେବଳ ଦେଖିବାକୁ ପାଇବା ସହଜ । ସୁତରାଂ ତଦିତର ବ୍ୟକ୍ତି ବିଶେଷର ତାହା ଅନଧିକାରଚର୍ଚ୍ଚା କେବଳ କହିଲେ ହେବ ।

ମୁଁ ଏହି ନୀତିର ବିପକ୍ଷତାରେ ସ୍ୱର୍ଗତ ପଣ୍ଡିତ ଗୋପୀନାଥ ନନ୍ଦଙ୍କ "ଶ୍ରୀ ଭାରତ ଦର୍ପଣ"ର ଭୂମିକା ଲେଖିବାକୁ ତଦୀୟ ଅନୁଜ ପଣ୍ଡିତ ଶ୍ରୀ ବଳଭଦ୍ର ନନ୍ଦଶର୍ମାଙ୍କଦ୍ୱାରା ଅନୁରୁଦ୍ଧ ହୋଇଅଛି । ଏହି ଦାୟିତ୍ୱ ଦୃଷ୍ଟିରେ ଏହା ଯେ ଅତି ଗୁରୁତର ତାହା ଅତି କମ୍ ଲୋକେ ବୁଝିଥାନ୍ତି ବୋଲି ମୋର ବିଶ୍ୱାସ । ମୁଁ କିନ୍ତୁ ଯେତେଦୂର ବୁଝିଛି, ଏହା ଏକ ବ୍ୟକ୍ତି ବିଶେଷର ଅତିମାନୁଷ ଗୁଣଗ୍ରାମ ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ ।

ସାହିତ୍ୟ କ୍ଷେତ୍ରରେ ସମାଲୋଚନା ସାହିତ୍ୟ (Higher criticism) ଏକ ଉପାଦେୟ ବସ୍ତୁ । ପ୍ରତ୍ୟେକ ବିଷୟରେ ଗୁଣ ଦୋଷର ସମ୍ମିଶ୍ରଣ ବିଦ୍ୟମାନ ଥିବା ଯେପରି ସ୍ୱାଭାବିକ, ସେହି ଗୁଣ ଦୋଷ ନାନା ସୂତ୍ରରେ ଅନେକ ଅନୁ

ଲୋକ ସଂଶ୍ରବରେ ଆସିଥିଲେ ସୁଦ୍ଧା ଅଗୋଚରୀଭୂତ ହୋଇ ରହିଥିବା ମଧ୍ୟ ଚତୁରୂପ । କିନ୍ତୁ ସମାଲୋଚନା ଏହି ସବୁ ଗୁଣ ଦୋଷ ଖଣ୍ଡ ମାନର ପରିଚୟସୂଚକ-ରୂପେ ମାନଦଣ୍ଡ ଧରି ସାମ୍ବାରର ସାକ୍ଷ୍ୟ ପ୍ରଦାନ କରିଥାଏ । ସୁତରାଂ ଲୋକ ସାଧାରଣଙ୍କୁ ତାର ଭିତରୁ ସଂଗ୍ରହ କରିନେବା ପାଇଁ ବହୁପ୍ରକାର ତଥ୍ୟ ମିଳିଥାଏ । ବର୍ଣ୍ଣିତ ବିଷୟରୁ ଅନ୍ୟତମ "ଶ୍ରୀ ଭାରତ ଦର୍ପଣ" ( ସାରଳା ମହାଭାରତର ସମାଲୋଚନା ) ଏହି ମାନର ଗ୍ରନ୍ଥ ।

ସାହିତ୍ୟର ସ୍ୱାଭାବିକତା କଅଣ ? ତାହା ଅନ୍ତତଃ ବୁଝିପାରି ସୁଦ୍ଧା ଯେତେବେଳ ଯାଏ ଅନୁସନ୍ଧିତ୍ସୁ ସେହି ବୋଧ ଉପରେ ଆତ୍ମପ୍ରତ୍ୟୟ ଜନ୍ମି ନାହିଁ, ସେତେବେଳ ଯାଏ ତାହାର ସେହି ଅବିଶ୍ୱାସୋପହତ ବୋଧର ମଧ୍ୟଦେଇ ଭ୍ରମ ପ୍ରମାଦର ଅବକାଶ ବରାବର ରହୁଛି ବୋଲି ବିଶ୍ୱାସ କରିବାକୁ ହେବ । "ଭାରତ ଦର୍ପଣ"ର ପରିଶୀଳନ ପ୍ରକ୍ରିୟା ଓ ବିଷୟ ବିମର୍ଶରୁ ତାହାର ସୋଦର-ପ୍ରତିମ "ଓଡ଼ିଆ-ଭାଷାତତ୍ତ୍ୱ"ର ବିଜ୍ଞାନ ଚର୍ଚ୍ଚାର ସାବଜମାନତା ଏବଂ ଅନବଦ୍ୟ ଅଧ୍ୟବସାୟ ଓ ସ୍ୱାରବ୍ଧଲବ୍ଧ ଜ୍ଞାନ ଉପରେ ତାହାର ପ୍ରତିଷ୍ଠାରୁ ଭାରତ ଦର୍ପଣକାରଙ୍କ ସାହିତ୍ୟର ସ୍ୱାଭାବିକ ବୋଧ ଭ୍ରମପ୍ରମାଦଶୂନ୍ୟ ବୋଲି ଧରା ପଡ଼େ ।

ଲେଖକଙ୍କ ଭାରତ ଦର୍ପଣର ନାମ କରଣରୁ ସ୍ପଷ୍ଟ ଧରାଯାଏ ଯେ ଏଥିରେ ମହାଭାରତର ସମସ୍ତ କଥା ପ୍ରତିବିମ୍ବିତ ଅର୍ଥାତ ଏହା ମହାଭାରତୀୟ ବିଷୟା-ବଳୀର ଦର୍ପଣ । ଏହି ନାମ ଯେ ତାଦୃଶ କ୍ରିୟାକଳାପର ସମାବେଶରେ ସମଧର୍ମୀ ହେଉ ସାର୍ଥ ହୋଇଅଛି ସୁତରାଂ ସ୍ୱନାମଧନ୍ୟ ହୋଇଅଛି ତାହା ପାଠକ ମାତ୍ରେ ବୁଝି ପାରିବେ ଏବଂ ଏହି ନାମକରଣରୁ ଧରାଯାଉ ଅଛି, ଭାରତ ଦର୍ପଣକାର ମହାଭାରତୀୟ ସକଳ ପ୍ରକାର ସଂବିଧାନ ରମଣୀୟତା ଦୃଷ୍ଟିରେ ସମାଲୋଚନା-ଦ୍ୱାରା ବହୁବିଧ ତଥ୍ୟ ଗ୍ରହଣ କରିପାରି ଅଛନ୍ତି ତଥା ଓଡ଼ିଆ ସାହିତ୍ୟ ରାଜ୍ୟରେ ତାଙ୍କର ସିଦ୍ଧହସ୍ତତା ଅଛି ଏହି ଦୃଢ଼ ଧାରଣା ପୋଷଣ କରି ସେ ସାରଳା ମହାଭାରତ ତଥା ଭାଗବତ ସମାଲୋଚନା କରି ସୁନ୍ଦର ସନ୍ଦର୍ଭରୂପେ "ଉତ୍କଳ ସାହିତ୍ୟ" ଓ "ସତ୍ୟବାଦୀ" ପତ୍ରିକାରେ ଆଂଶିକରୂପେ ସେଗୁଡ଼ିକ କ୍ରମଶଃ ପ୍ରକାଶ କରିଥିଲେ । ତାହା ସବୁ ସମନ୍ୱିତ କରି ତଦନୁଜ କୃତବିଦ୍ୟ ପଣ୍ଡିତ ବଳଭଦ୍ର ନନ୍ଦଶର୍ମା ପୁସ୍ତକାକାରରେ ପ୍ରକାଶିତ କରୁଅଛନ୍ତି । ଏହି ସଦୁଦ୍ୟମରେ ବଳଭଦ୍ର ଶର୍ମା [illegible] କରି କେବଳ ତାଙ୍କ ଜ୍ୟେଷ୍ଠ ଭ୍ରାତାଙ୍କ ଅକ୍ଷୟ କୀର୍ତ୍ତି ରଖିପାରି

ଅଛନ୍ତି ତାହା ନୁହେଁ, ଉତ୍କଳ ଭାଷାର ପରିପୁଷ୍ଟି ସଙ୍ଗେ ଗଞ୍ଜାମର ବିଶେଷତଃ ଉତ୍ତରଭାଗର ସମୃଦ୍ଧି କରିପାରି ଅଛନ୍ତି ।

ଏହି ସମାଲୋଚନା ଗ୍ରନ୍ଥ ମୂଳ ସଂସ୍କୃତ ଏବଂ ଓଡ଼ିଆ ଭାଷାରେ ତାଳପତ୍ର ଲିଖିତ ଓ ପୁରାଣ ପ୍ରକାଶକ କମ୍ପାନୀଙ୍କଦ୍ୱାରା ମୁଦ୍ରିତ ଅନେକ ପୁସ୍ତକର ପାଠାନ୍ତର ନିଚୟର ଏକ ସୁନ୍ଦର ସମନ୍ୱୟ କହିଲେ ହେବ । ଏହି ଚାରିଗୋଟି ପ୍ରକରଣରେ ବିଭକ୍ତ କରି ହୋଇଅଛି । (୧) ବିଷୟ ଓ ବୈଷମ୍ୟ, (୨) ଭାଷା ସାହିତ୍ୟ, (୩) କବି ପରିଚୟ, (୪) ଉପସଂହାର ବା ସଙ୍କୀର୍ଣ୍ଣ ଭାଗ ।

ବିଷୟ ଓ ବୈଷମ୍ୟ ବିଷୟର ପ୍ରବନ୍ଧରେ ଗ୍ରନ୍ଥକାର ପଣ୍ଡିତ ମହାଶୟ, ସାରଳାଦାସଙ୍କ ପ୍ରକାଣ୍ଡ ଗ୍ରନ୍ଥକୁ ମୁଦ୍ରିତ ଓ ବିଭିନ୍ନ ତାଳପତ୍ର ପୁସ୍ତକସହ ମିଳାଇ ମୂଳ ସଂସ୍କୃତ, ହିନ୍ଦୀ, ବଙ୍ଗଳା ତଥା ତେଲିଙ୍ଗ ଭାଷାର ମହାଭାରତ ସଙ୍ଗେ ତୁଳନା କରି ତଦିତର ଅସାମଞ୍ଜସ୍ୟ ଅସଂଲଗ୍ନତା ଓ ଅସଙ୍ଗତ ପ୍ରଭୃତି ନିର୍ଦ୍ଧାରଣ କରି ଏପରି କି ମୂଳ ଓ ସାରଳାଦାସଙ୍କ ଭାରତରେ ପ୍ରତିପାଦିତ ବିଷୟ ସମୂହର ସୂଚନା, ଆଜି ସାରଳାଦାସ ମହାଭାରତରେ ଯାହା ଯାହା ପରିତ୍ୟକ୍ତ, ପ୍ରକ୍ଷିପ୍ତ, ସଂକ୍ଷିପ୍ତ, ସ୍ଥାନଭ୍ରଷ୍ଟ ଏବଂ ଅଯଥା ବିସ୍ତୃତ ଓ ଅନ୍ୟଥାକୃତ ହୋଇଅଛି, ସେ ସମସ୍ତର ବିଶଦୀକରଣ ପୂର୍ବକ ସନ୍ଦର୍ଭାସନ୍ଦର୍ଭର ବିଚାର କରି ଅଛନ୍ତି । ଏହି ପ୍ରକରଣଟିରେ ଗ୍ରନ୍ଥଗତ ମହାଭାରତ ଯୁଦ୍ଧର କାଳନିରୂପଣ ସୁଦ୍ଧା ସଂକ୍ଷେପତଃ ଅତି ସୁନ୍ଦରରୂପେ ବିଚାର ହୋଇଅଛି ।

ସାରଳାଦାସ କବି ତାଙ୍କର ପ୍ରକାଣ୍ଡ ଗ୍ରନ୍ଥକୁ ନିଜର ଅତି ଅମାନୁଷୀ ଶକ୍ତିର ପ୍ରଭାବରେ ଭାଷାକୁ ସ୍ଥାନବିଶେଷରେ ସୁଧାମୟୀ କାହିଁ ଅବା ଜ୍ୱାଳାମୟୀ କରି କେଉଁଠାରେ ଅବା କରୁଣାରସପରିପ୍ଲୁତା କରି ଅତି ସୁନ୍ଦର ସୁଗଠିତ କରିପାରି ଅଛନ୍ତି । ତାହା ସବୁ ଗ୍ରନ୍ଥର ଦ୍ୱିତୀୟ ପ୍ରକରଣରେ ବିବୃତ କରାଯାଇ ଅଛି ।

ସମାଲୋଚିତ ମହାଭାରତର ଭାଷାରେ ସଂସ୍କୃତ ଓ ପ୍ରାକୃତର ଅନୁକରଣରେ ଯେଉଁ ଯେଉଁ କାରକ ବା ଶାବ୍ଦବିଭକ୍ତିମାନଙ୍କର ପ୍ରୟୋଗ ପ୍ରଣାଳୀ ନିହିତ ଅଛି ତାହା ସୁଦ୍ଧା ଏ ପ୍ରକରଣରେ ସୁନ୍ଦର ବିଚାର କରାଯାଇ ଅଛି । ଏହି କ୍ରମରେ କ୍ରିୟାଗୁଡିକର ଯୋଗପରିପାଟୀ, କୃଦ୍ଧିତସମାସ ପ୍ରକରଣର ଅନ୍ତର୍ଗତ ପ୍ରୟୋଗ

ପ୍ରଣାଳୀର ସଂକ୍ଷିପ୍ତ ବିବୃତିର ସୁଦ୍ଧା ଆନୁଷଙ୍ଗିକ ଭାବରେ ସନ୍ନିବେଶିତ ଅଛି । ଗ୍ରନ୍ଥକାର ତାଙ୍କ "ଓଡ଼ିଆ-ଭାଷାତତ୍ତ୍ୱ"ରେ ଏପରି ବିବୃତିର ସିଦ୍ଧାନ୍ତରେ ଉପନୀତ ହୋଇ ଥିବାରୁ ପ୍ରୋକ୍ତ ବିଷୟାଦିର ବିବୃତି ଏଥିରେ ଦିଗ୍‌ଦର୍ଶନ ମାତ୍ର କରି ଅଛନ୍ତି ।

ସାରଳାଦାସ ମହୋଦୟ ତାଙ୍କ ସୁବୃହତ୍ ଗ୍ରନ୍ଥର ସ୍ଥାନେ ସ୍ଥାନେ ଯେଉଁ ସବୁ ମନୋହର ଉଚ୍ଚଭାବାପନ୍ନ ବର୍ଣ୍ଣନାଦିର ଚିତ୍ରଣ କରି ଅଛନ୍ତି, ସେଥିର ଉଦାହରଣମାନ ଦେଇ ପଣ୍ଡିତପ୍ରବର ନନ୍ଦଶର୍ମା କବିଙ୍କ କବିତ୍ୱ ଶୃଙ୍ଖଳା ବା ରୂପାଦି ବର୍ଣ୍ଣନାତ୍ମକ ସ୍ଥଳଗୁଡ଼ିକର ସୌନ୍ଦର୍ଯ୍ୟାତିଶଯ୍ୟ ସ୍ଥାନବିଶେଷ ଚିହ୍ନାଇ ପାଠକମାନଙ୍କର ଚିତ୍ତାକର୍ଷଣ କରି ଅଛନ୍ତି ।

ଏହି ସମାଲୋଚନା ଗ୍ରନ୍ଥର ଦ୍ୱିତୀୟ ସନ୍ଦର୍ଭରେ କବିଙ୍କର ଜୀବିତ ସମୟ, ନିବାସ ସ୍ଥାନ, ନାମ ଧାମ ପ୍ରଭୃତି ବିଷୟର ବିବୃତିରେ କବିଙ୍କ ଜୀବନୀର ସୁନ୍ଦର ଆଲେଖ୍ୟ ଚିତ୍ରଣ କରି ତାହା ସବୁ ପ୍ରାଣବନ୍ତ କରିପାରି ଅଛନ୍ତି । ତାହା ପାଠ କଲେ ତାତ୍କାଳୀନ ସାଧାରଣ ଲୋକପ୍ରଚଳିତ ଆଚାର, ବ୍ୟବହାର, ରୀତିନୀତି, ଧର୍ମକର୍ମ ସମ୍ବନ୍ଧେ ସୁନ୍ଦର ଜ୍ଞାନ ଲାଭର ସୁବିଧା ମିଳେ, ଗ୍ରନ୍ଥକାରଙ୍କ ଏହି ଐତିହାସିକ ଗବେଷଣାର ଫଳରେ ଓଡ଼ିଆ ଭାଷାରାଜ୍ୟରେ ସାରଳା ମହାଭାରତ କେବଳ ଆଦିମ ଓ ଅତି ପ୍ରାଚୀନତମ ଓଡ଼ିଆ ସାହିତ୍ୟର ଉପନିବେଶ ବୋଲି ସୁ ପ୍ରମାଣିତ ହୋଇଅଛି ।

କବି ସାରଳାଦାସଙ୍କର ଛନ୍ଦପ୍ରୟୋଗ ପଦ୍ଧତିର ପରିଚୟ ପାଠକେ ଅବଗତ ହୋଇ ପାରିବେ ବୋଲି ତାଙ୍କ ଶବ୍ଦ ଓ ବାକ୍ୟର ରୀତି ସମାଲୋଚନାର ଉପସଂହାର ବା ସଙ୍କୀର୍ଣ୍ଣ ଭାଗରେ ସମ୍ୟକ୍ ବିବୃତି କରିଛନ୍ତି । ଏଥିରେ ସାରଳା ଭାରତର ଅଷ୍ଟ ଶବ୍ଦାଦିର ନାମ, ଛନ୍ଦୋବିନ୍ୟାସ, ସମନ୍ୱୟ ରୀତି ଓ ମିତ୍ରାକ୍ଷର ମିଳନର ପ୍ରାମାଣ୍ୟ ସ୍ଥିର କରି ଗ୍ରନ୍ଥ ଉପସଂହାର କରି ଅଛନ୍ତି ।

ଏହି ଭାରତର କବିତାରେ ସେ ଏପରି ମନ୍ତ୍ରମୁଗ୍ଧ ହୋଇ ଯାଇଛନ୍ତି ଏବଂ ସେଥିରୁ ତାଙ୍କ ପ୍ରାଣର ଏତେ ଆକାଂକ୍ଷାର ବିଷୟ ସେ ପାଇଛନ୍ତି ଯେ ପରିଶେଷରେ ଉତ୍କଳର ଲେଖକ ଓ ପାଠକମାନଙ୍କୁ ସାରଳା ଭାରତ ପାଠ କରି ତଦନ୍ତର୍ଗତ ଅନେକ ସାରସନ୍ଦର୍ଭ ମଧ୍ୟରୁ ଯେ କୌଣସି ଗୋଟିଏ ନେଇ

ପତ୍ରିକାଙ୍କର ବୃଦ୍ଧିସିଦ୍ଧି ବ୍ୟପ୍ତି କରନ୍ତୁ, ତଦ୍‌ଗତ ଅସଙ୍ଗତ ସ୍ଥାନମାନ ସୁସଙ୍ଗତ କରି ନିଅନ୍ତୁ ଏବଂ ପୌରାଣିକ କବିତା ସଂଗ୍ରହ ନାମରେ ସନ୍ଦର୍ଭଗୁଡ଼ିକୁ ପୁସ୍ତକାକାର କରନ୍ତୁ ବୋଲି ପ୍ରାଣର କଥା ଖୋଲି କହି ଯାଇଛନ୍ତି । ଗ୍ରନ୍ଥକାରଙ୍କ ଏହି ଉପଦେଶର ପରିସର ଅବକାଶ ଦେଇ କବିବର ରାଧାନାଥଙ୍କ ପୌରାଣିକ କବିତାର ଦୃଷ୍ଟାନ୍ତ ସାକ୍ଷ୍ୟରୂପେ ସଂପୃକ୍ତ କରିଥିଲେ ଆହୁରି ଭଲ ହୋଇଥାନ୍ତା ବୋଲି ମୋର ବିଶ୍ୱାସ । ଲେଖକଙ୍କ ଉଦ୍ଦେଶ୍ୟ ଆଗରୁ ଚିନ୍ତାଶୀଳ କବି ରାଧାନାଥ ରାୟ "ଦୁର୍ଯ୍ୟୋଧନଙ୍କର ରକ୍ତ ନଦୀ ସନ୍ତରଣ" ଶୀର୍ଷକ କବିତା ସାରଳା ମହାଭାରତ ସମୁଦ୍ରରୁ ସନ୍ଦର୍ଭରତ୍ନ ସଂଗ୍ରହ କରି କାବ୍ୟ ଢମରେ ତାହାକୁ ଉତ୍କଳ ସାହିତ୍ୟ ଭଣ୍ଡାରରେ ସଜାଇ ରଖିଯାଇ ଅଛନ୍ତି । ତାହାପ୍ରତି ଆଧୁନିକ କବି ଲେଖକମାନେ ଅନୁକାରଣୀ ଦୃଷ୍ଟି ପକାଇଲେ ଓଡ଼ିଆ ଭାଷାର ମୀମାଂସକ ପଣ୍ଡିତ ନନ୍ଦଙ୍କ ଉଦ୍ଦେଶ୍ୟ ସିଦ୍ଧ କରି ପାରନ୍ତେ ।

ଖଣିର ଅନ୍ଧକାର ଗର୍ଭରେ ମଣି ଥାଏ । କେତେଜଣ ବାହାରରୁ ତାହାର ଅବସ୍ଥାନ ବୁଝିବାକୁ ସମର୍ଥ ? ଆମ ଦେଶରେ ଏପରି ସବୁ ଉଚ୍ଚ ଚିନ୍ତା ଓ ତାହାର ଉପଯୁକ୍ତ କ୍ଷେତ୍ର ନାନାବିଧ ବିମର୍ଦ୍ଦର ତରଙ୍ଗତାଡ଼ନ ମଧ୍ୟରେ ସମୁଦ୍ର-ସଲିଳ ଭିତରେ ଶିଳାଖଣ୍ଡ ଓ ତାହାର ଉପତ୍ୟକା ନିଚୟ ପରି ସ୍ଥିର ରହିଛି । ଏବଂ ସ୍ଥାନ ବିଶେଷରେ ପ୍ରସ୍ତରରୁଦ୍ଧମୁଖ ଆଗ୍ନେୟ ଗିରି ପରି ନିଜ ଯାତନାରେ ନିଜେ ନିପୀଡ଼ିତ ହେଉଅଛି । କିନ୍ତୁ ସାଧକର ସାଧନା ଓ ଅନୁସନ୍ଧିତ୍ସୁର ଅନୁସନ୍ଧାନର ଫଳରେ ତାହା ଦିନେ ମୂର୍ତ୍ତିମନ୍ତ ହୋଇ ଉଠି ଲୋକ ଚକ୍ଷୁର ବିଷୟୀଭୂତ ହୋଇ ଠିଆ ହେଉଅଛି ।

ପଣ୍ଡିତ ସାଧକ ନନ୍ଦଙ୍କ ସାଧନା ଆଜି ଏହିପରି ପୂର୍ଣ୍ଣାଙ୍ଗ ହୋଇ ଜଗତ ସମକ୍ଷରେ ଆତ୍ମପରିଚୟ ଦେବାରେ ସମର୍ଥ ହୋଇ ପାରିଅଛି ।

ଶ୍ରୀ ଶଶିଭୂଷଣ ରଥ

ସମ୍ପାଦକ,

"ଦୈନିକ ଆଶା" ବ୍ରହ୍ମପୁର, ଗଞ୍ଜାମ ।



# ମନ୍ତବ୍ୟ

## ଏକୋନବିଂଶ ଭାଗର ୪ର୍ଥ ସଂଖ୍ୟା

## 'ଉତ୍କଳ-ସାହିତ୍ୟ'ରେ ସମ୍ପାଦକଙ୍କ ମନ୍ତବ୍ୟ

**ସାରଳା ମହାଭାରତ ସମାଲୋଚନା**— ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମାଙ୍କ ସାରଳା ମହାଭାରତ ସମାଲୋଚନା ଏହି ସଂଖ୍ୟାରେ ଶେଷ ହେଲା । ବୋଧହୁଏ, ଅନେକ ପାଠକ ଶାନ୍ତି ମନ୍ତ୍ର ଉଚ୍ଚାରଣ କରିବେ । ଏହି ପ୍ରବନ୍ଧ ପାଇଁ କେବଳ ନନ୍ଦ ମହାଶୟ ନୁହେଁ, ଆମ୍ଭେମାନେ ମଧ୍ୟ ଅନେକଙ୍କର ବିରାଗ ଭାଜନ ହୋଇଅଛୁଁ; ଏହି ସୁଦୀର୍ଘ କାଳ ମଧ୍ୟରେ ଅନେକଙ୍କୁ ଅନେକ ପ୍ରକାର କୈଫିୟତ ଦେବାକୁ ହୋଇଅଛି । ବଡ଼ କୌତୁକର କଥା ଏହି ଯେ, ବିରୁଦ୍ଧବାଦୀଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ପ୍ରବନ୍ଧଟି ପଢ଼ିବାର ଶ୍ରମ ଓ ସହିଷ୍ଣୁତା ସ୍ୱୀକାର କରି ନାହାନ୍ତି; ଅଥଚ ଠିକ କରି ରଖିଅଛନ୍ତି ଯେ, ଏହା ଅସାର ଓ ପ୍ରକାଶର ଅଯୋଗ୍ୟ । ସେ ଦିନ ଜଣେ ଉଚ୍ଚ ଶିକ୍ଷିତ ବ୍ୟକ୍ତି କହିଲେ, ମୁଁ ସସମ୍ମାନରେ ନତମସ୍ତକରେ ସେ ପତ୍ର କେତୋଟି ଓଲଟାଇ ଯାଏଁ—ପାଠ କରିବା ଭଳି ଧୈର୍ଯ୍ୟ ମୋର ନାହିଁ ଓ ମୁଁ କେବେହେଲେ ସେଥିରୁ କିଛି ପାଠ କରିନାହିଁ । ଦୁର୍ଭାଗ୍ୟ ବୋଲ, ସୌଭାଗ୍ୟ ବୋଲ, ଆମ୍ଭମାନଙ୍କୁ ପ୍ରବନ୍ଧର ପ୍ରତ୍ୟେକ ଅଂଶ ଅନ୍ତତଃ ତିନି ଥର ପଢ଼ିବାକୁ ହୋଇଅଛି । ଆମ୍ଭେମାନେ ଯେ ନନ୍ଦ ମହାଶୟଙ୍କ ସହିତ ସକଳ ବିଷୟରେ ଏକମତ ବା ତାଙ୍କ ରଚନାପଦ୍ଧତିକୁ ସର୍ବାଂଶରେ ଅନୁମୋଦନ କରୁଁ, ତାହା ନୁହେଁ, ମାତ୍ର ତାଙ୍କର ଅସାଧାରଣ ଧୈର୍ଯ୍ୟ, ଶ୍ରମଶୀଳତା, ଅନୁସନ୍ଧିତ୍ସା ଓ ସୂକ୍ଷ୍ମଦୃଷ୍ଟି ଦେଖି ଅବାକ୍ ହୋଇଅଛୁଁ । ଏପରି ତଥ୍ୟପୂର୍ଣ୍ଣ ରଚନା ଉତ୍କଳରେ କେତୋଟି ପ୍ରକାଶିତ ହୋଇଅଛି, ଆମ୍ଭେମାନେ କହି ନ ପାରୁଁ । ବିରୁଦ୍ଧବାଦୀ-ମାନଙ୍କ ମଧ୍ୟରୁ କେବଳ ସାରଳା ଭାରତ ଖଣ୍ଡି ଆଦ୍ୟନ୍ତ କେତେ ଜଣ ପାଠ କରି ଅଛନ୍ତି, ଆମ୍ଭମାନଙ୍କୁ ଜଣାନାହିଁ । ପଢ଼ିବାର ଆବଶ୍ୟକତା ବା କଣ ? ଗୌରବ ବା ଆତ୍ମପ୍ରୀତି ପ୍ରଖ୍ୟାପନ ବେଳକୁ ସାରଳାଦାସଙ୍କ ନାମଟା ଉଲ୍ଲେଖ କରିଦେଲେ ହେଲା । ଅଥଚ ଯେଉଁ ନନ୍ଦ ମହାଶୟ ଏହି ପ୍ରକାଣ୍ଡ ଗ୍ରନ୍ଥକୁ ଛପା ଓ ବିଭିନ୍ନ ତାଳପତ୍ର ଲେଖା ପୋଥି ମିଳାଇ ସୂକ୍ଷ୍ମଭାବରେ ଆଲୋଚନା କରି

ଅଛନ୍ତି ଏବଂ ମୂଳ ସଂସ୍କୃତ ଓ ହିନ୍ଦୀ, ବଙ୍ଗଳା, ତୈଲଙ୍ଗ ଭାଷାର ମହାଭାରତ ସଙ୍ଗେ ତୁଳନା କରି ଏହାର ଉତ୍କର୍ଷାପକର୍ଷ ନିର୍ଦ୍ଦେଶ କରି ଅଛନ୍ତି, ତାଙ୍କୁ ଏମାନେ ଅକୁଣ୍ଠିତ ଚିତ୍ତରେ ଉପହାସରେ ଉଡ଼ାଇ ଦେବାକୁ ଉଦ୍ୟତ । କେହି କେହି ଅଜ୍ଞାତନାମା ଲେଖକମ୍ମନ୍ୟ ବ୍ୟକ୍ତି ମୂରବି ସାଜି ସମ୍ବାଦପତ୍ର ସାହାଯ୍ୟରେ ଲେଖକଙ୍କୁ ତଥା ସମ୍ପାଦକଙ୍କୁ କେତେ ଗୁରୁଗମ୍ଭୀର ଉପଦେଶ ଦେଇ ପକାଇଲେଣି! ଅହୋ ଧୃଷ୍ଟତା ଓ ବାତୁଳତା ! ଆମ୍ଭମାନଙ୍କର ସାନ୍ତ୍ୱନା ଏତିକି, ନନ୍ଦ ମହାଶୟ କାହାରିଠାରୁ ପଣେ କାହାଣେ ପାଇବା ଆଶାରେ ବା ପ୍ରଶଂସା ଲାଳସାରେ ପ୍ରବନ୍ଧ ରଚନାର କଠୋର ଶ୍ରମ ସ୍ୱୀକାର କରି ନାହାନ୍ତି ବା ସମ୍ପାଦକ ସେଥିରେ ଭାଗ ବସାଇବାର ଆଶାପୋଷଣ କରି ପତ୍ରିକାରେ ସ୍ଥାନ ଦେଇ ନାହାନ୍ତି । ସୁତରାଂ ଉଭୟେ ଏ ଉପେକ୍ଷା ଓ ଅବଜ୍ଞା ବହନ କରିବାକୁ ସମ୍ପୂର୍ଣ୍ଣ କ୍ଷମ । ନନ୍ଦ ମହାଶୟ ଯେ ଉତ୍କଳ ଖଣ୍ଡର ସାହିତ୍ୟ କ୍ଷେତ୍ରରେ ଜଣେ ନିଷ୍ଠାପର ସାଧକ, ତାଙ୍କର ମହାଭାରତ ସମାଲୋଚନା ତାହାର ଜ୍ୱଳନ୍ତ ସାକ୍ଷୀ ।



# ବିଜ୍ଞାପନ

କ୍ଷମାଶୀଳ ପାଠକ ମହୋଦୟଗଣ !

"ଶ୍ରୀ ଭାରତ ଦର୍ପଣ" ପ୍ରଣେତା, ୰ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ମୋର ଅଗ୍ରଜ ଥିଲେ । ସେ ଯେଉଁ ଉପାଦେୟ ଗ୍ରନ୍ଥଗୁଡ଼ିକ ରଚନା କରିଯାଇ ଅଛନ୍ତି ତାହା ଓଡ଼ିଆ ଭାଷାର ଅସ୍ତିତ୍ୱ ଥିବା ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟକୋଷର ଅକ୍ଷୟ ସମ୍ପତ୍ତି ହୋଇ ରହିବ ବୋଲି କହିଲେ, ବୋଧହୁଏ କାହାର ମତଦ୍ୱୈଧ ହେବ ନାହିଁ । ଲେଖକ ତାହାଙ୍କର ଜୀବିତାବସ୍ଥାରେ ଏହି ଗବେଷଣାପୂର୍ଣ୍ଣ "ଶ୍ରୀ ଭାରତ ଦର୍ପଣ" ସାରଳା ମହାଭାରତ ସମାଲୋଚନା ଆଖ୍ୟାରେ 'ଉତ୍କଳ ସାହିତ୍ୟ ପତ୍ରିକା'ରେ ଆଂଶିକରୂପେ ପ୍ରକାଶ କରିଥିଲେ । ସେହି ସମୟରେ କେତେକ ବିରୁଦ୍ଧବାଦୀ, ଲେଖକ ତଥା 'ସାହିତ୍ୟ' ସମ୍ପାଦକ ଉଭୟଙ୍କ ଉପରେ ଯେ ବିଦ୍ରୂପବାଣ ବର୍ଷଣ କରିଥିଲେ ତାହା ଅନେକଙ୍କୁ ଅବିଦିତ ନାହିଁ । ପକ୍ଷାନ୍ତରରେ ଉତ୍କଳମଣି ୰ ପଣ୍ଡିତ ଗୋପବନ୍ଧୁ ଦାଶ, ଉତ୍କଳ ସାହିତ୍ୟ-ସୁରସିକ ମଧୁସୂଦନ ଦାସ (Translator to Government) ପ୍ରଭୃତି କେତେକ ବିଷ୍ଟାପର ସାହିତ୍ୟିକ ମହୋଦୟମାନେ ଏହି ପୁସ୍ତକର ଉପାଦେୟତା ଉପଲବ୍ଧି କରି ଏହାକୁ ପୁସ୍ତକାକାରରେ ପ୍ରକାଶ କରିବା ନିମନ୍ତେ ଲେଖକଙ୍କୁ ଅନୁରୋଧ କରି ଯେଉଁ ଯେଉଁ ମନ୍ତବ୍ୟମାନ ପଠାଇ ଅଛନ୍ତି ତାହା ପାଠକେ ଏହି ପୁସ୍ତକ ଖଣ୍ଡକର ଯଥାଶୀଘ୍ର ମୁଦ୍ରଣ ବିଷୟରେ ମୁଁ କୃତସଂକଳ୍ପ ହୋଇଥିଲି । ପୁଣି 'ଓଡ଼ିଆ ଭାଷାତତ୍ତ୍ୱ' ମୁଦ୍ରଣ ସମ୍ପର୍କରେ ଯେବେ ମୁଁ ପାରଳାର ଭୂମ୍ୟଧିକାର ଅଧୀଶ୍ୱର ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣଦେବ ମହାରାଜାଙ୍କ ସହ ଆଳାପ କରୁଥିବା ସମୟରେ ଶ୍ରୀମାନ୍ ମହାରାଜା ମତେ ଆଦେଶ କରିଥିଲେ କି, 'ଗୋପୀନାଥ ନନ୍ଦଶର୍ମାଙ୍କ ଅପ୍ରକାଶିତ ଗ୍ରନ୍ଥାଦିର ମୁଦ୍ରଣ ବିଷୟରେ ଯତ୍ନବାନ ଥିବ ।'

ତଥାପି ନାନାବିଧ ଅଭାବସତ୍ତ୍ୱେ ବହୁବ୍ୟୟ ସାପେକ୍ଷ କଠିନତର କାର୍ଯ୍ୟରେ ବହୁଦିନ ଯାଏ ମୁଁ ପ୍ରବୃତ୍ତ ହୋଇପାରି ନ ଥିଲି । ପ୍ରକାଶ ଥାଉକି, କେବଳ ପ୍ରୋକ୍ତ ମହାରାଜାଙ୍କ ଆନୁକୂଲ୍ୟରେ ଏହି ଗ୍ରନ୍ଥର ମୁଦ୍ରଣ ଆରମ୍ଭ ଓ ଶେଷ କରି ପାରିଅଛି ।

## ସତ୍ୟବାଦୀ ମାସିକ ପତ୍ରିକାର ପ୍ରଥମ ଭାଗ ୮ମ ଓ ୯ମ ମିଶ୍ରିତ ସଂଖ୍ୟାରେ ପ୍ରକାଶିତ ସମ୍ପାଦକଙ୍କ ମନ୍ତବ୍ୟ

ଏ ଦେଶରେ "ସାହିତ୍ୟ ସେବାରେ" ଅବଶ୍ୟ ଆଜି କେତେକଙ୍କର ଉଦ୍ୟମ ଦେଖା ଯାଉଅଛି, ମାତ୍ର ନୈଷ୍ଠିକ ସାଧନା ଅତି ଅଳ୍ପଙ୍କର ଅଛି । ସେମାନଙ୍କ ମଧ୍ୟରେ ପାରଳାର ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦ ମହାଶୟଙ୍କ ନାମ ଉଲ୍ଲେଖଯୋଗ୍ୟ । ନାମରେ ସ୍ପୃହା ନାହିଁ, ଅର୍ଥରେ ପିପାସା ନାହିଁ, ନିନ୍ଦା ସ୍ତୁତି ପ୍ରତି ଭ୍ରୂକ୍ଷେପ ନାହିଁ । ଅନନ୍ୟ ଚିତ୍ତରେ କେବଳ ସାହିତ୍ୟ ନିମନ୍ତେ ସାହିତ୍ୟର ଅନୁଶୀଳନ ନନ୍ଦ ମହାଶୟଙ୍କର ବ୍ରତ ହୋଇଅଛି । ସାହିତ୍ୟରେ ଯେଉଁ ବିଭାଗରେ ସେ କାର୍ଯ୍ୟ କରୁଅଛନ୍ତି, ଅବିଶ୍ରାନ୍ତ ଏବଂ ସାଧନାଦ୍ୱାରା ସେଥିରେ କୃତିତ୍ୱ ଲାଭ କରିବା ସହଜ ନୁହେ । ଓଡ଼ିଆ ଭାଷାର ପ୍ରକୃତି ନିରୂପଣ, ଆଦି ଓଡ଼ିଆ କବି ସାରଳାଦାସଙ୍କ ମହାକାବ୍ୟ ମହାଭାରତର ପୁଙ୍ଖାନୁପୁଙ୍ଖ ଆଲୋଚନା ଆଦି ସୁବିପୁଳ ସାହିତ୍ୟିକ ଉଦ୍ୟମରେ ସେ ଯେଉଁ ଅନନ୍ୟ ସାଧାରଣ କୃତିତ୍ୱ ଦେଖାଇ ଅଛନ୍ତି, ତାହା ତାଙ୍କ ଅଧ୍ୟବସାୟ ଓ ଆନ୍ତରିକତାର ପରିଚୟ ଦେଉଅଛି । ସାହିତ୍ୟର ଏହି ଗୁରୁତର ବିଭାଗରେ ଓଡ଼ିଶାରେ ତାଙ୍କୁ ଆଦିସାଧକ ବୋଲି କହିଲେ ବୋଧହୁଏ କାହାର ବିଶେଷ ଆପତ୍ତି ହେବ ନାହିଁ ।



## ଉତ୍କଳ ସେବକର ସମ୍ପାଦକ ୪ର୍ଥ ଭାଗ ୯ମ ସଂଖ୍ୟା ସେବକରେ ପ୍ରକାଶ କରିଥିବା ମନ୍ତବ୍ୟର ଏକ ଅଂଶ

ଉତ୍କଳ ନିଷ୍ଠାପର ସାହିତ୍ୟ ସେବକର ମଧ୍ୟରେ ପାରଳା ନିବାସୀ ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦ ଶର୍ମା ଅନ୍ୟତମ । ସେ ଗତ ୧୫ ବର୍ଷ ମଧ୍ୟରେ ଅନେକ-ଗୁଡ଼ିଏ ପୁସ୍ତକ ଲେଖି ପ୍ରକାଶ କରି ସ୍ୱୀୟ ଯୋଗ୍ୟତାର ପରିଚୟ ଦେଇ ଅଛନ୍ତି । "ଉତ୍କଳ ସାହିତ୍ୟରେ ପ୍ରକାଶିତ" ଭାରତର ସମାଲୋଚନା ତାଙ୍କର ଗବେଷଣା ଶକ୍ତିର ସୁନ୍ଦରତମ ନିଦର୍ଶନ ।

× × × ×

ଅଭିଧାନ ଖଣ୍ଡିକ ତାଙ୍କର ଅମର କୀର୍ତ୍ତି ।



I have gone through the review of Sarala Das's Oriya Mahabharat which appeared from time to time in the "Utkal Sahitya" magazine. It does much credit to its author, Pandit Gopinath Nanda of the Parlakimedi Raja's College and I have no hesitation in thinking that if it appears in the form of a book it can be profitably read by Oriya students preparing for the Intermediate and B. A. degree Examinations, as affording a good model of style as well as many useful informations.

Cuttack
The 18th August
1915

*(Sd.) Madhusudan Das,*
Oriya Translator to Government
& examiner of the B & O
Calcutta University.

---

P. O. SAKHIGOPALA,
Dist. Puri, Orissa.
Dated the 12th Jan. 1920

This is to certify that the criticism of Pandit Gopinath Nanda Sarma of Parlakhimedi on the Mahabharata, the most important epic of the Hindus, which continued to apear in the Oriya monthly "Utkal Sahitya" for about two years is an admirable study of that encyclopedic work in Oriya. The Pandit's labour and research in the domain of Oriya literature are wellknown and his criticism of the Sarala Mahabharata fully justifies his reputation and would do credit to any eminent scholar of any language. He has examined the Oriya verses of the poet Sarala Das with remarkable critical acumen and made a comparative study in the light of

the original Sanskrit epic. He has noted the variations in the readings between the old palm leaf manuscripts and the printed works. A critical study of a gigantic work like the Mahabharata can be undertaken only by a very few scholars of uncommon zeal and patience. There can be no doubt that Pandit Nanda's *Samalochana* (criticism) is an invaluable contribution to Oriya literature and it is highly desirable that the Magazine publications should be embodied in a book which would be of immense help to the student of Oriya language and literature. Pandit Gopinath Nanda's literary efforts have already received recognition from Government. It is now earnestly hoped that the publication of his *Samalochana* of the Oriya Mahabharata by Sarala Das may be undertaken by Government which would be a great encouragement to the much neglected Oriya community and their culture.

(*Sd.*) *Gopabandhu Das*,
Member, B & O. Legislative Council
Fellow of the Patna University.

# ବିଜ୍ଞାପନ

କ୍ଷମାଶୀଳ ପାଠକ ମହୋଦୟଗଣ !

"ଶ୍ରୀ ଭାରତ ଦର୍ପଣ" ପ୍ରଣେତା, ୰ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ମୋର ଅଗ୍ରଜ ଥିଲେ । ସେ ଯେଉଁ ଉପାଦେୟ ଗ୍ରନ୍ଥଗୁଡ଼ିକ ରଚନା କରିଯାଇ ଅଛନ୍ତି ତାହା ଓଡ଼ିଆ ଭାଷାର ଅସ୍ତିତ୍ୱ ଥିବା ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟକୋଷର ଅକ୍ଷୟ ସମ୍ପତ୍ତି ହୋଇ ରହିବ ବୋଲି କହିଲେ, ବୋଧହୁଏ କାହାର ମତଦ୍ୱୈଧ ହେବ ନାହିଁ । ଲେଖକ ତାହାଙ୍କର ଜୀବିତାବସ୍ଥାରେ ଏହି ଗବେଷଣାପୂର୍ଣ୍ଣ "ଶ୍ରୀ ଭାରତ ଦର୍ପଣ" ସାରଳା ମହାଭାରତ ସମାଲୋଚନା ଆଖ୍ୟାରେ 'ଉତ୍କଳ ସାହିତ୍ୟ ପତ୍ରିକା'ରେ ଆଂଶିକରୂପେ ପ୍ରକାଶ କରିଥିଲେ । ସେହି ସମୟରେ କେତେକ ବିରୁଦ୍ଧବାଦୀ, ଲେଖକ ତଥା 'ସାହିତ୍ୟ' ସମ୍ପାଦକ ଉଭୟଙ୍କ ଉପରେ ଯେ ବିଦ୍ରୂପବାଣ ବର୍ଷଣ କରିଥିଲେ ତାହା ଅନେକଙ୍କୁ ଅବିଦିତ ନାହିଁ । ପକ୍ଷାନ୍ତରରେ ଉତ୍କଳମଣି ୰ ପଣ୍ଡିତ ଗୋପବନ୍ଧୁ ଦାଶ, ଉତ୍କଳ ସାହିତ୍ୟ-ସୁରସିକ ମଧୁସୂଦନ ଦାସ (Translator to Government) ପ୍ରଭୃତି କେତେକ ବିଷ୍ଟାପର ସାହିତ୍ୟିକ ମହୋଦୟମାନେ ଏହି ପୁସ୍ତକର ଉପାଦେୟତା ଉପଲୋଗ କରି ଏହାକୁ ପୁସ୍ତକାକାରରେ ପ୍ରକାଶ କରିବା ନିମନ୍ତେ ଲେଖକଙ୍କୁ ଅନୁରୋଧ କରି ଯେଉଁ ଯେଉଁ ମନ୍ତବ୍ୟମାନ ପଠାଇ ଅଛନ୍ତି ତାହା ପାଠକରି ଏହି ପୁସ୍ତକ ଖଣ୍ଡକର ଯଥାଶୀଘ୍ର ମୁଦ୍ରଣ ବିଷୟରେ ମୁଁ କୃତସଂକଳ୍ପ ହୋଇଥିଲି । ପୁଣି 'ଓଡ଼ିଆ ଭାଷାତତ୍ତ୍ୱ' ମୁଦ୍ରଣ ସମ୍ପର୍କରେ ଯେବେ ମୁଁ ପାରଳାର ଉଦାରମନା ଅଧୀଶ୍ୱର ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣଦେବ ମହାରାଜାଙ୍କ ସହ ଆଳାପ କରୁଥିବା ସମୟରେ ଶ୍ରୀମାନ୍ ମହାରାଜା ମତେ ଆଦେଶ କରିଥିଲେ କି, 'ଗୋପୀନାଥ ନନ୍ଦଶର୍ମାଙ୍କ ଅପ୍ରକାଶିତ ଗ୍ରନ୍ଥାଦିର ମୁଦ୍ରଣ ବିଷୟରେ ଯତ୍ନବାନ ଥିବ ।'

ତଥାପି ନାନାବିଧ ଅସୁବିଧାସତ୍ତ୍ୱେ ବହୁବ୍ୟୟ ସାପେକ୍ଷ କଠିନତର କାର୍ଯ୍ୟରେ ବହୁଦିନ ଯାଏ ମୁଁ ପ୍ରବୃତ୍ତ ହୋଇପାରି ନ ଥିଲି । ପ୍ରକାଶ ଥାଉକି, କେବଳ ପ୍ରୋକ୍ତ ମହାରାଜାଙ୍କ ଆନୁକୂଲ୍ୟରେ ଏହି ଗ୍ରନ୍ଥର ମୁଦ୍ରଣ ଆରମ୍ଭ ଓ ଶେଷ କରି ପାରିଅଛି ।

ପ୍ରୁଫ ଦେଖିବା ବିଷୟରେ ଯଥୋଚିତ ଯତ୍ନ କରାଯାଇ ଥିଲେ ସୁଦ୍ଧା ଗ୍ରନ୍ଥ ମଧ୍ୟରେ ମୁଦ୍ରାଙ୍କନଗତ ଦୋଷରୁ ଅନେକ ଅଶୁଦ୍ଧ ରହିଗଲା । ଯେଉଁସବୁ ଅଶୁଦ୍ଧ ସଂଶୋଧିତ ନ ହେଲେ ପାଠକମାନଙ୍କର ବିଶେଷ ଭ୍ରମ ଘଟିବାର ସମ୍ଭାବନା, ସେ ସମସ୍ତର ଗୋଟିଏ ଶୁଦ୍ଧିପତ୍ର ଏହି ଗ୍ରନ୍ଥର ଶେଷରେ ଦିଆଗଲା । ଆପଣମାନେ ଏହି ପୁସ୍ତକଖଣ୍ଡି ପଢ଼ିବାବେଳେ ଶୁଦ୍ଧିପତ୍ର ସହ ମିଳାଇ ପାଠ କରିବେ ।

ଉପସଂହାରରେ ବକ୍ତବ୍ୟ ଏହି ଯେ, ମୋର ଶ୍ରଦ୍ଧେୟ ବନ୍ଧୁ ପଣ୍ଡିତ ଶ୍ରୀଯୁକ୍ତ ଗୋପବନ୍ଧୁ ବିଦ୍ୟାଭୂଷଣ ରଥ ଶର୍ମା ମହାଶୟ ଏହାର ପ୍ରୁଫ୍ ସଂଶୋଧନ ତଥା ଶୁଦ୍ଧିପତ୍ର ଲେଖିବାରେ ମୋତେ ବିଶେଷ ସାହାଯ୍ୟ କରି ଅଛନ୍ତି । ସେଥିପାଇଁ ସେ ମୋର ଧନ୍ୟବାଦାର୍ହ ହୋଇ ଅଛନ୍ତି । *

ସାହିତ୍ୟ କୁଟୀର,
ପାରଳାଖେମୁଣ୍ଡି
୧୩-୯-୧୯୨୮

ଶ୍ରୀ ବଳଭଦ୍ର ନନ୍ଦଶର୍ମା ।

---

* ଏହି ଲେଖାଟି ପ୍ରଥମ ସଂସ୍କରଣ ସମ୍ପର୍କରେ ଲିଖିତ । ତେଣୁ ଦ୍ୱିତୀୟ ସଂସ୍କରଣ ପାଇଁ ଏହି ଲେଖାର ଅନେକ ଅଂଶ ପ୍ରଯୁଜ୍ୟ ହେବ ନାହିଁ ।

# ସୂଚିପତ୍ର



ସ୍ୱର୍ଗୀୟ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା

# ଶ୍ରୀ ଭାରତ ଦର୍ପଣ

ଜ୍ଞାନ-ଧନ ସୁଧୀଗଣ ! ପ୍ରଥମତଃ ଶାସ୍ତ୍ରକର୍ତ୍ତା ଭଗବାନ୍ ଶ୍ରୀକୃଷ୍ଣ ଦ୍ୱୈପାୟନଙ୍କଠାରେ ପ୍ରଣତ ହୋଇ ଧୈର୍ଯ୍ୟ ଓ ସାହସ ଅବଲମ୍ବନ ପୂର୍ବକ ଦୁରଧିଗମ୍ୟ ସାରଳାଦାସଙ୍କ କୃତ ମହାଭାରତର ସମାଲୋଚନା ସଂକ୍ରାନ୍ତ ବୃହତ୍‌କାୟ ପ୍ରବନ୍ଧଟି ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବାକୁ ଉଦ୍ୟତ ହେଲୁଁ । * ଏହାର ଆମୂଳାନ୍ତ ପାଠରେ ଆପଣମାନଙ୍କ ମାର୍ଗଦର୍ଶିତାରେ ଯାହା କି ଅବଶ୍ୟମ୍ଭାବୀ ମାର୍ଗସୂକ୍ଷ୍ମତାର ସମାଯୋଗ ଘଟିବ, ସେଥିନିମିତ୍ତ ବିରକ୍ତ ନ ହୋଇ ଶ୍ରମସହିଷ୍ଣୁତା ପୂର୍ବକ ଗୁଣଦୋଷ ବିବେଚନାରେ ପ୍ରବୃତ୍ତ ହୋଇ ସ୍ୱାଭିମତ ପ୍ରକାଶ କରିବେ ବୋଲି ସବିନୟ ପ୍ରାର୍ଥନା କରୁଁ । ଏହାର ସମଗ୍ର ପାଠ ଓ ଗୁଣାଗୁଣ ଅବଗାହନରେ ଆପଣମାନଙ୍କର ଭବିଷ୍ୟମାଣ ପରିକଳ୍ପିତ ମାର୍ଗସୂକ୍ଷ୍ମତାକୁ ସେପରି ନିଷ୍ପ୍ରୟୋଜନ ବୋଲି ମନେ କରନ୍ତୁ ନାହିଁ । ଅପାର ପାରାବାରକଳ୍ପ ଅନଳ୍ପଗୁଣ ସାଧାରଣ-କଳ୍ପନାତୀତ ମହାଭାରତର ବିଷୟାଦିର ଅବବୋଧରେ ଶରଣିସ୍ଥତା କାହାରି ପକ୍ଷେ ଅସମ୍ଭବ ନୁହେ । ତଥାପି ପ୍ରୟୋଜନରହିତ ନିରର୍ଥକ ବା ଅନାବଶ୍ୟକ ଇତସ୍ତତଃ ବିକ୍ଷିପ୍ତ ବଳାତ୍ ଆଗତ ଅସଙ୍ଗତ ବାକ୍ୟମାନଙ୍କରେ ଅତି

---

* ବିଗତ ବର୍ଷ ଜୁନ ମାସରେ ଉତ୍କଳ ସାହିତ୍ୟ ପତ୍ରିକାର ସମ୍ପାଦକ ପଣ୍ଡିତବର ଶ୍ରୀ ବିଶ୍ୱନାଥ କର ମହୋଦୟଙ୍କୁ ଏହି ପ୍ରବନ୍ଧର ସମଗ୍ର କାଗଜମାନ ଦେଖିବା ପାଇଁ ପ୍ରାର୍ଥନାପୂର୍ବକ ଦିଆ ଯାଇଥିଲା । ଶଂସିତ ମହାଶୟ କାଗଜଗୁଡ଼ିକ ଦେଖି ପ୍ରକାଶ କରିବା ପାଇଁ ଆଦେଶ କରିଥିଲେ; ମାତ୍ର ଶରୀରର ଅସ୍ୱାସ୍ଥ୍ୟ ଏବଂ ଅନ୍ୟାନ୍ୟ କାର୍ଯ୍ୟବଶତଃ ସମୁଚିତ ସମୟ ନ ପାଇ ଆଜଯାଏ ପ୍ରକାଶ କରି ପାରି ନ ଥିଲୁଁ ।

ପଲ୍ଲବିତ କରିବାକୁ ଆମ୍ଭେମାନେ ସର୍ବଥା ଅନିଚ୍ଛୁକ । "ମିତଂ ଚ ସାରଂ ଚ ବଚୋହି ବାଗ୍ମିତା" ନବ ପଣ୍ଡିତପ୍ରବର ନୈଷଧପ୍ରଣେତା ଶ୍ରୀହର୍ଷଙ୍କର ଏହି ଅମିତ-ମୂଲ୍ୟ ବାକ୍ୟାର୍ଥରେ ପ୍ରଣୋଦିତାନ୍ତଃକରଣ ହୋଇ ଯଥାସମ୍ଭବ ସଂକ୍ଷିପ୍ତ ଭାବରେ କେବଳ ଜ୍ଞାତବ୍ୟ ଓ ଉତ୍କୃଷ୍ଟ ପ୍ରୟୋଜନୀୟ ବିଷୟମାନ ଲେଖିବୁଁ ।

କେବଳ ସାରଳାଦାସଙ୍କର ଭାରତ କାହିଁକି, ଯେ କୌଣସି ଦେଶୀୟ ଭାଷାରେ ଲିଖିତ ମହାଭାରତ କିମ୍ବା ଅନ୍ୟ ଗ୍ରନ୍ଥର ସମ୍ପୂର୍ଣ୍ଣ ସମାଲୋଚନା କରିବାକୁ ହେଲେ, ସମଗ୍ର ମୂଳ ଗ୍ରନ୍ଥଟି ନ ପଢ଼ିଲେ ଅପିଚ ଉଭୟତ୍ର ବର୍ଣ୍ଣିତ ପ୍ରତ୍ୟେକ ପ୍ରଧାନ ଘଟଣାମାନଙ୍କୁ ମିଳାଇ ନ ଦେଖିଲେ, ମୌଳିକ ଗ୍ରନ୍ଥ-ସନ୍ନିଧାନସତ୍ତ୍ୱର ଯଥାଯଥ ଅସ୍ତିତ୍ୱ କିମ୍ବା ଅଭାବ ଏବଂ କାଳ୍ପନିକ ବୈଷମ୍ୟ ଚିତ୍ରଣର ସଦ୍ଭାବ, ବସ୍ତୁର ସଙ୍ଗତି ଓ ଅସଙ୍ଗତି, ସଂଲଗ୍ନତା ଓ ଅସଂଲଗ୍ନତା ପ୍ରଭୃତି ପ୍ରଧାନ ପ୍ରଧାନ ବିଷୟଗୁଡ଼ିକ ଜଣାଯାଏ ନାହିଁ ବୋଲି ଯଥାର୍ଥ୍ୟ ସ୍ଥିରୀକରଣାର୍ଥ ପ୍ରଥମତଃ ମୂଳଗ୍ରନ୍ଥକୁ ଜ୍ଞାନର ସମ୍ମୁଖରେ ଆଦର୍ଶ କରି ରଖିବାକୁ ହୁଏ; ଅଥଚ ସମାଲୋଚ୍ୟ ଗ୍ରନ୍ଥଟିର ଆମୂଳାନ୍ତ ନିର୍ବିଶେଷ ଭାବରେ ସମ୍ୟକ୍ ପଠନ ଓ ମନନ କରିବାକୁ ହୁଏ । ଅତଏବ ଆମ୍ଭେମାନେ ସମଗ୍ର ସାରଳା ଭାରତର ସମାଲୋଚନାର ଲିଖନେଚ୍ଛୁ ହୋଇ ମୂଳ ଓ ତଦନୁକୃତ ଏହି ମହାଭାରତର ଅଖଣ୍ଡ ପାଠରେ ସାରଭୂତ ଯାହା ଯାହା ଅବଗତପୂର୍ବକ ସ୍ଥିର କରିଅଛୁଁ, ତଦନୁକ୍ରମେ ଉଦ୍ଦେଶ୍ୟ ସାଧନରେ ପ୍ରବୃତ୍ତ ହେଉଅଛୁଁ । ଏ ସ୍ଥଳରେ ପ୍ରକାଶ କରିବା ଉଚିତ ଯେ ଲିଖିତବ୍ୟ ସମାଲୋଚନା ପ୍ରବନ୍ଧଟିକୁ ଅଙ୍ଗ ପ୍ରତ୍ୟଙ୍ଗବିଶିଷ୍ଟ ଚାରିଗୋଟି ପ୍ରଧାନ ବିଭାଗରେ ବିଭକ୍ତ କରୁଅଛୁଁ । ଯଥା— (୧) ବିଷୟ ଓ ବୈଷମ୍ୟ ଅର୍ଥାତ୍ ବିଷୟର ସାଦୃଶ୍ୟ ଓ ବୈଷମ୍ୟ, (୨) ଭାଷା ଓ ସାହିତ୍ୟ, (୩) କବି ପରିଚୟ, (୪) ଉପସଂହାର ।

ସମାଲୋଚନାରେ ପ୍ରବୃତ୍ତ ହେବା ପୂର୍ବରୁ ପାଠକମାନଙ୍କ ନିକଟରେ ବ୍ୟକ୍ତ କରିବା ଉଚିତ ଯେ, ମହାନୁଭବ ମହାପ୍ରାଜ୍ଞ ସ୍ମୃତିମାନ୍ ସାରଳା ଦେବୀଙ୍କର ବରପୁତ୍ର ଶ୍ରୀ ସାରଳାଦାସ କବି ଏହି ତ୍ରିଗୁଣାତ୍ମକ (ପ୍ରସାଦ-ଓଜ-ମାଧୁର୍ଯ୍ୟଗୁଣ-ବିଶିଷ୍ଟ) ଉତ୍କଳର ଆଦିମ କବିତାରେ ଯେଉଁ ନିସର୍ଗରମଣୀୟତା, ପଦଲାଳିତ୍ୟ, ପଦସଂବିଧାନନୈପୁଣ୍ୟ ପ୍ରଭୃତିର ସନ୍ନିବେଶ କରିଥିଲେ, ସମ୍ପ୍ରତି ସ୍ଥାନେ ସ୍ଥାନେ ତାହାର ଆଭାସ ମାତ୍ର ରହିଅଛି, କବିତାର ଜନ୍ମକାଳୀନ ସେହି ମନୋହର ଛବି ବହୁ ସ୍ଥଳରେ ପ୍ରାୟ ଲୁପ୍ତ ହୋଇ ଯାଇଅଛି । ଅନେକ ସ୍ଥଳରେ ତନ୍ମୟ ଆଜନ୍ମସିଦ୍ଧ ରମଣୀୟ ଛବି କଦର୍ଯ୍ୟ ହୋଇ ପଡ଼ିଅଛି । ସାରଳାଦାସଙ୍କ କବିତାରେ

ଆମ୍ଭେମାନେ ବର୍ତ୍ତମାନ ଯେତେ ଯେତେ ଦୋଷ ଦେଖି ପାରୁଅଛୁଁ, ସେ ସବୁଯାକ କବିଙ୍କର ନୁହେଁ । କବିଙ୍କ ଲେଖା ଆଧୁନିକ ଦୃଷ୍ଟିରେ ନିର୍ଦ୍ଦୋଷ ନୁହେ ସତ୍ୟ, ମାତ୍ର ତତ୍‌ପରବର୍ତ୍ତୀ ଅଜ୍ଞ ଲେଖକମାନଙ୍କ ଦୋଷଜାଲରେ ବହୁ ପରିମାଣରେ ଦୂଷିତ ହୋଇ ଯାଇଅଛି । ଅତଏବ ଲୋକର ଦୁଃଷ୍ଥାନସ୍ଥିତ ହେତୁରୁ ବହୁ ଦୋଷସଙ୍କୁଳ ହେବାକୁ ହୁଏ । ଏହି ପୁରାଣ ଗ୍ରନ୍ଥଟି ପ୍ରାୟ ପାଞ୍ଚ ଶତ ବର୍ଷ ପୂର୍ବେ ଲିଖିତ ହୋଇ ତଦବଧି ମର୍କଟ ହସ୍ତରେ ଶାଳଗ୍ରାମ ତୁଲ୍ୟ ବିଶେଷତଃ ଅନଭିଜ୍ଞ ଓ ଅବିଦ୍ୟମାନଙ୍କର ହସ୍ତାମଳକ ପ୍ରାପ୍ତ ହୋଇ ଆସିଅଛି । କାରଣ ଯେତେବେଳେ ମହାଭାରତର ଉତ୍ପତ୍ତି, ସେହି ସମୟରେ ଉତ୍କଳ ଦେଶରେ ସଂସ୍କୃତ ଭାଷାର ଚର୍ଚ୍ଚା ସମଧିକ ଥିଲା । ପ୍ରାୟ ସମସ୍ତ ଉଚ୍ଚ ଶ୍ରେଣୀର ଲୋକେ ସଂସ୍କୃତକୁ କେବଳ ସାଦର ଦୃଷ୍ଟିରେ ଦେଖୁଥିଲେ । ସେତେବେଳେ ପ୍ରାକୃତ ଭାଷାମାନଙ୍କର ପ୍ରାବଲ୍ୟରୁ ସଂଭୂତ ଓଡ଼ିଆ ଭାଷାର ଶୈଶବାବସ୍ଥା, ଏହାର ସମାଦର ସେତେଦୂର ପ୍ରସାରିତ ହୋଇ ନ ଥିଲା, କେବଳ ନିମ୍ନ ଶ୍ରେଣୀରେ ମାତ୍ର ଏହାର ସ୍ଥାନ ନିର୍ଦ୍ଦିଷ୍ଟ ଥିବାର ପ୍ରମାଣ ଇତିହାସ ପ୍ରଭୃତିରୁ ଜଣାଯାଏ । ଆପଣମାନେ ଅବଶ୍ୟ ଜାଣିଥିବେ, ବରଂଚ କେହି କେହି ଅନୁଭବ କରିଥିବେ, ଅଦ୍ୟାପି କେତେକ ମାତୃଦ୍ରୋହିତାରେ ଅନଭିଜ୍ଞ କେବଳ ସଂସ୍କୃତିଆ ସୁଆପାଠିଆ ପଣ୍ଡିତ ଦେଶୀୟ ଭାଷା କବିତାକୁ ଘୃଣାଚକ୍ଷୁରେ ଦେଖନ୍ତି । ଯଦି ତାହାଙ୍କ ସମକକ୍ଷ କୌଣସି ପଣ୍ଡିତଙ୍କୁ ଓଡ଼ିଆ ପୁସ୍ତକ ଖଣ୍ଡିଏ ପଢୁଥିବାର ଦେଖନ୍ତି, ତେବେ ବିରକ୍ତ ସହ କହନ୍ତି, "ଭାଷାଗୁଡ଼ାଏ କଣ ପଢୁଚ ହେ !" ଏ ସବୁ ସେମାନଙ୍କର ଦୁର୍ମତିତ୍ୱର ପରିଚୟସୂଚକ, ସେମାନେ କିଛିହେଁ ବିଚାର ଓ ବିବେକ କରନ୍ତି ନାହିଁ । ଯେ କୌଣସି ଭାଷା ହେଉ, କାବ୍ୟର ବିଷୟାର୍ଥ ସନ୍ନିଧାନାଦିର କ୍ରମ, ବର୍ଣ୍ଣନା ଓ କଳ୍ପନାର ଚାତୁର୍ଯ୍ୟ ଓ ଚମତ୍କାରିତାଦିକୁ ଅବଶ୍ୟ ଆଦରପୂର୍ବକ ଗ୍ରହଣ କରିବାକୁ ହେବ । * ଏହି ସୁବିସ୍ତୃତର ଅଭାବରୁ କେତେକ

---

* ଅତଏବ ମହାକବି ଶ୍ରୀ ରାଜଶେଖର କର୍ପୂରମଞ୍ଜରୀ ସଟ୍ଟକରେ କହିଅଛନ୍ତି—

ଅର୍ଥନିବେଶା ସ୍ତଏବ ଶବ୍ଦା ସ୍ତଏବ ପରିଣମନ୍ତୋଽପି
ଭଣ୍ଟିବିଶେଷଃ କାବ୍ୟଂ ଭାଷା ଯା ଭବତି ସା ଭବତୁ ।
ପୁରୁଷାଃ ସଂସ୍କୃତବନ୍ଧାଃ ପ୍ରାକୃତବନ୍ଧୋଽପି ଭବତି ସୁକୁମାରଃ
ପୁରୁଷମହିଳାନାଂ ଯାବଦିହାନ୍ତରଂ ତାବଦ୍ ତେଷୁ ।

ଏ ସବୁ ପ୍ରାକୃତ ପଂକ୍ତିମାନଙ୍କର ଛାୟା ।

ମାତୃସାହିତ୍ୟଜ୍ଞାନଶୂନ୍ୟ ସଂସ୍କୃତ ପଣ୍ଡିତ ମାତୃଭାଷାରେ ଅନାସ୍ଥା ପ୍ରକାଶ କରନ୍ତି । ଇଦାନୀଂତନ ପ୍ରତ୍ୟକ୍ଷୀଭୂତ ଦୁଷ୍ଟଗ୍ରହାବିଷ୍ଟ କେତେକ ପଣ୍ଡିତଙ୍କ ତୁଳନାରେ ବିଶ୍ୱାସ କରିବାକୁ ହୁଏ ଯେ, ପଞ୍ଚଶତ ବର୍ଷ ପୂର୍ବେ ଏ ଭଳି ପଣ୍ଡିତମାନେ ସାରଳା ଭାରତକୁ ପଢ଼ିବା ଦୂରେ ଥାଉ, ପ୍ରତ୍ୟୁତ ସ୍ପର୍ଶ କରୁ ନ ଥିବେ । ଅତଏବ କୋମଳସ୍ୱଭାବବିଶିଷ୍ଟ ଏହି ସୁନ୍ଦର କବିତାଟି ଅଳ୍ପଜ୍ଞ ଓ ଅଜ୍ଞମାନଙ୍କର ହସ୍ତାଧୀନ ହେଲା । ଅଳ୍ପଜ୍ଞ ଲିଖିତ ପୁସ୍ତକକୁ ଆଦର୍ଶ କରି ଅଜ୍ଞ ଲୋକେ କ୍ରମେ ଲେଖାକୁ ବହୁଦୋଷସଙ୍କୁଳ ଓ ବିକଳାଙ୍ଗ କରି ପକାଇଲେ ।

ବହୁକାଳ ପରେ ଆଜକୁ ପ୍ରାୟ ପଞ୍ଚଦଶ ବର୍ଷ ପୂର୍ବେ ପୁରାଣ-ପ୍ରକାଶକ କମ୍ପାନୀ ଗଠିତ ହୋଇ ଏହି ଭାରତ ଗ୍ରନ୍ଥକୁ ମୁଦ୍ରିତ କରିବା ଚେଷ୍ଟାରେ ଅନେକ ସ୍ଥଳରେ ଭିନ୍ନାକୃତିରେ ପରିଣତ କରି ଦେଇଛନ୍ତି । ବିଅଁ ଗଢୁ ଗଢୁ ମାଙ୍କଡ଼ ହେଲା ପରି କେତେକ ସ୍ଥଳ ହୋଇ ଯାଇଅଛି । ପରିଶୋଧନଦ୍ୱାରା ବହୁ ସ୍ଥଳ କବିଦତ୍ତ ସ୍ୱାଭାବିକ ସୌନ୍ଦର୍ଯ୍ୟରୁ ବଞ୍ଚିତ ହୋଇ ବହୁ ଦୂରରେ ନିକ୍ଷିପ୍ତ ହୋଇଅଛି । ପୁଣି ଆହୁରି ଅନେକ ସ୍ଥଳ ଅସାବଧାନତାଜନିତ ଦୋଷରେ ଦୂଷିତ ହୋଇଅଛି । ଏ ସମ୍ବନ୍ଧରେ କେତେକ ପ୍ରତ୍ୟକ୍ଷ ପ୍ରମାଣ ନ ଦେଖାଇଲେ ଅନେକଙ୍କର ବିଶ୍ୱାସ ହେବା ତେଣେ ଥାଉ, ବିରକ୍ତି ଓ ଦ୍ୱେଷ ଜନ୍ମି ପାରେ । ଅତଏବ ତାହାର ପ୍ରମାଣସ୍ୱରୂପ ଅନତିବିସ୍ତୃତ କେତେକ ସ୍ଥଳ ମାତ୍ର ଉଦ୍ଧୃତ କରୁଅଛୁଁ—

(୧) ଏଣେ ଭିଆଇଲେ ସେହି ଗ୍ରାମକେ ସୀମାଏ । — ଆଦିପର୍ବ ।

ଏ ସ୍ଥଳକୁ ଛାପା ପୁସ୍ତକରେ ଅସାବଧାନତା ଯୋଗୁଁ ଏପରି ବିକୃତ କରି ଅଛନ୍ତି—

ଏଣେ ଭିଆଇଲେ ସେହି ଗ୍ରାମ କେଶୀମାପ୍ୟେ । ଆ. ପ. ୫ ପୃଷ୍ଠା ।

(୨) ମା ଗୋ ଗତ ଆଗତ ସମସ୍ତ ବୃଦ୍ଧି କହ,
ରାଜ୍ୟଭ୍ରଷ୍ଟ ହେଲା କଥା ଲାଗିଲା ସନ୍ଦେହ । ଆ. ପ.

ଏହାକୁ ଛାପାରେ ଅନ୍ୱୟାର୍ଥଶୂନ୍ୟ କରି ପକାଇ ଅଛନ୍ତି—

ମା ଗୋ ଲଜ୍ୟାମାନ ଭଗ୍ନ ଛୁଡ଼ଣ ସମେହ
ସତ୍ୟଭଗ୍ନ ହେବାଲାଗି ଲାଗଇ ସନ୍ଦେହ । ଆ. ପ. ୨୯ ପୃଷ୍ଠା ।

(୩) ସହଦେବ ବୋଇଲେ ଦେବ ଉତ୍ତରକୋଶଳେ
ଜ୍ଞାନପୁର ନଗ୍ର ବୋଲି ଗଙ୍ଗା ନଦୀକୂଳେ । ଆ. ପ.

ଏହାକୁ ଛପାରେ "ଗୋଦାବରୀକୂଳେ" ବୋଲି ସମନ୍ୱିତ କରିଅଛନ୍ତି । ତାହାହେଲେ ଉତ୍ତର କୋଶଳରେ ଗୋଦାବରୀ କାହୁଁ ଆସିବ ?

(୪) ପୂର୍ବାପର ସଙ୍ଗତିସନ୍ଦର୍ଭ ବିସ୍ମରଣଶୂନ୍ୟତା ବଶରୁ କେତେକ ସ୍ଥଳର ଭାବ ଦ୍ୱିଧା କରି ଦେଇଅଛନ୍ତି । ଏହାର ପ୍ରମାଣସ୍ୱରୂପ ଗୋଟିଏ ସ୍ଥଳମାତ୍ର ପ୍ରଦର୍ଶିତ ଅଛୁଁ । ଆଦିପର୍ବ ୪୦ ପୃଷ୍ଠାରେ ଧୃତରାଷ୍ଟ୍ରଙ୍କର ଜନ୍ମ ରାଶି କୃତ୍ତିକାମେଷ ଲେଖି, ୪୬ ପୃଷ୍ଠାରେ କୃତ୍ତିକାବୃଷ ବୋଲି ପ୍ରକାଶ କରି ଅଛନ୍ତି ।

ଅଗସ୍ତି ବୋଇଲେ ତାର କୃତ୍ତିକାମେଷ ରାଶି । ୪୦ ପୃଷ୍ଠା ।

ଧୃତରାଷ୍ଟ୍ରର ଅଟେ କୃତ୍ତିକାବୃଷ ରାଶି । ୪୬ ପୃଷ୍ଠା ।

(୫) ସଭାପର୍ବରେ ନକୁଳ ଦିଗ୍‌ବିଜୟ ସମୟରେ ମତ୍ସ୍ୟେନ୍ଦ୍ରନାଥଙ୍କ ପୁତ୍ର ଗୋରେଖନାଥ ଯୋଗୀଙ୍କୁ ଦେଖିବା ସ୍ଥଳରେ ତାଳପତ୍ର ପୁସ୍ତକରେ ଲେଖାଅଛି କି—

ଦର୍ଶନ କଲା ଯେ ମତ୍ସ୍ୟେନ୍ଦ୍ରନାଥ ସୁତ,
ଭେଟିଲା ପରମଯୋଗୀ ଗୋରେଖ ଅବଧୂତ ।

ଏହା ଛପା ପୁସ୍ତକରେ ଅର୍ଥଶୂନ୍ୟ ହୋଇ ରହିଅଛି—

ବସନ ପାଇଲେ ସେହୁ ମହାଇନ୍ଦ୍ର ପୋତା,
ଭେଟିଲେ ମହାଯୋଗୀ ଗୋଲେକ ଅବଧୂତା ।

. ସଭାପର୍ବ—୨୪୩ ପୃଷ୍ଠା ।

(୬) ଆପଣେ ସହଦେବ କୋଟି କାଟିଲେ ଖଣ୍ଡ ଘେନ,
ବୈଜୟନ୍ତୀ ମାଳା କଲେ ଛକ ଛନ ।
ଏ ପଶା କପଟ ବୋଲି ଲହିଲି କଣ୍ଠୀ,
ଦେଖି ବ୍ରହସିତ ଯେ ହୋଇଲେ ଯୁଧିଷ୍ଠି । ସ. ପ.

ଏହାକୁ ଛପାରେ ଲେଖି ଅଛନ୍ତି କି—

ବୈଜୟନ୍ତୀ ମାଷ୍ଟା କଲି କଛେ କଛ ଛନ,
ଏ ପଶା କପଟ ବୋଲି ଲେଖେ ଖିରପୁଟି । ସ. ପ.—୪୬୪ ପୃଷ୍ଠା ।

(୭) ମାନବ ଅବତାରେ ତହିଁ ଖେଳନ୍ତି ଦେବ କାଶୀ,
ସେ ପଶୁପତ ଗ୍ରନ୍ଥେ ଅର୍ଜୁନ ଯାଇ ପଶି ।
ଅର୍ଜୁନର ପଶନ୍ତେ ଗଣନାୟକମାନେ
କରେ ତ୍ରିଶୂଳ ବୁଲାଇ ଓଗାଳଲେ ଅର୍ଜୁନ ସନ୍ନିଧାନେ ।
କାହିଁରରେ ତୁମ୍ଭେ ବୋଲି ଉର୍ଦ୍ଧ୍ୱମୁଖେ ଡାକି
ସିଂହନାଦ ଶବଦେ ବଜାନ୍ତି ଘୋର ଡାକ ।
ଆରେ ରେ ମାନବ ଜନ୍ମ ହୋଇ କାହିଁକି ଭରସୁ,
କାଳସର୍ପେ ଖେଡୁଆଳ ମରଣେ କପାଁ ପଶୁ ।

ଇତ୍ୟାଦି ପଦ୍ୟଗୁଡ଼ିକ ଗୁପ୍ତରେ ଭିନ୍ନାକାର ଓ ଭିନ୍ନଭାବବିଶିଷ୍ଟ କରି ଦେଇଅଛନ୍ତି । ସଭାପର୍ବ ୨୦୨ ପୃଷ୍ଠା ଦେଖନ୍ତୁ ।

(୮) କୀଚକ ଶତେ ଭାଇର ଭାବ ମୁଁ ନ ସହି — ସଭାପର୍ବ

ଏହି ପଦ୍ୟାର୍ଦ୍ଧକୁ ଗୁପ୍ତରେ ନର୍ଦ୍ଦିଷ୍ଟାକ୍ଷରବିଶିଷ୍ଟ କରିବାକୁ ଯାଇ ଲେଖି ଅଛନ୍ତି କି—

କୀଚକ ଶତେ ଭର ମୁଁ ନ ପାରିଲି ସହି । ସଭାପର୍ବ ୪୪୫ ପୃଷ୍ଠା ।

(୯) ଆମ୍ଭେ ମହାବୃଷ୍ଟି କଲୁ ଯେତେବେଳେ
ତୋଟାଯାକ ଶର ପୀଡ଼ା କଲି ଗଗନମଣ୍ଡଳେ ।

ମଧ୍ୟପର୍ବରେ ଉକ୍ତ ଖାଣ୍ଡବଦାହର କଥା ତାଳପତ୍ର ପୁସ୍ତକରେ ଏହିପରି ଲେଖାଅଛି । ମାତ୍ର ଗୁପ୍ତାକାରମାନେ ଉଭୟ ଚରଣରେ ତୁଲ୍ୟସଂଖ୍ୟାକ ଅକ୍ଷର ରଖିବାକୁ ଯାଇ ଲେଖିଅଛନ୍ତି କି—

ମହାଘୋର ବୃଷ୍ଟି କଲୁଁ ଯେତେ ଯେତେବେଳେ,
ତୋଟାଯାକ ଶରପୀଡ଼ା କଲି ଖମଣ୍ଡଳେ । ମଧ୍ୟପର୍ବ-୩୨ ପୃଷ୍ଠା ।

ଖମଣ୍ଡଳେ = ଆକାଶମଣ୍ଡଳେ ।

ସାରଳାଦାସ କବି ଖ, କ୍ଷ୍ମା, ଜ୍ୟା ଇତ୍ୟାଦି ଅପ୍ରଚଳିତାର୍ଥ ଏକାକ୍ଷର ଶବ୍ଦ-ମାନଙ୍କର ପ୍ରୟୋଗ କରି ନାହାନ୍ତି । ଏପରି ଶବ୍ଦଗୁଡ଼ିକ ଗୁପ୍ତରେ କେବଳ ସଂଯୋଗ କରି ଯାଇଅଛି ।

(୧୦) କନ୍ୟା ମାସ ଶୁକ୍ଳପକ୍ଷ ପୌର୍ଣ୍ଣମୀର ଦିନ,
ଲିଆ ନଟିକାଳ ଏକବେଳେ କରଇ ଭୋଜନ—ଭୀଷ୍ମପର୍ବ ।

ଏ ପଦ୍ୟଟିକ ସମାନାକ୍ଷରବିଶିଷ୍ଟ କରିବା ପାଇଁ ଛାପାରେ ପରିବର୍ତ୍ତିତ କରି ଅଛନ୍ତି କି—

କନ୍ୟା ମାସ ଶୁକ୍ଳ ପକ୍ଷ ପୌର୍ଣ୍ଣମୀର ଦିନ
ନିଆଁଟିଏ ରାଜା ବସି କରଇ ଭୋଜନ । ଶ୍ରୀ. ପ. ୯୫ ପୃଷ୍ଠା ।

ଏପରି ବହୁ ସ୍ଥଳରେ କବିପ୍ରଯୁକ୍ତ ବାକ୍ୟାର୍ଥ-ପ୍ରତିପତ୍ତି ଭିନ୍ନ ଓ ବିକୃତ ହୋଇଥିଲେହେଁ ସମାକ୍ଷରତା ନିମନ୍ତେ ପରିବର୍ତ୍ତନକୁ ଆବଶ୍ୟକ ମଣିଅଛନ୍ତି ।

ଏହିପରି ବହୁ ସ୍ଥଳରେ ଯାହା ତାଳପତ୍ର ପୁସ୍ତକରେ ନାହିଁ, ଏପରି କେତେକ ଦୋଷରେ ଛାପାର କେତେକ ଅଂଶ ଦୂଷିତ ହୋଇ ଯାଇଅଛି । ପ୍ରଥମତଃ ଅନେକ ଅନଭିଜ୍ଞଙ୍କ ଲେଖାରେ କ୍ରମଶଃ ବହୁ ସ୍ଥଳରେ ଦୋଷଯୁକ୍ତ ହୋଇ ଆସିଲା; ତାହା ପରେ ପୁଣି ଛାପା ହେଲା । ଏହି କାରଣମାନଙ୍କରୁ କବିଙ୍କ ବାକ୍ୟର ମୌଳିକତା ଓ ସ୍ୱାଭାବିକ ବା ଅକୃତ୍ରିମ ରମଣୀୟତା ଅନେକବି ଆଉ ଦେଖାଯାଉ ନାହିଁ । ପୁଣି ଅନେକ ସ୍ଥଳରେ ଛାପା ଓ ତାଳପତ୍ର ପୁସ୍ତକର ଲେଖାରେ ବହୁ ପ୍ରଭେଦ ପରିଦୃଶ୍ୟମାନ ହେଉଅଛି । ଯେ କୌଣସି ପର୍ବ ମିଳାଇ ଦେଖନ୍ତୁ, ଏହାର ସତ୍ୟତା ସମ୍ପୂର୍ଣ୍ଣରୂପେ ଉପଲବ୍ଧି କରି ପାରିବେ । କବିଙ୍କର ସୁମଧୁର ଲଳିତପଦବିଶିଷ୍ଟ ଏହି ମହା ଉପଖ୍ୟାନ* ବା ମହାକାବ୍ୟ ଖଣ୍ଡିକ

---

* ମହାଭାରତ ଏକ ପ୍ରକାର ମହାକାବ୍ୟ — ପ୍ରମାଣ ଯଥା—

ଇଦଂ ମହାକାବ୍ୟ ମୃଷେର୍ମହାତ୍ମନଃ
ପଠନ୍ନୃଣାଂ ପୂଜ୍ୟତମୋ ଭବେନ୍ନରଃ ।
ପ୍ରକୃଷ୍ଟମାପ୍ନୁଃ ସମବାପ୍ୟ ଦୁର୍ଲଭଂ ।
ଲଭେତ ସର୍ବଜ୍ଞଫଳଂ ଚ କେଶବଂ ।
ଇତି ଖିଳହରିବଂଶ ଭବିଷ୍ୟପର୍ବ ୫ ଅ. ୫ ଶ୍ଲୋକ ।

ଏତତ୍କ୍ରମେ ଏହି ମହାମହିମ ଗ୍ରନ୍ଥକୁ ଧର୍ମତତ୍ତ୍ୱଜ୍ଞମାନେ ଧର୍ମଶାସ୍ତ୍ର ବୋଲି, ଅଧ୍ୟାତ୍ମଜ୍ଞାନକୋବିଦମାନେ ବେଦାନ୍ତ ବୋଲି, ନୀତିବିଚକ୍ଷଣମାନେ ନୀତିଶାସ୍ତ୍ର ବୋଲି, କବିବୃଷଭମାନେ ମହାକାବ୍ୟ ବୋଲି, ଲକ୍ଷଣିକମାନେ ସର୍ବଲକ୍ଷଣ ବା ଲକ୍ଷଣଶାସ୍ତ୍ର ବୋଲି, ଐତିହାସିକମାନେ ଇତିହାସ ବୋଲି, ପରମପୌରାଣିକମାନେ ପୁରାଣସମୂହପ୍ସ ବୋଲି ମଧ୍ୟ କହନ୍ତି । ଅତଏବ ଏହି ବେଦାର୍ଥୋପବୃଂହକ ମହାଗ୍ରନ୍ଥରେ ସମଗ୍ର ଧର୍ମ ଓ ନୀତି ପ୍ରଭୃତି ଉକ୍ତ ହୋଇଅଛି ବୋଲି ଆଦିପର୍ବ

ପ୍ରଥମରୁ ମୂର୍ଖଙ୍କ ହାତରେ ପଡ଼ିଥିବାରୁ ମହତ୍ତ୍ୱ ଓ ଗୌରବ ମଧ୍ୟ ହରାଇଅଛି ଏବଂ ଛାପା ପୁସ୍ତକରେ ଏପରି କେତେକ ସ୍ଥଳ ଦେଖାଯାଏ ଯେ, ସେଗୁଡିକ ଛାପାକାରଙ୍କ ପ୍ରଦତ୍ତ ବଙ୍ଗାଦି ଶବ୍ଦରେ ବିକୃତ ହୋଇ ଯାଇଅଛି† । ଯଥା—

(୧) ଦିନସାଗ୍ର ବୃଷଭକୁ ବୃଲନ୍ତ ଉପବାସେ,
ଗିରି ଅରଣ୍ୟରେ ପଶି କ୍ଷେପନ୍ତ ଆକାଶେ । ଆ. ପ. ୬୪ ପୃଷ୍ଠା ।

ଦିନସାଗ୍ର ରାତିସାଗ୍ର ବା ସାଷ୍ଟରାତି ଏହିପରି ପଦ କେବଳ ଏହି ମହାଭାରତରେ ଥାନ୍ତିକ, ଅନ୍ୟ କୌଣସି ପ୍ରାଚୀନ ଓଡ଼ିଆ ପୁସ୍ତକରେ ମଧ୍ୟ ଦେଖାଯାଏ ନାହିଁ । "ଦିନଯାକ ବୃଷଭକୁ ବୁଲନ୍ତି ଉପବାସେ ।" ଦିନଯାକ ରାତିଯାକ— ଏପରି ସ୍ଥଳମାନଙ୍କରେ ବଙ୍ଗଭାଷାନୁକରଣରେ ଦିନସାଗ୍ର ରାତିସାଗ୍ର କରି ଅଛନ୍ତି ।

(୨) କୁନ୍ତୀ ପଚାରନ୍ତେ ଆଲୋ ଶବରୁଣୀ ।
ପାଣ୍ଡୁ ମାଦ୍ରୀଙ୍କର କହ ତଥ୍ୟବାଣୀ ॥ ଆ. ପ.

ଏ ସ୍ଥଳରେ ଛାପାରେ ହୋଇଅଛି—
"ପାଣ୍ଡୁ ମାଦ୍ରୀଙ୍କର କହନ ଗୋ ଶୁଭବାଣୀ ।" ଆ. ପ. ୧୦୨ ପୃଷ୍ଠା ।

ଏପରି ଅନେକ ସ୍ଥଳରେ ଛାପାରେ କହନ (କହ), ଖାଆନ (ଖାଅ), ବହନ (ବହ) ଇତ୍ୟାଦି କ୍ରିୟା ଦେଇ ଅଛନ୍ତି । ଓଡ଼ିଆରେ ଏପରି କ୍ରିୟା ହୁଏ ନାହିଁ, ଅଥଚ ତାଳପତ୍ର ପୁସ୍ତକମାନଙ୍କରେ ମଧ୍ୟ ଦେଖାଯାଏ ନାହିଁ, ଇତ୍ୟାଦି ।

ସାରଳାଦାସ କବି କେତେକ ସ୍ଥଳରେ ମିତ୍ରାକ୍ଷର ମିଳନ ସକାଶେ କିଞ୍ଚିତ୍ ଅସମଞ୍ଜସ ହୋଇଥିଲେ ସୁଦ୍ଧା ଆଶୁକବିତା ଲେଖାର ଆବଶ୍ୟକତାନୁସାରେ ଶବ୍ଦମାନଙ୍କର ଅନ୍ତ୍ୟସ୍ୱରର ଲୋପ ଓ ପରିବର୍ତ୍ତନ କରିଦେଇ ଅଛନ୍ତି ସତ୍ୟ, କିନ୍ତୁ

---

୬୨ ଅଧ୍ୟାୟରେ ପ୍ରକାଶ କରିଅଛନ୍ତି କି ଏଥିରେ ଯାହା ଯାହା ପାଇବେ, ଅନ୍ୟ ଶାସ୍ତ୍ରମାନଙ୍କରେ ତାହାହିଁ କେବଳ ପାଇବେ; ଅଥଚ ଏଥିରେ ଯାହା ନାହିଁ, କୁତ୍ରାପି ତାହା ଦେଖା ମିଳିବ ନାହିଁ ।

ଧର୍ମେଚାର୍ଥେ ଚ କାମେ ଚ ମୋକ୍ଷେ ଚ ଭରତର୍ଷଭ ।
ଯଦିହାସ୍ତି ତଦନ୍ୟତ୍ର ଯନ୍ନେହାସ୍ତି ନ ତତ୍ କ୍ୱଚିତ୍ ।

† ବିଶେଷତଃ ଆଦିପର୍ବ କର୍ଣ୍ଣ ନୃପତିଙ୍କ ଜନ୍ମସ୍ଥଳ ଦେଖନ୍ତୁ ।

ସେ ସବୁ ଛଡ଼ା ଆହୁରି ବହୁ ସ୍ଥଳରେ ଲେଖା ଓ ଛାପାରେ ଅନିୟମ ଭାବରେ ଇଚ୍ଛାନୁମତେ ଶବ୍ଦମାନଙ୍କୁ ବିକୃତ କରି ଚଳାଇ ଅଛନ୍ତି । ବିଶେଷତଃ ସଭାପର୍ବରେ ନକୁଳଙ୍କର ଦକ୍ଷିଣ ଦିଗବିଜୟ ପ୍ରସଙ୍ଗରେ ତାଳପତ୍ର ଓ ଛାପା ପୁସ୍ତକ ମଧ୍ୟରେ ବହୁ ପ୍ରଭେଦ ଲକ୍ଷିତ ହୁଏ । ପୁଣି ତାଳପତ୍ର ପୁସ୍ତକରେ ଲିଖିତ ଅନେକଗୁଡ଼ିଏ ପାଠ ଛାପା ପୁସ୍ତକରେ ଆଦୌ ଦେଖିବାକୁ ମିଳେ ନାହିଁ । ଉପର୍ଯ୍ୟୁକ୍ତ କାରଣ-ମାନଙ୍କରୁ ତାଳପତ୍ର ପୁସ୍ତକ ନ ଦେଖି ପ୍ରମାଣ ଦର୍ଶାଇବା ସ୍ଥଳମାନଙ୍କରେ ଛାପା ପୁସ୍ତକରୁ ବାକ୍ୟ ଉଦ୍ଧାର କଲେ କବିଙ୍କର ପ୍ରକୃତ ପ୍ରୟୋଗନିୟମ ଯଥାର୍ଥତଃ ଜଣାଯିବ ନାହିଁ । ଅଥଚ ସେଥିରେ ବିଶ୍ୱାସର ପ୍ରବୃତ୍ତି ସୁଦ୍ଧା ହେବ ନାହିଁ । ମାତ୍ର ସ୍ଥୂଳ ବିଷୟାବବୋଧ ସମ୍ବନ୍ଧରେ ଛାପା ପୁସ୍ତକ ପାଠରେ ତାଦୃଶ କୌଣସି ଆପତ୍ତି ନାହିଁ । ପାଠକେ! ଛାପା ପୁସ୍ତକମାନଙ୍କରେ ପୁସ୍ତକ ମୁଦ୍ରଣକାଳୀନ ପରିଶୋଧନ ପ୍ରଣାଳୀଦ୍ୱାରା କବିଙ୍କର ପଦସଙ୍ଘଟନାନିୟମ ପ୍ରଭୃତି ବହୁ ସ୍ଥଳରେ ଲୁପ୍ତ ଓ ଅଯଥାଯଥ ହୋଇଅଛି ସତ୍ୟ, ତଥାପି ଅନେକ ସ୍ଥଳରେ ତାଳପତ୍ର ପୁସ୍ତକ ପାଠ ସମୟରେ ଛାପା ପୁସ୍ତକ ଉପକାରଜନକ ମଧ୍ୟ ହେଉଅଛି; କାରଣ ତାଳପତ୍ର ପୁସ୍ତକର କେତେକ ସ୍ଥଳ ଅଜ୍ଞଲେଖକଙ୍କ ଲେଖାରେ ଏପରି ବିକୃତ ଓ ଅର୍ଥଶୂନ୍ୟ ହୋଇ ପଡ଼ିଅଛି ଯେ, ସେ ସ୍ଥଳମାନଙ୍କରେ ଛାପା ପୁସ୍ତକ ବିନା ଅର୍ଥାବଗତି ସମ୍ଭବ ପାରେ ନାହିଁ । ଅନଭିଜ୍ଞ ଆଦର୍ଶ ଲେଖକମାନଙ୍କର ଅଜ୍ଞତାକାଳିମାରେ ଦୂଷିତ କେତେକ ଅର୍ଥଶୂନ୍ୟ ସ୍ଥଳରେ ଛାପାରେ ଛାପାକାରଙ୍କଦ୍ୱାରା ପଦବିନ୍ୟାସ ଭିନ୍ନ ପ୍ରକାର ହେଉ ପଛକେ ବହୁ ପୁସ୍ତକାବଲୋକନ ଓ ବିଚାରବଳରୁ ଅର୍ଥତଃ ପରିଶୋଧିତ ହୋଇଅଛି । ଅତଏବ ତାଳପତ୍ର ଏବଂ ଛାପା ପୁସ୍ତକମାନ ଦେଖି ପ୍ରମାଣ ବାକ୍ୟମାନ ତାଳପତ୍ର ପୁସ୍ତକରୁ ଉଦ୍ଧୃତ କରିବାକୁ ହେବ । ଯେଉଁ ସ୍ଥଳମାନଙ୍କରେ ପ୍ରମାଣବାକ୍ୟ ଛାପା ଓ ତାଳପତ୍ରରେ ସମାନ ଦେଖାଯାଏ, ସେପରି କେତେକ ସ୍ଥଳରେ ଛାପା ପୁସ୍ତକରୁ ମଧ୍ୟ ପୃଷ୍ଠାଙ୍କ ସହ ବାକ୍ୟ ଉଲ୍ଲେଖ କରାଯାଇ ପାରେ ।

---

## ବିଷୟ ଓ ତଦୀୟ ବୈଷମ୍ୟ

ଏହି ପ୍ରକରଣଟି ଲିଖିତବ୍ୟ ପ୍ରବନ୍ଧର ପ୍ରାୟ ଅର୍ଦ୍ଧାଧିକ ଭାଗ ହେବ । ଏଥିରେ ମୂଳ ଓ ସାରଳାଦାସଙ୍କ ଭାରତରେ ପ୍ରତିପାଦିତ ବିଷୟନିଚୟର ସୂଚନା ଆଉ ସମାଲୋଚ୍ୟ ଭାରତରେ ଯାହା ଯାହା ପରିତ୍ୟକ୍ତ, ପ୍ରକ୍ଷିପ୍ତ, ସଂକ୍ଷିପ୍ତ, ଅନ୍ୟତ୍ର

ନିକ୍ଷିପ୍ତ ଏବଂ ଅଯଥା ବିସ୍ତୃତ ଓ ଅନ୍ୟଥାକୃତ ହୋଇଅଛି, ତାହାର ସ୍ପଷ୍ଟୀକରଣ-ପୂର୍ବକ ସମାଲୋଚ୍ୟ ବିଷୟଗୁଡ଼ିକର ସମାଲୋଚନା କରାଯିବ । ଏତଦ୍ଦ୍ୱାରା ଯେପରି ଉଦ୍ଭୟ ଭାରତ ଗ୍ରନ୍ଥର ଯାବତୀୟ ବିଷୟମାନଙ୍କର ସ୍ଥୂଳତଃ ଅବଗତି ପାଠକ-ମାନଙ୍କ ପକ୍ଷେ ସୁଗମ ହେବ, ପାଠକବୃନ୍ଦ ଦୁରଧିଗମ୍ୟ ମହାଭାରତଗ୍ରନ୍ଥର ଅଖଣ୍ଡ ପାଠର ଫଳ ଅଳ୍ପାୟାସରେ ପ୍ରାପ୍ତ ହେବେ, ତାଦୃଶ ଯତ୍ନ ଓ ନିରଳସ ଗବେଷଣା ସହକାରେ ଆମ୍ଭେମାନେ ମନୋମତ ସିଦ୍ଧି ସାଧନରେ ଅଗ୍ରସର ହେଉଅଛୁ । ପ୍ରକରଣର ପ୍ରାରମ୍ଭରେ କହି ରଖିବା ଉଚିତ ଯେ, ଏହି କବି ମୂଳ ଗ୍ରନ୍ଥର ଅନୁବାଦ କରି ନାହାନ୍ତି କିମ୍ବା ଅବିକଳାନୁକରଣରେ ଲେଖି ନାହାନ୍ତି । ମୂଳ ଗ୍ରନ୍ଥର ପ୍ରଗାଢ଼ ଶୁଶ୍ରୂଷାରେ ଏକାନ୍ତ ଅନୁରକ୍ତ ଥାଇ ସମଗ୍ର ଭାରତର ସ୍ଥୂଳ ସ୍ଥୂଳ ବିଷୟ ଓ ଆମୂଳାନ୍ତ ଘଟନାଂଶମାନ ମାତ୍ର ସ୍ୱୀୟ ଅବ୍ୟାହତ ସ୍ମୃତିକୋଷରେ ପ୍ରଦୀପ୍ତ ରଖି ଅସାମାନ୍ୟ କଳ୍ପନାଶକ୍ତି ଓ ବିଷୟ ସନ୍ନିଧାନପ୍ରବୀଣତାର ବଳରେ ବଳୀୟାନ ହୋଇ ଅଳ୍ପୀକରଣ, ବିସ୍ତୃତୀକରଣ ଅନୁକ୍ତପ୍ରକ୍ଷେପ ଓ ଉକ୍ତନିକ୍ଷେପାଦି କ୍ରମରେ ଏହି ପ୍ରକାଣ୍ଡ ଗ୍ରନ୍ଥକୁ ଲେଖି ଯାଇ ଅଛନ୍ତି । ଏଥିରେ ଯେ କିଛି ତଥ୍ୟଗତ ଅସାମଞ୍ଜସ୍ୟ, ଅସଲଗ୍ନତା, ଅସଙ୍ଗତି ପ୍ରଭୃତି ଦୋଷ ନାହିଁ, ତାହା ଆମ୍ଭେମାନେ କହୁନାହୁଁ । ସେ ସବୁ ସମଧିକ ମାତ୍ରାରେ ଅଧିକାର ସ୍ଥାପନ କରିଅଛି; ତଥାପି ମୋଟରେ କହିଲେ ଏହି ମହାକବିଙ୍କର ପ୍ରଜ୍ଞା ଅସାଧାରଣ ପ୍ରଶଂସାର୍ହ, ଏହା ଅଭିଜ୍ଞମାନେ ଅସନ୍ଦିଗ୍ଧ ଚିତ୍ତରେ ସ୍ୱୀକାର କରିବାକୁ କୁଣ୍ଠିତ ହେବେ ନାହିଁ ।

ତ୍ରୈକାଳିକ ତତ୍ତ୍ୱଦର୍ଶୀ ସର୍ବଜ୍ଞ ମହର୍ଷି ବେଦବ୍ୟାସ ଶ୍ରୀମନ୍ମହାଭାରତ ଗ୍ରନ୍ଥରେ ବସ୍ତୁତଃ ବେଦାର୍ଥରହସ୍ୟନିଚୟ, ଇତିହାସପୁରାଣ ସମୁଦାୟର ସାରଭୂତ ଅଂଶମାନ, ଜନ୍ମମରଣଭୟବ୍ୟାଧିଭାବାଭାବନିଚୟ, ନାନାବିଧ ଧର୍ମ-ମାନଙ୍କର ସ୍ୱରୂପ, ବିବିଧାଶ୍ରମଲକ୍ଷଣମାନ, ଚତୁର୍ବର୍ଣ୍ଣ୍ୟବିଧାନ, ଅପୋବ୍ରହ୍ମଚର୍ଯ୍ୟାଦି-ସ୍ୱରୂପ, ଭୂଗୋଳଖଗୋଳନିର୍ଣ୍ଣୟ, ପାଶୁପତାଦି ଜ୍ଞାନାଜ୍ଞାନକ୍ରମ, ଦିବ୍ୟମାନୁଷ ଜନ୍ମବିଭାଗ, ପୁଣ୍ୟତୀର୍ଥ ଓ ଦେଶମାନଙ୍କର ମାହାତ୍ମ୍ୟ, ଯୁଦ୍ଧଚାତୁର୍ଯ୍ୟ, ଲୋକଯାତ୍ରା-କ୍ରମ, ପରତତ୍ତ୍ୱସ୍ୱରୂପ, ଶ୍ରୀ ବାସୁଦେବମାହାତ୍ମ୍ୟ, ପାର୍ବତୀ ପ୍ରଭୃତି ନାନା ଦେବତା-ମାନଙ୍କର ମହିମା, କାର୍ତ୍ତିକେୟାଦି ସମ୍ଭବ, ଗୋବ୍ରାହ୍ମଣ ପ୍ରଭାବ, ରାଜନୀତିସ୍ୱରୂପ, ରାଜର୍ଷିମାନଙ୍କର ଚରିତ, ମହର୍ଷିମାନଙ୍କର ମହତ୍ତ୍ୱ, ସତ୍ୟନିଷ୍ଠା, ଦାନନିଷ୍ଠା, ପ୍ରଭୃତି ଧର୍ମୈକପ୍ରାଣିତ ବିଷୟମାନ ଏବଂ ବହୁବିଧ ସତ୍‌କଥାଜାଳ ତତ ତତ ସନ୍ଦର୍ଭାନୁ-ଗୁଣ୍ୟରେ ଉପପାଦିତ କରି ଅଛନ୍ତି । ପୁଣି ସର୍ବୋପନିଷତ୍ସାରଭୂତ ଶ୍ରୀଭଗବଦ୍‌ଗୀତା

ଓ ସନତ୍ସୁଜାତୀୟଗୀତାକୁ ସନ୍ନିବେଶିତ କରି ଅଛନ୍ତି । କିନ୍ତୁ ସାରଳାଦାସଙ୍କ ମହାଭାରତରେ ଏ ସବୁ ଯଥାଯଥରୂପେ ଅକ୍ଷୁଣ୍ଣ ନାହିଁ, ଅପିଚ ମୂଳର୍ଗ ତତ୍ତ୍ୱଜ୍ଞାନ-ପ୍ରତିପାଦକ ବିଷୟମାନ ଆଦୌ ନାହିଁ କହିଲେ ଚଳେ । ଯାହା କିଛି ଅଛି ତାହା ଅତି ଅଳ୍ପ ସ୍ଥାନେ ସ୍ଥାନେ ଲେଖାଅଛି, ତହିଁରୁ କେତେକ କବିଙ୍କ ମନୋଧର୍ମାନୁସାରେ କିମ୍ବା ଅନୁଭୂତି ଅନୁସାରେ ଲିଖିତ । ଆଉ କେତେକ ମୂଳ ଗ୍ରନ୍ଥର ଶୁଶ୍ରୂଷା ବଳରେ ଗୃହୀତ ହୋଇ ଅଂଶତଃ ସନ୍ନିବେଶିତ ହୋଇଅଛି । ସାରଳାଦାସଙ୍କ ଲିଖିତ ଜ୍ଞାନବିଷୟକ ବା ତତ୍ତ୍ୱବିଷୟକ ଏହି ଅଂଶମାନ ନେଇ ମୂଳଗତ ଧର୍ମାଦି ବିଷୟ ସହ ସିଦ୍ଧାନ୍ତ କରି ବସିଲେ ଚଳିବ ନାହିଁ, ଏହି ଗଳ୍ପକଳ୍ପକଳ୍ପତରୁ କବିଙ୍କର ଅନଳ୍ପପ୍ରସର କେତେକ ଗଳ୍ପ ଓ ଚରିତମାନଙ୍କର ଆମୂଳାନ୍ତ ଘଟନାଂଶମାନଙ୍କୁ ଧରି ମୌଳିକ ଚରିତର ଯଥାର୍ଥ୍ୟ ସଙ୍ଗେ ତୁଳନାର୍ଥ ମୀମାଂସା କରି ବସିଲେ ମୀମାଂସକଙ୍କ ଶ୍ରମ ପଣ୍ଡ ହେବ । ଅତଏବ ସାରଳା ଭାରତର ପାଠ ସମୟରେ ବହୁସ୍ଥଳରେ ମୂଳପ୍ରତି ଦୃଷ୍ଟି ନ ଦେଲେ କେବଳ ହୃଦୟ ମାତିବ, ମାତ୍ର ସାରଳାଦାସ କବି ଯୁଦ୍ଧବୃତ୍ତିରୂପୀ ପ୍ରଭୃତି କେତେକ ବିଷୟକୁ ମୂଳଗ୍ରନ୍ଥରୁ କିଛି ଭିନ୍ନ ପ୍ରକାର କଲେ ସୁଦ୍ଧା ବିସ୍ତୃତ ଓ ସୁନ୍ଦରଭାବରେ ତୃପ୍ତିଜନକ କରି ଲେଖି ଅଛନ୍ତି । ବର୍ଣ୍ଣନାଦି ସ୍ଥଳମାନଙ୍କରେ ବହୁ କୃତିତ୍ୱ ଦେଖାଇ ଅଛନ୍ତି । ଏ ସବୁ ତାହାଙ୍କ ମହତୀ ବୁଦ୍ଧିସିଦ୍ଧିର ପରିଚାୟକ ।

ମହାପ୍ରାଜ୍ଞ ସାରଳାଦାସ କବି ମୂଳଗ୍ରନ୍ଥଗତ ଅନୁକ୍ରମଣିକାଧ୍ୟାୟର ଚରିତକୁ ଗ୍ରନ୍ଥାଦ୍ୟରେ ସୁସଙ୍ଗତ ଓ ସୁଗମଭାବରେ ଅତି ସଂକ୍ଷିପ୍ତ କରିଦେଇ ଅଛନ୍ତି । ଏହି ସ୍ଥଳରେ ସଞ୍ଜୟ ଓ ଧୃତରାଷ୍ଟ୍ରଙ୍କ ସମ୍ବାଦାତ୍ମକ ଧୃତରାଷ୍ଟ୍ରଙ୍କ ପଶ୍ଚାତ୍ତାପ ଓ ଆତ୍ମଗ୍ଲାନି ଘଟନାକୁ ପୁନଃ ସ୍ଥାନାନ୍ତରରେ ବକ୍ଷ୍ୟମାଣ ଭାବି ଉଠାଇ ଦେଇ ଅଛନ୍ତି । ପୁଣି ପ୍ରଥମତଃ ପୌଷ୍ୟ ପୌଲୋମ ଆସ୍ତିକ ଅଂଶାବତରଣାଦି ଉପପର୍ବମାନଙ୍କର ପ୍ରାୟ ଅଶୀତି ଅଧ୍ୟାୟ ପାଠର କଥା ପରିତ୍ୟାଗ କରି କୁରୁବଂଶୋତ୍ପତ୍ତିଠାରୁ କେବଳ ଗ୍ରନ୍ଥ ଆରମ୍ଭ କରି ଅଛନ୍ତି । ଏଥିର କାରଣ ଅନୁମିତ ହୁଏ କି, ଏ ସବୁର ସଂକ୍ଷିପ୍ତ ଅଂଶମାନ ପଶ୍ଚାତ୍ ପ୍ରସ୍ତାବକ୍ରମେ କୁହାଯିବ ବୋଲି ଭାବିଥିବେ । ସେ ଯାହାହେଉ, ତକ୍ଷକ ଜନ୍ମେଜୟଙ୍କଠାରୁ ପ୍ରଭୃତିଙ୍କ ଚରିତ ସାରଳା ଭାରତରେ ଦେଖାଯାଏ ନାହିଁ ।

ଗଙ୍ଗାଙ୍କର ମାନବକଳେବରତ୍ୱ ପରିଗ୍ରହ ସ୍ଥଳରେ କହିଅଛନ୍ତି କି, ଏକଦା ଜାହ୍ନବୀଙ୍କର ମାନବ ପିତା ନିର୍ଦ୍ଧାତ ମାହେଶ୍ୱର ଭକ୍ତିପ୍ରବଣହୃଦୟ ତପସ୍ୱୀ

ବେଶଧାରୀ ମହାରାଜ ଶାନ୍ତନୁଙ୍କୁ ମହାଦେବ ଜ୍ଞାନ କରି ସ୍ୱସୁତା ଗଙ୍ଗାଦେବୀଙ୍କୁ ପ୍ରଦାନ କଲେ । ବୈବାହିକ ଦାନ ପରେ ନିଜ ପରିଣେତାଙ୍କୁ ଶାନ୍ତନୁ ବୋଲି ଚିହ୍ନି ପାରି ଗଙ୍ଗାଦେବୀ ତହିଁରୁ ଦାରତ୍ୱରେ ଅନିଚ୍ଛା ପ୍ରକାଶ କଲାରୁ ନୃପତି ନିଜର ସତ୍ୟଭଙ୍ଗଜନିତ ଆପତ୍ତି ଦେଖାଇ ଶାନ୍ତନୁଙ୍କ ପତ୍ନୀ ହେବାପାଇଁ ଗଙ୍ଗାଙ୍କୁ ଅନୁରୋଧ କଲେ । ଗଙ୍ଗା ସେତେବେଳେ ସ୍ୱକୀୟ ଯାବଦୀୟ ଭବିଷ୍ୟମାଣ ଦୋଷ ଅଗ୍ରାହ୍ୟ କରିବା ପାଇଁ ଶାନ୍ତନୁଙ୍କୁ ପ୍ରତିଶ୍ରୁତି ଏବଂ ସତ୍ୟପାଶରେ ଆବଦ୍ଧ ରଖି ତାହାଙ୍କର ଭାର୍ଯ୍ୟା ହେଲେ, ଇତ୍ୟାଦି । କିନ୍ତୁ ମୂଳରେ ଲେଖାଅଛି, ମହାତ୍ମା ପ୍ରତୀପ ମହାରାଜ ଯେବେ ଗଙ୍ଗାଙ୍କ ଅଭିମୁଖରେ ଜପାନୁଷ୍ଠାନ ନିଷ୍ଠାପର ଅଛନ୍ତି, ଇତ୍ୟବସରେ ଦିବ୍ୟବେଶା, ସମଲଂକୃତା ଗଙ୍ଗାଦେବୀ ତହିଁରୁ ଦକ୍ଷିଣୋରୁପ୍ରଦେଶରେ ଉପବେଶନପୂର୍ବକ ବିରଂସାରେ ଉପବୁଭୁକ୍ଷୁ ହେଲେ । ରାଜା ତତ୍ପ୍ରତି ଅନିଚ୍ଛୁକ ହୋଇ ତାହାଙ୍କୁ ନିଜ ପୁତ୍ରର କଳତ୍ରକରଣାର୍ଥ ସ୍ୱୀକାର କଲେ । ସେତେବେଳେ ଗଙ୍ଗା କହିଲେ, "ଆପଣ ସତ୍ୟ କରନ୍ତୁ ଯେ ଆପଣଙ୍କ ପୁତ୍ର ମୋହର ବାକ୍ୟ କୁତ୍ରାପି ଅନ୍ୟଥା କରିବେ ନାହିଁ, ମୁଁ ଯାହା କହିବି, ତାହାହିଁ ଅଭ୍ୟୁପଗମ କରିବେ ।" ରାଜା ସେଥିରେ ସ୍ୱୀକୃତ ହୋଇ ସ୍ୱପୁତ୍ର ଶାନ୍ତନୁଙ୍କୁ (ଯାହାଙ୍କ ଅନ୍ୟ ନାମ ଅଭିଷବ) ସମସ୍ତ ବୁଝାଇଲେ । ଗଙ୍ଗାଦେବୀ ନିଜ ଇଚ୍ଛାମତେ ଶାନ୍ତନୁଙ୍କର ଭାର୍ଯ୍ୟା ହୋଇ ରହସ୍ୟ କାରଣବଶ୍ୟତଃ ପ୍ରସବମାତ୍ରେ କ୍ରମେ କ୍ରମେ ସାତ ଗୋଟି ସନ୍ତାନ ନାଶ କଲେ, ଇତ୍ୟାଦି ।

ଶାନ୍ତନୁ ଓ ଗଙ୍ଗାଙ୍କର ଦାମ୍ପତ୍ୟ ସମ୍ବନ୍ଧରେ ଅବଶ୍ୟ ପବିତ୍ରତା ଶ୍ରେୟୋବିଧାୟକତା ପ୍ରଭୃତି କଲ୍ୟାଣଗୁଣାବଳୀର ସମାବେଶ ଅଛି ବୋଲି ଲୋକରେ ବୈଦିକ ପରିଣୟ ପ୍ରଣାଳୀରେ ସେହି ପ୍ରସୂତାତ୍ମ ଦମ୍ପତିଙ୍କ ନାମୋଚ୍ଚାରଣରେ ପରିଣୀତାକୁ ପରିପୂତା କରନ୍ତି । ମାତ୍ର କେଜାଣି କାହିଁକି ସାରଳାଦାସ କବି ଶାନ୍ତନୁଙ୍କ ପ୍ରତି ଗଙ୍ଗାଙ୍କର ପତ୍ନୀଭାବ ବଡ଼ କଦର୍ଯ୍ୟ ଥିବାର ଲେଖି ଅଛନ୍ତି । * ସେ ଏ ସ୍ଥଳରେ କଳତ୍ରଭାବ ଯେପରି କଳୁଷିତ ଓ କୁତ୍ସିତ କରି ଅଛନ୍ତି, ତାହା ମୂଳରେ କୁତ୍ରାପି ତ ନାହିଁ; ପ୍ରତ୍ୟୁତ ଲୋକରେ ନୀଚ ପରିବାରରେ ମଧ୍ୟ ଥିବାର ଦେଖାଯାଏ ନାହିଁ । ଯେଉଁ ସୁଖସ୍ୱରୂପିଣୀ ପତ୍ନୀଙ୍କି ଲୋକରେ ମହାକବିମାନେ "ଇୟଂ ଗେହେ ଲକ୍ଷ୍ମୀରିୟମମୃତବର୍ତ୍ତିର୍ନୟନୟୋଃ"

---

* ଛାପା ପୁସ୍ତକରେ ଆ. ପ. ୧୨ ପୃଷ୍ଠା ଠାରୁ ୧୪ ପୃଷ୍ଠା ଯାଏ ଦେଖନ୍ତୁ ।

ଇତ୍ୟାଦିରୂପେ ସୁଖନଦାଶାଭୂତ କରି ବର୍ଣ୍ଣନା କରନ୍ତି, ତାହାଙ୍କ ପ୍ରତି ଏହି କବିଙ୍କର ଏପରି ଭକ୍ତିଭାବ ଜନ୍ମିବାର କୌଣସି ଗୂଢ଼ କାରଣ ଥିବାର ଅନୁମିତ ହୁଏ । ପୁନଶ୍ଚ ଗାଙ୍ଗେୟ ଭୀଷ୍ମଙ୍କ ଜନ୍ମାନ୍ତମକୁ ମଧ୍ୟ ପ୍ରଧାନ୍ୟମାନ ଧ୍ୟାନରେ ନିମଗ୍ନ କବିଧିଗ ପଥିକ ପ୍ରାୟ ଅବାନ୍ତରେ ପକାଇ ଅଛନ୍ତି । ଭାଚନ୍ତି ଚିତ୍ରପିତ୍ତଳାର ମନୋହର ସୌନ୍ଦର୍ଯ୍ୟରେ ଶାନ୍ତନୁ ସ୍ଖଳିତବିନ୍ଦ୍ରୁ ହେଲାରୁ ପ୍ରତ୍ୟୁତରେତରୁ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ଅଯୋନିସମ୍ଭୂତରୂପେ ଉତ୍ପନ୍ନ ହେଲା ପରେ ଭୀଷ୍ମ ଜନ୍ମ ହେଲେ ବୋଲି କେତେଗୁଡ଼ାଏ କାଳ୍ପନିକ କଥା ସହ ଲେଖି ଅଛନ୍ତି; କିନ୍ତୁ ଶାସ୍ତ୍ରରେ ଭୀଷ୍ମ ନିଜେ ପିତାଙ୍କ ସହ ସତ୍ୟବତୀଙ୍କର ବିବାହ ସଙ୍ଘଟନ କଲା ପରେ ସମୟରେ ତାହାଙ୍କ ଗର୍ଭରୁ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ଜନ୍ମିଥିଲେ । ଏତାଦୃଶଭାବରେ ତ ଏହି ଚରିତର ଆହୁରି ଅନେକ ଭାଗରେ ବୈଷମ୍ୟ ଘଟିଅଛି । ମାତ୍ର ସ୍ଥୂଳତଃ ଦେଖିଲେ ସେଗୁଡ଼ିକରେ ମୌଳିକ ଆଂଶିକସତ୍ତ୍ୱ ଲୁକ୍କାୟିତରୂପେ ବିଦ୍ୟମାନ ଅଛି ।

( ୨ ) ମୂଳରେ ବିଚିତ୍ରବୀର୍ଯ୍ୟଙ୍କ ବିବାହ ସ୍ଥଳରେ ଉକ୍ତ ଅଛି, ଖଡ୍ଗପ୍ରହରଣ୍ୟାମଳତାଂସପୀଠ ମହାଧନୁର୍ଦ୍ଧର ଭୀଷ୍ମ ସ୍ୱୟମ୍ବର ସ୍ଥଳରେ ମହାପରାକ୍ରମ ରାଜନ୍ୟବର୍ଗଙ୍କୁ ବୈକଳ୍ପିକ କର୍ମରେ ପରାସ୍ତ କରି, ବଳପୂର୍ବକ ଆନୀତ ଅମ୍ବା, ଅମ୍ବିକା ଓ ଅମ୍ବାଳିକାନାମ୍ନୀ କନ୍ୟାତ୍ରୟଙ୍କୁ ତଦନୁଜଙ୍କ ସହ ବିବାହ ଦେଲା ସମୟରେ ଅମ୍ବା କହିଲେ କି, ମୁଁ ପ୍ରଥମତଃ ଶାଲ୍ୱପତିଙ୍କି ମାନସରେ ବରିଅଛି, ଆପଣ ଧର୍ମାନୁରୋଧରୁ ମୋତେ ତଦୀୟ ହସ୍ତରେ ପ୍ରଦାନ କରନ୍ତୁ । ଭୀଷ୍ମ ତାହା ଉଚିତ ଭାବି ଅମ୍ବାଙ୍କୁ ତ୍ୟାଗ କରି ଅନ୍ୟ କନ୍ୟାଦ୍ୱୟଙ୍କୁ ବିଚିତ୍ରବୀର୍ଯ୍ୟଙ୍କୁ ପ୍ରଦାନ କଲେ, ଇତ୍ୟାଦି । କିନ୍ତୁ ଅମ୍ବାଙ୍କର ପ୍ରୋକ୍ତ ଚରିତରେ ସଂଲଗ୍ନ ଭବିଷ୍ୟମାଣ ବୃତ୍ତାନ୍ତଗୁଡ଼ିକ ଏ ସ୍ଥଳରେ ଉକ୍ତ ନ ହୋଇ ଉଦ୍‌ଯୋଗପର୍ବରେ ପ୍ରାସଙ୍ଗିକ ଭାବରେ ୧୭୨ ଅଧ୍ୟାୟ ଆରମ୍ଭ କରି ୧୯୭ ଅଧ୍ୟାୟ ଶେଷଯାଏ ଅମ୍ବୋପାଖ୍ୟାନ ନାମରେ ଉକ୍ତ ଅଛି । ଅବିନଶ୍ୱର ସ୍ମୃତିମାନ୍ ସାରଳାଦାସ ମହୋଦୟ ପାଠକ ଓ ଶ୍ରୋତୃବର୍ଗଙ୍କର ବହୁ ଦୂରରୁ ଦୁର୍ବିଜ୍ଞେୟ ଚରିତର ଉପଲବ୍‌ଧି ସୁଗମ ହେବ ବୋଲି ଅନ୍ୟତ୍ର ବହୁ ବିପ୍ରକୃଷ୍ଟ ସ୍ଥାନରେ ନିହିତ କଥାଗୁଡ଼ିକୁ ମନସ୍ଥ କରି ପ୍ରାକରଣିକ ସନ୍ଦର୍ଭାନୁସାରେ, "ଭୀଷ୍ମ ପ୍ରଥମତଃ ଗ୍ରହଣ କରିଥିଲେ ବୋଲି ଅନ୍ୟ କେହି ରାଜା ସସାଧ୍ୱସହୃଦୟରେ ଅମ୍ବାଙ୍କୁ ଗ୍ରହଣ ନ କରିବା, ସେ ବହୁ କ୍ଳେଶସାଧ୍ୟ ତପସ୍ୟାଚରଣ ପରେ ପର୍ଶୁରାମଙ୍କ ଶରଣ ନେବା; ପର୍ଶୁରାମ ଅମ୍ବାଙ୍କ ଦୁଃଖରେ ସ୍ନେହବ୍ୟାକୁଳତେତୁସ୍ତ ଓ କ୍ରୋଧ-

ବିଲୋଡ଼ିତାଙ୍ଗ ହୋଇ ତଦନୁରୋଧବଶତଃ ଭୀଷ୍ମଙ୍କ ସଙ୍ଗେ ତ୍ରୟୋବିଂଶତି ଦିବସ * କରାଳ ସଂଗ୍ରାମ କରି ପରିଶେଷରେ କ୍ଷାନ୍ତ ହେବାରୁ ଭୀଷ୍ମ ବୈଜୟନ୍ତୀ ମାଳା ପ୍ରାପ୍ତ-ହେବା, କ୍ରମେ ଅତିକ୍ଳାନ୍ତବପୁଷ୍କା ଅମ୍ବାଦେବୀ ଭୀଷ୍ମନିଧନୋଦ୍ଦେଶରେ ଦେହତ୍ୟାଗ-ପୂର୍ବକ ଶିଖଣ୍ଡୀ ହେବା" ପ୍ରଭୃତି ଷଡ୍‌ବିଂଶତି ଅଧ୍ୟାୟବ୍ୟାପୀ କଥା ଏ ସ୍ଥଳରେ ସଂଯୋଗ କରି ଅଛନ୍ତି । † ଏହି ଦୂରବିନ୍ୟସ୍ତ କଥାର ଯଥାସ୍ଥାନ ସଂଯୋଗ କବିଙ୍କର ଅବଶ୍ୟ ବୈଦୁଷ୍ୟପରିଚୟସୂଚକ ଏବଂ ପାଠକ ଓ ଶ୍ରୋତୃଗଣଙ୍କ ପକ୍ଷେ ବିଷୟାବ-ବୋଧାର୍ଥ ଯେପରି ସୁଗମ ସେପରି ସଙ୍ଗତ ମଧ୍ୟ ଅଟେ । ପରନ୍ତୁ ଏହି ପ୍ରକରଣର ପରିଶେଷରେ କହିଅଛନ୍ତି କି, ଧୃତରାଷ୍ଟ୍ରଙ୍କ ଜନ୍ମମାତ୍ରେ ଅମ୍ବିକା ମୃତା ହେଲେ । "ପୁତ୍ରକୁ ପ୍ରସବି ଯେ ଅମ୍ବିକା ନାଶଗଲି ।" ମାତ୍ର ତାହା ଯଥାର୍ଥ ନୁହେ । ବ୍ୟାସଙ୍କ ମତରେ ସେ ବହୁ ବର୍ଷ ଜୀବିତ ରହି କେତେକ କାଳ ପରେ ସତ୍ୟବତୀଙ୍କ ସହ ବାନପ୍ରସ୍ଥ ଆଚରିଥିଲେ ।

(୩) ଉତ୍କଳ ଭାରତ କବି ଧୃତରାଷ୍ଟ୍ରଙ୍କର ବିବାହ ସ୍ଥଳରେ ଲେଖିଅଛନ୍ତି, ତନ୍ନିମିତ୍ତ ଯେଉଁ କନ୍ୟାଟିକ ନିର୍ଣ୍ଣୀତ ହରନ୍ତି ଏବଂ ଗାନ୍ଧାରୀଙ୍କ ସକାଶେ ଯେଉଁ ବରକୁ ସ୍ଥିର କରନ୍ତି, ତଦୁଭୟେ ଅକାଳରେ କାଳକବଳରେ ପତିତ ହୁଅନ୍ତି । ଏତାଦୃଶ ଅଦୃଷ୍ଟାଭିଲକ୍ଷିତ ଘଟନା ଅଜ୍ଞାତ ହେଲା ପରେ ପ୍ରଥମତଃ ଗାନ୍ଧାରୀଙ୍କର ଶାଖୋଟକ (ସାହାଡ଼ା) ବୃକ୍ଷସହ ବିବାହ କରାଇ ତତଃପର ତାହାର ଅବ୍ୟବହିତ କାଳରେ ଧୃତରାଷ୍ଟ୍ରଙ୍କୁ ପ୍ରଦାନ କଲେ । * କବି ଏ ସ୍ଥଳରେ ବହୁବିଧ ଦେଶ ଓ

---

* ଏବଂ ସ୍ୱଜନ୍ମବହାରେବଲ୍ଲୁବ ତତଃ ପୁନଃ ବିମଳୈର୍ଭୁଜ୍ର ସ୍ୱଘୋରଂ ।
କଲ୍ୟଂ କଲ୍ୟଂ ବିଂଶତିର୍ବୈ ଦିନାନି ତଥୈବ ଯାନ୍ୟାନି ଦିନାନି ତ୍ରୀଣି ।
ଉଦ୍‌ଯୋଗପର୍ବ — ୧୮୩ ଅ. ୩୦ ଶ୍ଳୋ.

† ମୂଳ ଆଦିପର୍ବରେ କର୍ଣ୍ଣଙ୍କର ଆମୂଳାନ୍ତ ଜନ୍ମବୃତ୍ତାନ୍ତ ଉକ୍ତ ନାହିଁ । ବନପର୍ବର ଶେଷଭାଗରେ ୩୦୨ ଅଧ୍ୟାୟ ଠାରୁ ୩୦୮ ଅଧ୍ୟାୟ ପର୍ଯ୍ୟନ୍ତ ପ୍ରଶ୍ନାନୁକ୍ରମରେ ଉକ୍ତ ଅଛି ଏବଂ ପ୍ରସଙ୍ଗକ୍ରମରେ ଉଦ୍‌ଯୋଗପର୍ବରେ ମଧ୍ୟ ଉକ୍ତ ଅଛି । ସାରଳାଦାସ କବି ଅମ୍ବାଙ୍କ ଚରିତ ପରି କର୍ଣ୍ଣ ଚରିତକୁ ମଧ୍ୟ ଆଦିପର୍ବରେ ପ୍ରାସଙ୍ଗିକ କ୍ରମରେ ଯଥାସ୍ଥାନରେ ସୁସଂଲଗ୍ନତାର ଅବବୋଧରେ ଲେଖିଅଛନ୍ତି । କିନ୍ତୁ ଚରିତଚିତ୍ରଣକ୍ରମ ମୂଳ ଅପେକ୍ଷା କିଞ୍ଚିତ୍ ଭିନ୍ନ ।

* ଅଗସ୍ତି ବୋଇଲେ ହେ ବୈବସୁତ ନୃପତି ।
ଏହିପରି ଶଏ ଆଠ କନ୍ୟା ବିନଶ୍ୟନ୍ତି । ଆଦିପର୍ବ ।

ରାଜା ଏବଂ କନ୍ୟାମାନଙ୍କର ଜାତ୍ମଜନକ ନକ୍ଷତ୍ର ନାମ ଧାମ ମଣ୍ଡିତ ପ୍ରୋକ୍ତ ବିଷୟକୁ ବହୁ ବିସ୍ତୃତ କରିଅଛନ୍ତି ଏବଂ ଏହି ଦୁର୍ଘଟନାର କାରଣସ୍ୱରୂପ କହି ଅଛନ୍ତି—

"ଅଗସ୍ତି ବୋଇଲେ ତାର କୃତ୍ତିକା ମେଷ ରାଶି,
ଅପିତ ବ୍ରହ୍ମ ଅସୁର ଏମନ୍ତ କନ୍ୟା ନାଶି।"

ଅପିତ ମହାବ୍ରହ୍ମଣ୍ୟ ବ୍ୟାସଙ୍କ ଔରସରେ ଏତାଦୃଶ୍ୟ ବ୍ରହ୍ମରାକ୍ଷସ ଉତ୍ପତ୍ତିର କାରଣ ଜିଜ୍ଞାସାରେ କହନ୍ତି ଯେ—

"କୃତ୍ତିକା ଯୋଗରେ ମୃନି ପଶିଲେ ଶୃଙ୍ଗାରେ,
ରୋହିଣୀ ବେଳରେ ବୀର୍ଯ୍ୟ ଛାଡ଼ିଲେ ବମ୍ଭରେ।"
ଆ. ପ. ୪୦ ପୃଷ୍ଠା

ଅତଏବ ଉତ୍ପନ୍ନ ସନ୍ତାନ ବ୍ରହ୍ମରାକ୍ଷସ ହେଲା। ଏ ସବୁ ମୂଳ ଗ୍ରନ୍ଥରେ ନାହିଁ। ସୁତରାଂ ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କ ପ୍ରତି ଏତାଦୃଶ୍ୟ କୁତ୍ସିତାଭିପ୍ରାୟର ପ୍ରକାଶ ମୂଳ ମହାଭାରତରେ କୁତ୍ରାପି ଦେଖାଯାଏ ନାହିଁ। ପ୍ରତ୍ୟୁତ ଗାନ୍ଧାରୀ ମହାସୌଭାଗ୍ୟବତୀ ଓ ପୁଣ୍ୟବତୀ ବୋଲି ବହୁ ସ୍ଥଳରେ ପ୍ରମାଣମାନ ବିଦ୍ୟମାନ ଅଛି। ଧୃତରାଷ୍ଟ୍ରଙ୍କ ସମ୍ବନ୍ଧରେ ମଧ୍ୟ ସେହିପରି। ଏହି ପ୍ରକରଣର ଆନୁଷଙ୍ଗିକରୂପେ ଶାଖୋଟକ ବୃକ୍ଷର ପ୍ରାଧାନ୍ୟ – ପ୍ରଦ୍ୟୋତନାର୍ଥ ଲେଖିଅଛନ୍ତି କି, ଥରେ ଭଗବାନ୍ ମହାଦେବ ସ୍ୱବାହନ ବୃଷଭୋପରି ଆରୂଢ଼ ହୋଇ ଭ୍ରମଣାର୍ଥ ଯାଇଅଛନ୍ତି। ଏଣେ ପାର୍ବତୀ ସମସ୍ତ ଭକ୍ଷ୍ୟପେୟାଦି ସିଦ୍ଧ କରି ପତିଙ୍କ ଆଗମନ ଅପେକ୍ଷାରେ ଚତୁର୍ଦ୍ଦଶ ଘଟିକା ପର୍ଯ୍ୟନ୍ତ ରହି ବହୁ ବିଳମ୍ବ ଯୋଗୁଁ ଅସହିଷ୍ଣୁତାରେ ନିଜେ ପ୍ରଥମତଃ ସମସ୍ତ ଭକ୍ଷ୍ୟପେୟାଦିର ଭୋଜନରେ ବସିଲେ। ଇତ୍ୟବସରରେ ଶୈବ ଡମ୍ବରୁନାଦ ଶ୍ରୁତିଗୋଚର ହେଲାରୁ ତାବନ୍ମାତ୍ର ଆମିଷ ଖାଦ୍ୟପଦାର୍ଥ ବୃଷଭକୁଣ୍ଡିକାରେ ନିକ୍ଷେପ କଲେ। ବୃଷଭ ମାର୍ଗ ମଧ୍ୟରେ ଶାଖୋଟକ ବୃକ୍ଷର ଅଭିନନ୍ଦନ କରିଥିବାରୁ ସେ ସବୁ ସେ ପାଇଲେ। ଇତ୍ୟାଦି। (୪୫ ପୃ) ଭବାନୀଙ୍କର ଚରିତ୍ରଚିତ୍ରଣରେ ଏହା ନିତାନ୍ତ ଗର୍ହିତ ବୋଧହୁଏ। ଏହିପରି ଅନେକ ସ୍ଥଳରେ ଅନେକଗୁଡ଼ିଏ ଅମୌଳିକ ଅସଙ୍ଗତ କଳ୍ପିତ କଥା ଯେ କୌଣସି ହେତୁ ଦେଖାଇ ପୂର୍ବାପର କଥାମାନଙ୍କର ମଧ୍ୟେ ମଧ୍ୟେ ଯୋଗ କରି ଅଛନ୍ତି। †

---

† ଭବାନୀଚରିତ୍ର ଗର୍ହଣାସୂଚକ ଏହି ଘଟନାକୁ ମଧ୍ୟବେର ଏକ ସ୍ଥାନରେ ସୂକ୍ଷ୍ମ ଲେଖି ପକାଇ ଅଛନ୍ତି।

ମୂଳରେ ଉକ୍ତ ଅଛି, ଶତପୁତ୍ରାର୍ଥିନୀ ଗାନ୍ଧାରୀ ବ୍ୟାସଙ୍କ ବରପ୍ରସାଦରୁ ଦୁଇ ବର୍ଷ ଗର୍ଭଧାରଣ ପରେ ବଜ୍ର ପ୍ରତୀକାଶତୁଲ୍ୟ ଗୋଟିଏ ମାଂସପିଣ୍ଡ ପ୍ରସବ କଲେ । ସର୍ବଶକ୍ତିସମ୍ପନ୍ନ ବ୍ୟାସଦେବ ତାହାକୁ ବିଭାଗପୂର୍ବକ ଘୃତ କୁମ୍ଭମାନଙ୍କରେ ନିକ୍ଷିପ୍ତ କରାଇବାରୁ ତହିଁରୁ କ୍ରମଶଃ ଏକ ଏକ ଶତପୁତ୍ର ଓ ଏକ ସ୍ତ୍ରୀ ସନ୍ତାନ ହେଲେ । ମାତ୍ର ସାରଳାଦାସ କହନ୍ତି, ଗାନ୍ଧାରୀ ବ୍ୟାସଦତ୍ତ ଶତଗୋଟି ଯାଗାନ୍ନ ଗର୍ଭରେ ବହନ କରି ନ ପାରି ବମନ କରିଦେଲେ । ବ୍ୟାସ ସେହି ଅନ୍ନଗୁଡ଼ିକ ଏକତ୍ରିତ ରଖି ମନ୍ତ୍ରୋଦକ ସେଚନ କଲାରୁ ଶତଗୋଟି ପୁତ୍ର ହେଲେ । ଏଥିରେ ଏତିକି ମାତ୍ର ମୌଳିକ ସତ୍ୟ ରହିଅଛନ୍ତି ଯେ ଗାନ୍ଧାରୀଙ୍କ, ବ୍ୟର୍ଥୀକୃତପିଣ୍ଡସବୁ ବ୍ୟାସଦେବଙ୍କ ଦ୍ୱାରା ଅମୋଘୀକୃତ ହେଲା । ଆହୁରି ସେହି ବ୍ୟାସପ୍ରସାଦଜନିତ ଶତପୁତ୍ରମାନଙ୍କର ନାମକରଣକୁ ଆଦ୍ୟରେ ଦୁ ବର୍ଣ୍ଣ ଯୋଗରେ କେବଳ କରି ଅଛନ୍ତି ।୧ ମାତ୍ର ସଂସ୍କୃତରେ ତଦ୍ଭିନ୍ନ ଅନ୍ୟାନ୍ୟ ନାମମାନ ମଧ୍ୟ ଦତ୍ତ ହୋଇଅଛି ।୨ ପରନ୍ତୁ ପୂର୍ବାପର ଉକ୍ତିର ବିରୋଧ ଏହି ଯେ, ମୂଳ ଗ୍ରନ୍ଥରେ ଏକ ସମୟରେ ଯଥାକ୍ରମେ ମାଂସପିଣ୍ଡରୁ ଦୁର୍ଯୋଧନାଦି ଶତଭ୍ରାତା ଓ ଦୁଃଶୀଳା ଜନ୍ମିବା ଉକ୍ତ ଅଛି, ତଦନୁରୂପେ ପ୍ରଥମେ ଶତପୁତ୍ର ଜନ୍ମିବା କହି୩ ପରେ ଦୁର୍ବାସାଙ୍କ ପ୍ରସାଦରୁ ଦୁର୍ଦ୍ଧର୍ଷ ଓ ଦୁଃଶୀଳା ଜନ୍ମ ହେଲେ ବୋଲି କହି ଅଛନ୍ତି ।୪

(୪) ମୂଳରେ ଉକ୍ତ ଅଛି, ବସୁଦେବଙ୍କ ପିତା ଶୂରନାମଧେୟ ଯଦୁବଂଶୀୟ ଏକ ରାଜା ଥିଲେ । ତାହାଙ୍କ ଔରସରେ ପୃଥା ଜନ୍ମିଥିଲେ । ଶୂର ସ୍ୱକୀୟ ପିତୃସ୍ୱସ୍ରୀୟ ପୁତ୍ରହୀନ କୁନ୍ତିଭୋଜ ରାଜାଙ୍କୁ ପୂର୍ବକୃତ ପ୍ରତିଜ୍ଞାନୁସାରେ ପୃଥାଙ୍କୁ ପାଳନାର୍ଥେ ପ୍ରଦାନ କଲେ । ଅତଏବ ତାହାଙ୍କ ନାମ କୁନ୍ତୀ ହେଲା, ଇତ୍ୟାଦି । କିନ୍ତୁ ଅବତ୍ୟ ବ୍ୟାସଦତ୍ତ ନାମଧାମାଦିକ ଦାସ କବି ଠିକ୍ ନ ଦେଇ ପରିବର୍ତ୍ତିତ କରି ଅଛନ୍ତି ଏବଂ ଅଗ୍ନିକା ଋଷିଙ୍କ ସମ୍ବନ୍ଧରେ ବହୁତ ଅବାନ୍ତର କଥାଗୁଡ଼ିଏ ଲେଖି ଅଛନ୍ତି । ସେ ସବୁ ମୂଳ ଗ୍ରନ୍ଥରେ ନାହିଁ; କିନ୍ତୁ ଅନୁମିତ ହୁଏ, କବି

---

୧ ଦୁ ଅକ୍ଷର ଦଅ ଯେ ସବୁଙ୍କର ନାମ । ଆ: ପ: ୭୭ ପୃଷ୍ଠା ।

୨ ଆଦିପର୍ବ ୧୧୭ ସପ୍ତଦଶୋତ୍ତରଶତତମାଧ୍ୟାୟ ଦେଖନ୍ତୁ ।

୩ ବ୍ୟାସ ବୋଇଲେ ଯେ ଦୁର୍ବାସାଙ୍କ ମହାମନ୍ତ୍ରେ ।
ଶତେ ପୁତ୍ର ହୋଇଲେ ଯେ ରାଜାର ଯୁଗତେ ॥ ୭୭ ପୃ:

୪ ୯୫ ପୃଷ୍ଠା ଦେଖନ୍ତୁ ।

ଏତଦ୍‌ଚରିତାଭ୍ୟନ୍ତରରେ ବିଶ୍ୱାମିତ୍ରଙ୍କ ମତ ଉଲ୍ଲେଖ କରିଥିବାରୁ ତତ୍‌କୃତ କୌଣସି ପୁରାଣ ବା ଇତିହାସରୁ ଅନୁକରଣ କରି ପ୍ରୋକ୍ତ ଅଗ୍ନିକା ଋଷି ବୃତ୍ତାନ୍ତ ପ୍ରକ୍ଷିପ୍ତ କରିଥିବେ ପରା ? ମୂଳରେ ଅନୁକ୍ତ ଏଭଳି କେତେକ ଚରିତାବତରଣ ସ୍ଥଳରେ କବି ପୌରାଣିକ କଥାରେ ବହୁଶ୍ରୁତ ଥିଲେ ବୋଲି ବିଶ୍ୱାସ ବଦ୍ଧମୂଳ ହୋଇଥିବାରୁ ହଠାତ୍ ତତ୍‌ପ୍ରତି ହୃଦୟ ଅବିଶ୍ୱସ୍ତ ହୁଏ ନାହିଁ, ଏହା କବିଙ୍କର କଳ୍ପିତ ନଚେତ୍ ପୁରାଣେତରରୁ ସମାଗତ, ଏହା ଭାବି ସନ୍ଦିଗ୍ଧ ହେବାକୁ ହୁଏ । ପୁଣି ଏପରି କେତେକ ସ୍ଥଳରେ କବି ନିଜେ ତଦାଶ୍ରୟୀଭୂତ ପୁରାଣାନ୍ତରର ନାମ ମଧ୍ୟ କୀର୍ତ୍ତନ କରି ଅଛନ୍ତି । ଅତଏବ ବିଶ୍ୱାସ କରିବାକୁ ହୁଏ କି, ବହୁ ପୌରାଣିକ ଚରିତବେତ୍ତା ସାରଳାଦାସ ଜନସାଧାରଣରେ ବହୁ ଅଭ୍ୟସ୍ତ ଭାଗବତ ରାମାୟଣାଦିରୁ କଥା ଉନ୍ନୟନ କରିବା ଅତି ସହଜ; ପରନ୍ତୁ ପ୍ରସ୍ତାବାନୁପାତ ଚରିତମାନଙ୍କ ମଧ୍ୟରେ ସର୍ବସାଧାରଣରେ ଅନଧୀତ ଜୈମିନି, ବିଶ୍ୱାମିତ୍ର, ଶିବ ପୁରାଣ, ଅଗସ୍ତି ପୁରାଣ ପ୍ରଭୃତିର ମତ ଓ ନାମ ଦେଇଥିବାରୁ ଭିନ୍ନ ଭିନ୍ନ ପୁରାଣ ଇତିହାସମାନଙ୍କରୁ ମଧ୍ୟ କେତେକ ଚରିତ ଆନୟନ କରିଥିବେ ।* ଅଥଚ ଭୀମସେନ ଶୈଶବାବସ୍ଥାରୁ ତତ୍‌ପ୍ରତି ସାନୁକ୍ରୋଶ ବୈଶ୍ୱାନରଙ୍କ ପ୍ରସାଦରୁ ଗୌରି, ଶୌରି ଓ ନଳ ପାକର ସିଦ୍ଧିକି ପ୍ରାପ୍ତ ହୋଇଥିବା କଥା କେତେକ ଚରିତରେ ଅନୁପ୍ରାଣିତ କରି ଲେଖି ଅଛନ୍ତି; ମାତ୍ର ମୂଳରେ ଏହା ସ୍ପଷ୍ଟତଃ ପ୍ରୋକ୍ତ ନାମ ନାମିତରୂପେ ଦେଖାଯାଏ ନାହିଁ । ତଥାପି ଭୀମ ପାକବିଦ୍ୟାଧୁରୀଣ ଥିଲେ ବୋଲି ବିଶ୍ୱାସ ହୁଏ କି, କବି ଏ କଥା କୌଣସି ପୁରାଣ ବା ଉପାଖ୍ୟାନରୁ ଉଦ୍ଧୃତ କରିଥିବେ । କେବଳ ଏତିକିମାତ୍ର ନୁହେ, ଯାହା ଯେଉଁଠି କହିବା ଯୁକ୍ତିଯୁକ୍ତ ଓ ପ୍ରସ୍ତାବାନୁମୋଦିତ ବୋଧ କରି ଅଛନ୍ତି, ସେପରି ଅନେକଗୁଡ଼ିଏ

---

* ଭୀଷ୍ମ ବୋଇଲେ ପିତା କହିଲ ଅକାରଣେ ।
ମୁହିଁ ଆଗେ ଶୁଣିଲି ଯେ ଅଗସ୍ତି ପୁରାଣେ ॥ ଆଦିପର୍ବ ॥

(୧) ଏ ସ୍ଥଳରେ ଅଗସ୍ତି ପୁରାଣର ନାମ ମୂଳରେ ସ୍ପଷ୍ଟୋକ୍ତିରେ ନାହିଁ ।

(୨) ବନପର୍ବର ପରିଶେଷରେ ତ୍ରିପୁରାସୁରର ବରପ୍ରାପ୍ତି ପ୍ରଭୃତି କଥା କହି ତଦନନ୍ତର ଏହା ଶିବପୁରାଣର କଥା ବୋଲି କବି ନିଜେ କହିଅଛନ୍ତି ।

ଶିବପୁରାଣର କଥା ଏହାଟି ନିଯୁତେ ।
ମୁହିଁ ଏକା ବଖାଣିଲି ସଂସାରର ହିତେ ॥ ବ: ପ: ୩୨୪ ପୃଷ୍ଠା । ଇତ୍ୟାଦି ।

ମୂଳରେ ଅନୁକ୍ତ ଅନ୍ୟାନ୍ୟ ପୁରାଣରେ ଉକ୍ତ ଘଟଣାମାନଙ୍କୁ ମଧ୍ୟେ ମଧ୍ୟେ ଯୋଗ କରି ଅଛନ୍ତି । କିନ୍ତୁ ମାଦ୍ରୀବଣ୍ଟ ବା ମାଦ୍ରୀଦେବୀ କୁନ୍ତୀଙ୍କ ଜପମାଳା ଗ୍ରହଣରେ ପୁତ୍ରୋତ୍ପତ୍ତିର ଉପାୟ ବିଧାନ କଲା ସ୍ଥଳରେ ପ୍ରଥମତଃ ତଦୀୟ ଜପମାଳାନୁ-ଧ୍ୟାନରେ ସମାଗତ ଶ୍ରୀମନ୍ନାରାୟଣ ତାହାଙ୍କୁ ମାତୃସ୍ୱରୂପା ଭାବିବା, ମନ୍ତ୍ରାଦେଶ ଲଙ୍ଘନଜନିତ ଦୁଶ୍ଚିନ୍ତାକୁଳ ହୃଦୟରେ ମାଦ୍ରୀ ଦୁର୍ବାସାଙ୍କୁ ସ୍ମରିବା, ଦୁର୍ବାସାଙ୍କ ନିର୍ଦ୍ଦେଶରେ ନାରାୟଣ (କୃଷ୍ଣ) ଅର୍ଜୁନଙ୍କ ସମଭିବ୍ୟାହାରରେ ଯମୁନୋପକଣ୍ଠରେ ଅକୁଣ୍ଠିତ ମନରେ ବିହାର କରିବା, ଇତ୍ୟବସରରେ ବ୍ୟାସ ସେଠାରେ ସମାଗତ ହେଲରୁ ତାହାଙ୍କୁ ନାରାୟଣ ସ୍ୱକୀୟ ଆଉ ଅର୍ଜୁନଙ୍କର ବହୁ ଜନ୍ମାନ୍ତରୀଣ ବ୍ୟବସ୍ଥା ଏବଂ ଉଭୟଙ୍କର ଏକାତ୍ମତା ଜଣାଇବା ପରେ ଅର୍ଜୁନ ବ୍ୟାସଙ୍କ ଉପଦେଶମତେ ବିଶ୍ୱରୂପ ଦିଦୃକ୍ଷାରେ ପ୍ରାର୍ଥୀ ହେଲରୁ ନାରାୟଣ ବୈଶ୍ୱରୂପିକ ବିଭୂତି ପ୍ରଦର୍ଶାଇବା ଇତ୍ୟାଦି ବହୁବିଧ କଥା ସଙ୍ଗତ ବିଶ୍ୱସ୍ତତରୂପେ ଜଟିଳ କରି ଲେଖି ଅଛନ୍ତି । ଏ ସବୁ ପ୍ରାସଙ୍ଗିକ ମଧ୍ୟ ହୋଇନାହିଁ । କିବା କାହିଁରୁ ଏ ସବୁ ହୃଦୟଙ୍ଗମ କରିଥିଲେ ଜଣାଯାଉ ନାହିଁ । ଅପିଚ ମାଦ୍ରୀ ଓ ମାଦ୍ରେୟ ପାଣ୍ଡବଦ୍ୱୟଙ୍କ କଥାରେ ମୂଳରେ ଉକ୍ତ ଅଛି, ଅଶ୍ୱିନୀକୁମାରଙ୍କ ଔରସରେ ମାଦ୍ରୀଙ୍କ ଗର୍ଭରୁ ଯମଜ ନକୁଳ ଓ ସହଦେବ ଜନ୍ମିଥିଲେ । କେତେକ ସମୟ ପରେ ପାଣ୍ଡୁ ନିର୍ଜିତଶୂଳଭୃତ-ପ୍ରଭୃତିକୁ ଏକାତପଦିତବିଶ୍ୱ ପୁଷ୍ପସାୟକଙ୍କ ଅମୋଘାବମଣରେ ଆକ୍ରମିତ ହୋଇ ମାଦ୍ରୀଙ୍କୁ ହଠାତ୍ ରମଣ କଲରୁ ପଞ୍ଚତ୍ୱ ପ୍ରାପ୍ତ ହେଲେ, ମାଦ୍ରୀ ମଧ୍ୟ ତଦନୁଗାମିନୀ ହେଲେ ମାତ୍ର ସାରଳାଦାସ କହିଅଛନ୍ତି, ଅଶ୍ୱିନୀକୁମାରଙ୍କ ଔରସରେ ନକୁଳଙ୍କ ଉତ୍ପତ୍ତିର କେତେକ କାଳ ପରେ କୁନ୍ତୀଦେବୀ ଅଶ୍ୱାରୋହୀ ଯୁଧିଷ୍ଠିରାଦି ପୁତ୍ର-ଚତୁଷ୍ଟୟଙ୍କୁ ସଙ୍ଗେ ଧରି ହସ୍ତିନାକୁ ଯାଇଅଛନ୍ତି । ମାଦ୍ରୀ ପାଣ୍ଡୁଙ୍କ ସହ ଶତଶୃଙ୍ଗାଚଳରେ ଅଛନ୍ତି । ଏକ ଦିନ ନିଶା ସମୟରେ ଶଯ୍ୟାସଖୀ ମାଦ୍ରୀ ଜପମାଳା ହସ୍ତରେ ପାଣ୍ଡୁଙ୍କୁ ସ୍ମରଣ କରିବାରୁ ସେ ଆସି ସମ୍ଭୋଗରେ ରତ ହେଲେ । ଅକାଳ କାଣ୍ଡ ନିର୍ଘାତରେ ଉଭୟଙ୍କ ମୃତ୍ୟୁ ହେଲା । ମୃତ୍ୟୁର ଅବ୍ୟବହିତ ପୂର୍ବେ ଏବଂ ସମ୍ଭୋଗର ଅବ୍ୟବହିତ ପରେ ଏକ ପୁତ୍ର ସନ୍ତାନ ପ୍ରସୂତ ହେଲେ । ତାଙ୍କର ନାମ ସହଦେବ । ସଦ୍ୟଜାତ ଶିଶୁ କ୍ଷୀରାଭାବରୁ ମୃତ ହେଲରୁ ସୂର୍ଯ୍ୟଙ୍କ ଆଦେଶରେ ଆଶ୍ୱିନେୟ ଆସି ସ୍ୱୀୟ ଆତ୍ମାକୁ ମୃତ କଳେବରରେ ନିହିତ କରି ଜୀବନ୍ୟାସରେ ପୁନରୁଜ୍ଜୀବିତ କଲେ, ଇତ୍ୟାଦି । ଏଥିରେ ମୌଳିକ ଯଥାର୍ଥ ଘଟନାର ଅସାଦୃଶ୍ୟ ସହ ଅପ୍ରାକୃତତ୍ୱ ଓ ଅଦ୍ଭୁତତ୍ୱ ଅପିଚ ମଧ୍ୟେ ମଧ୍ୟେ ଅସଙ୍ଗତି ମଧ୍ୟ ସ୍ପଷ୍ଟ ପ୍ରତୀୟମାନ ହୁଏ ।

(୫) ଦ୍ରୋଣଙ୍କର ପ୍ରାଥମିକ ଅବସ୍ଥାର ବର୍ଣ୍ଣନ ବୈଷମ୍ୟ ସଙ୍ଗେ ସଙ୍ଗେ କେତେକ ବିଷୟକୁ ସାରଳାଦାସ କବି ମୂଳ ଅନୁସରଣ ବିଭିନ୍ନ ପରିପାଟିରେ ଲେଖି ଅଛନ୍ତି; ମୂଳରେ ଉକ୍ତ ହୋଇଥିବା କେତେକ ବିବରଣକୁ ନେଇ ସୁବିସ୍ତୃତ କରି ଅଛନ୍ତି । ମୂଳରେ "କୃପ ଅଶ୍ୱତ୍ଥାମା ଚିରଞ୍ଜୀବୀ" ଏତାବନ୍ମାତ୍ର ପ୍ରକାଶ ପାଏ । ଏହି ବୀଜଭୂତ ଅଂଶରୁ କୃପ ଓ ଅଶ୍ୱତ୍ଥାମା ଅନଳ୍ପ-ଆୟୁଷ-ତପସ୍ୟାରେ ଅମରତ୍ୱ-ପ୍ରାପ୍ତ ହେବା ବିଷୟ ସବିସ୍ତର କରି ଅଛନ୍ତି । "କୌରବ ଓ ପାଣ୍ଡବମାନେ ନାନା ପ୍ରକାର ଖେଳ ଖେଳନ୍ତି" ଏହି କଥାକୁ ନେଇ ତିମିନି ଖେଳରେ ବହୁପ୍ରସରଣ ସନ୍ଦର୍ଭ ଉଠାଇ ଅଛନ୍ତି । ସୁତରାଂ ତାହାଙ୍କ ସମଗ୍ର ଉତ୍କଳରେ "ତିମିନି ଖେଳରୁ ମହାଭାରତ" ଇତ୍ୟାକାର ପ୍ରବଚନରୂପେ ଆବାଳବୃଦ୍ଧ ସମସ୍ତଙ୍କ ହୃଦୟରେ ବଦ୍ଧମୂଳ ହୋଇ ଯାଇଅଛି । ସ୍ୱୟମ୍ବର ସ୍ଥଳରେ କର୍ଣ୍ଣ ସମଗ୍ର ରାଜନ୍ୟବର୍ଗଙ୍କୁ ପରାସ୍ତ ଓ ନିହତେଜ କରି ସମାଗତା ଭାନୁମତୀଙ୍କୁ ଦୁର୍ଯ୍ୟୋଧନଙ୍କୁ ପ୍ରଦାନ କରିବା ବୃତ୍ତାନ୍ତ ମୂଳରେ ନାହିଁ ସତ୍ୟ, କିନ୍ତୁ ଏହି କବି ପୁରାଣାନ୍ତରକୁ ଅନୁସରି ଏହା ପ୍ରସ୍ତାବାନୁମୋଦିତ କରି ଅଛନ୍ତି । * ଅପିଚ ଦୁର୍ଯ୍ୟୋଧନ ଗୋଳକପୂର୍ବ ଶରୀର କାରଣ ଗାନ୍ଧାରୀଙ୍କ ମୁଖରୁ ଅବଗତ ହୋଇପାରି ଦ୍ୱେଷାମର୍ଷପ୍ରଣୀତ ହୃଦୟରେ ଗାନ୍ଧାରସେନ ନୃପତିଙ୍କ ସବଂଶରେ ଜୀବ ଗ୍ରାହରୂପେ କାରାରୁଦ୍ଧ କରି ବିନାଶିବା ପ୍ରଭୃତି ଯେଉଁ ଅନେକଗୁଡ଼ାଏ କଥା ସେ ଅତି ବିସ୍ତୃତ କରି ଲେଖିଅଛନ୍ତି, ମୂଳ ଅଷ୍ଟାଦଶ ପର୍ବ ମଧ୍ୟରେ କୁତ୍ରାପି ତାହା ଦେଖାଯାଏ ନାହିଁ, ପ୍ରତ୍ୟୁତ ତଦ୍ବଂଶୀୟ ଅସଂଖ୍ୟ ବୀରବୃନ୍ଦ ତତ୍ପରକାଳୀନ ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ପକ୍ଷରେ ଯୋଗ ଦେଇଥିବା ଦେଖାଯାଏ । ଇତିମଧ୍ୟରେ ଦିନେ ଦୁର୍ଯ୍ୟୋଧନ ନ୍ୟଗ୍ରୋଧବୀଜକୁ ସ୍ୱପ୍ରସାବଜଳରେ ଉତ୍ପ୍ଲାବିତ ଦେଖି ହସିଲାରୁ ସେହି ଆକସ୍ମିକ ହାସର ନିଗୂଢ଼ କାରଣ ଜଣେ ଦାସୀ କାରାନିବାସୀ ଶକୁନିଙ୍କ ମୁଖରୁ ଅବଗତ ହୋଇ ଦୁର୍ଯ୍ୟୋଧନଙ୍କୁ ଜଣାଇବାରୁ ସେ ଶକୁନିଙ୍କି ମହାବୁଦ୍ଧିମାନ୍ ମନେ କରି ମୁକ୍ତି-ପ୍ରଦାନପୂର୍ବକ ସମ୍ମାନପୁରଃସର ଦୟା କରିବା ଇତ୍ୟାଦି କଥା ବୃଥା କଳ୍ପନାପ୍ରସୂତ ଓ ଏକାନ୍ତ ଅସଙ୍ଗତ ବୋଧହୁଏ ।

---

* ମୂଳ ଭୀଷ୍ମପର୍ବରେ ଏହାର ସୂଚନା ମାତ୍ର ଅଛି । ଯଦୁକ୍ତଃ ଫାଲ୍‌ଗୁନେନାପି କୃଷ୍ଣେନ ଚ ମହାତ୍ମନା । କର୍ଣ୍ଣ ! କାଶିପୁରଂ ଗତ୍ୱା ଉତ୍ସୃଜ୍ୟ କେନ ଧନୁଷ୍ମତା । କନ୍ୟାର୍ଥେ କୁରୁରାଜସ୍ୟ ରାଜନୋମୃଦିତା ଯୁଧି । ଭୀ: ପ: ୧୨୨ ଅଧ୍ୟାୟ ୧୬ ଶ୍ଳୋକ । କର୍ଣ୍ଣଙ୍କ ପ୍ରତି ଭୀଷ୍ମଙ୍କ ଉକ୍ତି ।

(୭) ପାଣ୍ଡବ ଓ କୌରବାଦଙ୍କର ଧାନୁର୍ବେଦକ ଶିକ୍ଷା ସମୟରେ ଦୁର୍ବାରମାନ ଦୁର୍ଯ୍ୟୋଧନ ଭୀମଙ୍କୁ ମହାବଳ ଜାଣି ଦ୍ୱେଷାସୂୟାବିଷ୍ଟ ହୃଦୟରେ ଜିଘାଂସାପରବଶ ହୋଇ କପଟ କୌଶଳରେ ଗଙ୍ଗାତୀରସ୍ଥ ପ୍ରମାଣକୋଟି ନାମକ ସ୍ଥଳରେ † ଜଳାର୍ଦ୍ଧପ୍ରବିଷ୍ଟ ଏକ କ୍ରୀଡ଼ାଗାର କରାଇ ସେଠାରେ କ୍ରୀଡ଼ାର୍ଥ ପାଣ୍ଡବ-ଗଣ ଓ ଅନ୍ୟାନ୍ୟଙ୍କ ସହ ଉପନୀତ ହେଲେ । କୌଶଳକ୍ରମେ ଭୀମସେନଙ୍କୁ ବିଷମୂର୍ଚ୍ଛିତଜ୍ଞାନ ଓ ହତଚେଷ୍ଟ କରି ଗଙ୍ଗାରେ ନିକ୍ଷେପ କରିଦେଲେ । ଭୀମ ସଚେତ ହେଲା ପରେ ନାଗ ସମାଜକୁ ମିତ ହୋଇ ସତ୍କାର ପାଇଲେ, ଇତ୍ୟାଦି କ୍ରମରେ ମୂଳରେ ଉକ୍ତ ଅଛି । ସାରଳା କବି ପ୍ରମାଣକୋଟିର କଥା ନ କହି ସୁବିସ୍ତୃତ ଭାବରେ ଲେଖିଅଛନ୍ତି କି, ଅନ୍ୟୋନ୍ୟ ମନୋମାଳିନ୍ୟବଶତଃ ପାଣ୍ଡବ-ମାନେ ବାରୁଣାବତ ଗଲା ପରେ ଦିନେ ଅର୍ଜୁନଙ୍କଦ୍ୱାରା ନିହତ ଗଣ୍ଡକ ମୃଗଟିଏ ଯୁଧିଷ୍ଠିର ଭୀମଙ୍କ ହସ୍ତରେ ଧୃତରାଷ୍ଟ୍ରଙ୍କଠାକୁ ପ୍ରେରଣ କଲେ, ପବନୋଦ୍ଧତ ସାଗରୋର୍ମି ପ୍ରାୟ ସର୍ବଦା ପାଣ୍ଡବ ବିକ୍ରମ ଭୟରେ ବିଚଳିତ ହୃଦୟ କଳୁଷିତାନ୍ତଃ-କରଣ ଦୁର୍ଯ୍ୟୋଧନ ବାହ୍ୟରେ ସୌଭ୍ରାତ୍ର ପ୍ରଦର୍ଶନାର୍ଥ ଭୀମକର୍ମା ଭୀମଙ୍କ ସହିତ ଏକତ୍ର ଭୋଜନରେ ବସି ତାହାଙ୍କୁ ବିଷ ପ୍ରଦାନ କରାଇଲେ । ଭୀମସେନ ପ୍ରତ୍ୟଗ୍ର-ହଳାହଳର ପ୍ରତାପରେ ନିଶ୍ଚେଷ୍ଟ ହୋଇଗଲାରୁ ତାହାଙ୍କୁ ଯମୁନାରେ ନିକ୍ଷେପ କଲେ । ଭୀମ କ୍ରମେ ନାଗଲୋକରେ ଉପସ୍ଥିତ ହେଲାରୁ ନାଗରାଜ ନିଜ କନ୍ୟା ବେଲ୍ଲାବଳୀଙ୍କର ପାଣିଗ୍ରହଣ କରାଇଲେ । † ଭୀମ ନବପରିଣୀତା ବେଲ୍ଲାବଳୀଙ୍କ ପ୍ରୀତିରେ ବିମୁଗ୍ଧ ଓ ବିସ୍ମୃତଭ୍ରାତୃବାତ୍ସଲ୍ୟ ହୋଇ ପାତାଳରେ ବହୁଦିନ ରହିଗଲେ । * ଇତ୍ୟବସରରେ ପାଣ୍ଡବାସୁର ସମସ୍ତ କୌରବଙ୍କୁ ଆହବରେ ହତାହତ କଲେ । ଧର୍ମାବତାର ଯୁଧିଷ୍ଠିର କୌରବମାନଙ୍କ ରକ୍ଷଣାର୍ଥ ଭୀମଙ୍କୁ ସ୍ମରଣ କଲେ । ଭୀମ ଅବିଳମ୍ବେ ପାତାଳରୁ ଆଗତ ହୋଇ ପାଣ୍ଡବାସୁରଙ୍କୁ ନିହତ

---

† ଉଦକକ୍ରୀଡନଂ ନାମ କାରୟାମାସ ଭାରତ ।
ପ୍ରମାଣକୋଟ୍ୟାଂ ତଂ ଦେଶଂ ସ୍ଥଳଂ କିଞ୍ଚିଦୁପେତ୍ୟହ ॥ ଆ: ପ: ୧୨ ଅଧ୍ୟାୟ ॥

† ଅମୃତ ଯୋଗାଡ଼ ତହୁଁ ଅନନ୍ତ ଭିଏଇଲା ।
ବେଲ୍ଲାବଳୀକି ଭୀମସେନଙ୍କୁ ବିଭା କଲା ॥ ଆ: ପ:

* ବ୍ୟାସଙ୍କ ମତେ ଭୀମସେନ ହତଚେତନ ହୋଇ ପାତାଳରେ ଅଷ୍ଟଦିବସ ମାତ୍ର ଥିଲେ । ଉନତ୍ରିଂଶୋତ୍ତରଶତତମାଧ୍ୟାୟ ଦ୍ୱାବିଂଶତି ଶ୍ଳୋକ ଦେଖନ୍ତୁ ।

କଲେ, ଇତ୍ୟାଦି । ପୁଣି ଏ ସ୍ଥଳରେ ବ୍ୟୁତ୍ପତ୍ତି ପ୍ରକାଶ କରି ଅଛନ୍ତି କି, ପାଣ୍ଡବାସୁରକୁ ନାଶିବାରୁ ଏମାନଙ୍କର ପାଣ୍ଡବ ନାମ ହୋଇଲା । "ପାଣ୍ଡବାସୁରକୁ ଯହୁଁ ପାଣ୍ଡବେ ବଧିଲେ, ତେଣୁ ନାମ ପାଣ୍ଡବ ନାମ ପାଞ୍ଚହେଁ ବହିଲେ ।" ଆ: ପ: † ଶ୍ରୀମଙ୍କର ବେଲ୍ଲାବଳୀ ସହ ପରିଣୟ ବିବରଣ ଆଉ ପାଣ୍ଡବାସୁର କଥା ମୂଳରେ ଆଦୌ ନାହିଁ; ପରନ୍ତୁ ବ୍ୟୁତ୍ପତ୍ତିବୈଚିତ୍ର୍ୟ ଦେଖିଲେ ଅସଙ୍ଗତ ମଧ୍ୟ ଜଣାଯାଏ ।

(୭) ବ୍ୟାସ କହିଅଛନ୍ତି କି, ବିଦୁରଙ୍କର ଜଣେ ବିଶ୍ୱସ୍ତଖନକ ଜତୁଗୃହରୁ ଗଙ୍ଗୋପକଣ୍ଠ ପର୍ଯ୍ୟନ୍ତ ଗୋଟିଏ ସୁପ୍ରଶସ୍ତ ବିଳ କରି ତାହାର ମୃତ୍ତିକାନିଚୟକୁ-ପରିଖାପରିଷ୍କାରବ୍ୟପଦେଶରେ ଉତ୍କ୍ଷିପ୍ତ କରାଇଲେ । ସୁଡ଼ଙ୍ଗ—ସୁଡ଼ଙ୍ଗ ନିଷ୍ପତ୍ତିର ଅପେକ୍ଷାରେ ପାଣ୍ଡବମାନେ ଜତୁଗୃହରେ ୧ ଏକ ବର୍ଷ ମାତ୍ର ଅବସ୍ଥିତ ଥିଲେ, ଇତ୍ୟାଦି । କିନ୍ତୁ ସାରଳାଦାସ କବି ଏ ବିଷୟକୁ ଅତି ବିସ୍ତୃତ କରିବାକୁ ଯାଇ ଲେଖିଅଛନ୍ତି ଯେ, ବିଦୁର ଏକଦା ତମସାବଗୁଣ୍ଠିତ ନିଶା ସମୟରେ ଭ୍ରମଣ କରୁଁ କରୁଁ ଗୋଟିଏ ଚୌରକୁ ଦେଖିଲେ । ବିଦୁରଙ୍କ ପ୍ରଶ୍ନରେ ସେ ଆତ୍ମପରିଚୟ ଦେଲା ଯେ ୨ ବୃନ୍ଧା ଦୂତୀର ଗର୍ଭରୁ ଶ୍ରୀକୃଷ୍ଣଙ୍କ ୩ ଔରସରେ ଜନ୍ମଗ୍ରହଣ କରି ସେ ପୂର୍ବେ ଯମୁନାତୀରରୁ ଶ୍ରୀରାଧାଙ୍କ ମନ୍ଦିର ପର୍ଯ୍ୟନ୍ତ ବିଳ କରିଥିଲା, ଇତ୍ୟାଦି । ବିଦୁର ଚୌରର ପରିଚୟ ପାଇ ତାହାକୁ ବିବର ଖନନରେ ନିଯୁକ୍ତ କଲେ । ବିଳାରମ୍ଭର ଅବ୍ୟବହିତ ପରେ ହସ୍ତିନାଗତ ଶ୍ରୀକୃଷ୍ଣଙ୍କୁ ବିଦୁର ଏ ସବୁ କଥା କହନ୍ତେ ସେ ସ୍ୱକାୟ ଦୋର୍ଦ୍ୱୟରୁ ଛୁପ୍ପା ମାପ୍ପା ନାମକ ବୀରଦ୍ୱୟଙ୍କୁ ସୃଷ୍ଟି କରି ଉତ୍ଖାତ ମୃତ୍ତିକାକୂଟର ଭକ୍ଷଣାର୍ଥ ପ୍ରେରଣ କଲେ, ଇତ୍ୟାଦି । ବିବର ଖନକଙ୍କ ପରି ଜାତୁଷ ଗୃହନିର୍ମାତା ମଧ୍ୟ ସାରଳାଦାସଙ୍କ ମତରେ ଅପରିଚିତ ଓ ନବାଗତ ବ୍ୟକ୍ତି ଥିଲେ । ସତ୍ୟତଃ ଦୁର୍ଯ୍ୟୋଧନ ଆତ୍ମୀୟ ସଚିବ ପୁରୋଚନଙ୍କ କର୍ତ୍ତୃକ

---

† ଛାପାରେ ଆ: ପ: ୧୭୭ ପୃ: ଦେଖନ୍ତୁ ।

୧ ତାଂସ୍ତୁ ଦୃଷ୍ଟ୍ବା ସୁମନସଃ ପରିସମ୍ବତ୍ସରୋଷିତାନ୍—ଆଦିପର୍ବ, ୧୫୦ ଅ:

୨ ସେ ଯାହା ଯାହା କହିଅଛି, ସେ ସବୁ ଲେଖିଲେ ଗୋଟିଏ ସାଧାରଣ ସ୍ୱତନ୍ତ୍ର ପୁସ୍ତକ ହେବ ।

୩ ଏ ସ୍ଥଳରେ ଭଗବାନ୍ ଶ୍ରୀକୃଷ୍ଣଙ୍କ ଚରିତ୍ରହରଣ ବଡ଼ କଦାକାର କରିଅଛନ୍ତି । ଏହା ତାହାଙ୍କର ତାତ୍କାଳିକ କପୋଳକଳ୍ପିତ କିମ୍ବା ଆବାଲ୍ୟ-ଦୁଃସମାଜସଙ୍ଗପ୍ରାପ୍ତ ଦୁର୍ବୀକର ଫଳ, ତାହା କିଛି ନିର୍ଣ୍ଣୟ କରି ନ ପାରୁଁ ।

ଜାତୁଷ ଗୃହ ନିର୍ମାଣ କରାଇଥିଲେ । ଏ କହନ୍ତି କି, ଅଜ୍ଞାତକୁଳଶୀଳ ଅରଣ୍ୟରେ ବିଭ୍ରମ୍ୟମାଣ ୪ (ପୁରୋଚନ ନାମକ) ଏକ ବ୍ରାହ୍ମଣଦ୍ୱାରା ଜତୁଗୃହ ନିର୍ମାଣ କରାଇଥିଲେ ୫ ଏବଂ ଏକାଦଶ କି ଦ୍ୱାଦଶ ବର୍ଷ ଯାଏ ଆରବ୍ଧ ବିବର କାର୍ଯ୍ୟ ଲାଗିଥିବାରୁ ପାଣ୍ଡବମାନେ ତାବତ୍ ପର୍ଯ୍ୟନ୍ତ ଜତୁଗୃହରେ ରହିଲେ । ୬ ପାଣ୍ଡବମାନେ ଜତୁଗୃହରୁ ବହିର୍ଗତ ହୋଇ ଗଙ୍ଗାନଦୀକି ତରିବା ସମୟରେ କୁମ୍ଭୀରରୂପୀ ଅସୁର ପ୍ରତିରୋଧ କଲାରୁ ଯୁଧିଷ୍ଠିରାଦି ସୈକତଭୂମିରେ ଭୀମଙ୍କୁ ଦୈତ୍ୟର ଆହାର୍ଯ୍ୟରୂପେ ଗଙ୍ଗାସ୍ରୋତରେ ନିକ୍ଷେପ କଲେ । ଭୀମ ତାଙ୍କୁ ନିହତ କଲେ, ଇତ୍ୟାଦି । ପରେ ସେହି କୁମ୍ଭୀର ବକ ଦୈତ୍ୟର ଭ୍ରାତା ବୋଲି ମଧ୍ୟ କହି ଅଛନ୍ତି । ତାହାହେଲେ କିର୍ମୀର ଦୈତ୍ୟ ବକ ଦୈତ୍ୟର ଭ୍ରାତା, କୁମ୍ଭୀର ନୁହେ । ଏହାକୁ ବନରେ ଅନ୍ୟ ସମୟରେ ଭୀମ କେବଳ ନାଶ କରିବେ, ଏ କଥା ମୂଳରେ ବନପର୍ବରେ ଉକ୍ତ ଅଛି । ମାତ୍ର ଗଙ୍ଗାତିତୀର୍ଷୁ ପାଣ୍ଡବମାନଙ୍କର ଗଙ୍ଗୋତ୍ତରଣକାଳରେ କୁମ୍ଭୀର କଥା ମୂଳରେ ଆଦୌ ନାହିଁ । କିର୍ମୀରର ନାମକୁ ଠିକ୍ ମନେ ରଖି ନ ପାରି ଭ୍ରାନ୍ତିବଶରୁ କୁମ୍ଭୀର କରି ଏହି କାଳ୍ପନିକ କଥା ସବୁ ଲେଖି ଅଛନ୍ତି । ୭ ପୁଣି ଜତୁଗୃହରେ ମୃତ ବ୍ୟକ୍ତିପଞ୍ଚକର (ପୁରଞ୍ଜନ ବିନା) ପୂର୍ବ ଜନ୍ମ ବୃତ୍ତାନ୍ତ ଓ ତଦାନୀନ୍ତନ ଜନ୍ମର କାରଣ ସବୁ ବହୁତଗୁଡ଼ାଏ କଥା ଲେଖିଅଛନ୍ତି । ତାହାର ସଂକ୍ଷିପ୍ତ ସ୍ଥୂଳ ପରିଚୟ ଏହି ଯେ, ବଶିଷ୍ଠ ଧେନୁ ସକାଶେ ବିଶ୍ୱାମିତ୍ର ବହୁ ଯୁଦ୍ଧ କରି ପରାସ୍ତ ହେଲା ପରେ କଠୋର ତପସ୍ୟାଲବ୍ଧ ଅଷ୍ଟବସୁଙ୍କ କର୍ତ୍ତୃକ

---

୪ ସ ପୁରୋଚନମେକାନ୍ତମାନାୟ୍ୟ ଭରତର୍ଷଭ । ଗୃହୀତ୍ୱା ଦକ୍ଷିଣେ ପାଣୌ
ସଚିବଂ ବାକ୍ୟମବ୍ରବୀତ୍—ଇତ୍ୟାଦି—ଆ: ପ: ୧୪୬ ଅ: ୨ ଶ୍ଳୋ:

୫ କର୍ଣ୍ଣ ପଚାରିଲା ତୁମ୍ଭେ କାହାର ପଣ୍ଡାଏ ।
ବନେ ବୁଲୁଅଛ ତ ବନବାସୀ ପରାୟେ ॥ ଇତ୍ୟାଦି ॥ ଆ: ପ: ୧୬୫ ପୃ:

୬ ଗୁପତେ ବିବର ଖୋଳାଇଲି ଟେସକର,
ଏଗାର ବରଷେ ତାହା ହୋଇଲା ତିଆର ।
ଦ୍ୱାଦଶ ବରଷେ ମୋତେ ବହୁ ଧନ ଦେଇ
ବିଦୁର ଆଜ୍ଞାରେ ମୁଁ ବିବରେକ ଉଆଇ । ଆ: ପ: ୧୮୯ ପୃ:

୭ ଅହଂ ବକସ୍ୟ ବୈ ଭ୍ରାତା କିର୍ମୀର ଇତି ବିଶ୍ରୁତଃ ।
ବନେଽସ୍ମିନ୍ କାମ୍ୟକେ ଶୂନ୍ୟେ ନିବସାମି ଗତଜ୍ୱରଃ । ବନପର୍ବ । ୧୧ ଅ:

ପ୍ରୋକ୍ତ ଧେନୁର ଆନୟନ ସମୟରେ ବସୁଗଣ ବଶିଷ୍ଠ ବଶିଷ୍ଠଙ୍କ ଦ୍ୱାରା ଅଭିଶପ୍ତ ହେଲେ । ସେଥିରୁ ଜଣେ ପୁରଞ୍ଜନ । ପ୍ରଥମତଃ ପାଞ୍ଚଜଣ ଶାନ୍ତନବରୂପେ ଜନ୍ମି ଗଙ୍ଗାଙ୍କଦ୍ୱାରା ମୃତ ହୋଇଥିଲେ । ସଂପ୍ରତି ଶବର ସନ୍ତାନରୂପେ ଅନ୍ତର୍ଭୂତ ହୋଇ ବନରେ ରହିଥିଲେ, ଇତ୍ୟାଦି । ଏ ସବୁ ମୂଳରେ ନାହିଁ, ତଥାପି ନିତାନ୍ତ ଅଳୀକ ନୁହେ ବୋଲି ଅନୁମେୟ । ଭୀଷ୍ମାଦିଙ୍କ ପୂର୍ବଦେହ ଅଷ୍ଟବସୁଙ୍କ କଥା ମୂଳ ମହାଭାରତରେ ଅନ୍ୟଏ ଭିନ୍ନପ୍ରକାରତଃ ଉକ୍ତ ଅଛି । ଏହି କବି ତାହାର ଯଥାତଥ୍ୟ ଲେଖି ନ ପାରିଲେ ସୁଦ୍ଧା ତଦନୁକରଣ କରି ଅନ୍ୟଏ ଲଗାଇ ଅଛନ୍ତି । ତଥାଚ ଜତୁଗୃହ ଘଟନା ପରେ ଅମୌଳିକ ଆକସ୍ମିକ ପ୍ରକ୍ଷେପରୂପେ ଲେଖି ଅଛନ୍ତି କି, ଶ୍ରୀକୃଷ୍ଣ ଓ ବଳରାମଙ୍କର ଅନୁପସ୍ଥିତି ସମୟ ଦେଖି ଶତଧନ୍ୱ ଅନାଧୃଷ୍ଟ ଓ କୃତବର୍ମା ଶତ୍ରାଜିତଙ୍କୁ ନିହତ କରି ସ୍ୟମନ୍ତକମଣି ଘେନିଗଲେ, ଇତ୍ୟାଦି । ମାତ୍ର ଏହା ଭାଗବତୋକ୍ତ ଚରିତ ମୂଳ ଭାରତରେ ଅନୁକ୍ତ ଥିବାରୁ ସେ ନିଜେ ସ୍ୱୀକାରପୂର୍ବକ କହିଅଛନ୍ତି ଯେ, ଏହି ଉପପୃଷ୍ଟିକ ଏ ସ୍ଥଳରେ ପ୍ରସ୍ତାବାନୁସାରେ ମାତ୍ର ଲେଖିଲି । * ଏହାପରେ ଘୋର ବିପଦ୍ରମାକୁଳ କାଳକଳ୍ପ ଜତୁଗୃହରୁ ଦୈବବଳରେ ସମୁତ୍ତୀର୍ଣ୍ଣ ପାଣ୍ଡବମାନେ ବନରେ ଯାଉଅଛନ୍ତି, ଏମନ୍ତ ସମୟରେ ମାତାଙ୍କଦ୍ୱାରା ସମାଦିଷ୍ଟ ଭୀମ ଜଳାହରଣାର୍ଥ ଗଲେ । ଜଳପାତ୍ର ହସ୍ତରେ ପ୍ରତ୍ୟାବୃତ୍ତ ହୋଇ ଦେଖିଲେ ଯେ, ଏମାନେ ନିତାନ୍ତ କ୍ଳାନ୍ତବଶରୁ ଭୂତଳରେ ଶୟନ କରି ଅଛନ୍ତି । ଏହା ଦେଖି ପୂର୍ବ ଦୁଃଖ ସ୍ମରଣାନୁପାତ ଅନୁଶୋଚନାସନ୍ତପ୍ତ ମନରେ ଜାଗରଣ ପର୍ଯ୍ୟନ୍ତ ଅପେକ୍ଷା କରି ବସିଲେ । କିନ୍ତୁ ସାରଳାଦାସ କହନ୍ତି, ଭୀମ ଯୁଧିଷ୍ଠିରାଦେଶରେ ଜଳାର୍ଥ ପ୍ରସ୍ଥାନ କରି ନଦୀତୀରସ୍ଥ ମଧୁବନରୁ ଫଳାଦି ଭୋଜନପୂର୍ବକ ସେଠାରେ ସୁଖସୁପ୍ତ ହେଲେ । ତଦା କୁମ୍ଭୀର ଦୈତ୍ୟର ଭ୍ରାତା ସେ ବନର ଅଧିକାରୀ କନ୍ଦର ଦୈତ୍ୟ ରୋଷକଷାୟିତ ନେତ୍ରରେ ଭୀମ ସହ ଯୁଦ୍ଧ କଲା । ଭୀମ ତାକୁ ବଧ କରି ଜଳ ଓ ଫଳଭାର ଧରି ଆସିଲେ, ଇତ୍ୟାଦି । ମୂଳରେ କୁମ୍ଭୀର ଓ କନ୍ଦର ଦୈତ୍ୟର କଥା ନାହିଁ ଏବଂ ମୂଳଗ୍ରନ୍ଥୋକ୍ତ ଯୁଧିଷ୍ଠିରାଦିଙ୍କର ତାତ୍କାଳିକ ଦୁରବସ୍ଥା ଦର୍ଶନଜନିତ ଭୀମଙ୍କ ଅନୁଶୋଚନା ସାରଳାଦାସଙ୍କ ଭାରତରେ ଏ ସ୍ଥଳରେ ନାହିଁ; ମାତ୍ର ମୂଳରେ ଅନୁକ୍ତ ଆହୁରି ଅନେକଗୁଡ଼ିଏ କଥା ଲେଖା ଅଛି । ନଦୀ ଓ ପର୍ବତମାନଙ୍କର ନାମ କଳ୍ପନା

---

* କହନ୍ତି ଅଗସ୍ତି ଶୁଣ ମନୁ ନରନାଥ
ପ୍ରସ୍ତାବବାକ୍ୟେ କହିଲି ଶ୍ରୀମହାଭାରତ । ଆ: ପ:

କାଳରେ ସୃଷ୍ଟି ହୋଇଅଛି । ପରନ୍ତୁ ତାହାର କେତେକ ଦିନ ପରେ ପୂର୍ବବତ୍ ଯୁଧିଷ୍ଠିରଙ୍କ ପ୍ରସୁପ୍ତ ଥିବାର ଦେଖି ଭୀମଙ୍କର ପୂର୍ବୋକ୍ତ ପ୍ରକାର ଅନୁଶୋଚନା ଲେଖି ଅଛନ୍ତି । ଯାହାହେଉ ସମୟ ଓ ସ୍ଥାନର ବୈଷମ୍ୟ ରଖି ସ୍ୱଛା ମୂଳ ଗ୍ରନ୍ଥର ଏହି ଘଟନାଟି ଦେଇ ଅଛନ୍ତି । ସାରଳାଦାସ କବି ମୂଳ ଶୁଶ୍ରୂଷାଜନିତ ଜ୍ଞାନ-ବଳରେ କେତେକେ ସତ୍ୟମୂଳକ ରାଜମାର୍ଗରେ ଯାଇ ଯାଇ ମଧ୍ୟେ ମଧ୍ୟେ ଭ୍ରାନ୍ତଧାରଣାବଶତଃ ଏତାଦୃଶ୍ୟ ବିମାର୍ଗରେ ମଧ୍ୟ ଚାଲିଯାଇ ଅଛନ୍ତି । ଅପିଚ ହିଡ଼ମ୍ବାସୁରବଧ ସ୍ଥଳରେ କଳ୍ପିତ ନାମାଦି ସହ ତଦୀୟ ଭଗିନୀ ହିଡ଼ମ୍ବା ମୁଖରେ ତାହାର ପୂର୍ବ ବଂଶାନୁକ୍ରମାଦି ଅନେକ ଅମୂଳକ ୧ କାଳ୍ପନିକ କଥା ପ୍ରକାଶ କଲାପରେ କହିଅଛନ୍ତି କି, ଭୀମସେନ ହିଡ଼ମ୍ବନାଶପୂର୍ବକ ହିଡମ୍ବାଙ୍କି ବିବାହ ହେଲା ଉତ୍ତାରୁ ପାଣ୍ଡବମାନେ ସେହି ସ୍ଥଳରେ ସାତ ବର୍ଷ ଅବସ୍ଥାନ କଲେ ୨ । କିନ୍ତୁ ମୂଳରେ ଉକ୍ତ ଅଛି, ହିଡମ୍ବ ନାଶର ଅବ୍ୟବହିତ ପରେ ହିଡ଼ମ୍ବା ସହିତ ସମସ୍ତେ ସେଠାରୁ ପ୍ରସ୍ଥାନ କଲେ । ପରେ ହୈଡ଼ମ୍ବେୟ ଘଟୋତ୍କଚ ଜନ୍ମିଲେ ୩ । ପାଠକେ ! ଦେଖନ୍ତୁ ଯେ, ପ୍ରଥମତଃ ପାଣ୍ଡବମାନେ ଜତୁଗୃହରୁ ନିର୍ଗତ ହେବା ସମୟରେ ସାରଳାଦାସଙ୍କ ମତରେ କିଦୁର କହିଥିଲେ କି—

> "ଯେମନ୍ତ ଭାବୁରେ ନ ଜାଣନ୍ତି ଆନ ଜଣେ ।
> ବରଷେ ତେର ଦିନ ଯାଅ ଗହନ ବନେ ॥" ଆ: ପ: ୧୯୦ ପୃ:

---

୧ ମୂଳ ଗ୍ରନ୍ଥର ସ୍ଥାନାନ୍ତରରେ ଲେଖାଅଛି, ହିଡମ୍ବ, ବକ ଓ କିର୍ମୀର ଦୈତ୍ୟର ସଖା ଥିଲା ।

> ଅନେନ ହି ମମ ଭ୍ରାତା ବକୋ ବିନିହତଃ ପ୍ରିୟଃ ।
> ବେତ୍ରକୀୟ ବନେ ରାଜନ୍ ବ୍ରାହ୍ମଣ ଛଦ୍ମରୂପିଣା ।
> ହିଡ଼ମ୍ବଶ୍ଚ ସଖା ମହ୍ୟଂ ଦୟିତୋ ବନଗୋଚରଃ ।
> ହତୋ ଦୁରାତ୍ମନାନେନ ସ୍ୱସା ଚାସ୍ୟ ହୃତା ପୁରା । ବନପର୍ବ ୧୧ ଅ:

୨ ଜଳଜନ୍ତୁକ ପାଇଲେ ହିଡ଼ମ୍ବିକ ଭବନସ୍ତ ।
ମହାସୁଖେ ରହିଲେ ସାତ ବର୍ଷ ପର୍ଯ୍ୟନ୍ତ ॥

୩ ମୂଳର ଚତୁଃପଞ୍ଚାଶଦଧିକଶତତମାଧ୍ୟାୟ ଚତୁସ୍ତ୍ରିଂଶ ଓ ପଞ୍ଚତ୍ରିଂଶ ଶ୍ଳୋକ ଏବଂ ତତ୍ପର ଅଧ୍ୟାୟ ଦେଖନ୍ତୁ ।

ଆଦୌ ବର୍ଷେ ଠେର ଦିନ ସ୍ଥିର କରି ଏ ସ୍ଥଳରେ ସାତ ବର୍ଷ କହିବା ଅସଙ୍ଗତ । କିନ୍ତୁ ଏହାକୁ କବି ନିଜେ ପ୍ରମାଦବଶତଃ ଲେଖିଯାଇ ଅଛନ୍ତି, ଅଥବା ଦୁର୍ମେଧ ଲେଖକଙ୍କ ଅତ୍ୟାଗ୍ରହରୁ ଏହା ଘଟିଅଛି, ତାହା ସ୍ଥିର କରିବାକୁ କୌଣସି ଉପାୟ ନାହିଁ ।

(୮) ଅତଃପର ଦ୍ରୁପଦରାଜ ସ୍ୱତପସ୍ୟାରେ ସନ୍ତୁଷ୍ଟ ଆଶୁତୋଷ ଶିବଙ୍କ ଠାରୁ ବରପ୍ରାପ୍ତବର ହୋଇ ପୁତ୍ରେଷ୍ଟି ଯାଗ କଲାରୁ ଶିଖଣ୍ଡୀ, ଧୃଷ୍ଟଦ୍ୟୁମ୍ନ ଓ ଦ୍ରୌପଦୀ ଦେଖା ଯଜ୍ଞରୁ ସମୁତ୍ପନ୍ନ ହେବା, ସିନ୍ଧୁ ସୌବୀରରାଜ ଜୟଦ୍ରଥ ଦୁଃଶୀଳାଙ୍କୁ ବିବାହ ହେବା ଏବଂ ଶିଖଣ୍ଡୀ ମଧୂମତୀ କନ୍ୟାକୁ ବିବାହ ହେଲା ପରେ ସେହି କନ୍ୟା ଶିଖଣ୍ଡୀଙ୍କୁ କ୍ଳୀବ ଜାଣି ଆତ୍ମହତ୍ୟା ସ୍ଥିର କରିବା, ମଧୂମତୀଙ୍କ ପିତା ଶିଖଣ୍ଡୀଙ୍କୁ କାରାଗାରରେ ଅଭିଯାନ କରିବା, ଉପ୍ସବଳ୍କବା ଦ୍ରୁପଦରାଣୀ ଶିଖଣ୍ଡୀ ସହ ଗନ୍ଧମାର୍ଦ୍ଦନକୁ ପଳାୟନ କରିବା, ତତ୍ରତ୍ୟ ଭୁଲାକର୍ଣ୍ଣ (ସ୍ଥୂଣାକର୍ଣ୍ଣ) ନାମକଂ ଗନ୍ଧର୍ବଙ୍କ ଠାରୁ ଶିଖଣ୍ଡୀ ବିନିମୟକ୍ରମରେ ପୁଂସ୍ତ୍ୱ ପାଇବା ଏବଂ ଧୃଷ୍ଟଦ୍ୟୁମ୍ନଙ୍କ ବିବାହ ଇତ୍ୟାଦି କଥା ୨୨୬ ପୃଷ୍ଠା ଠାରୁ ୨୪୦ ପୃଷ୍ଠା ଯାଏ ଲେଖି ଅଛନ୍ତି । ଏ ସବୁ ମୂଳ ଗ୍ରନ୍ଥରେ ଏ ସ୍ଥଳରେ ନାହିଁ ସତ୍ୟ, କିନ୍ତୁ ଆଦିପର୍ବାନ୍ତର୍ଗତ ଚୈତ୍ରରଥ ପର୍ବରେ ୧୬୭ ଅଧ୍ୟାୟରେ ଧୃଷ୍ଟଦ୍ୟୁମ୍ନ ଓ ଦ୍ରୌପଦୀଙ୍କ ସମୁତ୍ପତ୍ତି ବିଷୟ ଉକ୍ତ ଅଛି । ଜୟଦ୍ରଥଙ୍କ ବୈବାହିକ ପ୍ରକ୍ରିୟା ଆମୂଳାନ୍ତ ଉକ୍ତ ନ ଥିଲେ ସୁଦ୍ଧା ରାଜଭୂତରୂପେ ସୂଚିତ ହୋଇଅଛି । ଶିଖଣ୍ଡୀଙ୍କ ଯାବତୀୟ କଥା ତ ଉଦ୍‌ଯୋଗ ପର୍ବର ଅମ୍ବୋପାଖ୍ୟାନରେ ଉକ୍ତ ଥିବାର କହିଅଛୁଁ, ମତିମାନ୍ ସାରଳାଦାସ କବି ମୂଳରେ ବହୁ ବ୍ୟବଧାନାନ୍ତରିତ ଦୂରରେ ନିହିତ ଚରିତମାନ ସମ୍ୟକ ମନନ କରି ପୂର୍ବାପର ଚରିତର ସନ୍ଦର୍ଭାନୁ-ମତେ ଯେଉଁ ସ୍ଥାନରେ ଯାହା କହିଲେ ପାଠକ ଓ ଶ୍ରୋତୃଗଣଙ୍କର ଉପଲବ୍ଧି ସୁଗମ ହେବ ଅପିଚ କଥା ସଙ୍ଗତ ହୋଇ ଏକତ୍ର ରହିବ, ସେପରି ସୁଚାରୁରେ

---

୧ ଏଠାରେ ପାଠକଙ୍କୁ ଜଣାଇ ଦେବା ଉଚିତ ଯେ, ଶିଖଣ୍ଡୀ ଯାହାଙ୍କଠାରୁ ପୁଂସ୍ତ୍ୱ ପ୍ରାପ୍ତ ହେଲେ, ତାହାଙ୍କ ନାମ ସ୍ଥୂଣାକର୍ଣ୍ଣ ବୋଲି ମୂଳରେ ଲେଖା ଅଛି । ସାରଳାଦାସଙ୍କ ଭାରତରେ ଭୁଲାକର୍ଣ୍ଣ ହୋଇଅଛି । ବୋଧହୁଏ, ଆଦର୍ଶ ଲେଖକ ସ୍ଥୂଣାକୁ ଭୁଲା କରି ଦେଇ ଅଛନ୍ତି, କବି ଏପରି ଲେଖି ନ ଥିବେ ।

ସ୍ଥାନେ ସ୍ଥାନେ ସ୍ୱକୀୟ କଳ୍ପନାରେ ବିସ୍ତୃତ କରି ଲେଖିଅଛନ୍ତି । ଏହା ସାଧାରଣ ବୁଦ୍ଧି ବିଶିଷ୍ଟର କାର୍ଯ୍ୟ ନୁହେ ।

(୯) ଦୁଃସହଦୁଃଖଧ୍ୱସ୍ତଚିତ୍ତହୃଦୟ ପ୍ରଚ୍ଛନ୍ନବେଶ ସତ୍ୟସନ୍ଧ ପାଣ୍ଡବମାନେ ଏକଚକ୍ରା ପୁରକୁ ପ୍ରସ୍ଥାନ କରିବା ପୂର୍ବରୁ ଓଡ୍ଡାଦି ଶିବପୁରକୁ ଯାଇଥିଲେ ବୋଲି ତତ୍‌ସଂକ୍ରାନ୍ତ କଳ୍ପିତ ନାମଧାମାଦି ସହ ମୂଳରେ ଅନୁକ୍ତ ଅନେକଗୁଡ଼ିଏ କଥା ମିଶାଇ ଅଛନ୍ତି । ୧ ପୁଣି କହି ଅଛନ୍ତି କି, ସେହି ଓଡ୍ଡାଦି ଶିବପୁରରେ କୁନ୍ତୀ ଦ୍ୱିତୀୟ ଭୀମସେନଙ୍କୁ ରଖି ୨ ଭ୍ରାତୃବିଶିଷ୍ଟମହାମ୍ୟ ଧାର୍ମିକବର ଯୁଧିଷ୍ଠିର ଗୌତମୀ ତୀର୍ଥକୁ ଗଲେ । ୩ ଇତ୍ୟବସରରେ ପ୍ରୋକ୍ତ ନଗରରେ ଚଣ୍ଡପ୍ରକୃତିକ ଚଣ୍ଡାଳ ଓ ବ୍ରାହ୍ମଣମାନଙ୍କର ଅସ୍ପୃଶ୍ୟାଜନିତ କଳହକଲ୍ଲୋଳ କୋଳାହଳପୁରଃସର ଯୁଦ୍ଧସଂମର୍ଦ୍ଦ ଉପସ୍ଥିତ ହେଲା । ଅତିମାନୁଷ ଭୀମ ବ୍ରାହ୍ମଣମାନଙ୍କ ପ୍ରତି ନିଷ୍ଠୁରକର୍ମାନୁକର୍ମା ପ୍ରକାଶପୂର୍ବକ ବୈଶ୍ୱାନରକଳ୍ପ କ୍ରୋଧପ୍ରଜ୍ୱଳିତ ହୋଇ ଦୈତ୍ୟସ୍ୱଭାବ ସମଗ୍ର ଚଣ୍ଡାଳମାନଙ୍କୁ ନିହତ କରି ଦ୍ୱିଜବର୍ଯ୍ୟବର୍ଗପ୍ରଦତ୍ତ କାଳବର ନାମକ ଉପାଧି ପ୍ରାପ୍ତିପୂର୍ବକ ସେଠାରେ ରାଜାରୂପେ ଅଭିଷିକ୍ତ ହେଲେ । ୧ ପାଞ୍ଚ ମାସ ୨ ପରେ ଯୁଧିଷ୍ଠିର ଅର୍ଜୁନାଦି ସହ ପ୍ରତ୍ୟାବୃତ୍ତ ହେଲେ । ଦେଖିଲେ ଯେ, ସର୍ବୈଶ୍ୱର୍ଯ୍ୟାପନୋଦିତସୁଜ୍ଞାନବୈଭବ ଭୀମସେନ ମାତା କୁନ୍ତୀଦେବୀଙ୍କି ଏକାକିନୀ କରିଦେଇ ଅଛନ୍ତି । ତଦବଗମନରେ ନିତାନ୍ତ ଦୁଃଖିତ ହୋଇ ଭ୍ରାତୃବୈହୃଦ୍ୟଶଙ୍କାକଳଙ୍କ-

---

୧ କୁତୂହଳେ ଭିକ୍ଷାପାତ୍ର ଘେନି ନିଜ କରେ ।
ନଗ୍ର ପରିମଳ ଯେ ଓଡ୍ଡାଦି ଶିବପୁରେ ॥

୨ ଭୀମଙ୍କୁ ତିଆରି ପାଣ୍ଡୁକୁମାର ତନୟେ ।
ଚଳନ୍ତି ନୃପ ଭାଇ ଗୌତମୀ ତୀର୍ଥଯାଏ ॥ ଗ୍ରୁ: ୨୪୬ ପୃ:

୩ ମୂଳରେ ଉକ୍ତ ଏକଚକ୍ରାପୁରରେ ମାତାଙ୍କଠାରେ ଭୀମଙ୍କୁ ରଖି ଯୁଧିଷ୍ଠିରାଦି ଚତୁଷ୍ଟୟ ଭିକ୍ଷାର୍ଥ ଯିବା କଥା ବୋଧହୁଏ ଏ କବି ଠିକ୍ ମନେ ରଖି ନ ପାରି ଗୌତମୀ ଯାତ୍ରା କଥା କଳ୍ପନା କରିଦେଇ ଅଛନ୍ତି ।

୧ ସେ ଦିନରୁ ଭୀମ ନାମ ହେଲା କାଳବର – ଗ୍ରୁ: ୨୪୯ ପୃ:

୨ ଯୁଧିଷ୍ଠି ବୋଇଲେ ଆମ୍ଭେ ଗଲୁ ପାଞ୍ଚ ମାସ ।
ଏ ପାଞ୍ଚ ମାସେ ଭ୍ୟାଇଲୁ ଏସନେ ଭବିଷ୍ୟ ॥ ୨୫୦ ପୃ:

କଟ୍‌ ରତ ହୃଦୟରେ ମାତାଙ୍କ ସଙ୍ଗରେ ଧଉ ଭୀମଙ୍କ ବଭୃଷାରେ ଗଲେ । ରାଜୈଶ୍ୱର୍ଯ୍ୟବମୋହିତ ଭୀମ ଯୁଧିଷ୍ଠିରଙ୍କୁ ଦେଖା ଦେଲେ ନାହିଁ । ଅର୍ଜୁନାଦ ସହ ଯୁଧିଷ୍ଠିର "ସର୍ବଂକଷା ଭଗବତୀ ଭବତବ୍ୟତୈବ" ଏହା ଭାବ ଅମିତ ଦୁଃଖରେ ପୁନର୍ବାର ବନକୁ ଯାଉଅଛନ୍ତି, ମାର୍ଗ ମଧ୍ୟରେ କାଳବରନାମଧାରୀ ଭୀମନୃପତଙ୍କ ପୁରୋହିତ ସୁମନ୍ତଙ୍କୁ ଦେଖିଲେ; ନୃପସମ୍ପତ୍ତିମୋମ୍ଭ୍ୟମାନ ଭୀମଙ୍କ ନଷ୍ଟୁରାଚରଣ ତାହାଙ୍କୁ ଜଣାଇଲେ । ସେ ଯାଇ ଭୀମଙ୍କୁ ଭର୍ତ୍ସନା କଲେ । ତେତେବେଳେ ସୁଗୃହୀତଜ୍ଞାନବୈଭବ ଭୀମସେନ କହିଲେ କ, 'ମୁଁ ପ୍ରଥମେ ହସ୍ତିନାରାଷ୍ଟ୍ରରୁ ଧାର୍ତ୍ତରାଷ୍ଟ୍ରମାନଙ୍କୁ କାର୍ତ୍ତାନ୍ତରାଷ୍ଟ୍ରରେ ନହତ କର ଆସିବ, ପରେ ଯୁଧିଷ୍ଠିରଙ୍କ ପାଦବନ୍ଦନାର୍ଥ ଯିବ ।' ସେ ସମୟରେ ସୁମନ୍ତ କହିଲେ, ବର୍ତ୍ତମାନ କୌରବ-ମାନେ ହସ୍ତିନାରେ ନାହାନ୍ତି, ଦ୍ରୌପଦୀଙ୍କ ସ୍ୱୟମ୍ବରୋପଲକ୍ଷରେ ଦ୍ରୁପଦ ରାଜ୍ୟକୁ ଯାଇ ଅଛନ୍ତି । ଭୀମ ଏ ସବୁ ଶୁଣି ସ୍ୱବାହୁପରାକ୍ରମୋପାର୍ଜିତ ପ୍ରୋକ୍ତ ରାଜ୍ୟଟି ବିଷ୍ଟୁକର ପଣ୍ଡାଙ୍କୁ ପ୍ରଦାନ କର ଯୁଧିଷ୍ଠିରଙ୍କଠାକୁ ପ୍ରସ୍ଥାନ କଲେ, ଇତ୍ୟାଦ ।

ଏଥିରୁ ଅନେକ କଥା ମୂଳ ଭାରତରେ ନାହିଁ, କନ୍ତୁ ହିଡ଼ମ୍ବ ଦୈତ୍ୟନାଶ ପରେ ବ୍ୟାସଦେବ ଆସି ପାଣ୍ଡବମାନଙ୍କୁ ଏକଚକ୍ରାପୁରରେ ରଖାଇଲେ । ସେଠାରେ କେତେକ ଦନ ପରେ ଭୀମ ଗୁପ୍ତଭାବରେ ଭକ୍ଷ୍ୟ ପେୟାଦ୍ଧ ଧର ଯାଇ ନରଖାଦକ ବକାସୁରକୁ ନହତ କର ଅନ୍ୟାନ୍ୟ ନଗରବାସୀମାନଙ୍କ ଅଜ୍ଞାତ-ସାରରେ ପ୍ରତ୍ୟାବୃତ୍ତ ହେଲେ ବୋଲି ଉକ୍ତ ଅଛି । ସାରଳାଦାସ କବ ମଧ୍ୟ ବକକୁ ଗୁପ୍ତଭାବରେ ନାଶିବାର ଲେଖି ଅଛନ୍ତି । ୧ ମାତ୍ର ତତଃପର ସମସ୍ତଙ୍କ ପ୍ରତ୍ୟକ୍ଷରେ ଭୀମ ବକାସୁରଠାକୁ ପ୍ରସ୍ଥାନ କରବା, ଭୀମଙ୍କୁ ବପଜ୍ଜନକ କାର୍ଯ୍ୟରେ ନଯୋଗିବାରୁ ନଗରବାସୀମାନେ ୨ କୁନ୍ତୀଙ୍କ ନନ୍ଦା କରବା, ଅଥଚ ଯେଉଁ ରାତ୍ରରେ ଭୀମ ବକାସୁରକୁ ଘତାସୁ କଲେ, ସେହି ରାତ୍ରିରେ ୩ କେବଳ ପାଣ୍ଡବମାନେ ଅଲକ୍ଷିତ ଭାବରେ ଅରଣ୍ୟମାର୍ଗରେ ପଳାୟନ କରବା ଇତ୍ୟାଦ ବଷୟକୁ ପୂର୍ବାପର ସମ୍ବନ୍ଧଶୂନ୍ୟ କର କଞ୍ଚିତ୍ ଅସଙ୍ଗତ ଭାବରେ ଲେଖି ଅଛନ୍ତି ।

---

୧ ଯୁଧିଷ୍ଠିର କହିଲେ କର୍ମ୍ମେ ଗୁପତରେ ମାର । ଆ: ପ:

୨ ବ୍ୟାସଙ୍କ ମତରେ ଭୀମଙ୍କର ଏହି ପ୍ରୟାଣ ଏକଚକ୍ରବାସୀ ବ୍ରାହ୍ମଣ ପରବାର ବନା ନଗରର ଅନ୍ୟ କେହି ଜାଣି ପାର ନାହାନ୍ତି ।

୩ ମାତ୍ର ମୂଳରେ ଆହୁରି କେତେକ ଦନ ପାଣ୍ଡବମାନେ ସେହି ବ୍ରାହ୍ମଣଙ୍କ ଗୃହରେ ବାସ କର ଥିବାର ଉକ୍ତ ଅଛି ।

ଏକଚକ୍ରାପୁରରୁ ବହିର୍ଗତ ପାଣ୍ଡବମାନେ ଦ୍ରୁପଦ ରାଜ୍ୟ ଆଡ଼କୁ ପ୍ରସ୍ଥାନ କଲା ସମୟରେ ସୋମାଶ୍ରୟଣ ନାମକ ଗଙ୍ଗାତୀରବର୍ତ୍ତୀ ତୀର୍ଥରେ ଅର୍ଜୁନ ଅଙ୍ଗାରପର୍ଣ୍ଣ ନାମକ ଗନ୍ଧର୍ବଙ୍କୁ ଯୁଦ୍ଧରେ ପରାସ୍ତ କଲା ପରେ ପ୍ରୋକ୍ତ ଗନ୍ଧର୍ବ ନିଜର ଗାନ୍ଧର୍ବୀ ମାୟାବିଦ୍ୟା ଓ ଗନ୍ଧର୍ବଭୂମିଜାତ ଅଶ୍ୱବେଗ ଅଶ୍ୱଙ୍କୁ ଗ୍ରହଣ କରିବାକୁ ଅର୍ଜୁନଙ୍କୁ କୋଳବାରୁ ସେ ତହିଁରେ ଅସ୍ୱୀକୃତ ହୋଇ ବିନିମୟ-ସୂତ୍ରରେ ସ୍ୱକୀୟ ଆଗ୍ନେୟାସ୍ତ୍ର ପ୍ରଦାନପୂର୍ବକ କେବଳ ଗାନ୍ଧର୍ବାସ୍ତ୍ର ମାତ୍ର ଗ୍ରହଣ କରିବା, ପାଣ୍ଡବୀୟ ପୂର୍ବବଂଶଧର ସମ୍ବରଣ ନାମକ ରାଜା ସୂର୍ଯ୍ୟସୁତା ତପତୀଙ୍କର ପାଣିଗ୍ରାହୀ ଥିବାରୁ ପାଣ୍ଡବମାନେ ତାପତ୍ୟ ଅଟନ୍ତି ବୋଲି ସେହି ଐତିହାସିକ ବିବରଣକୁ ଗନ୍ଧର୍ବ ମୁଖରେ ସମଗ୍ରରୂପେ ପ୍ରକାଶ କରିବା, ବିଶ୍ୱାମିତ୍ର ବଶିଷ୍ଠ କାମଧେନୁ ପ୍ରାପ୍ତି ଆଶାରେ ଯାବତୀୟ କ୍ଷାତ୍ରପ୍ରଭାବ ପ୍ରକାଶ କରି ସୁଦ୍ଧା ସର୍ବାଂଶରେ ଦୁର୍ଦମ୍ୟ ଦୁର୍ନିବାର ବ୍ରାହ୍ମପ୍ରଭାବରେ ପରାସ୍ତ ହୋଇ ରାଜ୍ୟତ୍ୟାଗପୂର୍ବକ କଠୋର ତପସ୍ୟା ବଳରେ ବ୍ରହ୍ମର୍ଷି ପାଇବା, ବଶିଷ୍ଠ ପୁତ୍ର ଶକ୍ତି କଲ୍ମାଷପାଦ ରାଜାଙ୍କୁ ଅଭିଶାପରେ ରାକ୍ଷସ କରିବା, ଉକ୍ତ ପିଶିତାଶନ ରାକ୍ଷସୀଭୂତ ରାଜା ବିଶ୍ୱାମିତ୍ରଙ୍କ ମନ୍ତ୍ରଣାରେ ବଶୀଶ ବଶିଷ୍ଠଙ୍କ ଶକ୍ତି ପ୍ରଭୃତି ଶତ ପୁତ୍ରମାନଙ୍କୁ ରାକ୍ଷସଭକ୍ଷରୁ ମୁକ୍ତ କରିବା ପ୍ରଭୃତି କଥା ଏବଂ ଭୃଗୁବଂଶୀୟ ଚରିତ, ପରାଶର ମୁନି ରାକ୍ଷସବଧଧ୍ୱଂସ ସୂତ୍ର କରିବା ବିଷୟ ଏବଂ ପାଣ୍ଡବମାନେ ଧୌମ୍ୟଙ୍କୁ ପୁରୋହିତରୂପେ ସ୍ୱୀକାର କରିବା ପ୍ରଭୃତି ବିଷୟମାନ ଚୈତ୍ରରଥ ନାମକ ଉପପର୍ବରେ ୧୬୫ ଅଧ୍ୟାୟ ପ୍ରାରମ୍ଭରୁ ୧୮୩ ଅଧ୍ୟାୟ ଶେଷଯାଏ ମୂଳରେ ପ୍ରତିପାଦିତ ଅଛି । ସାରଳାଦାସ କବି ଏ ସବୁ ସ୍ଥଳରେ ସମ୍ପୂର୍ଣ୍ଣତଃ ଲେଖି ନାହାନ୍ତି ସତ୍ୟ, ମାତ୍ର କେତେଗୁଡ଼ିକ ବିଷୟକୁ ଅନ୍ୟାନ୍ୟ ସ୍ଥଳରେ ଅସ୍ଥାନସ୍ଥିତ ହେଲେ ସୁଦ୍ଧା ସଙ୍ଗତ ସନ୍ଦର୍ଭାନୁଗୁଣରେ ଯୋଗ କରିଦେଇ ଅଛନ୍ତି; ଅଥଚ ଏ ସ୍ଥଳରେ ଅଙ୍ଗାରପର୍ଣ୍ଣଙ୍କୁ ୧ ପରାସ୍ତ କରି ଅର୍ଜୁନ ଏକମାତ୍ର ଶର ପାଇବା ଆଉ ତପତୀଙ୍କି ସମ୍ବରଣ ନୃପତି ବିବାହ ହେବାର ବୃତ୍ତାନ୍ତ ଅତି ସଂକ୍ଷେପରେ ଲେଖି ଅଛନ୍ତି । ୨

(୧୦) ମୂଳରେ ଉକ୍ତ ଅଛି କି, ଦ୍ରୁପଦ ରାଜା ଆପଣାର ସମ୍ପ୍ରାପ୍ତବୟସ୍କା ଦୁହିତା ଦ୍ରୌପଦୀଙ୍କର ସ୍ୱୟମ୍ବରରେ ଗୋଟିଏ ସୁଦୃଢ଼ ଧନୁ ଏବଂ ଆକାଶନିହିତ

---

୧ ଅଙ୍ଗାରପର୍ଣ୍ଣ ପଦକୁ ଅଙ୍ଗାରପନ୍ନଗ କରିଦେଇ ଅଛନ୍ତି ।

୨ ସମ୍ବରଣ ନୃପତି ଏହି ନାମକୁ ଶମ୍ବୁରଣ ନୃପତି କରି ଲେଖି ଅଛନ୍ତି ।

କୃତ୍ରିମ ଯନ୍ତ୍ରୋପରେ ଗୋଟିଏ ଚଳ ଲକ୍ଷ୍ୟ ପ୍ରସ୍ତୁତ କରିଥିଲେ। ସାରଳାଦାସ କବି "ବୈଦ୍ୟାସ୍ୱ କୃତ୍ରିମ ଯନ୍ତ୍ର" ମୂଳରେ ଏହି କଥାଟିକ ମାତ୍ର ନେଇ ସ୍ୱୀୟ କଳ୍ପନାଶକ୍ତିର ବଳରେ ଲକ୍ଷ୍ୟଟିକ ସଙ୍ଗତରୂପେ ଭିନ୍ନ ପ୍ରକାର କରି ଅଛନ୍ତି। ୧

ସାରଳାଦାସ ମହାଶୟ ମୂଳ ମହାଭାରତରେ ପ୍ରଗାଢ଼ ଶୁଶ୍ରୂଷା ଦ୍ୱାରା ଘଟନାମାନଙ୍କର ସ୍ଥୂଳ ଘଟନାଂଶମାନ ଅବଗ୍ରହ ପ୍ରତିପତ୍ତିରେ ସ୍ୱୀୟ ସ୍ମୃତିକୋଷରେ ରଖି ଅସାମାନ୍ୟ କଳ୍ପନାଶକ୍ତି ଦ୍ୱାରା କେତେକ ଭିନ୍ନ ପ୍ରକାର କରିଥିଲେହେଁ, ଅନେକ ସ୍ଥଳରେ ଅତି ସୂକ୍ଷ୍ମାଂଶ ଘଟନାମାନଙ୍କୁ ମଧ୍ୟ ଯଥାଯଥ ଲେଖି ଅଛନ୍ତି। ଦ୍ରୌପଦୀ—ସ୍ୱୟମ୍ବରେ ଦ୍ରୁପଦରାଜ୍ୟସମାଗତ ଅଜ୍ଞାତ-

---

୧ ରାଧାଚକ୍ର ବୋଲଣ ସେ ସହସ୍ରେକ ଧାର।
ଅନୁକ୍ରମେ ବୁଲେ କୁମ୍ଭକରଣ ଆକାର॥
ତହିଁ ପରେ ବସାଇଲେ ନେଇ ଏକ ମତ୍ସ୍ୟ।
ତଳେ ଧନୁ ଏକ ପକାଇଲେ ନବ ଲକ୍ଷ॥
ତାଳେ ଉତ୍ସର୍ଗ ସୁବର୍ଣ୍ଣ ପଟା ଏକ କଣ୍ଟା।
ତହିଁ ତଳେ ରଖାଇଲେ ତୀର୍ଥ ଜଳ ଗୋଟା॥ ଆ. ପ. ୨୭୬ ପୃ:

ଏବଂ

ରାଧାଚକ୍ର ବୁଲଇ ଯେ ସହସ୍ରେକ ଧାର।
କନକ ମତ୍ସ୍ୟ ଅଛଇ ତହିଁର ଉପର॥
କୁମ୍ଭକରଣ ପ୍ରାୟେ ବୁଲଇ ଅନୁକ୍ରମେ।
ତଳେ ଧନୁଏ ଅଛି ଲକ୍ଷେବଳ ଯୁକ୍ତେ॥
ରାଧାଚକ୍ର ବୁଲୁଅଛି ଶତେ ତାଳ ଉଚ୍ଚେ।
ତାଳେ ଉଚରେ ପଟାଏ ଅଛି ଯେ ସୁସଞ୍ଚେ॥
ଲକ୍ଷେବଳ ଧନୁ ଧରି ସେ ପଟାରେ ଉଠି।
ତହିଁ ତଳେ ଅଛି ତୀର୍ଥ ଜଳଘଟ ଗୋଟି॥
ତହିଁ ଦୃଷ୍ଟି ଦେଇ ଉପରକୁ କରି ମୁଷ୍ଟି।
ଚକ୍ର ଭେଦି ମାଛ ବାମ ଚକ୍ଷୁ ଯିବ ଫୁଟି॥
ଏହେନେକ ସ୍ୱରୂପେ ଯେହୁଁ ଲଖ ବନ୍ଧିବ।
ଏ ମୋହର ଦୁହିତା ଦ୍ରୌପଦୀକି ବରି ନେବ॥ ଆ. ପ. ୨୭୮ ପୃ:

ରୂପ ପାଣ୍ଡବମାନେ୧ ଏକ କୁମ୍ଭକାରଶାଳାରେ ବାସ କରିଥିଲେ ବୋଲି ମୂଳରେ ଲେଖା ଅଛି । ସାରଳାଦାସ ମହୋଦୟ ମଧ୍ୟ ଠିକ୍ ତାହାହିଁ ସମ୍ମତ କରି ଅଛନ୍ତି ।୨ ମୂଳରେ ଉକ୍ତ ଅଛି କି ଦ୍ରୌପଦୀ ସ୍ୱୟମ୍ବର ସମାଜ ଦୈନନ୍ଦିନ କ୍ରମଶଃ ପରିସମୃଦ୍ଧ ହୁଅନ୍ତେ ଷୋଳଦିନ ଯାଏ ମହୋତ୍ସବ ହେଲା । ଷୋଡ଼ଶ ଦିବସରେ ସୋତ୍ତରଚ୍ଛେଦା ଦ୍ରୌପଦୀ ସଭାକୁ ଆଗତା ହେଲେ ।୩ ସମାଲୋଚ୍ୟ ଭାରତପ୍ରଣେତା ମଧ୍ୟ ଶୁଶ୍ରୂଷିତ ସୂକ୍ଷ୍ମାଂଶକୁ ଖୁବ୍ ମନନ କରି ଠିକ୍ ସମୟ ନିର୍ଦ୍ଦେଶ କରି ଅଛନ୍ତି ।୪ ମାତ୍ର ମୂଳ ଭାରତରେ ପଞ୍ଚମ୍ବର ଦ୍ରୌପଦୀଙ୍କି ଧୃଷ୍ଟଦ୍ୟୁମ୍ନ ସମବେତ ରାଜାମାନଙ୍କର ପ୍ରାୟଶଃ ନାମପରିଚୟମାତ୍ର ଅବସ୍ତର ରୂପେ ଦେଇ ଅଛନ୍ତି । ଏ ସ୍ଥଳରେ ଆଦିମ ଉତ୍କଳ-ଭାରତକର୍ତ୍ତା ମୌଳିକ ଯଥାର୍ଥ ନାମମାନ ନ କହି କାଳ୍ପନିକ ନାମ ଧାମାଦି ସହିତ ଅତି ବିସ୍ତୃତରୂପେ କେଶିନୀନାମ୍ନୀ (ମୂ ଦ୍ରୁ ସୁଲ୍ମା) ସହଚରୀ ମୁଖରେ କୁହାଇ ଅଛନ୍ତି । ଲକ୍ଷ୍ୟଭେଦୋଦ୍ୟମ ସ୍ଥଳରେ ମଧ୍ୟ ମୂଳ ଅପେକ୍ଷା ଏତାଦୃଶ୍ୟକ୍ରମରେ ଅତିପଲ୍ଲବିତ କରି ଅନ୍ତନ୍ତି । ମୂଳରେ ଉକ୍ତ ଅଛି ଯେ, ଦ୍ରୌପଦୀଲିପ୍ସୁ ରାଜନ୍ୟବର୍ଗରୁ ଅମିତପରାକ୍ରମ କର୍ଣ୍ଣ ମାତ୍ର ସଂସ୍ଥାପିତ ଧନୁକୁ ସହସା ଉତ୍ତୋଳନ କରି ଲକ୍ଷ୍ୟଭେଦରେ ସମୁଦ୍ୟତ ହେଲେ । ଇତ୍ୟବସରେ ଦ୍ରୌପଦୀ କହିଲେ କି ସୂତପୁତ୍ର ଲକ୍ଷ୍ୟଭେଦ କଲେ ସୁଦ୍ଧା ଆମ୍ଭେ ବରିବୁ ନାହିଁ ।

---

୧ ତେ ତୁ ଦୃଷ୍ଟ୍ବା ପୁରଂ ତଚ୍ଚ ସ୍କନ୍ଧାବାରଂ ଚ ପାଣ୍ଡବାଃ
କୁମ୍ଭକାରସ୍ୟ ଶାଲାୟାଂ ନିବାସଂ ଚକ୍ରିରେ ତଦା । ଆ. ପ. ୧୮୭ ଅ:

୨ ନଗ୍ର ବାହାରେ ବାହାରେ ଗଲେ ରାତ୍ରିକାଳେ
ଶୁଭବେଳେ ପ୍ରବେଶିଲେ କୁମ୍ଭାଳଶାଳେ । ଆ. ପ. ୨୨୫ ପୃ:

୩ ବର୍ତ୍ତମାନେ ସମାଜେ ତୁ ରମଣୀୟେଽହ୍ନି ଷୋଡ଼ଶେ ।
ଆପ୍ଲୁତାଙ୍ଗୀ ସୁବସନା ସର୍ବାଭରଣଭୂଷିତା ॥
ମାଳାଂ ଚ ସମୁପାଦାୟ କାଞ୍ଚନୀଂ ସମଲଂକୃତାଂ ।
ଅବତୀର୍ଣ୍ଣା ତତୋରଙ୍ଗଂ ଦ୍ରୌପଦୀ ଭରତର୍ଷଭ ॥ ଆ. ପ. ୧୮୭ ଅ:

୪ ଅନେକ ଉତ୍ସବ ହୁଏ ଦ୍ରୁପଦ ଭୁବନେ ।
ରାଜା ସର୍ବେ ପ୍ରବେଶିଲେ ପଞ୍ଚଦଶ ଦିନେ ॥ ୨୨୨ ପୃ:

ଷୋହଳ ଦିନ ପର୍ଯ୍ୟନ୍ତ ହୋଇଲା ସ୍ୱୟମ୍ବର ।
ସମସ୍ତ ରାଜା ପରାସ୍ତ ହୋଇଲେ ଲୀଳର ॥ ୩୬୮ ପୃ:

କର୍ଣ୍ଣ ତାହା ଶୁଣି ରୋଷାମର୍ଷପରୀତାନ୍ତଃକରଣରେ ଆକର୍ଣ୍ଣାକୃଷ୍ଟ ଧନୁ ନିକ୍ଷେପପୂର୍ବକ ବାହାରି ଆସି ସୋତ୍ତରଚ୍ଛଦ ସୌବର୍ଣ୍ଣାସନରେ ଉପବେଶନ କଲେ ।[1] କିନ୍ତୁ ସମାଲୋଚମାନ୍ୟ ମହାଭାରତରେ କର୍ଣ୍ଣ ନିଶ୍ଚୟ ଲକ୍ଷ୍ୟଭେଦ କରି ପାରିବେ, ଏହା, ଜାଣିପାରି ଶ୍ରୀକୃଷ୍ଣ ସପତ୍ନାପ୍ରିୟଦର୍ଶନ ସୁହୃତ୍ପ୍ରିୟଦର୍ଶନ ଅକୁଣ୍ଠସତ୍ତ୍ୱ ସୁଦର୍ଶନାଭିଧ ସ୍ୱଚକ୍ରକୁ ଆତ୍ମେତରମାନଙ୍କର ଅଦୃଶ୍ୟଭାବରେ ଲକ୍ଷ୍ୟର ଅନ୍ତରାଳରେ ରଖିଲେ, କର୍ଣ୍ଣନିକ୍ଷିପ୍ତ ଶର ଚକ୍ରରେ ଆହତ ହୋଇ ନିପତିତ ହେଲା, ଇତ୍ୟାଦି ଉକ୍ତ ଅଛି । ଏ ସବୁ କଳ୍ପନାରେ ଅନ୍ୟଥା ହେଲେହେଁ ମୌଳିକସତ୍ତ୍ୱାନୁପ୍ରାଣିତ ହେବାରୁ ଅସଙ୍ଗତ ବା ଅଯୌକ୍ତିକ ହୋଇନାହିଁ । ପୁଣି ମୂଳ ଗ୍ରନ୍ଥରେ ଷଡ଼୍ବିଂଶତି ଶ୍ଳୋକାତ୍ମକ ଏକ ଅଧ୍ୟାୟରେ ମାତ୍ର ଅର୍ଜୁନଙ୍କର ଲକ୍ଷ୍ୟକଥା ଶେଷ ହୋଇଅଛି । ମାତ୍ର ସାରଳାଦାସ କବି ଏ ସ୍ଥଳରେ ଯାହା ଯାହା (ମୂଳରେ ଅନୁକ୍ତ ହେଲେହେଁ) କହିଲେ ପାଠକ ଓ ଶ୍ରୋତୃବର୍ଗଙ୍କର ଶୁଶ୍ରୂଷା ଉତ୍ତରୋତ୍ତର ବଳବତୀ ଓ ସୁଖକର ହେବ, ସେ ସବୁ ଟିକିଏ ବିସ୍ତୃତ କରି ଅଛନ୍ତି । ତାହାହିଁ ଅଦ୍ୟାବଧି ଉତ୍କଳରେ ସାଧାରଣ ସମାଜରେ ଅବିସ୍ମୃତାଭ୍ୟସ୍ତ ହୋଇ ରହିଅଛି । ପୁଣି ପ୍ରଥମବାର ଲକ୍ଷ୍ୟଭେଦରେ ଦୁରର୍ଥଦନୁରବଚନ-କନ୍ଥାଶତଗ୍ରନ୍ଥିଳହୃଦୟ ଦୁଷ୍ଟ ପ୍ରକୃତିକ ରାଜାମାନେ ଅହମିକାକଲ୍ଲୋଳକୋଳାହଳରେ ବୃଥା ଅଳୀକତାର ଉଦ୍‌ଘୋଷ କରିବାରୁ ଅର୍ଜୁନ ଦ୍ୱିତୀୟବାର ଲକ୍ଷ୍ୟଭେଦପୂର୍ବକ ରାଧାଚକ୍ରକୁ ଭୂପୃଷ୍ଠଶାୟୀ କରିବା କହି ଅଛନ୍ତି । ଏହା ଅମୌଳିକ ନୁହେ । ଲକ୍ଷ୍ୟଭେଦାନନ୍ତର ଯେତେ-ବେଳେ ରାଜାମାନେ ଯୁଯୁତ୍ସାରେ ଗୋଳମାଳ ଆରମ୍ଭ କଲେ, ତେତେବେଳେ ଯୁଧିଷ୍ଠିର ଯମଜ ଭ୍ରାତାଦ୍ୱୟଙ୍କ ସମଭିବ୍ୟାହାରରେ ବସାଗୃହକୁ ପ୍ରସ୍ଥାନ କଲେ । ସ୍ୱାୟମ୍ବରିକ ରଙ୍ଗରେ ଭୀମକର୍ମା ବୃକୋଦର ଓ ବାସବପ୍ରତିମ ଅର୍ଜୁନ ମାତ୍ର ରହିଥିଲେ ବୋଲି ମୂଳରେ ଲେଖାଅଛି ।[1] ମାତ୍ର ସାରଳାଦାସେ ଯୁଧିଷ୍ଠିରାଦି

---

୧ ଦୃଷ୍ଟ୍ୱା ତୁ ତଂ ଦ୍ରୌପଦୀବାକ୍ୟମୁଚ୍ଚୈର୍ଜଗାଦ ନାହଂ ବରୟାମି ସୂତଂ ।
ସାମର୍ଷହାସଂ ପ୍ରସମୀକ୍ଷ୍ୟ ସୂର୍ଯ୍ୟଂ ତତ୍ୟାଜ କର୍ଣ୍ଣଃ ସ୍ଫୁରିତଂ ଧନୁସ୍ତତ୍ ।
ଆ. ପ. ୧୯୦ ଅ:

୧ ତସ୍ମିଂସ୍ତୁ ଶବ୍ଦେ ମହତି ପ୍ରବୃଦ୍ଧେ ଯୁଧିଷ୍ଠିରୋ ଧର୍ମଭୃତାଂ ବରିଷ୍ଠଃ ।
ଆବାସମେବୋପଜଗାମ ଶୀଘ୍ରଂ ସାର୍ଦ୍ଧଂ ଯମାଭ୍ୟାଂ ପୁରୁଷୋତ୍ତମାଭ୍ୟାଂ ॥
ଆ. ପ. ୧୦ ଅ:

ସଭା ମଧ୍ୟରେ ଥିବା, ନକୁଳ ଓ ସହଦେବ ମଧ୍ୟ ବ୍ୟୂଢ଼ ଓ ସନ୍ନଦ୍ଧ ହୋଇ ଯୁଦ୍ଧ କରିବା କଥା ମୂଳରେ ଅନୁପପାଦିତ କେତେକ କଥା ଯୋଗପୂର୍ବକ ଯୁଦ୍ଧକୁ ମୂଳ ଅପେକ୍ଷା ଖୁବ୍ ବିସ୍ତୃତ ଓ ଭିନ୍ନ ପ୍ରକାର କରି ଅଛନ୍ତି । ପୁଣି ଅତଃପର ପାଣ୍ଡବ-ମାନଙ୍କ ସମ୍ବନ୍ଧରେ କେତେକ ଅମୌଳିକ କଥାର ଉଦ୍ଭାବନା କରି ଅଛନ୍ତି । ସାରଳାଦାସ ମହାଶୟଙ୍କ କୃତ ଭାରତର ଘଟଣାମାନ ଏକୈକଶଃ ପର୍ଯ୍ୟାୟକ୍ରମରେ ଦେଖି ଯାଉଥିଲେ ମୂଳର ଅନୁଗତ ସାମ୍ୟ ଓ ବୈଷମ୍ୟକରିତଃ ତପନାପନେୟ-ତିମିରକ୍ରମରେ ତଦୀୟ ସ୍ମୃତିଶକ୍ତି ଓ ପ୍ରଜ୍ଞାର କ୍ଷଣିକ ଆବିର୍ଭାବ ଓ ତିରୋଭାବ ହେବାର ଅନୁମିତ ହୁଏ । ତଦୀୟ ଭକ୍ତିଲବ୍ଧ ଦେବୀବର ପ୍ରସାଦରୁ ମତି ଓ ପ୍ରଜ୍ଞାର ଆବିର୍ଭାବ ହେବାର ତ ସହଜ କଥା, କିନ୍ତୁ ତାହାର ତିରୋଭାବର କାରଣ ଦୁର୍ବିଜ୍ଞେୟ । ମାତ୍ର ଏତିକି କୁହାଯାଇ ପାରେ ଯେ, ପ୍ରୋକ୍ତ ମହାଶୟ ଦେବୀଙ୍କ ଭକ୍ତିରେ ତନ୍ମନସ୍କ ତଦ୍‌ଗତଚେଷ୍ଟ ଓ ଉନ୍ମତ୍ତପ୍ରାୟ ହୋଇ ପୂର୍ବଶ୍ରୁତ ଯାହା କିଛି ଯେତେବେଳେ ଯେପରି ମନେ ପଡ଼ିଲା, ତାହାହିଁ ଲେଖି ଯାଇଥିବେ । ତାହା ନ ହେଲେ ସ୍ଥାନେ ସ୍ଥାନେ ଠିକ୍ ଋଜୁମାର୍ଗରେ ଚାଲିଯାଇ ସ୍ଥାନେ ସ୍ଥାନେ ପ୍ରକୃତିରୁ ବହୁ ବିପ୍ରକୃଷ୍ଟରେ ଜଟିଳ ଓ କୁଟିଳ ଅବାଟକୁ କାହିଁକି ଭେଟନ୍ତେ ? ପ୍ରିୟ ପାଠକେ ! ସେ ଯାହାହେଉ, ଅତଃପର ଦେଖନ୍ତୁ । ଲକ୍ଷ୍ୟଭେଦ ପରେ ଦ୍ରୌପଦୀଙ୍କ ପୁଷ୍ପମାଲ୍ୟ ପ୍ରଦାନାର୍ଥ ସମୁଦ୍ୟତା ଦେଖି ଅର୍ଜୁନ ପିତୃକଳ୍ପ ଜ୍ୟେଷ୍ଠ ଯୁଧିଷ୍ଠିରଙ୍କ ଆଦେଶ ହେବାଯାଏ ଅପେକ୍ଷା କରିବାକୁ ହେବ ବୋଲି କହିଥିବାର ଲେଖି ଅଛନ୍ତି । ମୂଳ ଗ୍ରନ୍ଥର ସାର ମର୍ମ ମଧ୍ୟ ଏହିପରି । ତହିଁରେ ସୁଦ୍ଧା ଏ ସ୍ଥଳରେ ମାଳା ଦେବାର ଉକ୍ତ ହୋଇନାହିଁ । (୧) ଅତଃପର ଲେଖାଅଛି, କୁନ୍ତୀଦେବୀ କୁଟୀରାଭ୍ୟନ୍ତରରେ ଥିଲେ । ସହାନୁଜ ଭୀମ କହିଲେ କି, ଅଦ୍ୟ ଏହି ଭିକ୍ଷାପ୍ରାପ୍ତ ହୋଇଅଛି । ତଚ୍ଛ୍ରବଣରେ ମାତା ଏଣିକି ନ ଚାହିଁ ସେହିଠାରୁ ଆଦେଶ ଦେଲେ କି ଯାହା ପାଇଅଛ, ସମସ୍ତେ ଏକତ୍ର ଭୋଜନ କର ଅର୍ଥାତ୍ ଭୋଗ କର । (୨) ଆମ୍ଭମାନଙ୍କର ଆଦିମ ମହାକବି ମଧ୍ୟ ଠିକ୍ ଏହାର ଅବିକଳ

---

(୧) ବିଦ୍ଧଂ ତୁ ଲକ୍ଷ୍ୟଂ ପ୍ରସମୀକ୍ଷ୍ୟ କୃଷ୍ଣା ପାର୍ଥଂ ଚ ଶକ୍ରପ୍ରତିମଂ ନିରୀକ୍ଷ୍ୟ ।
ଆଦାୟ ଶୁକ୍ଲାମ୍ବରମାଲ୍ୟଦାମ ଜଗାମ କୁନ୍ତୀସୁତମୁତ୍ସ୍ମୟନ୍ତୀ—
ସ ତାମୁପାଦାୟ ବିଜିତ୍ୟ ରଙ୍ଗେ ଦ୍ୱିଜାତିଭିସ୍ତୈରଭିପୂଜ୍ୟମାନଃ ।
—ଇତ୍ୟାଦି ।

(୨) କୁଟୀଗତା ସା ତ୍ୱନବେକ୍ଷ୍ୟ ପୁତ୍ରୌ ପ୍ରୋବାଚ ଭୁଙ୍କ୍ତେତି ସମେତ୍ୟ ସର୍ବେ ।

ଅଭିପ୍ରାୟ ନେଇ କହୁଅଛନ୍ତି, ମାତ୍ର ଭିକ୍ଷା ପରିବର୍ତ୍ତରେ ଅପୂର୍ବ ଫଳ ବୋଲି ଅଛନ୍ତି । (୩) କିନ୍ତୁ ଦ୍ରୌପଦୀ ପ୍ରାପ୍ତି ସ୍ଥଳରେ ଲେଖି ଅଛନ୍ତି କି—

ଭୀମ ସେ କହୁଛନ୍ତି ଅର୍ଜୁନ ଲକ୍ଷ ବିନ୍ଧିଲା,
ଦୁଷ୍ଟ ରାଜା ଯେବେ ଦୁର୍ଯ୍ୟୋଧନ ବନ୍ଦି କଲା ।
ମୁଁ ଯେବେ ସଂଗ୍ରାମ ନ କରି ଥାଆନ୍ତି ଭୂଇଁ,
ଅର୍ଜୁନ କେଉଁପରି ଆଣନ୍ତା ଯାଜ୍ଞସେନୀ ।
ମୋହର ସେହୁ କନ୍ୟା ମୋ ହୋଇବ ଯୁକତେ,
ଅର୍ଜୁନ ଏ କଥା ବା ଭାଙ୍ଗିବ କେମନ୍ତେ ।
ଯୁକତେ ଯେବେ ମୋତେ ନ ଦେବ ଏ କୁମାରୀ,
ବଳତ୍କାର କରି ମୁଁ ଅବଶ୍ୟ ନେବି ହରି ।
ଏ ଭୁବନେ ମୋତେ ସଂଗ୍ରାମେ ନୁହନ୍ତି ସରି,
ପାଞ୍ଚାଳୀକି ଯେବେ ପଛେ ରହିବ ଛାଡ଼ିମୁକି ପୁରୀ । ଇତ୍ୟାଦି ।

କେବଳ ଦ୍ରୌପଦୀଙ୍କି ପାଇବା ପାଇଁ ମହାପ୍ରାଜ୍ଞ ଧର୍ମପ୍ରାଣ ପ୍ରଗାଢ଼ ସୌଭ୍ରାତ୍ର ଭୀମଙ୍କର ଭ୍ରାତୃମାନଙ୍କ ପ୍ରତି ଏପରି ଅସ୍ପୃହା ଓ କଠୋର ଅକରୁଣା ଜନ୍ମିବାର ବିତଥ କଥାଗୁଡ଼ା ଏ ଲେଖି ପାଣ୍ଡବଙ୍କ ପରିପୂତ ହୃଦୟକୁ ଭୃଙ୍ଗକୁଶାଦ୍ରି ଇତରଜନ ତୁଲ୍ୟ କଳୁଷୀକୃତ କରି ଅଛନ୍ତି । କେବଳ ଏ ସ୍ଥଳରେ ନୁହେଁ, ପ୍ରସଙ୍ଗାନୁପାତବଶତଃ କହୁଅଛୁଁ, ସାରଳାଦାସ ଅନେକ ସ୍ଥଳରେ ବହୁ ବିଷୟରେ ଭୀମସେନଙ୍କୁ ମନ୍ଦବୁଦ୍ଧି ଦୁର୍ନୀତିପରାୟଣ କରି ଦୁର୍ଭାବନାରେ କଦର୍ଯ୍ୟ କରି ଅଛନ୍ତି । ଭୀମଙ୍କ ପ୍ରତି ଏପରି ଦୁର୍ଭାବନାର ଆଭାସ ସୁଦ୍ଧା ମୂଳ ଗ୍ରନ୍ଥରେ ନାହିଁ । କି ପ୍ରମାଣ ପାଇ ଅବା ଭୀମଙ୍କ ପ୍ରକୃତି ଚିତ୍ରଣ ଅନେକ ସ୍ଥଳରେ ଦୁର୍ମତିବିଲକ୍ଷଣ ଓ ବାଳସ୍ୱଭାବସମ୍ପନ୍ନ କରିଦେଇ ଅଛନ୍ତି, ବୁଝାଯାଉ ନାହିଁ । ଏହାର ଗୋଟିଏ ମାତ୍ର ଉଦାହରଣ ଦେଖନ୍ତୁ । (୧) ବନବାସୀ ପାଣ୍ଡବମାନେ ଗଣ୍ଡକୀଗିରିଉପକଣ୍ଠ ବନରେ ବିହାର କରୁଥିବା ସମୟରେ ଶ୍ରୀକୃଷ୍ଣ ଦ୍ୱାରକାରୁ ସମାଗତ ହେଲେ । ଦେଖିଲେ ଯେ ଭୀମସେନ ସାଳଗ୍ରାମଗୁଡ଼ିକ ଗୋଡ଼ରେ ଗଡ଼ାଇ ଗଡ଼ାଇ ଖେଳୁ

---

(୩) ମାତା ବୋଇଲେ ଯେବେ ଅପୂର୍ବ ଫଳଗୋଟି ।
ପାଞ୍ଚ ଭାଇଯାକ ତୁମ୍ଭେ ଭୁଞ୍ଜ ବାଣ୍ଟି ବାଣ୍ଟି ॥

(୧) ଛପା ପୁସ୍ତକରେ ୧୩ ପୃଷ୍ଠାଟି ପଢ଼ନ୍ତୁ ।

ଅଛନ୍ତି । 'ଏ ସବୁ ଦେବ ସ୍ୱରୂପ' ଏପରି କାହିଁକି କରୁଅଛ ? ଶ୍ରୀକୃଷ୍ଣ ଏହା କହିବାରୁ ଭୀମ ଉତ୍ତର ଦେଲେ କି, ଏଗୁଡ଼ାକ ତ ପଥର । ଏଥିରେ ଗୋଡ଼ ଘସିଲେ ଗୋଡ଼ର ମଳ ଛାଡ଼ିଯାଏ; ଇତ୍ୟାଦି । ଭୀମଙ୍କର ଏପରି ଅଙ୍ଗସ୍ପର୍ଶଦୋଷିତ ଆଚରଣର ଆଭାସ ମଧ୍ୟ ମୂଳରେ କୁତ୍ରାପି ନାହିଁ । ସାରଳାଦାସ କବିଙ୍କର ମୂଳ ଚରିତରେ ଅସାବଧାନତାର ଫଳ ବୋଲିବାକୁ ହେବ । ପୁଣି ଏ ସ୍ଥଳରେ ପତିପ୍ରାଣା ପ୍ରାତଃସ୍ମରଣୀୟା ସତୀପ୍ରବର ଦ୍ରୌପଦୀଙ୍କର ପତିମାନଙ୍କ ପ୍ରତି ଯେପରି ଘୃଣାଭାବ ସ୍ୱଭାବ, ତାହା ସୁଦ୍ଧା ନିକଏ କଳୁଷିତ କରିଦେଇ ଅଛନ୍ତି ।

ଦ୍ରୌପଦୀ ବିକଳ ଯେ ଘାଣ୍ଟିଣ ଶଯ୍ୟା ଦେଖି,
ହେ ଦଇବ ମୋ କପାଳେ ଏହା ଥିଲୁ ଲେଖି ।
ପାଞ୍ଚାଳ ରଜାର ମୁଁ ଅଟଇ ଦୁଲଣୀ,
ହେ ଦଇବ ଏବେ ମୋତେ ଏହା କଲୁ ଆଣି ।
ରଜାର କୁମାରୀ ହୋଇ ଏହେନ କର୍ମ ମୋର,
ଭିକାରୀ ବ୍ରାହ୍ମଣଙ୍କୁ ପାଇଲି ମୁହିଁ ବର ।

ଇତ୍ୟାକାର ଅନେକଗୁଡ଼ିଏ ସତୀଧର୍ମ ବିରୁଦ୍ଧ କଥା ଲେଖି ଅଛନ୍ତି । ଏ ସବୁ ପତିବ୍ରତା ପକ୍ଷେ ଏକାନ୍ତ କଳୁଷକାରକ । ଏଥିରୁ ପାଣ୍ଡବମାନେ ଦରିଦ୍ର ବୋଲି ଦ୍ରୌପଦୀଙ୍କର ଅସ୍ପୃହା ଜଣାଯାଉ ଅଛି । ବୀରପତ୍ନୀ ସୁଜ୍ଞାନବତୀ ଦ୍ରୌପଦୀ ବୀରମାନଙ୍କ ପ୍ରଭାବର ମହାମୂଲ୍ୟତା ଜାଣନ୍ତି । ଅତଏବ ବ୍ୟାସଙ୍କ ଗ୍ରନ୍ଥରେ ଏତାଦୃଶ ଅପବିତ୍ର ଭାବନାର ଆଭାସ ସୁଦ୍ଧା ନାହିଁ । ପରନ୍ତୁ ହୃଷ୍ଟ ହୃଦୟରେ ସେ ପାଣ୍ଡବମାନଙ୍କୁ ଅନୁଗମନ କରିଥିବାର ଉକ୍ତ ଅଛି । ୧ ବ୍ୟାସଙ୍କ ମତରେ କ୍ରମଶଃ ଦିନେ ଦିନେ ଯୁଧିଷ୍ଠିରାଦି ବୀରମାନେ ବୀରକନ୍ୟା ଦ୍ରୌପଦୀଙ୍କର ପାଣିଗ୍ରହଣ କରିଥିଲେ, ୨ କିନ୍ତୁ ସାରଳାଦାସ କହନ୍ତି, ପାଞ୍ଚ ଜଣ ପାଞ୍ଚ ଅଙ୍ଗୁଳି

---

୧ ଅଶେତ ଭୂମୌ ସହ ପାଣ୍ଡୁପୁତ୍ରୈଃପାଦୋପଧାନେତ କୃତାକୁଶେଷୁ ।
ନ ତସ୍ୟ ଦୁଃଖଂ ମନସାପି ତସ୍ୟାଃ ନ ଚାବମେନେ କୁରୁପୁଙ୍ଗବାଂସ୍ତାନ ।
ଆ. ପ. ୧୯୪ ଅ:

୨ କ୍ରମେଣ ଚୈନେନ ନରାଧିପାତ୍ମଜା ବରସ୍ତିୟସ୍ତେ ଜଗୃହୁସ୍ତଦା କରଂ
ଅହନ୍ୟହନ୍ୟୁତ୍ତମବେଶଧାରିଣୋ ମହାରଥାଃ କୌରବବଂଶବର୍ଦ୍ଧନାଃ ।

ଧରି ଏକ ମୁହୂର୍ତ୍ତିରେ ବିବାହ କଲେ । ୧ ଏହାପରେ ଦ୍ରୁପଦ ରାଜ୍ୟରୁ ପାଣ୍ଡବ-ମାନଙ୍କ ସମ୍ବନ୍ଧରେ ଧୃତରାଷ୍ଟ୍ରଙ୍କ ସହ କର୍ଣ୍ଣ ଦୁର୍ଯ୍ୟୋଧନାଦିଙ୍କର ଯେଉଁ ଦୁର୍ମନ୍ତ୍ରଣା ଚାଲିଥିଲା ଏବଂ ଭୀଷ୍ମ, ବିଦୁରାଦି ଯେଉଁ ସୁମନ୍ତ୍ରଣା କରିଥିଲେ ଅପିଚ ଦୁର୍ଯ୍ୟୋଧନଙ୍କୁ ଜଣାଇ ଥିଲେ, ଏ ସବୁ ସାରଳାଦାସଙ୍କ ଭାରତରେ ଲେଖା ନାହିଁ । କିନ୍ତୁ ଦ୍ରୌପଦୀଙ୍କ ବିବାହ କଥନ ପ୍ରସ୍ତାବରେ ଲେଖାଅଛନ୍ତି କି, ସୃଷ୍ଟ୍ୟାଦ୍ୟରେ ଅନାଦି ସରସ୍ୱତୀଙ୍କ କଣ୍ଠାକ୍ଷରୁ କେତୁକାନାମ୍ନୀ ଦେବୀ ଆବିର୍ଭୂତ ହୋଇ ତପସ୍ୟା ଉପଦେଶରେ ବ୍ରହ୍ମାଙ୍କ ପ୍ରତି କାମାସକ୍ତ ହେଲେ । ବ୍ରହ୍ମା ଉପସ୍ଥିତବ୍ୟୁତଧୃତିରେ ଶରଣାପନ୍ନ ହେଲାରୁ ନାରାୟଣ କେତୁକାଙ୍କୁ ଆଦେଶ ଦେଲେ ଯେ, ଦ୍ୱାପର ଯୁଗରେ ତୁମ୍ଭ ଯୋଗୁଁ ଏ ନିହତ ହେବେ, ସମ୍ପ୍ରତି ନାଶ କର ନାହିଁ । ଦ୍ୱାପରରେ ବ୍ରହ୍ମା ଦୁଃଶାସନ ଓ କେତୁକା ଦ୍ରୌପଦୀ ହେଲେ; ଇତ୍ୟାଦି । ଏ ସବୁ ମୂଳ ଗ୍ରନ୍ଥରେ ନାହିଁ । ମୂଳ ବୈବାହିକ ଉପପର୍ବରେ ଉକ୍ତ ଅଛି— ମହାଦେବଙ୍କ ବରରୁ ବିଶ୍ୱଭୁକ୍, ଭୂତଧାମା, ଶିବି, ଶାନ୍ତି ଓ ତେଜସ୍ୱୀ ନାମରେ ଇନ୍ଦ୍ରପଞ୍ଚକ ପାଣ୍ଡବ-ରୂପେ ଅବତୀର୍ଣ୍ଣ ହେଲେ । ପୁଣି ଦ୍ରୌପଦୀ ପୂର୍ବଜନ୍ମରେ ଆଶୁତୋଷ ମହାଦେବଙ୍କୁ "ପତି ଦେଅ" (ପତିଂଦେହି) ଏହି ବାକ୍ୟରେ ପଞ୍ଚବାର ପ୍ରାର୍ଥନା କଲାରୁ ଈଶ୍ୱର ତାହାଙ୍କୁ ପଞ୍ଚପତିଲାଭବର ପ୍ରଦାନ କରିଥିଲେ । ଅତଏବ ଯାଜ୍ଞସେନୀ ପାଣ୍ଡବ-ମାନଙ୍କର ପତ୍ନୀ ହେଲେ; ଇତ୍ୟାଦି । ଏ ସ୍ଥଳରେ ସାରଳାଦାସ ମହାଶୟ ଭିନ୍ନ ଭିନ୍ନ କଥା ଓ କାରଣମାନଙ୍କରେ ଚରିତକୁ ଅନ୍ୟଥା କରି ଅଛନ୍ତି । ସୁତରାଂ ପ୍ରକରଣଟିକୁ ବଡ଼ ଜଟିଳ ମଧ୍ୟ କରିଦେଇ ଅଛନ୍ତି । ତାହାର ଲୁପ୍ତ ମର୍ମାଂଶ ଏହି ଯେ, ଇନ୍ଦ୍ରଙ୍କର ଇନ୍ଦ୍ରତ୍ୱ ଯିବା, ବୃଦ୍ଧ ବ୍ରାହ୍ମଣ ଇନ୍ଦ୍ର ହେବା, ପୁଣି ଇନ୍ଦ୍ର ବୃଦ୍ଧଙ୍କୁ ସଂହାରପୂର୍ବକ ସ୍ୱପଦ ପ୍ରାପ୍ତହେବା, ପରେ କ୍ରୋଧାନ୍ଧୀଭୂତ ତ୍ୱଷ୍ଟା ଋଷି ଇନ୍ଦ୍ରଙ୍କୁ ବିନାଶ କରି ଶଚୀଦେବୀ ବିଳାପରେ (ପତିଂଦେହି) ବୋଲି ପଞ୍ଚବାର ପ୍ରାର୍ଥନା କଲାରୁ ପାର୍ବତୀ ଓ ପାର୍ବତୀଶ ପ୍ରସନ୍ନ ହୋଇ ପଞ୍ଚପତି ପ୍ରାପ୍ତିର ବର ଦେବା, ଇନ୍ଦ୍ରଙ୍କ ପଞ୍ଚଆତ୍ମା ପଞ୍ଚପାଣ୍ଡବରୂପେ ଆବିର୍ଭୂତ ହେବା, ଶଚୀ ଦ୍ରୌପଦୀ ହେବା; ଇତ୍ୟାଦି । ୧

---

୧ କନ୍ୟାର ପାଞ୍ଚ ଆଙ୍ଗୁଠି ପାଞ୍ଚ ବର ହସ୍ତେ ।
ମନ୍ତ୍ରକୁ ସଂଯୋଗ କଲେ ଧୌମ୍ୟ ପୁରୋହିତେ । ଇତ୍ୟାଦି । ଆ. ପ. ୧୩୫ ପୃ:

୧ ଏ ସବୁ କେବଳ ଅଳୀକ ନୁହେ । ସ୍ଥାନାନ୍ତରୀଣ ମୌଳିକ ଚରିତମାନଙ୍କର ଅନୁକରଣରେ ଲକ୍ଷିତ । ତ୍ୱଷ୍ଟାଙ୍କ ପ୍ରଭାବରେ ବୃଦ୍ଧ ଇନ୍ଦ୍ର ହେବା ପ୍ରଭୃତି

(୧୧) ଯେ କୌଣସି ଗ୍ରନ୍ଥକୁ ଅନୁସରି ଅନ୍ୟ ଭାଷାରେ ତାଦୃଶ ଗ୍ରନ୍ଥ ଲେଖିବାକୁ ଗଲେ ଘଟନାମାନଙ୍କର ଯଥାଯଥରୂ ଉଲ୍ଲେଖ କରିବା ତ ପ୍ରକୃତ କଥା । ଏ ସମ୍ବନ୍ଧରେ ବହୁଳଶଃ କହିବା କିମ୍ବା ଉଦାହରଣ ଦର୍ଶାଇବା ଅନାବଶ୍ୟକ; କିନ୍ତୁ ଏତିକି ମାତ୍ର ପ୍ରକାଶ କରିବା ଉଚିତ ଯେ, ସାରଳାଦାସ କବି ମହୋଦୟ କେତେକ ଘଟନାମାନଙ୍କୁ ଯଥାଯଥ ଲେଖି ମୂଳ ତମାମ ଅଙ୍ଗପ୍ରତ୍ୟଙ୍ଗ ସ୍ୱରୂପ ବିଷୟାଂଶଗୁଡ଼ିକୁ ବୈଷମ୍ୟରେ ନ ପକାଇ ଗୁନ୍ଥି ନାହାନ୍ତି । ନିଜ କଳ୍ପନା ବଳରେ କେଉଁଠି ଭିନ୍ନ ରୂପ, କେଉଁଠି ବିପରୀତ ରୂପ, କେଉଁଠି ଅତିଶୟୋକ୍ତି ରୂପରେ ଚରିତ ଚିତ୍ରଣ କରି ଅଛନ୍ତି । ଏପରି ସ୍ଥଳମାନଙ୍କରେ ମୂଳ ସଙ୍ଗେ ପାଠ ମିଳୁନାହିଁ ସତ୍ୟ, ମାତ୍ର କବିଙ୍କର ଅସାମାନ୍ୟ ରଚନା ଶକ୍ତି ଓ କଳ୍ପନା ଶକ୍ତିରେ ପ୍ରତିଭାତ କବିତାର ଆର୍ଭଟୀ ହୃଦୟକୁ ବିସ୍ମିତ ଓ ଆନନ୍ଦରେ ଶିଂଚିତ କରି ଦେଉଅଛି, ଏଥିରେ କୌଣସି ପ୍ରକାର ସନ୍ଦେହ ନାହିଁ । କେତେକ ସ୍ଥଳରେ କବିଙ୍କ ହୃଦୟ ଆଶୁ କବିତା ଧୋରଣୀରେ ପଡ଼ି ରଚନାର ଆବେଗରୁ ପୂର୍ବାପର ବିରୋଧ ପ୍ରତି ସାବଧାନ ରହିପାରି ନ ଥିବା ଜଣାଯାଏ । ଏଥିର ସଂକ୍ଷିପ୍ତ ପ୍ରମାଣ ସ୍ୱରୂପ ଏ ସ୍ଥଳର ସାମ୍ପ୍ରଦାୟିକ ବିବୃତିରେ ଅନ୍ୟାନ୍ୟ ପର୍ବର କେତେକ ବିଷୟର ମୀମାଂସା କରୁଅଛୁଁ । ଉଦ୍‌ଯୋଗ ପର୍ବର ପ୍ରାରମ୍ଭରେ କହି ଅଛନ୍ତି କି, ପାଣ୍ଡବ-ମାନେ ଅଜ୍ଞାତବାସ ପରେ ବିରାଟଦେଶ ତ୍ୟାଗପୂର୍ବକ ଇନ୍ଦ୍ରପ୍ରସ୍ଥରେ (କିବା ବାରୁଣାବନ୍ତରେ) ରହିଲେ । ପାଣ୍ଡବମାନଙ୍କର ତଦାମନ୍ତ୍ରଣ ଅନୁଯାୟୀ କେତେ-ଜଣ ଆସି ଅଛନ୍ତି ବୋଲି ଧୃତରାଷ୍ଟ୍ର ଜିଜ୍ଞାସା କଲରୁ ଦୂତର ବିଜ୍ଞାପିତ ବାକ୍ୟରେ ବିରାଟ ଦୁହିତା ଉତ୍ତରା ଆସି ଥିବାର ଉକ୍ତ ଅଛି । ୧ ତଦନନ୍ତର କେତେକ ଦିନ ପରେ ପାଣ୍ଡବୀୟ ପଞ୍ଚଗ୍ରାମ ପ୍ରାର୍ଥନାରେ ଦୁର୍ଯ୍ୟୋଧନ ଅସମ୍ମତ ହେଲରୁ କୃଷ୍ଣାଦେଶମତେ ସେହିଠାରେ କର୍ତ୍ତବ୍ୟ ସ୍ଥିର କରୁଅଛନ୍ତି । ଇତ୍ୟବସରେ

---

କେତେକ କଥା ମୂଳ ଉଦ୍‌ଯୋଗ ପର୍ବରେ ଯୁଧିଷ୍ଠିରଙ୍କୁ ଶଲ୍ୟ କହିଥିବାର ଉକ୍ତ ଅଛି ।

୧ ପାଣ୍ଡବେ ପାଞ୍ଚ କୁମାର ଅଭିମନ୍ୟୁ ।
ସଙ୍ଗରେ ଅଛନ୍ତି ପାଞ୍ଚାଳ କୁମାରି ବାଳୁତସୂନୁ ॥
ଦ୍ରୌପଦୀ ସୁଭଦ୍ରା ଆବର ଉତ୍ତରା ବାଳୀ ।
ଏତେକ ଦେଖିଲୁ ଦେବ ଆଉ ନାହିଁ ଅଗୁଳ ॥

ଗ୍ରନ୍ଥପାଠରେ ମଧ୍ୟ ଏହିପରି ଅଛି । ଉ. ପ. ୬ ପୃଷ୍ଠା ଦେଖନ୍ତୁ ।

“ଉତ୍ତରା ରଜୋବତୀ ହେଲେ” ଏହି ବାର୍ତ୍ତା ଆସିବାରୁ ଅଭିମନ୍ୟୁଙ୍କ ବନ୍ଦାପନା ନିମନ୍ତେ ପାଣ୍ଡବମାନେ ଶ୍ରୀକୃଷ୍ଣାଦି ସହ ବିରାଟ ଦେଶକୁ ପୁନଃ ପ୍ରସ୍ଥାନ କଲେ ବୋଲି ଲେଖି ଅଛନ୍ତି । ପ୍ରଥମତଃ ଉତ୍ତରା ଦେବୀ ଇନ୍ଦ୍ରପ୍ରସ୍ଥରେ ପାଣ୍ଡବମାନଙ୍କ ସହ ବାସ କରୁଥିବା ଲେଖି ତତଃପର ବିରାଟ ଦେଶରେ ଥିଲେ ଏବଂ ପରେ ରଜୋବତୀ ହେଲେ ଇତ୍ୟାଦି ଲେଖିବା ପୂର୍ବାପର ବିରୋଧ । ତଥାପି ଉତ୍ତରା ଇତଃପୂର୍ବେ ଇନ୍ଦ୍ରପ୍ରସ୍ଥରୁ ବିରାଟ ଦେଶକୁ ପ୍ରତ୍ୟାବୃତ୍ତ ହୋଇଲେ ବୋଲି ମଧ୍ୟ କୁତ୍ରାପି ସୂଚିତ କରି ନାହାନ୍ତି । ପୁଣି ଏହି ଉଦ୍‌ଯୋଗ ପର୍ବରେ ଏକ ସ୍ଥାନରେ ପ୍ରକାଶ କରି ଅଛନ୍ତି କି, ପାଣ୍ଡବମାନେ ବିରାଟ ଦେଶରୁ ଶ୍ରୀକୃଷ୍ଣଙ୍କୁ ଦୌତ୍ୟକର୍ମରେ ଦୁର୍ଯ୍ୟୋଧନଙ୍କଠାକୁ ପଠାଇଲେ । ହସ୍ତିନାଗତ କୃଷ୍ଣ ପ୍ରଥମତଃ କୁନ୍ତୀଦେବୀଙ୍କ ଦର୍ଶନ କରିବା ସମୟରେ କହିଲେ କି, ପାଣ୍ଡବମାନେ ବିରାଟ ରାଜ୍ୟରେ ଅଭିଷିକ୍ତ ହୋଇ ଆସି ବାରୁଣାବନ୍ତରେ ଅଛନ୍ତି । ୨ ତଥାପି କବି ଇତିମଧ୍ୟରେ ବିରାଟ ରାଜ୍ୟରୁ ବାରୁଣାବନ୍ତକୁ ଆସିବାର ସୂଚନା ମଧ୍ୟ ଦେଇ ନାହାନ୍ତି । ସାରଳାଦାସଙ୍କ ପ୍ରାଥମିକ ମତରେ ଏବଂ ମୂଳ ଗ୍ରନ୍ଥ ଅନୁସାରେ ଏ ସମୟକୁ (କୃଷ୍ଣଙ୍କର ଦୌତ୍ୟ ସ୍ୱୀକାର ସମୟ) ୧ ପାଣ୍ଡବମାନେ ବିରାଟ ରାଜ୍ୟରେ ଅର୍ଥାତ୍ ତଦୀୟ ଉପପ୍ଲବଗଡ଼ରେ ଥିଲେ । ଏଠାରେ ପୁଣି ବାରୁଣାବନ୍ତରେ ଥିଲେ ବୋଲିବା ପୂର୍ବାପର ବିରୋଧ ।

ତ୍ରୈକାଳିକ ବୃତ୍ତବେତ୍ତା ଲୋକୋତ୍ତରମତିସତ୍ତମ ପୁରାଣ ଋଷିମାନେ ସତ୍ୟଭୂତ କଳ୍ପନା ଶକ୍ତିଦ୍ୱାରା ସମୁଦ୍ଭାବିତ ପ୍ରସ୍ତାବର ଉଦାହରଣ ସ୍ୱରୂପ ଅନଳୀକ ଚରିତମାନ ଯେପରି ମଧ୍ୟେ ମଧ୍ୟେ ଦେଇ ଅଛନ୍ତି, ସାରଳାଦାସ କବି ମଧ୍ୟ ତଦନୁକରଣରେ ବହୁ ସ୍ଥଳରେ ଅନେକ ବିଷୟର ଉଦ୍ଭାବନ ଏବଂ ମନଗଢ଼ା ଚରିତଗୁଡ଼ିକରେ ପ୍ରସ୍ତାବିତ ବିଷୟମାନଙ୍କର ସମର୍ଥନ କରି ଅଛନ୍ତି । ବିରାଟମହିଷୀ

---

୨ ବିରାଟ ରାଜ୍ୟରେ ଯୋଏ ଅଭିଷେକ ସାରି ।
ଏବେ ବାରୁଣାବନ୍ତେ ଅଛନ୍ତି ବିଜେ କରି ॥
ସ୍ଥାପାରେ ମଧ୍ୟ ଏହିପରି ଅଛି । ଉ. ପ. ୪୧ ପୃଷ୍ଠା ଦେଖନ୍ତୁ ।

୧ ମାତ୍ର ଶ୍ରୀକୃଷ୍ଣଙ୍କର ଦୌତ୍ୟନିର୍ବାହ ବିଷୟ ମୂଳ ଗ୍ରନ୍ଥରେ **ଯୁଦ୍ଧାର୍ଥ ସହାୟ ରାଜାମାନଙ୍କର ନିମନ୍ତ୍ରଣାଦି କଥା ହେଲା ପରେ ଉକ୍ତ ଅଛି ।**

ଶ୍ରୀକୃଷ୍ଣଙ୍କଠାରେ ୨ ସର୍ବଜ୍ଞତା ଜାତିସ୍ମରତା ଓ ବହୁ ଶାସ୍ତ୍ରାଭିଜ୍ଞତା ଆରୋପଣ କରି, ସେ ପୂର୍ବେ ଚମନକାଙ୍କ ଗର୍ଭରୁ ଜନ୍ମି ଶ୍ୱେତ ରାଜାଙ୍କ ଭାର୍ଯ୍ୟା ହୋଇଥିବା, ସେହି ଦମ୍ପତି ବର୍ତ୍ତମାନ ବସିଷ୍ଠ ଓ ଶ୍ରୀକୃଷ୍ଣା ହେବା, ଅତଃପର କଳିଯୁଗରେ ଇନ୍ଦ୍ରଦ୍ୟୁମ୍ନ ଓ ଗୁଣ୍ଡିଚାବତୀ ହେବା, ଶ୍ରୀକୃଷ୍ଣା ଶ୍ରୀକୃଷ୍ଣଙ୍କ ପ୍ରଶ୍ନରେ ଭାବୀ ମହାଭାରତ ଯୁଦ୍ଧର ଯାବତୀୟ ବିବରଣ କହିବା, ଭବିଷ୍ୟମାଣ ପରୀକ୍ଷିତଙ୍କୁ ପୁନରୁଜ୍ଜୀବିତ କରଣାର୍ଥ ଶ୍ରୀକୃଷ୍ଣଙ୍କୁ ମୃତସଞ୍ଜୀବନୀ ବିଦ୍ୟା ପ୍ରଦାନ କରିବା ଇତ୍ୟାଦି ବହୁତଗୁଡ଼ାଏ କଥାର ଉଦ୍ଭାବନା କରି ଅଛନ୍ତି । ଏତାଦୃଶ ଉଦ୍ଭାବନା ଓ କଳ୍ପନାମାନଙ୍କରେ ଯେ ଅସଙ୍ଗତ ନାହିଁ, ତାହା ନୁହେ । ଅନେକ ସ୍ଥଳରେ କଥା ଅସଙ୍ଗତ ଜଣାଯାଉ ଅଛି । ଉଦ୍‌ଯୋଗ ପର୍ବର ଶେଷରେ ଗୋଟିଏ ଆକସ୍ମିକ ଅହେତୁକ ଚରିତର ଅବତାରଣା କରି ଅଛନ୍ତି । କଥାଗୁଡ଼ିକ ମଧ୍ୟ ସଙ୍ଗତ ହୋଇନାହିଁ । କଥାଟି ଏହି— ବ୍ରହ୍ମା ବେଦ ପୁସ୍ତକଟି ତୀରରେ ଥୋଇଦେଇ ଚନ୍ଦ୍ରଭାଗା ତୀର୍ଥରେ ସ୍ନାନ କରୁଥିଲେ । ସହସା ଶଙ୍ଖାସୁର ବେଦକୁ ନେଇଯାଇ ଲୁଚିଗଲା । କେତେକ କାଳ ପରେ ନାରାୟଣ ମତ୍ସ୍ୟାବତାରରେ ତାକୁ ବିନାଶି ବେଦକୁ ଆଣିଦେଲେ । ଏ ସ୍ଥଳରେ ପୁଣି ପ୍ରଶ୍ନ ଉଠିଲା ଯେ ବେଦର ଅଭାବରେ ଏତେ କାଳ କପରି କାର୍ଯ୍ୟ ଚଳିଲା? ଏହାର ଉତ୍ତର ସ୍ୱରୂପ ବ୍ରହ୍ମାଙ୍କର ତାତ୍କାଳିକ ଅବସ୍ଥାମତେ ପୁନରପି ବେଦସୃଷ୍ଟି କଥା ଲେଖି ଅଛନ୍ତି କି—

ହେଟବଦନ ହୋଇ ଯେ ଭୂମିରେ ଅଙ୍ଗୁଷ୍ଠି ଠୁକନ୍ତେ ।
ପ୍ରଥମେ ଋକ୍‌ବେଦ ହୋଇଲା ସମ୍ମୁଖେ ॥
ବ୍ୟାକୁଳ ହୋଇ ଯହୁଁ କାନ୍ଦନ୍ତେ ବେଦବର ।
ତହୁଁ ସେ ଅଥର୍ବ ବେଦ ହୋଇଲା ବାହାର ॥
ଦର୍ଦ୍ଦୁର ବଚନ ପ୍ରାପ୍ତେ ଯହୁଁ ବ୍ରହ୍ମା ଶୋକ କଲା ।
ତହୁଁ ଯଦୁ (ଯଜୁ)ର୍ବେଦ ଜାତ ସେ ହୋଇଲା ॥

---

୨ ବଶିଷ୍ଠମହର୍ଷୀଙ୍କର ବ୍ୟାସଦତ୍ତ ନାମ କାର୍ତ୍ତିକ ତଥାପୁ ପିତୃଦତ୍ତ ନାମ ସୁଦେଷ୍ଣା । ସେହି ନାମକୁ ସାରଳାଦାସ କବି ସର୍ବତ୍ର ଶ୍ରୀକୃଷ୍ଣା କରି ଅଛନ୍ତି । ମାତ୍ର ଗ୍ରନ୍ଥକାର ଦାସଦତ୍ତ ନାମ ନ ଦେଇ ବ୍ୟାସଦତ୍ତ ନାମରେ ଅଙ୍କିତ କରି ଅଛନ୍ତି । ଆମ୍ଭେ ଏ ସ୍ଥଳରେ ସର୍ବତ୍ର ତାଳପତ୍ର ପୁସ୍ତକରେ ଥିବା ନାମ ଲେଖିଲୁଁ ।

ଶଂଖାମାନର ପଦ୍ମ ହୋଇଲାକ ଶାନ୍ତ ।
ଚହ୍ମ ସାମ ବେଦ ହୋଇଲା ଉତ୍ପତ୍ତି ॥
ଘୃଣ ବେଦ ବ୍ରହ୍ମା ପୁସ୍ତକେ ଲେଖଇ ।
ଋକବେଦ ଦେଲେ ବଶିଷ୍ଠ ମୁନ କଇ । *

୧ ବନ ପର୍ବରେ ପ୍ରକାଶ କରି ଅଛନ୍ତି କି, ଥରେ ଭ୍ରାତୃଚତୁଷ୍ଟୟସହାୟ ଧର୍ମପ୍ରାଣବନ୍ଧ ଯୁଧିଷ୍ଠିର ବନ ଭ୍ରମଣରେ ଶ୍ରାନ୍ତ ହୋଇ ଗୋଟିଏ ଶାଖା-ପ୍ରଶାଖା-ସମୃଦ୍ଧ ବିଶାଳ ବଟବୃକ୍ଷ ମୂଳରେ ଉପବେଶନ କଲେ । କିନ୍ତୁ ଭୀମସେନ ଏକାକୀ ଏକ ଶିଲୋଖଣ୍ଡ ତଳେ ବସି ତତ୍ରସ୍ଥ ପତିତପୁଷ୍ପନିଚୟକୁ ମସ୍ତକରେ ଭୂଷଣ ପ୍ରାୟ ଗ୍ରହଣ କଲେ । ତଦବଲୋକନରେ ଯୁଧିଷ୍ଠିର ପ୍ରଶ୍ନ କରିବାରୁ ଭୀମ କହିଲେ କି, ସାହାଡ଼ା ବୃକ୍ଷ ଓ ତନିପ୍ପ ପ୍ରସବଚୟ ଉଦର୍କସୁଖଦାୟକ । ଅଥଚ ଏ ସ୍ଥଳରେ ପ୍ରସ୍ତାବିତ ବିଷୟର ନିଦର୍ଶନସ୍ୱରୂପ ପୂର୍ବୋକ୍ତ ମହାଦେବ ଓ ବୃଷଭଙ୍କର ଗାଥାକୁ ଆମ୍ରେଡ଼ିତ କରି ଅଛନ୍ତି ।

ଅତଃପର ସଭାପର୍ବୋକ୍ତ ଯାଗ ସମୟରେ କହନ୍ତି କି ଭୋଜନୋଚ୍ଛିଷ୍ଟ ପତନିଚୟକୁ ପବନୋନ୍ନୀତ ଦେଖି ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ନିବେଦନ କଲେ ଯେ, ଆମ୍ଭମାନଙ୍କର ପିତା ପବନ ଉଚ୍ଛିଷ୍ଟବାହକ ହେବା ଅନୁଚିତ । ୨ ଏତଦ୍ୱାରା ଆମ୍ଭମାନଙ୍କର ଧର୍ମହାନି ହୁଏ । ଏହାଶୁଣି ସହଦେବ କହିଲେ କି, ବଦରିକା-ଶ୍ରମରେ ମେରୁଶୃଙ୍ଗ ଲାଭିଧ ଋଷି ଅଛନ୍ତି । ସେ ଅନଳ ନୟନରେ ଦୃଷ୍ଟିଦେଲେ ଏ ସବୁ ଦଗ୍ଧୀଭୂତ ହେବ । ଅତଏବ ତାହାଙ୍କୁ ଅଣାଇବାକୁ ହେବ । ତେତେବେଳେ ଯୁଧିଷ୍ଠିରାଦେଶରେ ସେହି ଋଷି ଭୀମଙ୍କଦ୍ୱାରା ଆମନ୍ତ୍ରିତ ଓ ଆନୀତ ହୋଇ ପ୍ରୋକ୍ତ କାର୍ଯ୍ୟ ନିର୍ବାହ କଲେ । ୩

ସେହିପରି କହି ଅଛନ୍ତି, ବିରାଟରାଜ ଖ୍ରୀଜସ୍ୟ ଦର୍ଶନେଚ୍ଛାରେ ଆସି ବହୁ ଦିନଯାଏ ଯୁଧିଷ୍ଠିରଙ୍କୁ ଦର୍ଶନ କରିପାରି ନ ଥିଲେ । ଥରେ ଭୀମ ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶାନୁସାରେ ବିରାଟାଧିପଙ୍କୁ ଗଳଥା ମାରି ନେଇ ଯୁଧିଷ୍ଠିରଙ୍କର ଦର୍ଶନପ୍ରାପ୍ତ

* ଛାପା ପୁସ୍ତକରେ ମଧ୍ୟ ପ୍ରାପ୍ୟ ଏହିପରି ଅଛି । ୧୯୯ ପୃଷ୍ଠା ଦେଖନ୍ତୁ ।
୧ ଛାପା ପୁସ୍ତକରେ ୩୬୨ — ୩୬୩ ପୃଷ୍ଠା ଦେଖନ୍ତୁ ।
୨ ଯୁଧିଷ୍ଠି ବୋଇଲେ ହେ ହରି ପବନ ମୋ ପିତା ।
ସେହି ସେ ହୋଇଛନ୍ତି ଉଚ୍ଛିଷ୍ଟ ଯୋଚନ୍ତା ॥ ଇତ୍ୟାଦି ॥
୩ ସ. ପ. ଛାପା ପୁସ୍ତକରେ ୩୦ଟି ପୃଷ୍ଠାର ପ୍ରାରମ୍ଭରୁ ଦେଖନ୍ତୁ ।

କରିଥିଲେ । ଏଥିର କାରଣ ବିରାଟେଶ ଯେପରି ସଭା ସମସ୍ତରେ ଶାନ୍ତି ପାଇବାକୁ ବର୍ତ୍ତମାନ ସମ୍ୟକ୍ ଦେଖି ନ ପାରିବେ । ଏକ ଆଡ଼େ ଭୀମଙ୍କର ଅଶନକଳ୍ପ ଗଳଥା, ଅନ୍ୟ ଆଡ଼େ ଶ୍ରୀକୃଷ୍ଣଙ୍କର ଚନ୍ଦ୍ରାବରଣ । ଅତଏବ ବିରାଟ ନୃପତି ଯୁଧିଷ୍ଠିରଙ୍କୁ ସମ୍ୟକ ଦୃଷ୍ଟିଗୋଚର କରି ପାରିଲେ ନାହିଁ । ତଥାପି ତାହାଙ୍କୁ ସେଠାରେ ସ୍ଥାନ ନ ଦେଇ ବାହ୍ୟ ସଭାରେ ବସାଇଲେ; ଇତ୍ୟାଦି ବିଷୟଗୁଡ଼ିକରୁ କେତେକ ଅଳୀକ ପ୍ରଳାପ କେତେକ ଅବା ଭ୍ରାନ୍ତ ଧାରଣାର ବିପ୍ରଳାପ ବୋଧହୁଏ । ଏତାଦୃଶ କେତେକ କଥାମାନଙ୍କରୁ ଏହି କବିଙ୍କର ବିତଥକଥାଧୌରେୟତ୍ୱ ପ୍ରତିପନ୍ନ ହୁଏ । [୧]

(୧୨) ମୂଳରେ କଥିତ ଅଛି, ଦ୍ରୌପଦୀଙ୍କ ବିବାହ ପରେ ଅପବାଦଖିନ୍ନ ଦୂୟମାନମନା ଧୃତରାଷ୍ଟ୍ରଙ୍କ ଆଦେଶାନୁକ୍ରମେ ଦ୍ରୁପଦ ରାଜ୍ୟରୁ ସମାଦରେ ସମାଗତ ପ୍ରାପ୍ତାର୍ଦ୍ଧରାଜ୍ୟ [୨] ଭାନୁଭାସ୍ୱରଦର୍ଶନ ସାନୁଯାତ୍ର ପାଣ୍ଡବମାନେ "ଗତଂ ତୁ ନାନୁଶୋଚନ୍ତି ସନ୍ତଃ" ଏହା ଭାବି ଖାଣ୍ଡବପ୍ରସ୍ଥରେ ସୁଖରେ ବାସ କଲେ । କିନ୍ତୁ ଶାରଳାଦାସ ପ୍ରଥମତଃ ହସ୍ତିନାନ୍ତକସ୍ଥ କୁସୁମନଦୀ ତୀରରେ ରହିବା କହି ଅନ୍ୟତ୍ର ଅର୍ଥାତ୍ ମଧ୍ୟ ପର୍ବରେ ତଦିତର ସ୍ଥାନରେ ରହିବାର କହି ଅଛନ୍ତି । ଏଥିରୁ ପୂର୍ବାପର କଥାମାନଙ୍କର ପାରସ୍ପରିକ ସଙ୍ଗତିର ହାନି ସ୍ପଷ୍ଟ ହେଉଅଛି । [୩] ଦ୍ରୌପଦୀ ଉପଯମ ପରେ ପାଣ୍ଡବମାନଙ୍କର ହସ୍ତିନାଗମନାବଧିକ ଚରିତମାନଙ୍କରେ ମାତ୍ର ଆଦିପର୍ବକୁ ସମାପ୍ତ କରି, ଅବଶିଷ୍ଟ ଚରିତଗୁଡ଼ିକରେ ପୃଥଗଭୂତ (୧)

[୧] ଏତାଦୃଶ କେତେକ ପ୍ରକରଣରେ କଳ୍ପିତ ଚରିତମାନଙ୍କର ଅନ୍ୟୋନ୍ୟ ଅସଙ୍ଗତା ଦୋଷ ମଧ୍ୟ ପ୍ରକାଶ ପାଏ । ବନପର୍ବ ୧୬୨ — ୧୮୬ ପୃ: ଓ ୨୩୮ — ୨୪୦ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

[୨] ଅର୍ଦ୍ଧରାଜ୍ୟସ୍ୟ ସଂପ୍ରାପ୍ୟ ଖାଣ୍ଡବପ୍ରସ୍ଥମାବିଶନ — ଇତ୍ୟାଦି । ଆ· ପ· ୨୦ ଅ:

[୩] ହସ୍ତିନା ରାଜଭବନ ପଶ୍ଚିମ ପାଶରେ ।
ରହିଲେ ପାଣ୍ଡବେ କୁସୁମ ନଦୀ ପାଖରେ ॥ ୫୭୮ ପୃ:

ଶୁଣ ସାବଧାନେ ମନୁବଂଶର ନୃପତି ।
ବାରୁଣାବନ୍ତେ ରହିଲେ ପାଣ୍ଡବ ସନ୍ତତି ॥ ମଧ୍ୟପର୍ବ ପ୍ରାରମ୍ଭରେ ।

(୧) କହନ୍ତି ଅଗସ୍ତି ବୈବସ୍ୱତ ମନୁ ଶ୍ରୋତା ।
ଅଷ୍ଟାଦଶ ପର୍ବେ ମଧ୍ୟ ପର୍ବର ଏ କଥା ॥ ମ· ପ· ୧ ପୃ:

ମଧ୍ୟପର୍ବ ଅନ୍ତର୍ଭୁକ୍ତ କରି ଅଛନ୍ତି । ମୂଳରେ ମଧ୍ୟପର୍ବ ବୋଲି ଗୋଟିଏ ପର୍ବ ନାହିଁ । ମଧ୍ୟପର୍ବର ପ୍ରାରମ୍ଭରେ ବିବାହର କଳ୍ପିତ ବ୍ୟବସ୍ଥିତ ସମସ୍ତ ପରେ ଯାଜ୍ଞସେନୀଙ୍କର ପ୍ରାଥମିକ ରଜୋଦର୍ଶନବିଷୟକ ପ୍ରକରଣଟି ସେ କୌଣସିମତେ ଜ୍ୟୋତିଃଶାସ୍ତ୍ରାନୁମୋଦିତ ଦୋଷାଦୋଷ ପ୍ରଦର୍ଶନପୂର୍ବକ ବିସ୍ତାର କରି ଲେଖିଅଛନ୍ତି । ଇତଃପୂର୍ବରୁ ଯାଗକନ୍ୟା ଦ୍ରୌପଦୀ ଦୃଷ୍ଟରଜା ଥିବାରୁ ଏ ସବୁ ମୂଳରେ ଉକ୍ତ ନାହିଁ । ଏତାଦୃଶ ଅନେକଗୁଡ଼ିଏ କାଳ୍ପନିକ ଆଉ ଅନ୍ୟୋକ୍ତି କଥାମାନଙ୍କ ସାହାଯ୍ୟରେ ମୂଳର ଅବଶିଷ୍ଟ ଅତ୍ୟଳ୍ପପରିମିତ (ପ୍ରାୟ ୨୮ ପୃଷ୍ଠା ମାତ୍ର) ପାଠରୁ କେତେକ ଛାଡ଼ିଦେଇ ସୁଦ୍ଧା ମଧ୍ୟପର୍ବ ନାମରେ ଗୋଟିଏ ବୃହତ୍ ପର୍ବ କରି ଅଛନ୍ତି । ଇତିମଧ୍ୟରେ କେତେକ ଚରିତକୁ ବ୍ୟତ୍ୟସ୍ତଭାବେ ଲେଖି ଅଛନ୍ତି ।

ଅନନ୍ତର ମୂଳରେ ଲେଖାଅଛି, ସ୍ୱକୀୟ ଗୋଧନାପହାରୀ ଚୋରମାନଙ୍କ ଦଣ୍ଡନାର୍ଥ ଜଣେ ବ୍ରାହ୍ମଣ ରାଜଦ୍ୱାରରେ କରୁଣ ସ୍ୱରରେ ରୋଦନ କଲେ । ଧର୍ମପ୍ରାଣମହାତ୍ମା ସମାଦୃତ-ନିୟମାନୁଷ୍ଠାନ ଅର୍ଜୁନ ପରିଣାମ ଫଳ ଯାହାହେଉ, "ରାଜଧର୍ମ ଅବଶ୍ୟ ପାଳନୀୟ" ମନେ କରି ଆୟୁଧ ଗହଣାର୍ଥ ଯୁଧିଷ୍ଠିର ଓ ଦ୍ରୌପଦୀଙ୍କର ଏକାନ୍ତ ବିହାରସଦନୀଭୂତ ଆୟୁଧାଗାରରେ ପ୍ରବିଷ୍ଟ ହେଲେ । ଅତଏବ ପୂର୍ବକୃତ ନିୟମାନୁମୋଦିତ ଦ୍ୱାଦଶ ବର୍ଷ ବନବାସ ତାହାଙ୍କୁ ସ୍ୱୀକାର କରିବାକୁ ହେଲା । କିନ୍ତୁ ସାରଳାଦାସ ମହାଶୟ କହନ୍ତି କି, ବ୍ରାହ୍ମଣରୂପୀ ଅଗ୍ନିଦେବ ଯୁଧିଷ୍ଠିରଙ୍କୁ ତତ୍‌କ୍ଷଣାତ୍ ଡାକି ଆଣିବାପାଇଁ ଶାପଭୀତି ପ୍ରଦର୍ଶନପୂର୍ବକ ଅନୁରୋଧ କଲାରୁ ଅର୍ଜୁନ ଶାପସାଧ୍ୱସବିକ୍ଳବଚିତ୍ତରେ ଅଗତ୍ୟା ଯୁଧିଷ୍ଠିରଙ୍କ କ୍ରୀଡ଼ାମନ୍ଦିରରେ ପ୍ରବିଷ୍ଟ ହେଲେ । ପୁଣି ତଦୀୟ ଦ୍ୱାରଦେଶରେ ସଙ୍କେତସ୍ୱରୂପ ସ୍ଥାପିତ ପାଦରକ୍ଷକକୁ ବୈଶ୍ୱାନର ଶ୍ୱାନକର୍ତ୍ତୃକ ଅପହୃତ କରାଇ ଥିବାରୁ ଯୁଧିଷ୍ଠିର କୁକୁରକୁ ଅଭିଶପ୍ତ କଲେ; ଇତ୍ୟାଦି । ଅତଃପର ବନବାସକରଣର କିଞ୍ଚିତ୍ ପରେ ବାସବୋପମ ସୁସାହସ ବାସବି ମହାଦେବଙ୍କୁ ନିରସ୍ତ କରି ତଦୀୟ ପାଶୁପତାସ୍ତ୍ର ଏବଂ ପରାକ୍ରମପରିତୁଷ୍ଟା ଭବାନୀଙ୍କର ଅକ୍ଷୟ ତୂଣ ପ୍ରାପ୍ତ ହେବାର ଲେଖି ଅଛନ୍ତି । ଏହା ମୂଳ ଗ୍ରନ୍ଥର ଏହି ସ୍ଥାନର ପାଠ ନୁହେ । ଏହା ତ ବନପର୍ବର କଥା । ଏତାଦୃଶ ଆହୁରି କେତେଗୁଡ଼ିଏ ବିଷୟକୁ ସାରଳାଦାସ ଲେଖି ପକାଇ ଅଛନ୍ତି । ପୁଣି ଏଥି ମଧ୍ୟରେ ଆଉ ଗୋଟିଏ କଥା ମଦ୍‌ଦୃଷ୍ଟ ତାଳପତ୍ର ପୁସ୍ତକଦ୍ୱୟରେ ନାହିଁ । ମାତ୍ର ଛାପା ପୁସ୍ତକରେ ଅଛି । ଏହା ସାରଳାଦାସ ଲେଖି ଅଛନ୍ତି କିମ୍ବା ଅନ୍ୟ କେଉଁ ଲେଖକମ୍ମନ୍ୟମାନଙ୍କର ପ୍ରକ୍ଷେପ, ତାହା ଠିକ୍

ଜଣାଯାଉ ନାହିଁ । କଥାଟା ଏହି— ଶ୍ରୀକୃଷ୍ଣ ମାୟା ସମ୍ଭୂତ୍ମୁଖପୂର୍ବକ ନବକୁଞ୍ଜର ରୂପ ଅର୍ଥାତ୍ ନବଗୋଟି ଜନ୍ତୁର ଆକୃତିବିଶିଷ୍ଟ ବିସ୍ମୟଜନକ ରୂପ ଦେଖାଇବା, ପରେ ଅର୍ଜୁନଙ୍କ ସ୍ତୁତିରେ ସେ ନିଜ ଦିବ୍ୟରୂପ ଦେଖାଇବା, ସେହି ଦିନ ଠାରୁ କୃଷ୍ଣ ଅର୍ପୋଦଶୀ ହୋଇଥିଲେ ବୋଲି ଅର୍ଜୁନ ସ୍ୱୀୟ ଅତିମାନୁଷ ଶସ୍ତ୍ର ପ୍ରଭାବରେ ପୁଣ୍ୟସଲିଳା ଗଙ୍ଗାଙ୍କୁ ସେଠାକୁ ଆନୟନ କରିବା ପ୍ରଭୃତି ବିଷୟମାନ ବିସ୍ତୃତ-ଭାବରେ ଲେଖାଅଛି ।

ଇତଃପର ମୂଳରେ କଥିତ ଅଛି କି, ବନବାସୀ ସିଂହପୃଷ୍ଠାଭିଳାଷୀ ସମ୍ପ୍ରାପ୍ତସମ୍ପୂର୍ଣ୍ଣ ଯୌବନ କାମକମନୀୟ ଅର୍ଜୁନ ଦିନେ ଗଙ୍ଗାଦ୍ୱାରରେ ସ୍ନାନ କରୁଅଛନ୍ତି, ଇତ୍ୟବସରରେ ନାଗରାଜ କୌରବ୍ୟନନ୍ଦିନୀ ଉଲୂପୀ ତଦ୍ଦର୍ଶନରେ ମନ୍ମଥାଶୁଗସନ୍ତପ୍ତହୃଦୟା ହୋଇ କଥଂଚିତ୍ ଅର୍ଜୁନଙ୍କୁ ନାଗଲୋକକୁ ଘେନି-ଗଲେ । ଅର୍ଜୁନ ନାଗକାମିନୀ ସ୍ନେହାନୁରୋଧରେ ଅଧୋଭୁବନରେ [୧] ଏକ ରାତ୍ର ମାତ୍ର ଅବସ୍ଥାନ କଲେ; ଇତ୍ୟାଦି । ଏ ସ୍ଥଳରେ ସାରଳାଦାସ ମହୋଦୟ ଅର୍ଜୁନଙ୍କର ପ୍ରୋକ୍ତ ଦ୍ୱାଦଶବର୍ଷପୁର ପ୍ରବେଶ ଏବଂ ତଦୀୟ ସମଧିଷ୍ଠିତ ତୀର୍ଥ-ମାନଙ୍କ କଥା ସବୁ ତ୍ୟାଗ କରି ଅଛନ୍ତି । ଅତଃପର ବ୍ୟାସଙ୍କ ମତରେ ତୀର୍ଥ ଭ୍ରମଣାନନ୍ତର ମଣିପୁର ରାଜ ଚିତ୍ରବାହନଙ୍କଠାରେ ଉପଗତ ଅର୍ଜୁନ ତଦୀୟ ଦୁହିତା ନେତ୍ରମନଃକମନୀୟା ବିଚିତ୍ରାଙ୍ଗଦାଦିଭୂଷିତା ଚିତ୍ରାଙ୍ଗଦାଙ୍କ ପାଣିଗ୍ରହଣ-ପୂର୍ବକ ତିନି ବର୍ଷ ସେଠାରେ ଅବସ୍ଥାନ କରି (ସ ତଥେତି ପ୍ରତିଜ୍ଞାୟ ତାଂ କନ୍ୟାଂ ପ୍ରତିଗୃହ୍ୟ ଚ । ଉବାସ ନଗରେ ତସ୍ମିନ୍ କୌନ୍ତେୟସ୍ତ୍ରିଃ ସମାଃ – ଆ. ପ. ୨୧୭ ଅ:) ଚିତ୍ରବାହନେୟାଙ୍କ ଗର୍ଭରୁ ଆତ୍ମସଦୃଶ ସନ୍ତାନ ଉତ୍ପାଦନ ପରେ ପୁନରପି ଦେଶାଟନାର୍ଥ ପ୍ରସ୍ଥାନ କରିଥିଲେ । ସାରଳାଦାସ ଏହି ପ୍ରକରଣକୁ ଏ ସ୍ଥଳରେ ନ କହି ବିଚିତ୍ରକଳ୍ପନା ଜାଲରେ ଇତସ୍ତତଃ ବିକ୍ଷେପପୂର୍ବକ ଭିନ୍ନାକାର କରି ଖାଣ୍ଡବଦାହ ପ୍ରଭୃତି ମୂଳ ଆଦିପର୍ବର ସମସ୍ତ କଥା କଥନ ପରିସମାପ୍ତ ହେଲା

[୧] ଅପକୃଷ୍ଟୋ ମହାବାହୁର୍ନାଗରାଜସ୍ୟ କନ୍ୟୟା ।
ଅନ୍ତର୍ଜଲେ ମହାରାଜ ଉଲୂପ୍ୟା କାମବାଣୟା । × × × ×
ସ ନାଗଭବନେ ରାତ୍ରିଂ ତାମୁଷିତ୍ୱା ପ୍ରତାପବାନ୍ ।
ଉଦତିଷ୍ଠତ୍ପୁନ୍ସ୍ତତଃ ସୂର୍ଯ୍ୟେ କୌରବ୍ୟସ୍ୟ ନିବେଶନାତ୍ ।
ଆ. ପ. ୨୧୬ ଅ:

ପରେ ଏକ ସ୍ଥାନରେ ଲେଖି ଅଛନ୍ତି କି, ସମୃଦ୍ଧ ଧୈର୍ଯ୍ୟ ଅନଳ୍ପଶୌର୍ଯ୍ୟ ଦର୍ପଯକ୍ଷ-ସହନନ ଶୌରବର୍ଯ୍ୟ ଅର୍ଜୁନ ଏକାନ୍ତ ବନରେ ଅବସ୍ଥାନ କରୁଥିବା ସମୟରେ ଏକଦା ଯଶୋବନ୍ତ ଦେଶର ନୃପତି ଚନ୍ଦ୍ରାଙ୍କୁରଙ୍କ ପୁତ୍ର ଚନ୍ଦ୍ରଧ୍ୱଜ ସୈନ୍ୟସାମନ୍ତ ସମଭିବ୍ୟାହାରରେ ମୃଗୟାର୍ଥ ଯାଇ ଗହନରେ ପଥଭ୍ରାନ୍ତବଶତଃ ବିଭ୍ରମ୍ୟମାଣ ହୋଇ ସ୍ୱଚ୍ଛସଲିଳ ସକଚ୍ଛପ ଖେଳ ଅଳିକୁଳସମାକୁଳସରୋଜ ଅମ୍ଳାନମୀନବିହଙ୍ଗମ ଏକ ସରୋବରର ଉପକଣ୍ଠରେ ପ୍ରବିଷ୍ଟ ହେଲେ । ସେହି ଜଳାଶୟ ତୀରରେ ପରମହଂସ ଦେଶାଧିପ ବୈରିଷ୍ଟଙ୍କ ତନୟା ଲଳିତସ୍ମିତମରୂପା ସମ୍ପ୍ରଜ୍ଞିତଶୈଶବା କନ୍ୟାଙ୍କୁ ଦେଖି କାମମୋହିତ ହୃଦୟରେ ନିଜ ଅଶ୍ୱପୃଷ୍ଠରେ ବସାଇ ନିଜ ଗୃହାଭିମୁଖରେ ପ୍ରସ୍ଥାନ କଲେ । ତତ୍ସମ୍ବାଦ ଶ୍ରବଣରେ କନ୍ୟା ପିତା ଚତୁରଙ୍ଗ ବଳସହ ଅଭିଯାନ କଲାରୁ ଚନ୍ଦ୍ରଧ୍ୱଜ ସ୍ୱଗଣହୀନ ଶୃଗଣାଭିବୃତ ମୃଗତୁଲ୍ୟ ଭୀତ ଓ ତ୍ରସ୍ତ ହୋଇ ପଳାୟନ ପୂର୍ବକ ଅର୍ଜୁନଙ୍କଠାରେ ଶରଣପ୍ରାର୍ଥୀ ହେଲେ । ଅର୍ଜୁନ ପ୍ରଥମତଃ ସ୍ୱୀୟ ଆଦେଶଲଙ୍ଘନଜନିତ ରୋଷରେ ବୈରିଷ୍ଟଙ୍କୁ ବନ୍ଧନ କରି ତଦୀୟ ବୈନୟିକ-ବୁଦ୍ଧି ପ୍ରସିଦ୍ଧସିଦ୍ଧି ମନ୍ତ୍ରୀଙ୍କ ସାନୁନୟ ପ୍ରାର୍ଥନାରେ ପରେ ମୁକ୍ତ କଲେ ଏବଂ ପ୍ରୋକ୍ତ କନ୍ୟାଙ୍କୁ ଚନ୍ଦ୍ରଧ୍ୱଜଙ୍କୁ ପ୍ରଦାନ କରାଇଲେ । ତତଃପର ବୈରିଷ୍ଟ ନୃପତି ଆପଣାର ସଂପ୍ରାପ୍ତବୟସ୍କା ଲମ୍ବିତା ଓ ଚନ୍ଦ୍ରପଦାନାମ୍ନୀ ଦୁହିତା-ଦ୍ୱୟଙ୍କୁ ଅର୍ଜୁନଙ୍କୁ ପ୍ରଦାନପୂର୍ବକ ବହୁ ଅନୁନୟ ବିନୟରେ ସ୍ୱରାଜ୍ୟକୁ ନେଇ ସସମାରୋହରେ ବିବାହ କରାଇଲେ । [୧] ଅର୍ଜୁନ ସେଠାରେ ଦୁଇ ମାସ ଅବସ୍ଥାନ କରି ଲମ୍ବିତା କନ୍ୟା ଅନ୍ତଃସତ୍ତ୍ୱା ହେବା ପରେ ପୁନଶ୍ଚ ବନବାସାର୍ଥ ସେଠାରୁ ପ୍ରସ୍ଥାନ କଲେ । ସମୟରେ ଲମ୍ବିତାଙ୍କ ଗର୍ଭରୁ ବଭ୍ରୁ (ବଭ୍ରୁ) ବାହନ ନାମକ [୨] ପୁତ୍ର ଜନ୍ମିଥିଲେ । [୩] ଇତଃପର ଅର୍ଜୁନ ଅଗସ୍ତ୍ୟ, ସୌଭଦ୍ର, ପୌଲୋମ କାରନ୍ଧମ ଓ ଭରଦ୍ୱାଜ ତୀର୍ଥରେ ଶାପବଶତଃ କୁମ୍ଭୀରୀଭୂତ ପାଞ୍ଚ ଅପ୍ସରାଙ୍କୁ ଦୁର୍ଗତିରୁ ମୁକ୍ତ କରି ପୁନରପି ମଣିପୁରପତ୍ତନକୁ ପ୍ରତ୍ୟାଗତ ହେଲେ ।

---

[୧] ଷାଠିଏ ଦିନ ତହିଁ ରହିଲା ଫାଲଗୁନ । ମ. ପ. ୭୮ ପୃ:

[୨] ସ୍ୱଭାବେ ବୃଷ ରାଶିରେ ଜନମ ହୋଇଲା ।
ବଭ୍ରୁବାହାନ ଯେ ନାମଟି ସେ ହୋଇଲା ॥ ମ. ପ. ୮୦ ପୃ:

[୩] ବ୍ୟାସଙ୍କ ମତେ ଚନ୍ଦ୍ରାଙ୍ଗଦାଙ୍କ ଗର୍ଭରୁ ଅର୍ଜୁନଙ୍କ ଔରସରେ ଜାତ ସନ୍ତାନଙ୍କ ନାମ ବଭ୍ରୁବାହନ । ଏହି ନାମକୁ ଏ ବଭ୍ରୁବାହନ କରି ଅଛନ୍ତି ।

ତଦନନ୍ତର ନିଜ ଭଗିନୀ ଅଦୃଷ୍ଟପୂର୍ବବ୍ୟସନା ଚିତ୍ରାଙ୍ଗଦାଙ୍କୁ ସ୍ୱଗିରିହରିବଲ୍ଲଭା ଦେଖି ଶୁଭୋଦର୍କ ବଚନରେ ସାନ୍ତ୍ୱନା ଦେଲେ । ତଦୀୟ ପୁତ୍ର ବଭ୍ରୁବାହନଙ୍କୁ ଦେଖି ଗୋକର୍ଣ୍ଣ ପ୍ରଭୃତି ତୀର୍ଥ ଦର୍ଶନାର୍ଥ ପୁନଃ ପ୍ରସ୍ଥାନ କଲେ ବୋଲି ମୂଳରେ ଲେଖା ଅଛି । ମାତ୍ର ସାରଳାଦାସ କବି ଏ ସବୁ ଲେଖି ନାହାନ୍ତି; କାରଣ ପୂର୍ବୋକ୍ତ କାଳ୍ପନିକ ଚରିତରେ ଏହାର ଆଂଶିକ ବିବରଣ ଭିନ୍ନ ପ୍ରକାର ଅନ୍ତର୍ନିହିତ ହୋଇ ଯାଇଅଛି ।

ପୌରନ୍ଦର ଖାଣ୍ଡବବନ ଦାହଚରିତ ତୀର୍ଣ୍ଣପ୍ରତିଜ୍ଞ ଅର୍ଜୁନଙ୍କର ଦ୍ୱାଦଶ ବର୍ଷ ବନବାସ ପରେ ଆଦିପର୍ବର ସର୍ବଶେଷରେ ଘଟିଥିବାର ମୂଳରେ ଉକ୍ତ ଅଛି । ମାତ୍ର ସାରଳାଦାସ ମହାଶୟ ବାସବି ବନବାସର ଅତ୍ୟଳ୍ପ କାଳରେ ସମ୍ଭବି ଥିବାର କହି ତଦନନ୍ତର ଅନେକ ଅମୌଳିକ କଥା ଆଦି ସୁଭଦ୍ରା ବିବାହାଦି ଲେଖି ଅଛନ୍ତି । ତଥାପି ଚରିତମାନଙ୍କର ସାମ୍ୟ ମଧ୍ୟ ରକ୍ଷା କରିପାରି ନାହାନ୍ତି । ବ୍ୟାସଦେବ କହି ଅଛନ୍ତି କି, ବିଶ୍ରୁତ ପୌରୁଷ ଅର୍ଜୁନ ଖାଣ୍ଡବଦାହାର୍ଥ କୃତୋଦ୍ୟମ ହେବା ସମୟରେ ତଦୀୟ ପ୍ରାର୍ଥନାନୁସାରେ ଅଗ୍ନିଦେବ ବରୁଣଙ୍କ-ଠାରୁ ମାତ୍ର ଗାଣ୍ଡୀବ ଧନୁ, କପିଧ୍ୱଜ ରଥ ଓ ଚକ୍ର ପ୍ରଭୃତି କେତେକ ଅସ୍ତ୍ର ଆଣି ଦେଇଥିଲେ । ଦାସ କବି ଏହି ଅସ୍ତ୍ରାହରଣ ବିଷୟକୁ ବିସ୍ତର କରି ଲେଖିବାକୁ ଯାଇ ବିବିଧ କଳ୍ପିତ ନାମଜାଲରେ ସମସ୍ତ ଦେବତାପ୍ରଦତ୍ତ ଅସ୍ତ୍ରଶସ୍ତ୍ରସନ୍ଦୋହର ଉଲ୍ଲେଖ କରି ଅଛନ୍ତି । ନନ୍ଦନସହୋଦର ସମଗ୍ର ଖାଣ୍ଡବର ଦଗ୍ଧୀକରଣ ବ୍ୟାପାର କୃଷ୍ଣ ଓ ଅର୍ଜୁନ [୧] ପଞ୍ଚଦଶ ଦିନରେ ନିଷ୍ପନ୍ନ କରିଥିଲେ । ସେହି ଜ୍ୱାଳାଜାଳକରାଳ ସର୍ବତୋମୁଖ ଅନଳୋତ୍ପାତରୁ ତଦ୍‌ବନସ୍ଥ ଛଅ ପ୍ରାଣୀ ମାତ୍ର ଉଦ୍ଧାର ପାଇଥିଲେ । କିନ୍ତୁ ସାରଳାଦାସ ପ୍ରୋକ୍ତ କାର୍ଯ୍ୟକୁ (୧) ଦିନତ୍ରୟସାଧ

---

[୧] ତଦ୍‌ବନଂ ପାବକୋ ଧୀମାନ୍ ଦିନାନି ଦଶପଞ୍ଚ ଚ ।
ଦଦାହ କୃଷ୍ଣପାର୍ଥାଭ୍ୟାଂ ରକ୍ଷିତଃ ପାକଶାସନାତ୍ ॥
ତସ୍ମିନ୍ ବନେ ଦହ୍ୟମାନେ ଷଡ଼ଗ୍ନିର୍ନ ଦଦାହ ଚ ।
ଅଶ୍ୱସେନଂ ମୟଂ ଚୈବ ଚତୁରଃ ଶାର୍ଙ୍ଗକାଂସ୍ତଥା ॥

ଆ: ପ: ୨୩୦ ଅ:

(୧) ସହସ୍ରେ ନବ ଯୋଜନ ସେ ଖାଣ୍ଡବ ବନ ।
ତିନି ଦିନ ତିନି ରାତ୍ରେ ହୋଇଲା ଦହନ ॥

କରି ତତ୍ରତ୍ୟ ସମଧିକ ପ୍ରାଣିଗଣର ଉଦ୍ଧାର କଳ୍ପନା କର ଅଛନ୍ତି; ତଥାଚ ତାଙ୍କୁ ଇତସ୍ତତଃ ବକ୍ଷେପପୂର୍ବକ ବସ୍ତର କର ଅଛନ୍ତି ।

ପରେ କହନ୍ତି କ ଇନ୍ଦ୍ର ସମସ୍ତରେ ଅଙ୍ଗୁଳୋପମା ତିଳୋତ୍ତମାଙ୍କୁ କାର୍ଯ୍ୟାନ୍ତରରେ ବୃନ୍ଦଶ୍ରବାନାମକ ଗନ୍ଧର୍ବଙ୍କଠାଙ୍କୁ ପ୍ରେରଣ କରିଥିଲେ, ଗନ୍ଧର୍ବ ତିଳୋତ୍ତମାଙ୍କ ପ୍ରତି କାମାସକ୍ତ ହୋଇ କହର୍ଷ ହେବାରୁ ବାସବପ୍ରାର୍ଥମାୟୀ ମହମାୟୀ ତିଳୋତ୍ତମା ଅସ୍ୱୀକାରପୂର୍ବକ ପଳାୟନୋନ୍ମୁଖୀ ହେଲେ । ତେତେ-

ଖାଣ୍ଡବ ବନ ଯେବେଟି ଦହନ ହୋଇଲା ।
ସେଠାରୁ ଶୋଷେକ କାଳସର୍ପ ପଳାଇଲା ॥
ତାକ୍ଷୀ ପକ୍ଷୀ ବୋଲି ଯେ ଚଢ଼ାଇ ଗୋଟିଏ ।
ଗର୍ଭବାସେ ଅର୍ଜୁନ ଶରଣ ସମ୍ଭାଏ ॥
ତାରକ୍ଷୀ ପକ୍ଷୀ ଯେ ଗୃହଗୋଟି ପୁତ୍ର ଘେନ ।
ସେହି ରକ୍ଷା ହେଲା ତାକୁ ନ ଦହିଲା ଅଗ୍ନି ॥ ମ: ପ: ୩୯ ପୃ:
ଅଗ୍ନିରେ ଶରଣ ଗଲା ଯେ ଚଟ ଚଢ଼ାଇ ।
ସେ ପ୍ରାଣ ପାଇଲା ଅଗ୍ନିଙ୍କର ପାଶେ ଥାଇ ॥
ତାମ୍ରଚୂଡ଼ ବୋଲଣ ଯେ ଚଢ଼ାଇ ଗୋଟିଏ ।
ଶ୍ରୀରାମ ମୁକୁଟ ଦେଖି ଛାଡ଼େ ଧନଞ୍ଜୟେ ॥
ବିଷ୍ଣୁ ବୃକ୍ଷ ବୋଲି ଯେ ଓଶସ୍ତ ରକ୍ଷାଗଲା ।
ଅଗ୍ନି ଦେବତା ତାହାକୁ ସ୍ୱଭାବେଣ ଛାଡ଼ିଲା ॥
ପାଳଧୂଆ ଗଛକୁ ରଖିଲେ ବୈଶ୍ୱାନରେ ।
ମାଳକଣ୍ଠ ରକ୍ଷାଗଲା ରୁଦ୍ରଙ୍କ ବିହାରେ ॥
ପୁଷ୍ପଙ୍କ ମଧ୍ୟେ ଯେ ବକୁଳ ରକ୍ଷା ଗଲା ।
ସେକ କୁସୁମ ତାହାକୁ ଆଦିତ୍ୟ ରଖିଲା ॥
ବିଷ୍ଣୁ ପ୍ରସାଦ ଓଶସ୍ତ ଯେ ପରମେଶ୍ୱର ।
ବକୁଳ ସେକ ରଖିଲେ ପୁଷ୍ପମାନୁ ସାର ॥
ଶୋଷେକ ସର୍ପ ତାରକ୍ଷୀ ପକ୍ଷୀ ତାମ୍ରଚୂଡ଼ ।
ଚଟ ଚଢ଼ାଇ ରହିଲା ସେ ଯେ ଅଗ୍ନି ଆଡ଼ ॥
ସାରଙ୍ଗ ପକ୍ଷୀ ଶରଣ ଗଲା ଅଗ୍ନିଙ୍କର ।
ଏତେ ରହିଲେ ଖାଣ୍ଡବ ବନ ଦହନର ॥ ମ: ପ: ୪୩ ପୃ:

ବେଳେ ଗନ୍ଧର୍ବ ଶାପ ଦେଲେ କି "ତୁମ୍ଭେ ତାମ୍ରକ୍ଷୀ ପକ୍ଷୀ ହୁଅ ।" ତଚ୍ଛ୍ରବଣରେ ଇନ୍ଦ୍ର କ୍ରୁଦ୍ଧ ହୋଇ ବୃଦ୍ଧଶ୍ରବା ଗନ୍ଧର୍ବଙ୍କୁ ମାଳକଣ୍ଠ ପକ୍ଷୀ ହେବାକୁ ଶାପ ଦେଲେ; ଇତ୍ୟାଦି । * ଅନନ୍ତର ଶତମନ୍ୟୁ ଅମିତମନ୍ୟୁଙ୍କ ହୃଦୟରେ ସ୍ୱନନ୍ଦନାଦରଣୀୟ ନନ୍ଦନୋପମ ଖାଣ୍ଡବ ବନର ଦୁର୍ଗତିକାରଣ ବୃହସ୍ପତିଙ୍କୁ ଜିଜ୍ଞାସା କଲାରୁ ସେ ସମଗ୍ର ଜ୍ୟୋତିଃଶାସ୍ତ୍ର ଅନ୍ୱେଷଣ କରି ସୁଦ୍ଧା କାରଣ ବୁଝି ପାରିଲେ ନାହିଁ । ଅତଃପର ଇନ୍ଦ୍ର ସଦନାଗତ ଅର୍ଜୁନଙ୍କୁ ସଙ୍ଗେ ନେଇ ବ୍ରହ୍ମେନ୍ଦ୍ରାଦି ଦେବବୃନ୍ଦ ପ୍ରୋକ୍ତ କାରଣ ଜିଜ୍ଞାସାରେ ଭବାନୀଙ୍କଠାକୁ ଗଲେ, ପାର୍ବତୀ ସୁଦ୍ଧା ତଦୁତ୍ତର-ଦାନରେ ଅସମର୍ଥା ହେବାରୁ ସମବେତ ତ୍ରିଦଶଗଣ ମହାଦେବଙ୍କଠାକୁ ପ୍ରସ୍ଥାନ କଲେ । ଦେବଦେବ ମହାଦେବ ଅର୍ଜୁନଙ୍କୁ ଦେଖି ଇତଃପୂର୍ବେ ସମ୍ଭୂତ ସ୍ୱକୀୟ ଗଣ୍ଡକ (ଗଣ୍ଡା) ନିଧନସଂକ୍ରାନ୍ତ ଯୁଦ୍ଧ କଥାମାନ କହିଲା ପରେ ଖାଣ୍ଡବଦାହର କାରଣ ପ୍ରକାଶ କଲେ ଯେ, ପୂର୍ବେ ଚନ୍ଦ୍ର ଉତ୍ତରଭାଦ୍ର ସଂଯୋଗାନନ୍ତର ରେବତୀଙ୍କ ଗୃହକୁ ଯିବା ସମୟରେ ଖାଣ୍ଡବ ନିର୍ମାଣର ମୁହୂର୍ତ୍ତ ନିର୍ଦ୍ଧାରିତ ହୋଇଥିବାରୁ ବର୍ତ୍ତମାନ ସେ ଦଗ୍ଧ ହେଲା । ଅମୋଘ ଦର୍ଶନ ଆଶୁତୋଷ ମହେଶ ଏହା କହିଲା ପରେ ମନ୍ତ୍ରିଙ୍କ ଜଳସେଚନରେ ଖାଣ୍ଡବକୁ ପୁନର୍ବାର ନବୀକୃତ କରାଇଲେ । ପାଠକେ ! ଏ ସବୁ ଏବଂ ତତ୍ସଲଗ୍ନ ଶୋଷକ କାଳସର୍ପର କେତେକ କଥା ବୋଧହୁଏ କଳ୍ପନାପ୍ରବୀଣ ସାରଳାଦାସଙ୍କ କାଳ୍ପନିକ ଶକ୍ତିପ୍ରସୂତ କୃତ୍ରିମ ଘଟନା ମାତ୍ର ।

(୧୫) † ଏହା ପରେ ମାତ୍ସର୍ଯ୍ୟକବଳିତହୃଦୟ ଶତଧନ୍ୱା ଭାସ୍କରପ୍ରଦତ୍ତ ମଣିଲୋଭର ଶତ୍ରାଜିତଙ୍କୁ ନିହତ କରି ଶ୍ରୀକୃଷ୍ଣଙ୍କ ଭୟରେ କ୍ରମଶଃ ଅକ୍ରୂରକର୍ମା ଅକ୍ରୂର, ଉଦ୍ଧବ, ଯୁଧିଷ୍ଠିର ଏବଂ କୃତକେଶରୀ ରାଜା ଆଉ ବଷ୍ଟୁକେଶରୀ ନଗରର ନୃପତି ବଷ୍ଟୁକର ଦାସଙ୍କଠାରେ ଶରଣ ପ୍ରାର୍ଥନାପୂର୍ବକ ବିଫଳକାମ

---

* ବୃଦ୍ଧଶ୍ରବା ହୋଇବ ଯେ ମାଳକଣ୍ଠ ପକ୍ଷୀ ।
ତୋର ନାମ ହୋଇବ ପକ୍ଷୀ ଯେ ତାମ୍ରକ୍ଷୀ ॥ ମ: ପ: ୪୫ ପୃ:
ଏ ସ୍ଥଳରେ ବୃଦ୍ଧଶ୍ରବା ଶବ୍ଦର ଅର୍ଥ ଗନ୍ଧର୍ବ ବିଶେଷ ।

† ଏହି ବିଷୟଟିକି ପ୍ରଥମତଃ ଅନନ୍ତପ୍ରସର ଭାବରେ ଜତୁଗୃହ ଘଟନାର ଅବ୍ୟବହିତ ପରେ ମଧ୍ୟ କହି ଅଛନ୍ତି । ତାହାହିଁ ଏ ସ୍ଥଳରେ ଅପେକ୍ଷାକୃତ ଟିକିଏ ବିସ୍ତୃତରୂପେ ଆଡମ୍ବିତ କରି ଅଛନ୍ତି ।

ହେଲା ପରେ ସେହି ଭଗ୍ନମନୋରଥ ଅନାଥ ପ୍ରାୟ ହୋଇ ଅର୍ଜୁନଙ୍କୁ ଶରଣ କରି ପ୍ରାଣଭିକ୍ଷା କରିବା, ସୂଚୀଭେଦ୍ୟ ପ୍ରଗାଢ଼ ମେଦୁରତିମିରକରାଳ ରାତି-କାଳରେ ଅନବଧାନସ୍ଥ କରାଳବଂଶଧାରୀ ଅର୍ଜୁନ ତଦ୍ଭବନରେ କୃତସଂକଳ୍ପ ହେବା, ଅର୍ଜୁନ ଓ ଶ୍ରୀକୃଷ୍ଣ ଉଭୟେ ଅପ୍ରତିପନ୍ନ ପରିତପ୍ତ ଘୋରତର ସଂପ୍ରହାରରେ ମାରିବା ଇତ୍ୟାଦି ଅନେକଗୁଡ଼ାଏ କଥା ସାରଳାଦାସ କବି ଲେଖି ଥିବାର ଦେଖାଯାଏ । କିନ୍ତୁ ତଦ୍ଭିନ୍ନ କେତେକ କଥା ଯାହା ଯାହା କି ଛାପା ପୁସ୍ତକରେ ଦେଖାଯାଏ, ତାହା ତାଳପତ୍ର ପୁସ୍ତକରେ ଦେଖିବାକୁ ପାଇଲୁଁ ନାହିଁ । ଯାହାହେଉ ବୈରଭରପୀଡ଼ିତ ଆଧିବ୍ୟାଧିରୂଢ଼ ଶତଧନୁଙ୍କ ବିଷୟ ଯେ କୌଣସି ପ୍ରକାରରେ ଉଭୟଙ୍କ ଲେଖାଅଛି । [୧] ଏଥିର ମୌଳିକ ଚରିତାଂଶକୁ ଦାସ କବି ମହୋଦୟ ବ୍ୟାସୋକ୍ତ ଶ୍ରୀମଦ୍ଭାଗବତ ଗ୍ରନ୍ଥରୁ ନେଇ ନିଜ କଳ୍ପନା ଜଳ୍ପନା ସହକାରେ ଅତି ବିସ୍ତାର କରି ଅଛନ୍ତି । [୨] ଏହା ଭାରତ ଅଷ୍ଟାଦଶ ପର୍ବଗତ ଚରିତ ନ ହେଲେ ସୁଦ୍ଧା କବି ପୂର୍ବାପର ଚରିତମାନଙ୍କର ସମସାମୟିକତ୍ୱ ବିସ୍ମରଣରେ ଅନ୍ୟ ଗ୍ରନ୍ଥକୁ ଅନୁକରଣ କରି ଅନ୍ୟାନ୍ୟ ବିଷୟ ମିଳାଇ ପାରନ୍ତି; ଏହା ତଦନୁରୂପ ହୋଇପାରେ । କିନ୍ତୁ ଏ ବିଷୟକୁ ଇତଃପୂର୍ବେ ଜତୁଗୃହ ଘଟନା ପରେ ମଧ୍ୟ ଦେବା ଅସଙ୍ଗତ । ପୁନଶ୍ଚ ଏ ସ୍ଥଳରେ ବ୍ୟକ୍ତ କରିଦେବା ଉଚିତ ଯେ, ସାରଳାଦାସ କବି ଯେପରି ଅନ୍ୟାନ୍ୟ ସ୍ଥଳମାନଙ୍କରେ କାହିଁକି, ପ୍ରାୟ ସର୍ବତ୍ର ବୋଇଲେ ଚଳେ, ମୂଳଗତ ନାମ ତ୍ୟାଗ କରି ସ୍ୱକୀୟ କପୋଳକଳ୍ପିତ ନାମମାନଙ୍କୁ ଦେଇ ଚରିତମାନଙ୍କର ଉଲ୍ଲେଖ କରି ଅଛନ୍ତି, ଅନାଦିନିର୍ଦ୍ଦିଷ୍ଟ ଅପରିବର୍ତ୍ତନୀୟ ସମୁଦ୍ରର ପ୍ରଭୃତିର ନାମମାନ ସୁଦ୍ଧା ସେହିପରି ସ୍ଥାନେ ସ୍ଥାନେ କଳ୍ପନାରେ ପକାଇ ବିସ୍ମୟକର ବିଲକ୍ଷଣ କରିଦେଇ ଅଛନ୍ତି । (୧) ଅନନ୍ତର

---

[୧] ଛାପା ପୁସ୍ତକ ମଧ୍ୟପର୍ବ ୮୦ ପୃଷ୍ଠାରୁ ଆରମ୍ଭ କରି ୯୦ ପୃଷ୍ଠାଯାଏ ଦେଖନ୍ତୁ ।

[୨] ଶ୍ରୀମଦ୍‌ଭାଗବତ, ଦଶମସ୍କନ୍ଧ, ୭୧ ଅଧ୍ୟାୟରେ ଶତଧନୁ ଶତ୍ରାଜିତଙ୍କୁ ନାଶ କରି ମଣି ନେବାର ଉକ୍ତ ଅଛି ।

(୧) ଜମ୍ବୁ ସମ୍ଭାଷଣ ବୋଲି ଏକ ସମୁଦ୍ରରେ ।
ଦୁର୍ଯ୍ୟୋଧନ ରାଜା ପଞ୍ଚନ୍ତରିଶି ଅଙ୍କରେ ॥
ଦୁର୍ଯ୍ୟୋଧନ ରଜାର ପଞ୍ଚନ୍ତରିଶି ଅଙ୍କ ଶ୍ରାନ୍ତ ।
ଜାମ୍ବୁଭ ନାମ ସେ ସମୁଦ୍ରର ହୋଇ ॥

ତାଳପତ୍ର ପୁସ୍ତକରେ ଏପରି ଅଛି ।

ଶାନ୍ତାକନ୍ତକ ମଣିହରଣ ଚରିତ ପରେ ଛପା ପୁସ୍ତକରେ ୧୦୧ ପୃଷ୍ଠାରୁ ପ୍ରାରମ୍ଭ କରି ୧୧୬ ପୃଷ୍ଠା ଯାଏ ମହାଭାରତରେ ଅନୁକ୍ତ ଅନଳ୍ପବଳ କଲ୍ପାସୁରବଧ ଦୈତ୍ୟ ଶ୍ରୀକୃଷ୍ଣ ଓ ମହାଦେବଙ୍କ ହମ୍ପାପୁରେ ମବାସ୍ତ ଆଜ ବ୍ରାହ୍ମଣଙ୍କ ପ୍ରାଣାୟାମ ପରି ତଦଧୀନ ଆଶୀର୍ବାଦବଳରୁ ଅଁଶୁଗଜାଳାହତରେ ନିତ୍ୟାସ କରି ପକାଇବା, ତହିଁର ପ୍ରଥମତଃ ପରାଜିତ କର୍ଣ୍ଣଙ୍କୁ କୃଷ୍ଣ ଓ ମହାଦେବ "ଜନ୍ମେ ଦେହସ୍ତ ଆଧିରେ ସ୍ପୃଷ୍ଟ ନ ହେଲ ପ୍ରାପ୍ତ ମହାଭାର ରଣରେ ନିରୁତ୍ସାହ ହୁଅନ୍ତୁ ନାହିଁ" ଏହି ମତ ଅନୁସରଣପୂର୍ବକ ନିରପାୟ ଉପାୟ କଳ୍ପନାରେ ନିଜ ଶରୀରରୁ ବିଚ୍ଛେଦିତ ଅମୋଘୀକୃତ ଅଙ୍ଗୁଷ୍ଠୀକୁ ଶସ୍ତ୍ରଭୂତ ରୂପରେ ପ୍ରଦାନ କରିବାରୁ ସେ (କର୍ଣ୍ଣ) ତତ୍ସହାୟ ହୋଇ କଲ୍ପାସୁରକୁ ନିହତ କରି ପାରିବା ଇତ୍ୟାଦି କଥା ବିସ୍ତୃତ ଭାବରେ ଉକ୍ତ ଅଛି । ତଥାଚ ପ୍ରୋକ୍ତ କଲ୍ପାସୁରର ପୁତ୍ର କୁମ୍ଭକ ଦୈତ୍ୟର କଥା ତଦନୁରୂପେ ୧୧୨ ପୃଷ୍ଠା ପ୍ରାରମ୍ଭରୁ ୧୨୨ ପୃଷ୍ଠା ଯାଏ ଛପା ପୁସ୍ତକରେ ଲେଖା ଅଛି । କିନ୍ତୁ ମତ୍ପଠିତ ତାଳପତ୍ର ପୁସ୍ତକଦ୍ୱୟରେ ଦେଖାନାହିଁ, ମାତ୍ର ଅନ୍ୟାନ୍ୟ ପୁସ୍ତକମାନଙ୍କରେ ଥାଇପାରେ । ତଥାପି ଏହା ସବୁ ଶ୍ରୀମାନ୍ ସାରଳାଦାସ କବି ଲେଖି ଅଛନ୍ତି, ଅଥଚ ଅପରାପର ସମଧିକ ତାଳପତ୍ର ପୁସ୍ତକମାନଙ୍କରେ ମଧ୍ୟ ଥାଇପାରେ; ଏଥିରେ ସମ୍ପୂର୍ଣ୍ଣ ବିଶ୍ୱାସ ଜନ୍ମୁ ନାହିଁ, କାରଣ ଏହି ଯେ

"ଷୋଡ଼ଶ ଯୋଜନ ଲମ୍ବିତ ଅଟଇ ଏ ଗିରି ।
ଦ୍ୱାଦଶ ଯୋଜନ ଯୋଡ଼ା ଉତ୍ସର୍ଗ ଯେ ଗୃହ ॥
ବାସୁଦେବ ବୋଇଲେ ଶୁଣିମା ହଳାହସ୍ତେ ।
ଏ ପର୍ବତେ ସତ୍ୟଯୁଗେ ଯାଗ କଲ ଇନ୍ଦ୍ରବ୍ରତେ ॥"

ଇତ୍ୟାଦି ରୂପେ ଏହାର ପରବର୍ତ୍ତୀ ଶ୍ରୀକୃଷ୍ଣଙ୍କ ଅନୁଷ୍ଠିତ ଯାଗବିଷୟକ ପାଠ ତାଳପତ୍ର ପୁସ୍ତକରେ ସୁଶୃଙ୍ଖଳତଃ ସମାନ ମିଳିପାଇ ଅଛି; ମାତ୍ର ଛପା ପୁସ୍ତକରେ ଉପରିଦତ୍ତ ପ୍ରଥମ ପଦ୍ୟଟି (ମଧ୍ୟପର୍ବ) ୧୦୧ ପୃଷ୍ଠାରେ ଲେଖା ଅଛି,

---

ଦକଡ଼ା ମାସର କୃଷ୍ଣ ଦ୍ୱିତୀୟାରେ ଭେଟି ।
ପୂର୍ବଭାଦ୍ର ନକ୍ଷତ୍ର ସେ ବିକ ଦରଣଟି ॥

ସେ ଦିନ ଦ୍ୱାରକା ସମ୍ଭଏ ବିଜେ ଜଗନ୍ନାଥେ — ଇତ୍ୟାଦି, ମଧ୍ୟପର୍ବ ୯୧ ପୃ:

ବର୍ଷ, ବ୍ରହ୍ମା, ଇନ୍ଦ୍ର, ଚନ୍ଦ୍ର ପ୍ରଭୃତିଙ୍କର ଏପରି ବିଲକ୍ଷଣ କଳ୍ପିତ ନାମମାନ ଅନେକ ସ୍ଥଳରେ ଦେଇ ଅଛନ୍ତି ।

ପରନ୍ତୁ ବିଂଶତ୍ୟ ପଦ୍ୟଟି (କମ୍ବା ତାହାର ତୁଲ୍ୟାର୍ଥ ପଦ୍ୟଟି) ୧୨୩ ପୃଷ୍ଠାରେ ଲେଖା ଅଛି । ଶଂସିତ ପଦ୍ୟଦ୍ୱୟ ମଧ୍ୟରେ କଳ୍ପାସୁର ଆଉ ତତ୍ପୁତ୍ର କୁମ୍ଭ ଦୈତ୍ୟର ବୃତ୍ତାନ୍ତ ଅନବଲମ୍ବିତ ଅବାନ୍ତର ଚରିତ ପ୍ରାପ୍ୟ ପ୍ରକ୍ଷିପ୍ତ ହୋଇଅଛି । ଏଥିରୁ ଏହାକି ଅନୁମିତ ହୁଏ ନାହିଁ ଯେ, ଅନ୍ୟ କେହି ଲେଖକଂମନ୍ୟ ସାରଳାଦାସଙ୍କ ଲେଖାରେ ଏହା ମିଶାଇ ଦେଇ ଅଛନ୍ତି ?

କଳ୍ପାସୁର କଥା ପୁରାଣାନ୍ତର୍ଗତ ଶୈବମାହାତ୍ମ୍ୟ ପ୍ରଖ୍ୟାପକ ସ୍ଥଳରେ ଯେ କୌଣସି ପ୍ରକାରେ ଉକ୍ତ ଥିବାର ଶୁଣାଅଛି, ମାତ୍ର କୁମ୍ଭ ବା କୁମ୍ଭକ ଦୈତ୍ୟର କଥା ପୁରାଣାନ୍ତରରେ କେଉଁଠି ଅଛି କି ନାହିଁ ତାହାର ପ୍ରମାଣ କରି ଦେଇ ନ ପାରୁଁ । ପରନ୍ତୁ ଖିଲହରିବଂଶୀୟ ବିଷ୍ଣୁପର୍ବର ତ୍ର୍ୟଶୀତିତମାଧ୍ୟାୟକୁ ପ୍ରାରମ୍ଭ କରି ପଞ୍ଚାଶୀତିତମାଧ୍ୟାୟ ପର୍ଯ୍ୟନ୍ତ ବ୍ୟାପୀ ଚରିତରେ ଉକ୍ତ ଅଛି କି, ଷଟ୍‌ପୁରନାମକ (୧) ଗୁହାବାସରତ ନବାସୀ ନିକୁମ୍ଭ ନାମକ ଦୈତ୍ୟକୁ ନିହତ କରିଥିଲେ । ମାତ୍ର ଏହି ନିକୁମ୍ଭଦୈତ୍ୟବଧୋପାଖ୍ୟାନସମସ୍ତ କୁମ୍ଭକଦୈତ୍ୟ ଚରିତପ୍ରଣାଳୀ ଭିନ୍ନ ପ୍ରକାର ହୋଇଅଛି । ତେବେ କିପରି ସ୍ପଷ୍ଟତଃ କୁହାଯାଇ ପାରିବ ଯେ, ହରିବଂଶୋକ୍ତ ଏହି ଚରିତକୁ ଅନୁସରି ସାରଳାଦାସ କମ୍ବା ତତ୍‌ପରବର୍ତ୍ତୀ ସାବହିଥିବ ଭାରତର ଲେଖକଂମନ୍ୟ ଅନ୍ୟ କେହି କୁମ୍ଭକ ଦୈତ୍ୟର ଚରିତ ରଚି ଅଛନ୍ତି । ଅପିଚ ଆଉ ଗୋଟିଏ ତାଦୃଶ ନୈକୁମ୍ଭିକ ଚରିତ ପ୍ରୋକ୍ତ ବିଷ୍ଣୁପର୍ବରେ ଉଦ୍ଧୃତ ଅଛି । ତଦାୟାନୁକରଣରେ କଳ୍ପିତ କୌମ୍ଭକୀୟ ବୃତ୍ତାନ୍ତ ଗଠିତ ହୋଇଥାଇ ପାରେ କି ନାହିଁ, ପୌରାଣିକମାନେ ମୀମାଂସା କରି ପାରିବେ । ଚରିତଟିର ସଂକ୍ଷିପ୍ତ ସାରାଂଶ ଏହି ଯେ, ସମୟରେ ପଶ୍ଚାତ୍ ସମାସାଦିତବାହ୍ୟମାନ ଶ୍ରୀକୃଷ୍ଣ ସମଗ୍ର ଯାଦବୀୟ ସୁହୃଦ ଅନୁଚରପରିକରଙ୍କ ସହ ସମୁଦ୍ରକ୍ରୀଡାରେ ରତ ଥିଲେ । ଇତ୍ୟବସରରେ ଯାଦବ ବିଶେଷ ଭାନୁଙ୍କ ପୁତ୍ରୀ ଭାନୁମତୀଙ୍କି ନିକୁମ୍ଭନାମକ ଦୈତ୍ୟ ହଠାତ୍ ଅପହରଣ କଲା । ତଦବଗମନରେ ରୋଷାମର୍ଷପରିତ ଶ୍ରୀକୃଷ୍ଣ କ୍ରୂରକର୍ମା ନିକୁମ୍ଭକୁ ବିନାଶ କରି ଅପହୃତା ଭାନୁମତୀଙ୍କି ମାଦ୍ରେୟ ସହଦେବଙ୍କ ସହ ବିବାହିତ କରାଇଲେ । ସେ ସବୁ ଯାହାହେଉ, ପ୍ରୋକ୍ତ ଦୈତ୍ୟଦ୍ୱୟଙ୍କ ବୃତ୍ତାନ୍ତ ବୈୟାସକ ସନ୍ଦର୍ଭ ପରିପାଟୀର ଏଠାରେ ଅନୁକ୍ତ ବୋଲି ମଣ୍ଡୂକମଞ୍ଜୂଷିକାତୁଲ୍ୟ ମୁକ୍ତାଶକ୍ତି-ବିଶୁଦ୍ଧ-ସିନ୍ଧୁକଟିମା ସହ ତୁଲ୍ୟାଦରମାତ୍ର ନ ହେଲେ ହେଁ ପରି ଅନ୍ୟାନ୍ୟ ଭାରତୀୟ ଶୌର୍ଯ୍ୟପ୍ରଖ୍ୟାପକ ଚରିତ ସହ ସମ୍ଭାମାନ୍ତିତ ହୋଇ ନ ପାରେ ।

(୧) ଗୁହାଂ ଷଟ୍‌ପୁରସଙ୍କ୍ଷିତାଂ— ହରିବଂଶ ବିଷ୍ଣୁପର୍ବ । ୪ ଅ. ୨୭ ଶ୍ଳୋକ ।

ଅତଃପର ସାଗର ଶ୍ରୀକୃଷ୍ଣ ଦୈବତାଭିଧ ଭୂଧରୋପତ୍ୟକାରେ ଅନଳ୍ପ-ବିବିଧବସ୍ତୁ-ଯାଗାନୁଷ୍ଠାନ କରୁ ସମୟରେ ଗୋସିଂହ (୧) ନାମକ ଦୈତ୍ୟ ଆକ୍ରମଣପୂର୍ବକ ମାନବ ବଳରାମଙ୍କୁ ହତାହତ କରି ସନ୍ତ୍ୟାସୀମାଙ୍କୁ ଧରି ପଳାଉଥିଲା । ଇତ୍ୟବସରରେ ଦୈବାଦବଗତବୃତ୍ତାନ୍ତ ବିଗତବିଶ୍ରାନ୍ତମହତ୍ତ୍ୱ ବନବାସ ପ୍ରବୃତ୍ତ କୌନ୍ତେୟ ଅର୍ଜୁନ ମଣିଭଦ୍ରା ପର୍ବତରୁ ହଠାତ୍ ଉପଗତ ହୋଇ ଗୋସିଂହକୁ ବିନାଶିତ କଲେ, ଇତ୍ୟାଦି ବିଷୟକ କଥାମାନ ବିସ୍ତୃତ ଭାବରେ ବର୍ଣ୍ଣିତ ଅଛି । ଏହା ମୂଳ ଭାରତରେ ଅପ୍ରତିପାଦିତ ସତ୍ୟ, କିନ୍ତୁ କହୁ ପୁରାଣ କଥାଭିଜ୍ଞ ଅନଳ୍ପପ୍ରଜ୍ଞ ସାରଳାଦାସ ଶ୍ରୀମଦ୍‌ଭାଗବତରୁ ଏହା ଗ୍ରହଣ କରି ଅଛନ୍ତି ।

(୧୬) ମୂଳ ଗ୍ରନ୍ଥରେ ସୁଭଦ୍ରାହରଣ ସମ୍ବନ୍ଧରେ ଉକ୍ତ ଅଛି ଯେ, ଅର୍ଜୁନ ତତ୍ସ୍ୱୀକୃତ ବନବାସର ଚରମ ଭାଗରେ ଶ୍ରୀକୃଷ୍ଣଙ୍କ ଆମନ୍ତ୍ରଣରେ ରୈବତ ପର୍ବତରେ ସମାଗତ ଥିଲେ । ସେଠାରେ ସୁଭଦ୍ରାଙ୍ଗୀ ସୁଭଦ୍ରାଙ୍କ ପ୍ରତି ଅର୍ଜୁନଙ୍କୁ ପ୍ରେମାସକ୍ତ ଜାଣି କୃଷ୍ଣ କହିଲେ କି, "ହେ ପ୍ରିୟସଖା ଅର୍ଜୁନ, ତୁମ୍ଭେ ତ ସମ୍ପୂର୍ଣ୍ଣ ଯୋଗ୍ୟପାତ୍ର, ଯଦି ତୁମ୍ଭର ଇଚ୍ଛାହୁଏ, ଆଉ ସ୍ୱୟମ୍ବର କାହିଁକି ? ଅସ୍ମଦୀୟ ଭଗିନୀକି ବଳପୂର୍ବକ ନେଇ ବିବାହ କରିପାର ।" (୨) କେତେବେଳେ ଅର୍ଜୁନ କୃଷ୍ଣଙ୍କ ସମାଦେଶମତେ ତତ୍ସମ୍ବନ୍ଧରେ ଦୂତଦ୍ୱାରା ପିତୃକଳ୍ପ ଯୁଧିଷ୍ଠିରଙ୍କ ଅନୁମତି ନେଇ କଳାଦାମୀତ ସୁଭଦ୍ରାଙ୍କ ସହ ରଥରେ ପ୍ରସ୍ଥାନ କଲେ । [୧] ପରେ ବଳରାମପୁରଃସର ବୃଷ୍ଣ୍ୟନ୍ଧକ ପ୍ରଭୃତି ବଂଶୀୟ ମହାବଳ ପରାକ୍ରାନ୍ତ ବୀରମାନେ ଯୁଦ୍ଧାର୍ଥ ଉଦ୍ୟତ ହେଲେ । କିନ୍ତୁ ପରିଶେଷରେ ଶ୍ରୀକୃଷ୍ଣଙ୍କ ନ୍ୟାଯ୍ୟାନୁମୋଦିତ ବାକ୍ୟରେ ଶାନ୍ତ ଓ ସ୍ୱୀକୃତ ହୋଇ ତଦୁଭୟଙ୍କର ବୈବାହିକ ଉତ୍ସବ କରାଇଲେ । ସମ୍ପ୍ରୀତମନା ଅର୍ଜୁନ ସେଠାରେ (ଦ୍ୱାରକାରେ) ଏକବର୍ଷ ଅବସ୍ଥାନ କରି ବନବାସର ଅବଶିଷ୍ଟ ସମୟକୁ ପୁଷ୍କର ତୀର୍ଥରେ ଅତିବାହିତ କଲା ପରେ

(୧) ଗୋଶୃଙ୍ଗକୁ ଗୋସିଂହ କରି ଅଛନ୍ତି । ଗୋଶୃଙ୍ଗ ଶବ୍ଦ ତାଳବ୍ୟବର୍ଜନରେ ଗୋଶିଙ୍ଗ ହେବାର ଥିଲା ।

(୨) ସତ୍ତ୍ୱମର୍ଜୁନ କଲ୍ୟାଣୀଂ ପ୍ରସହ୍ୟ ଭଗିନୀଂ ମମ ।
ହରସ୍ୱୟମ୍ବରେ ହ୍ୟସ୍ୟାଃ କୋବୈ ବେଦ ଚକୀର୍ଷିତଂ ॥ ଆ. ପ. ୨୨୧ ଅ:

[୧] ତତଃ ସଃ ପୁରୁଷବ୍ୟାଘ୍ରସ୍ତାମାଦାୟ ଶୁଚିସ୍ମିତାଂ ।
ରଥେନ କାଞ୍ଚନାଙ୍ଗେନ ପ୍ରୟଯୌ ସ୍ୱପୁରଂ ପ୍ରତି ॥ ଆ. ପ. ୨୨୨ ଅ:

ଇନ୍ଦ୍ରପ୍ରସ୍ଥକୁ ପ୍ରସ୍ଥାନ କଲେ । [୨] ତତଃପର ଖାଣ୍ଡବ ଦହନରେ କୃତକୃତ୍ୟ ହେଲେ । କିନ୍ତୁ ଏ ସ୍ଥଳରେ ଶାରଳାଦାସ କବି ପ୍ରଥମତଃ ସୁଭଦ୍ରାଙ୍କୁ କାମପାଶବ-ପାଶିତହୃଦୟା ପ୍ରତ୍ୟନୁରାଗୋଦୟା କରି କହି ଅଛନ୍ତି କି ଶ୍ରୀକୃଷ୍ଣଙ୍କଦ୍ୱାରା ସମାଦିଷ୍ଟା ସତ୍ୟଭାମା ସୁଭଦ୍ରାଙ୍କୁ ସଙ୍ଗରେ ନେଇ ଅର୍ଜୁନଙ୍କ ନିଦ୍ରାସଦନରେ ପ୍ରବିଷ୍ଟ ହେଲେ । ମାତ୍ର ଅର୍ଜୁନ ଅଭେଦ୍ୟକବାଟସଂରୁଦ୍ଧଭବନପ୍ରକୋଷ୍ଠରେ ନିଗୂଢ଼ ଥିବାରୁ ବିଫଳକାମା ହୋଇ ନଗନନ୍ଦା ନନନ୍ଦାସହ ପ୍ରତ୍ୟାବୃତ୍ତ ହେଲେ । ଏହିପରି ଦୁଇ ଦିନ ଅତୀତ ହେଲା । ତତ୍ପରଦିନ ବଳରାମ ଦୁର୍ଯ୍ୟୋଧନଙ୍କୁ ସୁଭଦ୍ରାଙ୍କୁ ପ୍ରଦାନ କରିବେ, ଏହା ସ୍ଥିର ଜାଣି କୃଷ୍ଣ ସତ୍ୟଭାମାଙ୍କୁ କହିଲେ, ସ୍ନୁଷା ପଦ୍ମନଙ୍କ ଭାର୍ଯ୍ୟା ମାୟାବତୀ ବଶୀକରଣ ବିଦ୍ୟାରେ ପାରଦର୍ଶିତା ଲାଭ କରି ଅଛନ୍ତି, ତାହାଙ୍କ ମନ୍ତ୍ରଣାବାକ୍ୟ ଗ୍ରହଣ କର । ପରେ ସତ୍ୟଭାମାଙ୍କ ବଚନାନୁସାରେ ମାୟାବତୀ ସୁଭଦ୍ରାଙ୍କୁ କତିପୟ ଅମୋଘ ବଶୀକରଣ ମନ୍ତ୍ର ଶିଖାଇଲେ । ସୁଭଦ୍ରା ଯଥାଖ୍ୟାତ ପଥକୁ ଅନୁସରଣ କଲେ । ତନ୍ମନ୍ତ୍ରବଳରେ ଅର୍ଜୁନଙ୍କର ବଜ୍ରାର୍ଗଳକବାଟ ରୁଦ୍ଧ ଦ୍ୱାର ଉନ୍ମୁକ୍ତ ହେଲା । ବଶୀକୃତପୌରୁଷ ଅଟଳଧୈର୍ଯ୍ୟ ଅର୍ଜୁନ ମୃଷ୍ଟହାଟକ-ବର୍ଣ୍ଣିମା ପ୍ରଥମାନୁରାଗିଣୀ ସ୍ମିତପ୍ରବାଳଭାଷିଣୀ କୃଷ୍ଣଭଗିନୀଙ୍କି ଦେଖି ବଶ୍ୟ ହେଲେ । (୧) ଏହିପରି ଗୁପ୍ତ ମିଳନରେ କେତେକ ଦିନ ଅତିବାହିତ ହେଲା । ଏକଦା ବଳରାମ ଏହା ଜାଣିପାରି ବହୁ ଯାଦବ ସେନାସହ ଅର୍ଜୁନଙ୍କ ସଙ୍ଗେ ଯୁଦ୍ଧ କଲେ, ମାତ୍ର ପରିଶେଷରେ ଅର୍ଜୁନ ଜୟ ଲାଭ କଲେ, (୨) ଇତ୍ୟାକାର ସୁଭଦ୍ରାହରଣ ଚରିତଟିକ ପୁରାଣାନ୍ତରଗତ କମ୍ବା ଆଖ୍ୟାନାନ୍ତରଗତ ତତ୍ପ୍ରତ୍ୟଙ୍ଗ-ଭୂତ ଉପକଥାର ସମ୍ମିଳନପୂର୍ବକ ଅନ୍ୟୂନ ପଞ୍ଚାଶତ୍ ପୃଷ୍ଠାବ୍ୟାପୀ ପାଠ ଲେଖି

---

[୨] ଉଷିତ୍ୱା ତତ୍ର କୌନ୍ତେୟଃ ସମ୍ବତ୍ସରପରାଃ କ୍ଷପାଃ,
ବିହୃତ୍ୟ ଚ ଯଥାକାମଂ ପୂଜିତୋ ବୃଷ୍ଣିନନ୍ଦନୈଃ ।
ପୁଷ୍କରେ ତୁ ତତଃ ଶେଷଂ କାଳଂ ବର୍ତ୍ତିତବାନ୍ ପ୍ରଭୁଃ,
ପୂର୍ଣ୍ଣେ ତୁ ଦ୍ୱାଦଶେ ବର୍ଷେ ଖାଣ୍ଡବପ୍ରସ୍ଥମାଗତଃ । ଆ. ପ. ୨୧୩ ଅ:

(୧) ଏ ସ୍ଥଳରେ ଶୃଙ୍ଗାର ବର୍ଣ୍ଣନ ଅତିମାତ୍ର କରି ଅଛନ୍ତି ।

(୨) ଏ ସ୍ଥଳରେ ଯୁଦ୍ଧ ବର୍ଣ୍ଣନାଟିକି ଉତ୍ତେଜନା ବାକ୍ୟ ପ୍ରଭୃତିରେ ବିସ୍ତୃତ-ରୂପେ ବଡ଼ ସୁନ୍ଦର କରି ଲେଖି ଅଛନ୍ତି ।

ଯାଇଅଛନ୍ତି । (୩) ପରନ୍ତୁ ଏହି ପ୍ରକରଣର ପ୍ରାରମ୍ଭ ପୂର୍ବେ ହଠାତ୍ ସମ୍ପ୍ରସ୍ଥାପିତ ବୈଷୟିକ ସଙ୍ଗତିସମ୍ପାଦନତାରହିତ ଗୋଟିଏ ଘଟନାର ଅବତାରଣା କରି ଅଛନ୍ତି । ଘଟନାଟି ଏହି— ଦିନେ ଶ୍ରୀକୃଷ୍ଣ ଅର୍ଜୁନଙ୍କ ସହ ଭୋଜନରେ ବସି ଅଛନ୍ତି । ଲକ୍ଷ୍ମୀରୂପା ରୁକ୍ମିଣୀ ପରିବେଷଣ କରୁଅଛନ୍ତି । ସେତେବେଳେ ଶ୍ରୀକୃଷ୍ଣ ବିଶ୍ୱେଶ୍ୱରଙ୍କ ଚକ୍ରପ୍ରଦାନ କଲାରୁ ରୁକ୍ମିଣୀ କୁପିତା ଓ ରୋଷଯୁକ୍ତା ହୋଇ କହିଲେ, "ହେ ନାଥ ! ଆପଣ ତ ଜଗତ୍ପତି ଏବଂ ମୁଁ ଭବଦୀୟ ମହିଷୀ ଜଗତର ଅନ୍ନଦାତ୍ରୀ, ଆପଣଙ୍କୁ ବଳି ଆଉ କିଏ ମହାନ୍ ଅଛନ୍ତି ଯେ, ତାହାଙ୍କୁ ଚକ୍ର ଦେଇ ଅଛନ୍ତି ? ଇତ୍ୟାଦି । ତତଃପର ଶ୍ରୀକୃଷ୍ଣ ରୁକ୍ମିଣୀଙ୍କର ଅଭିମାନ ଅବଧୀରିତ ଏବଂ ପାର୍ବତୀଙ୍କର ଗୌରବ ପରିବର୍ଦ୍ଧିତ କରିବା ପାଇଁ ରୁକ୍ମିଣୀଙ୍କ ସହ କୈଳାସକୁ ପ୍ରସ୍ଥାନ କଲେ । ଶ୍ରୀକୃଷ୍ଣ ମହାଦେବଙ୍କୁ ପ୍ରଣାମ କଲାରୁ ବିମନାୟମାନା ରୁକ୍ମିଣୀ ଅସହ୍ୟ ଅଭିମାନରେ ରହିଲେ । ସେଠାରେ ସମାଗତା ପାର୍ବତୀଙ୍କି ଅସୂୟାବଶରୁ ପଚାରିଲେ କି, ଏହିଠାରେ ତୁମ୍ଭେ ଜଣେ ଭିକ୍ଷାରିଙ୍କି ଦେଖିଅଛ କି ? ପାର୍ବତୀ ଆତ୍ମଛଳନା ଅବଗତ କରିପାରି କହିଲେ, ଯଦି ଭିକ୍ଷାରିଙ୍କି ଲୋଡ଼ ତେବେ ବଳିଦ୍ୱାରକୁ ଯାଅ । ଲକ୍ଷ୍ମୀ ବା ରୁକ୍ମିଣୀ ପଚାରିଲେ, ବାଟରେ ଜଣେ ନାଟୁଆକୁ ଦେଖିଲ କି ? ପାର୍ବତୀ କହିଲେ, ବୃନ୍ଦାବନକୁ ଯାଅ, ନାଟୁଆ ପିଲାକୁ ଦେଖି ପାରିବ । ଏପରି କିଛି ଛଳନା ପରେ ପାର୍ବତୀ କଥାଚାତୁର୍ଯ୍ୟରେ ଜୟିନୀ ହେଲେ, ରୁକ୍ମିଣୀ ବ୍ୟର୍ଥୀକୃତାଭିମାନା ହୋଇ ତାହାଙ୍କୁ ପ୍ରଣାମ କଲେ, ଇତ୍ୟାଦି । ଅଥଚ ସୁଭଦ୍ରା ବିବାହ ଚରିତ ପରେ ମୂଳ ଗ୍ରନ୍ଥରେ ଅନୁକ୍ତ ଏବଂ ମଦ୍ଦୃଷ୍ଟ ତାଳପତ୍ର ପୁସ୍ତକଦ୍ୱୟରେ ଅଦୃଷ୍ଟ ଗୋଟିଏ ରେତ ଗ୍ଲପା ପୁସ୍ତକର ୧୯୫ ପୃଷ୍ଠାରୁ ପ୍ରାରମ୍ଭ କରି ୨୫୧ ପୃଷ୍ଠା ପର୍ଯ୍ୟନ୍ତ ସବିସ୍ତର ଭାବରେ ଲେଖାଅଛି ଯେ, ନାରଦଙ୍କ ଉପଦେଶମତେ ଧର୍ମପ୍ରାଣ ଯୁଧିଷ୍ଠିର ଧର୍ମପଙ୍କ ନାମକ ଯାଗରେ ଦୀକ୍ଷିତ ହେଲେ । ଅତୁଲବିକ୍ରମ ନକୁଳ ନାଗରାଜ ବାସୁକିଙ୍କୁ ନିମନ୍ତ୍ରି ଆଣିବା ପାଇଁ ପାତାଳରେ ଉପଗତ ହୋଇ ସ୍ୱକୀୟ କୁନ୍ତକୋଟିରେ ଧରଣୀ ଧାରଣ କଲେ । ଇତ୍ୟାଦି । [୧]

---

(୩) ବଙ୍ଗଳା ଭାରତରେ ମଧ୍ୟ ଏ ସମ୍ବନ୍ଧରେ ସତ୍ୟଭାମାଙ୍କର ସାହାଯ୍ୟ ଦୁର୍ଯ୍ୟୋଧନଙ୍କର ବର ବେଶରେ ସମାଗମନ ପ୍ରଭୃତି କଥା ଲେଖାଅଛି ।

[୧] ଏତେ କହିଣ ନକୁଳ କୁନ୍ତ କରେ ଧରି ।
ଦକ୍ଷିଣ ପାଦ ଆଗକୁ ଦେଲେ ଧୀର କରି ॥

ଏପରି ମୂଳରେ ଅନୁକ୍ତ ଏବଂ ପ୍ରନସ୍ୱରୂପ ମୂର୍ଚ୍ଛା ଅପ୍ରଚଳିତ ସମଧିକ ତାଳପତ୍ର ପୁସ୍ତକମାନଙ୍କରେ ଅପରିଦୃଷ୍ଟ ଚରିତଗୁଡ଼ିକୁ ସାରଳାଦାସଙ୍କ ପରବର୍ତ୍ତୀ ଲେଖକଂମନ୍ୟମାନଙ୍କର କପୋଳକଳ୍ପିତ କିମ୍ବା ଅନୁଚିତ ନୂତନ ବୋଲି ଅନୁମିତ ।

(୧୬) ଇତଃପର ଲେଖାଅଛି କି ଭାଗୀରଥୀତୀରସ୍ଥ ନୀଳୋତ୍ପଳାଭିଧ ଭୂଧରର ଉପତ୍ୟକାରେ ବିରାଜିତ ଶଷ୍ଟକେଶ୍ୱର ନାମକ ସ୍ୱୟଂଭୂ ଶମ୍ଭୁଦେବଙ୍କୁ କୁନ୍ତୀ ଓ ଗାନ୍ଧାରୀ ଦେବୀ ଉଭୟେ ଉଭୟଙ୍କ ଅଲକ୍ଷିତରେ ଭିନ୍ନ ଭିନ୍ନ ସମୟରେ ପୂଜା କରୁଥାନ୍ତି । ଏକଦା ଉଭୟେ ଯୁଗପତ୍ ପୂଜାର୍ଥ ଉପଗତ ହେଲେ । ଅହମହମିକାବଶତଃ "ଏ ତ ମଦୀୟ ପୂଜିତ ଦେବତା, ଏହାଙ୍କ ପୂଜନରେ ତୁମ୍ଭର ଅଧିକାର ନାହିଁ," ଏହା କହି ଉଚ୍ଚାବଚପୂର୍ବକ କଳହାରମ୍ଭ କଲନ୍ତେ ମହାଦେବ କହିଲେ, ଆଗାମୀ ପ୍ରତ୍ୟୁଷରେ ଯେ ସହସ୍ର ସଂଖ୍ୟକ ସୌବର୍ଣ୍ଣ ଚମ୍ପକକୁସୁମ ପ୍ରଦାନରେ ମୋତେ ପୂଜା କରି ପାରିବେ, ମୁଁ ତାହାଙ୍କର କେବଳ ହେବି । ତଚ୍ଛ୍ରବଣରେ ଗାନ୍ଧାରୀ ଓ କୁନ୍ତୀ ଦେବୀ ସ୍ୱ ସ୍ୱ ଭବନକୁ ପ୍ରସ୍ଥାନ କଲେ । ଗାନ୍ଧାରୀ ସ୍ୱର୍ଣ୍ଣକାରମାନଙ୍କୁ ସ୍ୱର୍ଣ୍ଣମୀକରଚମ୍ପକପ୍ରସୂନମାନ ତିଆର କରାଇବା ପାଇଁ ପୁତ୍ରଙ୍କୁ ଆଦେଶ କଲେ । ଅର୍ଜ୍ଜୁନ କୁନ୍ତୀଙ୍କ ମୁଖରୁ ଏ ସବୁ ଶୁଣି କହିଲେ, ମାତଃ! ତୁମ୍ଭେ କାଲି ବ୍ରାହ୍ମ ମୁହୂର୍ତ୍ତରେ ଯାଇ ଦେବାଳୟରେ ଉପସ୍ଥିତ ଥାଅ, ମୁଁ ସୁବର୍ଣ୍ଣଚମ୍ପକମାନ ଯୋଗାଇ ଦେବି । ଅର୍ଜ୍ଜୁନ ଏହା କହି ଲୋକାନ୍ତରେକ ପରାକ୍ରମରେ କୁବେର-ଭବନ ପ୍ରତି ସର୍ବସମାଧାୟକ ଅବ୍ୟାହତପ୍ରସର ସର୍ବଗାମୀ ଅମୋଘ ଶରକୁ ପ୍ରୟୋଗ କଲେ । କୁବେର ଖିନ୍ନମନରେ ପ୍ରୋକ୍ତ ଶିବସଦନରେ ଅପରିମିତ ରମଣୀୟ ସୁସୌଷ୍ଠବ କନକଚମ୍ପକପ୍ରସୂନ ବର୍ଷଣ କଲେ । ପରେ ଗାନ୍ଧାରୀ ଯାଇ ଦେଖିଲେ ଯେ ସ୍ତୂପୀକୃତ ସୁବର୍ଣ୍ଣଚମ୍ପକରାଶିର ସମାଚ୍ଛାଦନରେ ଦେବାଳୟ ଲକ୍ଷିତ ହେଉନାହିଁ, ଲଜ୍ଜାବନତ ମୁଖରେ ବାହୁଡ଼ି ବାହାର ଆସିଲେ । ଇତ୍ୟାଦି । ଏ ସବୁ ମୂଳ ଭାରତରେ ନାହିଁ, କିନ୍ତୁ ବିଶ୍ୱାସ ହୁଏ, କବି ଅନ୍ୟପୁରାଣାନୁକରଣରେ ଲେଖିଥିବେ ।

---

ଆପଣା ପାଦ ବୃଦ୍ଧ ଅଙ୍ଗୁଷ୍ଠୀ ଉପରେ ।
କୁନ୍ତନେଇ ଧୀରେ କରି ଥୋଇଲେ ତଥିରେ ॥
ମୁନ ସଲକ୍ଷି ବୋଇଲେ ଶୁଣ ମହାରାଣ ।
ମୁନ ଉପରେ ପୃଥିବୀ ଥୁଅ ଏହିକ୍ଷଣ ॥ ମ. ପ. ୨୧୦ ପୃ;

ତଦନନ୍ତର ନାରଦଙ୍କ ଉପଦେଶମତେ କାପାକ୍ଷୀ ନାମକ ବ୍ରତ କରଣରେ କୃତସଂକଳ୍ପା ଦେବକୀ ଦେବୀ ଆଜ୍ଞାନୁବର୍ତ୍ତୀ ଅର୍ଜ୍ଜୁନଙ୍କୁ ସୁଗନ୍ଧିକା ପୁଷ୍ପ ଆହରଣାର୍ଥେ ପ୍ରେରଣ କରିବା ଫଳରେ ଅର୍ଜ୍ଜୁନ ବାଟରେ ସେତାବାର ଦିବାକଷ୍ଟକାରଣଭ ହନୁମାନଙ୍କୁ ଭେଟିଲେ । ହନୁମାନ୍ ସ୍ୱକୀୟ ପୁରାତନ ପରାକ୍ରମଜନିତ କାର୍ଯ୍ୟମାନ ପ୍ରଖ୍ୟାପନ କଲାରୁ ନିର୍ଦ୍ଧ୍ୱପରପରାକ୍ରମଶାଳୀ ଦ୍ୱାପରବୀରାଗ୍ରଗଣ୍ୟ ଅର୍ଜ୍ଜୁନ ଶର-ଜାଳରେ ସେତୁ ବାନ୍ଧିବା, ହନୁମାନଙ୍କର ମହାପର୍ବତାନ୍ତଶକ୍ତ ମହାଭାର୍‌ରୁ ରକ୍ଷା କରିବାରୁ ଶ୍ରୀକୃଷ୍ଣ ପ୍ରୋକ୍ତ ଶରସେତୁର ଅଧଃପ୍ରଦେଶରେ ମତ୍ସ୍ୟାକୃତିରେ ଆଧାର ହୋଇ ରହିବା, ତେତେବେଳେ ତର୍କନିଷ୍ଠିତ-ତତ୍ତ୍ୱାର୍ଥ ଆଞ୍ଜନେୟ ବାସବଙ୍କ ପ୍ରତି ଶ୍ରୀକୃଷ୍ଣଙ୍କର ସ୍ୱଜନାନ୍ତରିକ୍ତ ଦୟା ଜାଣି ପ୍ରୋଦ୍ଭୂତପୁଲକକଞ୍ଚୁକରେ ପ୍ରଣାମପ୍ରବଣ ପାର୍ଥଙ୍କୁ ସସ୍ନେହ ଆଲିଙ୍ଗନ କରି ସହିତଗ୍ରୀବ ସୁଗ୍ରୀବ ଓ ଜାମ୍ବବଙ୍କଠାକୁ ନେବା, ସେଠାରେ ଅଞ୍ଜନା ଦେବୀ, ବାଲୀ ଓ ସୁଗ୍ରୀବଙ୍କର ପୂର୍ବଜନ୍ମ କଥା, ଶିବଙ୍କର ବ୍ରହ୍ମହତ୍ୟା ବିଷୟ ଏବଂ କୌମ୍ଭକର୍ଣ୍ଣିକ ବୃତ୍ତାନ୍ତ ପ୍ରଭୃତି ଅନେକଗୁଡ଼ିଏ ବିଷୟକୁ ବିସ୍ତୃତରୂପେ ଲେଖି ଅଛନ୍ତି । ଏ ସବୁ ବ୍ୟାସୋକ୍ତ ମହାଭାରତରେ କୁହାଯାଇ ନାହିଁ, ମାତ୍ର ସୁଗନ୍ଧିକାହରଣ କଥାଟି ଭାଗବତାଦିରେ ଅନ୍ୟଥା ଉକ୍ତ ଅଛି । ସାରଳାଦାସ କବି ଏହି ଚରିତର ସ୍ଥୂଳ ମୌଳିକ ଅଂଶ ନେଇ ଅନ୍ୟାନ୍ୟ ପୁରାଣେତିହାସୋକ୍ତ କଥାମାନଙ୍କ ସଂଯୋଗରେ ଅଥଚ ସ୍ୱକୀୟ କାଳ୍ପନିକ ପରିପାଟୀର ଅନୁପ୍ରାଣନରେ ଲେଖିଯାଇ ଅଛନ୍ତି । [୧] ଅତଃପର ମାନଧନ-ହୃଦୟ ଦୁର୍ଯ୍ୟୋଧନଙ୍କ ତନୟା ଚନ୍ଦ୍ରାବତୀଙ୍କ ସ୍ୱୟମ୍ବରାଡ଼ମ୍ବର ସମୟରେ କଳହାଶନ ନାରଦଙ୍କ ପ୍ରୋତ୍ସାହରେ ସମୁତ୍ସାହିତ ଶାମ୍ବକୁମାର ତାହାଙ୍କୁ ଅପହରି ନେବା ଏବଂ ବହୁ ଯୁଦ୍ଧ ହେଲା ପରେ ଶାମ୍ବ ଓ ଚନ୍ଦ୍ରାବତୀଙ୍କ ବୈବାହିକ ସମ୍ବନ୍ଧ ଘଟିବା ପ୍ରଭୃତି କଥା ଲେଖି ଅଛନ୍ତି । ଏହା ଭାରତମୂଳକ ଚରିତ ନୁହେ । ପରନ୍ତୁ ପୁରାଣେତର ଆଶ୍ରୟରେ ଲିଖିତ ହୋଇ ସୁଦ୍ଧା ନିତାନ୍ତ ଅଭ୍ରାନ୍ତ ନୁହେ । ତଥାପି ଏହି କଳ୍ପିତ ପ୍ରାମାଣିକ ଐତିହାସିକ ସମ୍ବିଧାନ ସମଗ୍ର ଉତ୍କଳରେ ଅଭ୍ରାନ୍ତରୂପେ ସମାଦୃତ ହୋଇଅଛି । ଏହି ଚରିତରେ ଅନ୍ୟ କିଛି ବିଶେଷ ପ୍ରାମାଣିକ ନୁହେ, ନାମ କେବଳ ପ୍ରମାଦତଃ ଅନ୍ୟଥା ହୋଇଅଛି । ଦୁର୍ଯ୍ୟୋଧନଙ୍କ

---

[୧] ଏହି ବହୁପ୍ରଶାଖ ଚରିତଟି ଛପା ପୁସ୍ତକରେ ୨୩୦ — ୨୪୦ ପୃ: ପର୍ଯ୍ୟନ୍ତ ଲେଖାଅଛି; ମାତ୍ର ତାଳପତ୍ର ପୁସ୍ତକରେ ଚନ୍ଦ୍ରାବତୀ ହରଣ କଥା ପରେ ଏହି ସୁଗନ୍ଧିକା ହରଣ କଥା ଲେଖାଅଛି ।

ତନୟାଙ୍କ ନାମ ଚନ୍ଦ୍ରାବତୀ ନୁହେ । ତାହାଙ୍କ ପୁତ୍ରଙ୍କ ନାମ ଲକ୍ଷ୍ମଣ ଆଉ ପୁତ୍ରୀଙ୍କ ନାମ ଲକ୍ଷ୍ମଣା ଥିଲା । ଜାମ୍ବବତେୟ ଶାମ୍ବ ଓ ଦୌର୍ଯ୍ୟୋଧନୀ ଲକ୍ଷ୍ମଣା ସମ୍ବନ୍ଧ ପ୍ରୋକ୍ତ ବୃତ୍ତାନ୍ତ ଶ୍ରୀମଦ୍ଭାଗବତରେ ଉକ୍ତ ଅଛି । [୧] ମାତ୍ର ଜାମ୍ବବତୀ ସୁତ ଶାମ୍ବ ଚନ୍ଦ୍ରବତୀନାମ୍ନୀ ଅନ୍ୟ କନ୍ୟାକୁ ସ୍ୱେଚ୍ଛା ବିବାହ କରିଥିଲେ । ସେହି ଚନ୍ଦ୍ରବତୀ ବା ଚନ୍ଦ୍ରାବତୀ ବଜ୍ରନାଭ ଦୈତ୍ୟର ଭଗିନୀ ଥିଲେ । ଏହି କଥା ଖିଳହରିବଂଶର ବିଷ୍ଣୁପର୍ବରେ ଉକ୍ତ ଅଛି । ସାରଳାଦାସ କବି ମହୋଦୟ ଯଦିଚ ଭାଗବତ ଗ୍ରନ୍ଥକୁ ଅନୁସରି ଲେଖି ଅଛନ୍ତି, ତେବେ ନାମମାତ୍ର ପ୍ରାମାଦିକ, ତାହା ନ ହେଲେ ଚରିତସନ୍ନିଧାନରେ ବହୁସ୍ଥଳ ଭ୍ରାନ୍ତିମୂଳକ ହୋଇ ପଡ଼ିବ ।

ଆମ୍ଭମାନଙ୍କର ଆଦିମ ମହାକବି ଅଥଚ ଉତ୍କଳବ୍ୟାସ ଶ୍ରୀ ସାରଳାଦାସ ମହୋଦୟ ବ୍ୟାସୋକ୍ତ ମହାଭାରତରେ ଅନୁଦ୍ଧୃତ କଥାକୁ ଯେପରି ଭାଗବତ ଗ୍ରନ୍ଥାନୁସରଣରେ ଅନୂଦିତ କରି ଅଛନ୍ତି, ସେହିପରି ବଙ୍ଗ ଭାରତକର୍ତ୍ତା ଶ୍ରୀ କାଶୀରାମ ଦାସ ମହାଶୟ ମଧ୍ୟ ପ୍ରୋକ୍ତ ଲକ୍ଷ୍ମଣା ହରଣ ପ୍ରଭୃତି କେତେକ ଚରିତ ଲେଖି ଅଛନ୍ତି । [୨] ସାରଳାଦାସ କବି ଚନ୍ଦ୍ରାବତୀ କନ୍ୟା ବିବାହର ଆନୁଷଙ୍ଗିକ ରୂପେ ଲେଖି ଅଛନ୍ତି କି—

"ତାହାର ନ ଥିଲେ ନୁହଇ ଯେ ବିଭା,
ଏ କଣ୍ଟକମା କଥା ମୁନି ହେ ସଂଗତି କହିବା ।"

ଏହି ପ୍ରଶ୍ନ ହେଲାରୁ ଅଗସ୍ତି କହିଲେ, ପୂର୍ବ ନାରାୟଣଙ୍କ ସହ ସରସ୍ୱତୀଙ୍କର ବିବାହ ନିର୍ଦ୍ଧାରିତ ହୋଇଥିଲା । ତେତେବେଳେ ବ୍ରହ୍ମାଙ୍କର ବରପୁତ୍ର କଣ୍ଟକମାସୁର ଆସି ଉପଦ୍ରବ ଘଟାଇଲା । ସରସ୍ୱତୀ ବ୍ରହ୍ମାଙ୍କ ତନୟା ଏବଂ କଣ୍ଟକମାସୁର ବରପୁତ୍ର, ଅତଏବ କଣ୍ଟକମା ନାରାୟଣଙ୍କର ଶାଳକ ହେଲା ବୋଲି ଉପାୟ ବଳରେ ତାହାକୁ ଆସନର ଅଧୋଦେଶରେ ମାଡ଼ି ବସି ନାରାୟଣ

---

[୧] ଜାମ୍ବବତୀ ସୁତ ଶାମ୍ବ ଦୁର୍ଯ୍ୟୋଧନ ସୁତା ଲକ୍ଷ୍ମଣାଙ୍କୁ ହରିବା ବୃତ୍ତାନ୍ତ ଶ୍ରୀମଦ୍ଭାଗବତ ଦଶମ ସ୍କନ୍ଧ ୬୮ ଅଧ୍ୟାୟରେ ଦେଖନ୍ତୁ ।

[୨] କାଶୀରାମଦାସଙ୍କ ବଙ୍ଗଳା ମହାଭାରତରେ ସୁଭଦ୍ରାଙ୍କ ବିବାହ ପ୍ରସ୍ତାବରେ ପ୍ରଶ୍ନାନୁକ୍ରମରେ ଲକ୍ଷ୍ମଣା ଓ ଶାମ୍ବ କୁମାରଙ୍କ ବୃତ୍ତାନ୍ତ ଉକ୍ତ ଅଛି । ୧୬୦ ପୃଷ୍ଠା ଦେଖନ୍ତୁ ।

ସରସ୍ୱତୀଙ୍କର ପାଣିଗ୍ରହଣ କଲେ । [୧] ଇତ୍ୟାକାରରେ ସ୍ୱକୀୟ ପ୍ରସ୍ତାବାନୁଗୁଣକ ଅନେକଗୁଡ଼ିଏ କଥା ଲେଖି ଅଛନ୍ତି । [୨] ଏହା ମୂଳରେ ନାହିଁ, ଅନ୍ୟାନ୍ୟ ପୁରାଣରେ ଥିବାର ବଶ୍ୱାସକୁ ପାଉନାହିଁ । କବି ତାଙ୍କାଳକ ଲୋକବ୍ୟବହାରାନୁସାରେ କଳ୍ପନା କରିଥିବେ,'ନଚେତ୍ କବିଙ୍କର କଳ୍ପିତ ଲେଖାକୁ ଧରି ଲୋକରେ ସାଧାରଣ ସମାଜରେ ବ୍ୟବହାର ଚଳି ଆସୁଥିବ । ଅତଏବ ସାରଳାଦାସ କବି ସମଗ୍ର ଉତ୍କଳରେ ସାଧାରଣ ସମାଜରେ ପ୍ରଧାନ ପ୍ରବର୍ତ୍ତକ କହିଲେ ଚଳେ । ଏହା ଉତ୍ତରୁ ମୂଳରେ ଅପ୍ରତିପାଦିତ ଉଷାଙ୍କ ବିବାହ କଥା [୩] ଶ୍ରୀମଦ୍‌ଭାଗବତ କିମ୍ବା [୪] ହରିବଂଶର ଚରିତକୁ ଆଶ୍ରୟ କରି ଅପେକ୍ଷାକୃତ ବିସ୍ତୃତ ଯୁଦ୍ଧାଦିସହ ଲେଖି ଅଛନ୍ତି । [୫] ପୁନଶ୍ଚ ଏ ସ୍ଥଳରେ ଆଉ ଗୋଟିଏ ଅମୌଳିକ ଚରିତ ଛାପା ପୁସ୍ତକରେ (୩୦୪—୩୨୭ ପୃ:) ଦେଖାଯାଏ । ଅସୁବିଦ୍ଧ ତାଳପତ୍ର ପୁସ୍ତକରେ ଦେଖିବାକୁ ପାଇନାହିଁ; ଯଦି ଛାପା ପୁସ୍ତକରେ ଅଙ୍କିତ ଅଛି, ତେବେ ଅନ୍ୟାନ୍ୟ ତାଳପତ୍ର ପୁସ୍ତକମାନଙ୍କରେ ଅବଶ୍ୟ ଲିଖିତ ଥିବ, ମାତ୍ର ଏହା ଗ୍ରନ୍ଥକାରଙ୍କର ପ୍ରକ୍ଷିପ୍ତ ନୁହେ । ବୋଧହୁଏ ଏତାଦୃଶ ଚରିତମାନ କବିଙ୍କର କଳ୍ପିତ ହୋଇ ନ ଥିବ, ତତ୍ପରବର୍ତ୍ତୀ ମାର୍ଯୁକ ଲେଖକଙ୍କର ଅଳୀକକଳ୍ପନା ପ୍ରସୂତ ହୋଇଥିବାରୁ ସମଗ୍ର ତାଳପତ୍ର ପୁସ୍ତକମାନଙ୍କରେ ଲେଖା ହୋଇପାରି ନାହିଁ । ଅଙ୍କିତ ଚରିତଟି ଏହି— ଏକଦା ଦୁର୍ଯ୍ୟୋଧନ ରାଜା ଦୁଃଶାସନାଦିଭ୍ରାତୃବର୍ଗ ଭୀଷ୍ମ ପ୍ରମୁଖ ମହାରଥିବୃନ୍ଦ ଆଉ ଚତୁରଙ୍ଗ ବଳର ସମଭିବ୍ୟାହାରରେ କୃଷିରତ୍ ଯାଉଅଛନ୍ତି ।

---

[୧] ଦାକ୍ଷିଣାତ୍ୟର ସମାଜରେ କେହି କେହି (ଏ ଅଞ୍ଚଳରେ) ତନ୍ମାମଦାମିତ କରି ପାଲଡ଼ିଣ୍ଡା ଉପରେ ବସନ୍ତି ।

[୨] ବୃଦ୍ଧଯୁବେଗ କନ୍ୟା ପ୍ରଦାନର କାଳେ ।
ପିତା ମାଙ୍କୁ ବସିବ ଦୁହିତା ଥିବ କୋଳେ ॥
ଗ. ୨୮୩—୨୮୭ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

[୩] ଶ୍ରୀମଦ୍ଭାଗବତ ଦଶମସ୍କନ୍ଧରେ ୬୨ ଓ ୬୭ ଅଧ୍ୟାୟରେ ଉଷା ବିବାହ ଦେଖିବେ ।

[୪] ହରିବଂଶର ବିଷ୍ଣୁ ପର୍ବରେ ୧୨୮ ଅଧ୍ୟାୟରେ ବାଣସୁତା ଉଷାଙ୍କୁ ଅନିରୁଦ୍ଧ ବିବାହ ହେବା କଥା ଦେଖି ପାରିବେ ।

[୫] ଛାପା ମଧ୍ୟପର୍ବର ୨୯୦—୩୦୩ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

ମଧ୍ୟମାର୍ଗରେ କୁଣ୍ଡଳୀ ନାମକ [୧] ଦୈତ୍ୟ ଆସି ଆକ୍ରମଣ କଲା । ଦୁଃଶାସନାଦି ରାଜପୁତ୍ର ଏବଂ ସୈନ୍ୟବର୍ଗଙ୍କୁ ନିହତ କରି ଶ୍ରୀକାନ୍ତଙ୍କୁ ମୃତକଳ୍ପ ମୂର୍ଚ୍ଛିତ କଲା । ପରିଶେଷରେ ଦୁର୍ଯ୍ୟୋଧନ ମଲ୍ଲଯୁଦ୍ଧରେ ମୃତକଳ୍ପ ହୋଇ ପଡ଼ିଲେ । ତଦାଶ୍ରୟସ୍ଥ ସେନାମାନେ ଏକାକୀ ମାଣ୍ଡୁନଗରରେ ନଗରରକ୍ଷକମାନଙ୍କ ହାତ ଅଟକିଲେ, ବାଟରେ ନକୁଳ ସମସ୍ତ ବୃତ୍ତାନ୍ତ ଅବଗତ ହୋଇ ଅସ୍ଥିର ମନ ଦଗ୍ଧମଞ୍ଜ କଲେ । ଶ୍ରୀପାଦ-ଚତୁର୍ଥ ଯୁଧିଷ୍ଠିର ସୈନ୍ୟ ସେନାମାନଙ୍କ ମୁଖରୁ ପ୍ରତିମନାର୍ଥ ହୋଇ ସେଠାରେ ଉପଗତ ହୋଇ ଦେଖିଲେ, ସମସ୍ତେ ନିହତ ହୋଇ ପଡ଼ିଅଛନ୍ତି । ନକୁଳ ମାତ୍ର ହସ୍ତ ଯୁଦ୍ଧରେ ମାତ୍ର ଅଛନ୍ତି । ଯୁଧିଷ୍ଠିର ସହଦେବଙ୍କ ସେହି ଦୁର୍ଦ୍ଧର୍ଷ ଦାନବ ସମ୍ବନ୍ଧରେ ଜିଜ୍ଞାସା କଲନ୍ତେ ସେ ତତ୍ପ୍ର ସବ ବୃତ୍ତାନ୍ତ, ବର ପ୍ରାପ୍ତି, ତଥା ମୃତ୍ୟୁଭେଦ ବିବରଣ ଜଣାଇଲେ । ନକୁଳ ତତ୍କ୍ଷଣାତରେ ଅସୁରକୁ ନିହତ କଲେ । ଅର୍ଜ୍ଜୁନ ମୃତସଞ୍ଜୀବନୀ ବିଭୂତି ପ୍ରୟୋଗରେ ସମସ୍ତଙ୍କୁ ଉଜ୍ଜୀବିତ କଲେ । ଇତ୍ୟାଦି ।

ଏହି ଚରିତାବସାନରେ ବରୁଣ ରାଜାଙ୍କ ଔରସରେ ତତ୍ପତ୍ନୀ ଜାୟା ଜଳବନ୍ତୀଙ୍କ ଗର୍ଭରୁ ଜାତ, ଜନ୍ମକାଳୀନ ଗଣଦୋଷରୁ ମାତୃମନ୍ଦ ଗହନାରଣ୍ୟରେ ପରିତ୍ୟକ୍ତ ମାଳେନ୍ଦୀନାମ୍ନୀ କନ୍ୟାକୁ ସଦାଚ ଦେବପ୍ରଦାନ ମନ୍ତ୍ରେଣ ହୃତସର୍ବଦୋଷା କରି କାର୍ତ୍ତିକେୟଙ୍କ ପାଣିଗ୍ରହଣାର୍ଥ ସ୍ଥିର କରିବା ସମୟରେ ନାରଦ ଋଷି ପ୍ରୋକ୍ତ କନ୍ୟାଙ୍କ ନିରୁପମଲାବଣ୍ୟାତିଶୟ ପ୍ରକଥନରେ ବଳରାମଙ୍କ ପୁତ୍ର ଆନନ୍ଦାନନ୍ଦଙ୍କୁ ଗୁପ୍ତଭାବରେ ସେହି କନ୍ୟାଙ୍କ ସଙ୍ଗେ ମିଳାଇବା, କାର୍ତ୍ତିକେୟ ବିବାହର ଆୟୋଜନ ସମୟରେ ଆନନ୍ଦାନନ୍ଦ ମାଳେନ୍ଦୀ କନ୍ୟାଙ୍କୁ ଧରିନେବା, ତତ୍ସମ୍ବାଦ ଶ୍ରବଣରେ ଶିବଗଣସହ ଶିଖିଧ୍ୱଜ ପାର୍ବତେୟ ଆସି ରାମାତ୍ମଜଙ୍କୁ ମୃତକଳ୍ପ କରି ପକାଇବା, ତତଃପର ସାଗ୍ରଜ ଶ୍ରୀକୃଷ୍ଣ ସେଠାରେ ସମୁପଗତ ହୋଇ ଘୋର ଯୁଦ୍ଧ କରିବା, ପରିଶେଷରେ ବ୍ରହ୍ମାଦି ବୃନ୍ଦାରକବୃନ୍ଦ ଆସି ଉଭୟ ପକ୍ଷକୁ ଶାନ୍ତ କରି ମାଳେନ୍ଦୀ ଓ ଆନନ୍ଦାନନ୍ଦଙ୍କର ଶୁଭମିଳନ ଘଟାଇବା ପ୍ରଭୃତିକ ଚରିତଟି ଗ୍ରନ୍ଥ ପୁସ୍ତକରେ ବିସ୍ତୃତ ହୋଇଅଛି । [୨] ଏତନ୍ତ ପ୍ରୋକ୍ତ ଚରିତଟି ତାଳପତ୍ର ପୁସ୍ତକରେ ଚତୁରଙ୍ଗଭୁକ୍ତ ଆଜ କେତେଗୁଡ଼ିଏ ଉପକଥା ସହ ଅତି ବିସ୍ତୃତ ଭାବରେ

---

[୧] କୁଣ୍ଡଳୀ ବୋଲି କରି ଦୈତ୍ୟ ମହାବୀର ।
କୁଣ୍ଡଳୀ ପାଟଣାରେ ଅଟେ ତାର ଘର ॥ ମ. ପ ୩୦୪ ପୃ:

[୨] ୩୨୮—୩୫୭ ପୃଷ୍ଠା ଦେଖନ୍ତୁ ।

ଲେଖାଅଛି । ସୁତରାଂ ଉଭୟର [୧] କେତେକ ଅଂଶର ବହୁ ପ୍ରଭେଦତା ଏବଂ କେତେକ ଅଂଶର ବୈପରୀତ୍ୟ ସୁଦ୍ଧା ଲକ୍ଷିତ ହୁଏ । ଏହି ତାଳପତ୍ର ପୁସ୍ତକ ଅପେକ୍ଷା ଛପା ପୁସ୍ତକରେ ଏକାନ୍ତ ଭିନ୍ନାକାର ଓ ଭିନ୍ନ ପ୍ରକାର ହୋଇ-ଅଛି । ମଦ୍ଦୃଷ୍ଟ ତାଳପତ୍ର ପୁସ୍ତକଦ୍ୱୟରେ ଏହି ଚରିତ ପ୍ରାନ୍ତରେ ମଧ୍ୟପର୍ବ ସମ୍ପୂର୍ଣ୍ଣ; ଛପା ପୁସ୍ତକରେ ଆହୁରି କେତେକ କଥା ଲେଖାଅଛି । ମାଳେନ୍ଦୀହରଣ ବୃତ୍ତାନ୍ତଟି କବି କାହିଁରୁ ନେଇ ଅଛନ୍ତି, କିଛି ଜଣାଯାଉ ନାହିଁ । ମାତ୍ର ଅନୁମାନତଃ ଜୈମିନି ଭାରତ ଏଠାରେ ଆଦର୍ଶ ସ୍ଥାନୀୟ ହୋଇଥାଇ ପାରେ । ଏହା ଅନେକଙ୍କ ହୃଦୟରେ ଅଭ୍ୟସ୍ତ ରହିଅଛି ।

ମାଳେନ୍ଦୀହରଣ ପ୍ରକରଣର ଅବ୍ୟବହିତ ପରେ ଲେଖା ଅଛି, [୨] ପ୍ରାଗୁକ୍ତ କୁଣ୍ଡଳୀ ଅସୁରର ପୁତ୍ର ପିତୃନିଧନ ଗୁରୁଶୋକସନ୍ତପ୍ତ କୋଦାଳ ଅସୁର ହସ୍ତିନା ପ୍ରତି ଅଭିଯାନ କରି ଦୁର୍ଯ୍ୟୋଧନାଦି ଭ୍ରାତୃଗଣ ଓ ମହାରଥ ଭୀଷ୍ମ ପ୍ରମୁଖଙ୍କୁ ନିହତ କଲେ । କର୍ଣ୍ଣ ସହଜ ଅମୃତକୁଣ୍ଡଳନିଃସୃତ ଅମୃତଧାରାରେ ପୁନରୁଜ୍ଜୀବିତ ହୋଇ ଅସୁରକର୍ତ୍ତୃକ ଦ୍ୱିତୀୟବାର ସୁଦ୍ଧା ଯୁଦ୍ଧରେ ପରାସ୍ତ ହୋଇ ସସାଧ୍ୱସରେ ପଳାୟନ କରିଅଛନ୍ତି, ଇତ୍ୟବସରେ ଦୈବାତ୍ ଦ୍ୱାରକାଗତ ପାଣ୍ଡବମାନେ ସେଠାରେ ଉପସ୍ଥିତ ହେଲେ । ଅନନ୍ତର ସଂଗ୍ରାମ-ମହୋତ୍ସବପ୍ରମୋଦନିର୍ଭର ସହଦେବ କୋଦାଳକୁ ନିଧନ କଲେ । ଇତ୍ୟାଦି । [୩] ଅତଃପର ଉକ୍ତ ଅଛି—କଦାଚିତ୍ ଦ୍ୱାରକାଗତ ନାରଦ ଶାମ୍ବଜନନୀ ଚନ୍ଦ୍ରାବତୀଙ୍କି ନନ୍ଦନକାନନଜାତ ନରଦୁର୍ଲଭ ପୁଷ୍ପ ଗୋଟିଏ ଦେଇ ଉଜ୍ଜାପନରେ ଚୈତ୍ର ମଙ୍ଗଳବାର ବ୍ରତର ବିବରଣ କହିଲେ । ଚନ୍ଦ୍ରାବତୀ ଶାମ୍ବଙ୍କୁ ପ୍ରାର୍ଥନା କଲେ କି, ଏହି ସ୍ୱର୍ଗୀୟ ପୁଷ୍ପ ଆଣିଦେଲେ ଚୈତ୍ର ମଙ୍ଗଳବାର କରିବି । ଶାମ୍ବ ଦେବପୁଷ୍ପ ଆହରଣାର୍ଥ ସ୍ୱର୍ଗକୁ ଯାତ୍ରା କଲେ । ନନ୍ଦନରୁ ପୁଷ୍ପ ତୋଳୁ ଅଛନ୍ତି, ଦେଖିଲେ ଯେ, ପୁଷ୍କରିଣୀରେ ଗୋଟିଏ ପରମା ସୁନ୍ଦରୀ କନ୍ୟା । ସେହି ସୁନ୍ଦରସେନ ଗନ୍ଧର୍ବଙ୍କ ସୁତା ଶୋଭବତୀ ନବଯୌବନୋଦ୍‌ଗତ ଲାବଣ୍ୟପୂର୍ଣ୍ଣ ଶାମ୍ବଙ୍କୁ ଦେଖି ବିମୋହିତା ହେଲେ । ଶାମ୍ବ ମଧ୍ୟ ଗାନ୍ଧର୍ବିକାର ଅବ୍ୟସୌନ୍ଦର୍ଯ୍ୟରେ ଆକୃଷ୍ଟ

[୧] ଛପା ପୁସ୍ତକରେ ଏବଂ ତାଳପତ୍ର ପୁସ୍ତକରେ ।

[୨] ମ. ୩୫୭—୩୭୦ ପୃଷ୍ଠାଯାଏ ଦେଖନ୍ତୁ ।

[୩] " " ୩୭୧—୪୦୩ ପୃଷ୍ଠାଯାଏ ଦେଖନ୍ତୁ ।

ହେଲେ । ଅନ୍ୟୋନ୍ୟ ପରିତପ୍ୟମାନରେ ମଧ୍ୟ ସଂପୃକ୍ତ କ୍ଷୀର ତୁଲ୍ୟ ସମ୍ବନ୍ଧ ଘଟିବା ଭାବ କନ୍ୟା ଶାମ୍ବଙ୍କୁ ବରମାଲ୍ୟ ପ୍ରଦାନ କଲେ । ଶାମ୍ବ କନ୍ୟାସହ ରଥରେ ପ୍ରସ୍ଥାନ କରୁଅଛନ୍ତି, ଇତ୍ୟବସରେ ଅବଗତ-ଅବଗନ୍ତବ୍ୟ ଚିତ୍ରସେନ ପ୍ରଭୃତି ଆକ୍ରମଣ କଲେ । ଶାମ୍ବ ଅନେକଙ୍କୁ ନିହତ କରି ସୁଦ୍ଧା ପରିଶେଷରେ ବନ୍ଦ ହୋଇ ଇନ୍ଦ୍ରଙ୍କ ନିକଟକୁ ନୀତ ହେଲେ । ନାରଦଙ୍କ ମୁଖରୁ ପ୍ରାପ୍ତ ସମ୍ବାଦ ସାଗ୍ରଜ ଶ୍ରୀକୃଷ୍ଣ ଅସଂଖ୍ୟ ପାଣ୍ଡବ କୌରବ ଓ ଯାଦବ ବାହିନୀରେ ପରିବୃତ ହୋଇ ସ୍ୱର୍ଗାକ୍ରମଣ କଲେ; ସେନ୍ଦ୍ର ଦେବଗଣଙ୍କ ସଙ୍ଗେ ଭୀଷଣ ସଂଗ୍ରାମ କରି ପରିଶେଷରେ ଜୟଲକ୍ଷ୍ମୀ ପ୍ରାପ୍ତ ହେଲେ । [୧] ଇତ୍ୟାଦି । ଅନୁମାନତଃ ବୋଧହୁଏ ସାରଳାଦାସ କବି ମହୋଦୟ [୨] ହରିବଂଶ ବିଷ୍ଣୁ ପର୍ବରେ ଏବଂ ଶ୍ରୀମଦ୍ଭାଗବତ ଦଶମସ୍କନ୍ଧରେ [୩] ଉକ୍ତ ପାରିଜାତହରଣ ସନ୍ଦର୍ଭକୁ ଅନୁସରି ଶୋଭାବତୀ ହରଣ ପ୍ରକରଣର ଅବତାରଣା କରିଥିବେ ଅଥବା ଅନ୍ୟ କେହି ଲେଖି ମିଶାଇ ଥିବେ । ଅନନ୍ତର କୈଳାସର ଉତ୍ତରବର୍ତ୍ତୀ ଅଲମ୍ବୁଷନଗରାଧିପ ମହିଷାସୁର ବଂଶଜାତ ରୂଢ଼ାସୁର ମୃତ୍ୟୁପରେ ତଦୀୟ ପୁତ୍ର ପୂଢ଼ାସୁର କାର୍ତ୍ତିକେୟଙ୍କ ବର ପ୍ରସାଦରୁ ଅନେକ ବୀରମାନଙ୍କର ଗୁରୁସମରକଣ୍ଡୂ ନିବାରଣ କଲା ପରେ ଦିଗ୍ବିଜୟବିଜିଗୀଷୁ ହୋଇ [୪] ଇନ୍ଦ୍ରଙ୍କଦ୍ୱାରା ପଞ୍ଚତ୍ୱ ପ୍ରାପ୍ତ ହେବା ପ୍ରଭୃତି କଥା, ଅଥଚ [୫] ତତ୍ପୁତ୍ର ମୂଢ଼ାସୁରର କଥା ଉକ୍ତ ଅଛି କି [୬] ପୂଢ଼ାସୁରର

---

[୧] ଏ ସ୍ଥଳରେ କେବଳ ଯୁଦ୍ଧ ନୁହେଁ, ପ୍ରାୟତଃ ପ୍ରତ୍ୟେକ ଅଂଶ ବିସ୍ତୃତ ଭାବରେ ବର୍ଣ୍ଣିତ ଅଛି ।

[୨] ହରିବଂଶର ବିଷ୍ଣୁ ପର୍ବରେ ନାରକାସୁର ନାଶ ପ୍ରକରଣର ଅବ୍ୟବହିତ ପରେ ପାରିଜାତହରଣ ବୃତ୍ତାନ୍ତ ଉକ୍ତ ଅଛି । ଅତଃପର ଉମା ବ୍ରତ ପ୍ରଭୃତି କେତେକ ସ୍ତ୍ରୀ ବ୍ରତର କ୍ରମ ମଧ୍ୟ ଉକ୍ତ ଅଛି ।

[୩] ଶ୍ରୀମଦ୍ଭାଗବତ ଦଶମସ୍କନ୍ଧ ୬୪ ଅଧ୍ୟାୟରେ ଲେଖାଅଛି ।

[୪] ଛାପାରେ ୪୦୪ — ୪୩୨ ପୃଷ୍ଠାରେ ଦେଖନ୍ତୁ ।

[୫] ଛାପାରେ ୪୩୩ — ୪୬୬ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

[୬] ବାପ ନାମ ହୋଇଲାକ ଜାଣ ରୂଢ଼ାସୁର ।
ତାର ପୁତ୍ର ନାମ ହେଲା ପୂଢ଼ା ସେ ଅସୁର ॥
ନାତି ନାମ ସେହି ଅନୁକ୍ରମରେ ହୋଇଲା ।
ଏହୁପରି ନାମ କାହିଁ ଦେଖାଇ ନ ଥିଲା ॥ ମ. ପ. ୪୩୨ ପୃ:

ପୁଣି ବୃତ୍ରାସୁର ଦେବତାମାନଙ୍କୁ ବହୁ କଷ୍ଟପୀଡ଼ିତ କଲା ପରେ ଇନ୍ଦ୍ରାମାତ ନକୁଳଙ୍କଦ୍ୱାରା ନିହତ ହେଲା ।

ପରମ୍ପରାଗତ ଉଦାହରଣରେ ନାମିତ ଅସୁରଙ୍କ କଥା ପ୍ରକଥନାନନ୍ତର ଉକ୍ତ ଅଛି ଯେ [୭] ଶ୍ରୀକୃଷ୍ଣଙ୍କ ତନୟ ପ୍ରଦ୍ୟୁମ୍ନ ନାରଦଙ୍କ ମନ୍ତ୍ରଣାରେ କୁନ୍ତଳଶେଖର-ରାଜକନ୍ୟା ସୁରେଖାଙ୍କୁ ଆହରଣ କରି ନେବା ସମୟରେ କନ୍ୟା-ଭ୍ରାତା ମାଳଧର ପ୍ରଭୃତି ପ୍ରଦ୍ୟୁମ୍ନଙ୍କୁ ବାନ୍ଧିନେଲେ । ପ୍ରାପ୍ତ ସମ୍ବାଦ ସାନୁଜ ବଳରାମ ଆସି ଉପସ୍ଥିତ ହେବାରୁ ରାଜା କୁନ୍ତଳଶେଖର ବହୁ ଅନୁନୟ ବିନୟ ସହକାରେ ପ୍ରଦ୍ୟୁମ୍ନ ଓ ସୁରେଖାଙ୍କୁ ଦକ୍ଷିଣାସ୍ୱରୂପ ସମର୍ପଣ କଲେ । ଇତ୍ୟାଦି । ବୋଧହୁଏ ଏଗୁଡ଼ିକ ଜଳ୍ପକଳ୍ପତରୁ କଳ୍ପନାପ୍ରସୂତ ଫଳ, ପରନ୍ତୁ ଆମ୍ଭର ପରିଦୃଷ୍ଟ ଦୁଇଖଣ୍ଡି ତାଳପତ୍ର ପୁସ୍ତକରେ ଏ କଥାଗୁଡ଼ିକର ଆଭାସ ସୁଦ୍ଧା ଦେଖାଯାଇ ନ ଥିବାରୁ ମନେକରୁଁ, ଅନ୍ୟ କବିଂମନ୍ୟମାନ ମହାତ୍ମାମାନେ ନିଜ ମୃଷା-କଳ୍ପନା-ବିଚକ୍ଷତାକୁ ସାରଳାଦାସଙ୍କ କଳ୍ପନାରେ ମିଶାଇ ଦେଇଥିବେ । ତଥାପି ଲେଖା ଓ ଭାଷାରେ ତାଦୃଶ କିଛି ପ୍ରଭେଦ ରହି ନ ଥିବାରୁ ସାରଳାଦାସ କବି ଯେ ନିଶ୍ଚେ ଏ ସବୁ ଲେଖି ନାହାନ୍ତି, ଏହା ସତ୍ୟ ବୋଲି କହି ନ ପାରୁଁ । ଯାହାହେଉ ମୂଳ ଗ୍ରନ୍ଥରେ କିମ୍ବା ଅନ୍ୟ ପୁରାଣରେ ଅନୁକ୍ତ ବିଷୟରେ ବୃଥା କଳ୍ପନାରେ ମୃଷାକଳ୍ପନା ମିଶିବା ଅସମ୍ଭବ ନୁହେଁ । ତଥାପି ଏହି ଆଶୁଗାମିନୀ ବାକ୍ୟଧାରଣୀର ରଚୟିତାଙ୍କ ଅସାମାନ୍ୟ କଳ୍ପନାଶକ୍ତି ଯେ ସମ୍ପୂର୍ଣ୍ଣ ସ୍ତୋତବ୍ୟ, ଏଥିରେ କିଛି ମାତ୍ର ସନ୍ଦେହ ନାହିଁ । ସାରଳାଦାସ କବିଙ୍କର କଳ୍ପନାଶକ୍ତିର ଚୂଡ଼ାନ୍ତ ମହିମା ଏତଦପେକ୍ଷା ସଭାପର୍ବରେ ବିଦ୍ୟମାନ । ଶ୍ରୀଯାଦ ଚକ୍ଷୁଷ୍ମନ୍ତ ଚତୁର୍ଦ୍ଦିଗରୁ ଯାଗାର୍ଥ ନିମନ୍ତ୍ରିତ ରାଜାମାନଙ୍କୁ ଆଣିଲେ । ଏତିକି କଥାମାତ୍ର ମୂଳରୁ ସ୍ଥୂଳ ସାରାଂଶ ନେଇ ନାମଧାମାଦି କଳ୍ପନାରେ ସଙ୍ଗତଭାବରେ ଅନେକଗୁଡ଼ିଏ ପାଠ ଅନର୍ଗଳ ଲେଖି ଯାଇ ଅଛନ୍ତି ।

[୧] ଛପା ପୁସ୍ତକର ମଧ୍ୟପର୍ବର ଶେଷ ଭାଗରେ ରାମକୃଷ୍ଣ ଦୁହେଁ ଶାନ୍ତିପର୍ଣ୍ଣିଙ୍କ ଗୃହାନ୍ତରେ ବିଦ୍ୟାଶିକ୍ଷା କରିବା, ଶାନ୍ତିପର୍ଣ୍ଣିଙ୍କ ପୂର୍ବ ଜନ୍ମବୃତ୍ତାନ୍ତ, ଗୁରୁସମାଦିଷ୍ଟ ରାମକୃଷ୍ଣ ଭ୍ରାତୃଦ୍ୱୟ କାଷ୍ଠାନୟନାର୍ଥ ଅରଣ୍ୟକୁ ଯିବା, ଗୁରୁଦକ୍ଷିଣା

---

[୭] ଛପା ପୁସ୍ତକରେ ୪୬୭ – ୫୦୦ ପୃଷ୍ଠାଯାଏ ପଢ଼ିଯାନ୍ତୁ ।

[୧] ଛପାରେ ୫୦୧ – ୫୧୭ ପୃଷ୍ଠାଯାଏ ଦେଖନ୍ତୁ ।

ସ୍ୱରୂପ ମୃତ ପୁତ୍ରମାନଙ୍କୁ ଆଣିଦେବା ଇତ୍ୟାଦି ବିଷୟକ ଚରିତ ଉକ୍ତ ଅଛି । ଏଥି ମଧ୍ୟରେ କେତେକ କାଳ୍ପନିକ ଥିଲେ ସୁଦ୍ଧା ଶ୍ରୀମଦ୍‌ଭାଗବତୋକ୍ତ [୨] ଚରିତ୍ରର ମୌଳିକତା ବିଦ୍ୟମାନ ଅଛି ।

ଅଭିଜ୍ଞ ପାଠକେ! ପୂର୍ବ ପ୍ରକାଶିତ ଅଂଶମାନଙ୍କରେ ମୂଳ ଆଦିପର୍ବର ଅନୁମତ ବିଷୟମାନଙ୍କର କେବଳ ବୈଷମ୍ୟାଦି ବିଚାର ଶେଷ ହୋଇଅଛି । ବର୍ତ୍ତମାନ ତଦନୁକ ସଭାପର୍ବର କାର୍ଯ୍ୟଗୁଡ଼ିକ ବିଚାର୍ଯ୍ୟ । କିନ୍ତୁ ଇତଃପୂର୍ବେ ଆଦି ଓ ସଭାପର୍ବର ମଧ୍ୟସ୍ଥ ଶ୍ରୀ ସାରଳାଦାସ କବିଙ୍କ ନିର୍ଦ୍ଧାରିତ ମଧ୍ୟପର୍ବ ନାମକ ଗୋଟିଏ ଅମୌଳିକ ପର୍ବର ନାମୋଦ୍‌ଘୋଷ କରାଯାଇ ଅଛି । ତେବେ ତାହାଙ୍କ ମତରେ ଶ୍ରୀ ମହାଭାରତ ଗ୍ରନ୍ଥାଗମ ଊନବଂଶ (୧) ବିଶାଳ ଶାଖାବିଶିଷ୍ଟ କି? ଏହି ଆଶଙ୍କା ଅବଶ୍ୟ ପାଠାରମ୍ଭରୁ ଉତ୍‌ଥାପିତ ହୋଇପାରେ । ଅତଏବ ଏ ସ୍ଥଳରେ ଆପାତତଃ ସାମୟିକ ବିଚାରରେ ଉଭୟ ଭାରତୀୟ ପର୍ବାନୁକ୍ରମଣିକା ବିଷୟର ସୂଚନା ସୂଚିତ କରି ତତ୍ପର କରଣୀୟରେ ତତ୍ପର ହେବୁଁ । ଦାସ କବି ମହୋଦୟ ମୌଳିକ ଗ୍ରନ୍ଥୀୟ ଅଷ୍ଟାଦଶ ସଂଖ୍ୟାକୁ ଅତିକ୍ରମ କିମ୍ବା ବ୍ୟତିକ୍ରମ ନ କରି ସୁଦ୍ଧା

---

[୨] କୃଷ୍ଣ ବଳରାମ ଅବନ୍ତୀନଗରବାସୀ ଶାନ୍ଦୀପନିଙ୍କ ଗୃହରେ ବିଦ୍ୟା ପଢ଼ି ତାହାଙ୍କ ମୃତ ପୁତ୍ରମାନଙ୍କୁ ଆଣିଦେବା ବୃତ୍ତାନ୍ତ ଦଶମସ୍କନ୍ଧ ଊନପଞ୍ଚାଶତ୍ ଅଧ୍ୟାୟରେ ଲେଖାଅଛି ।

ଆମ୍ଭମାନଙ୍କର ସାରଳାଦାସ ମହୋଦୟ ଯେପରି ମୂଳ ମହାଭାରତରେ ଅନୁକ୍ତ କଥାମାନ ପୁରାଣାନ୍ତରାନୁସରଣରେ ଲେଖି ଅଛନ୍ତି, ବଙ୍ଗଭାରତ ଆଦି-ପର୍ବରେ ସୁଦ୍ଧା ତଦନୁରୂପ ଅନେକଗୁଡ଼ିଏ ପ୍ରକରଣ ଦେଖାଯାଏ । ଯଥା—

୧. ଦ୍ରୌପଦୀ ସ୍ୱୟମ୍ବର ସ୍ଥଳରେ ଭାନୁମତୀ ସ୍ୱୟମ୍ବର । ୧୧୮ ପୃଷ୍ଠା ।

୨. ସତ୍ୟଭାମାଙ୍କ ସକାଶେ ପାରିଜାତହରଣର ସମଗ୍ର ବୃତ୍ତାନ୍ତ । ୧୫୩—୧୫୯ ପୃଷ୍ଠା ।

୩. ସତ୍ୟଭାମା ଶ୍ରୀକୃଷ୍ଣଙ୍କୁ ନାରଦଙ୍କୁ ଦାନ ଦେବା ପରେ ତତ୍ପରିମାଣ ଧନ ପ୍ରଦାନ କରିବା ବୃତ୍ତାନ୍ତ । ୧୬୦ ପୃଷ୍ଠା ।

୪. ଦୁର୍ଯ୍ୟୋଧନସୁତା ଲକ୍ଷ୍ମଣାଙ୍କ ସ୍ୱୟମ୍ବର ଏବଂ ଶାମ୍ବକୁମାର ତାହାଙ୍କୁ ଅପହରି ନେବା ବୃତ୍ତାନ୍ତ । ୧୬୪ ପୃଷ୍ଠା ।

(୧) ଶାଖା—ସ୍କନ୍ଧ ଶାଖା ବା ପ୍ରଧାନ ଶାଖା ।

ଅନୁକ୍ରମକୁ କିଞ୍ଚିତ୍ ଅକ୍ରମାପନ୍ନ କରି ଅଛନ୍ତି । ତଥାପି ମହାଭାରତରେ ବହୁ ସ୍ଥଳରେ ଯେପରି ବିଷୟମାନଙ୍କର ପର୍ବବିଭାଗରେ ମଧ୍ୟ ସେପରି ଆଂଶିକ ବୈଷମ୍ୟ ଘଟିଅଛି । ମୂଳଗତ ଅଷ୍ଟାଦଶପର୍ବୀୟ ନାମକ୍ରମକୁ ଏ ମହାତ୍ମା ଏକାନ୍ତ ଅକ୍ଷୁର୍ଣ୍ଣ ରଖି ନାହାନ୍ତି । ଆଦିପର୍ବର କତିପୟ ପରିଶିଷ୍ଟ କଥାମାନଙ୍କରେ ଇତସ୍ତତଃ ସମାଗତ ବହୁବିଧ କଥାର ସମ୍ମିଶ୍ରଣରେ ଆଦି ଓ ସଭାପର୍ବ ମଧ୍ୟରେ ମାଧ୍ୟମିକ ମଧ୍ୟପର୍ବ ନାମ କଳ୍ପିତ କରି ଅଛନ୍ତି । ଏହି କଳ୍ପନାଟି ମୂଳାନୁସରଣରେ ଅଳୀକ ହେଲେ ସୁଦ୍ଧା ନିତାନ୍ତ ଯୁକ୍ତିବିରହିତ ମନେହୁଏ ନାହିଁ । ମତିମାନ ବୈଷମ୍ୟ-କଳ୍ପନାପ୍ରିୟ ସାରଳାଦାସ ମହାଶୟ ମନେ କରିଥିବେ, "ଦେବସତ ପାଣ୍ଡବ-ମାନଙ୍କର ପ୍ରାଥମିକ ଐଶ୍ୱର୍ଯ୍ୟାଭୋଗର ଭୋଗ ସମୟ ସଭାବସାନରେ ଅବସନ୍ନ ହୋଇଅଛି । ତତ୍ସମ୍ପ୍ରଦାୟ-କାଳୀନ ଚରିତମାନ ଆଦି ଓ ସଭାପର୍ବରେ ଦୁଇ ଭାଗରେ ବିଭକ୍ତ ହୋଇଅଛି । ମଦୀୟ ସମାରଚୟିଷ୍ୟମାଣ ଭାରତରେ ପ୍ରୋକ୍ତ ସମୟକୁ ଭାଗତ୍ରୟରେ ବିଭକ୍ତ କରି ଆଦି ପରେ ମଧ୍ୟ ନାମକ ପର୍ବର ଆବିର୍ଭାବ କରିବି ।" ବ୍ୟାସମୁନି ମହାଭାଗ ତତ୍ ତତ୍ ବର୍ଣ୍ଣିତ ଚରିତମାନଙ୍କର ଆଭ୍ୟୁଦୟିକ ଗୁଣାନୁକ୍ରମରେ ଆଦି ସଭାଦି ପର୍ବମାନଙ୍କର ନାମକରଣ କରି ଅଛନ୍ତି; ମାତ୍ର ଦାସ ମୁନିଙ୍କର ଏହି ନାମକରଣ ପାଣ୍ଡବୀୟ ଅଦୃଷ୍ଟୋଦୟବିଚ୍ୟୁତୈଶ୍ୱର୍ଯ୍ୟ ସମୟର ଗୁଣାନୁସରଣରେ ହୋଇଅଛି ବୋଲି ଅନୁମିତ ହୁଏ ।

## ମୂଳଗତ ପର୍ବମାନଙ୍କର ଅନୁକ୍ରମଣିକା—

୧ । ଆଦିପର୍ବ
୨ । ସଭାପର୍ବ
୩ । ବନପର୍ବ
୪ । ବିରାଟପର୍ବ
୫ । ଉଦ୍‌ଯୋଗପର୍ବ
୬ । ଭୀଷ୍ମପର୍ବ
୭ । ଦ୍ରୋଣପର୍ବ
୮ । କର୍ଣ୍ଣପର୍ବ
୯ । ଶଲ୍ୟପର୍ବ
୧୦ । ସୌପ୍ତିକପର୍ବ
୧୧ । ସ୍ତ୍ରୀପର୍ବ
୧୨ । ଶାନ୍ତିପର୍ବ
୧୩ । ଆନୁଶାସନିକପର୍ବ
୧୪ । ଆଶ୍ରମବାସିକପର୍ବ
୧୫ । ମହାପ୍ରାସ୍ଥାନିକପର୍ବ
୧୬ । ଅଶ୍ୱମେଧପର୍ବ
୧୭ । ମୌଷଳପର୍ବ
୧୮ । ସ୍ୱର୍ଗାରୋହଣପର୍ବ

## ସାରଳା ମହାଭାରତର ପର୍ବାନୁକ୍ରମଣିକା—

| | |
|---|---|
| ୧ । ଆଦିପର୍ବ | ୧୦ । ଶଲ୍ୟପର୍ବ |
| ୨ । ମଧ୍ୟପର୍ବ | ୧୧ । ଗଦାପର୍ବ |
| ୩ । ସଭାପର୍ବ | ୧୨ । କାର୍ତ୍ତିକା ବା ସୌପ୍ତିକପର୍ବ |
| ୪ । ବନପର୍ବ | ୧୩ । ନାରୀପର୍ବ |
| ୫ । ବିରାଟପର୍ବ | ୧୪ । ଶାନ୍ତିପର୍ବ |
| ୬ । ଉଦ୍‌ଯୋଗପର୍ବ | ୧୫ । ଆଶ୍ରମିକପର୍ବ |
| ୭ । ଭୀଷ୍ମପର୍ବ | ୧୬ । ଅଶ୍ୱମେଧପର୍ବ |
| ୮ । ଦ୍ରୋଣପର୍ବ | ୧୭ । ମୂଷଳୀ ବା ଯଦୁବଂଶପର୍ବ |
| ୯ । କର୍ଣ୍ଣପର୍ବ | ୧୮ । ସ୍ୱର୍ଗାରୋହଣପର୍ବ |

ଏହି କବି ଅଷ୍ଟାଦଶ ପର୍ବ ଗଣନାରେ ଗଦାପର୍ବ ବୋଲି ଯାହା ଗୋଟିଏ ପ୍ରଧାନ ପର୍ବ କରି ଅଛନ୍ତି ତାହା ମୂଳ ଗ୍ରନ୍ଥର ଅନୁରୂପ ନୁହେ । ମୂଳରେ ଶଲ୍ୟ-ପର୍ବର ପରିଶେଷଭାଗରେ ହ୍ରଦପ୍ରବେଶନାମକ ଉପପର୍ବରେ ୩୨ ଅଧ୍ୟାୟ ଆରମ୍ଭ କରି ୬୫ ଅଧ୍ୟାୟ ଶେଷ ଅର୍ଥାତ୍ ଶଲ୍ୟପର୍ବ ପରିସମାପ୍ତି ଯାଏଁ ଗଦାପର୍ବ ବୋଲି ଗୋଟିଏ ଉପପର୍ବ ଅଭିହିତ ଅଛି । ଏହା ନାମକୁ ନେଇ ଦାସ କବି ମହୋଦୟ ଅତ୍ୟୁତ୍ସାହସହକାରେ ଅଭେଦ ଭାବରେ ତାହାକୁ ସ୍ୱତନ୍ତ୍ର ପର୍ବର ଅଭାବଜନିତ କ୍ଷତିର ପୂରଣାର୍ଥ ଏହାକୁ ଏକ ସ୍ୱତନ୍ତ୍ର ପର୍ବରୂପେ ନିର୍ଦ୍ଦିଷ୍ଟ କରିଦେଇ ଅଛନ୍ତି । ତଥାଚ ମୂଳଗତ ସୌପ୍ତିକ ପର୍ବର ନାମ ନ ନେଇ ତହିଁ ପ୍ରତିପାଦିତ ଘଟଣାର ବିଷୟ ବର୍ଣ୍ଣନାରେ ମାତ୍ର କାର୍ତ୍ତିକା ବା ସୌପ୍ତିକ ପର୍ବ ନାମରେ ଏକ ପ୍ରଧାନ ପର୍ବ ସମାଖ୍ୟାତ କରିଅଛନ୍ତି । ମୂଳ ଗ୍ରନ୍ଥରେ ସୌପ୍ତିକ ପର୍ବ ସୌପ୍ତିକ ପର୍ବର ଏକ ଅଙ୍ଗସ୍ୱରୂପ ଅଟେ । ତତଃପର ଶରତଳ୍ପଶାୟୀ ଅନଳ୍ପସତ୍ତ୍ୱ ଭଗବତ୍ଭକ୍ତ ଭୀଷ୍ମଙ୍କ ନିକଟରେ ସମାଗତ ଶ୍ରୀକୃଷ୍ଣଙ୍କ ସମକ୍ଷରେ ଧର୍ମପିପାସୁ ଯୁଧିଷ୍ଠିରଙ୍କ ପ୍ରଶ୍ନରେ ତତ୍‌ପିତାମହମୁଖୋଦିତ ପ୍ରଜାପାଳନ ବ୍ରାହ୍ମଣ ଭକ୍ତି ଓ ଅନ୍ନଦାନ ବିଷୟକ ଧର୍ମୋପଦେଶକୁ ଅତିମିତପ୍ରସରରେ ପ୍ରାୟ ଅଢ଼ାଇ ପତ୍ରରେ (ଗ୍ରନ୍ଥରେ ଦୁଇ ପୃଷ୍ଠା) ପରିସମାପ୍ତ କରି ଲେଖି ଅଛନ୍ତି । ଭୀଷ୍ମଙ୍କର ବହୁବିଧ ଧର୍ମମୂଳକ ସଦୁପଦେଶମୟ ଅମୃତାୟମାନ ମୂଳ ଶାନ୍ତିପର୍ବଟି ୩୬୫ ଅଧ୍ୟାୟମାନଙ୍କରେ ଆଦିପର୍ବ ଓ ବନପର୍ବ ଅପେକ୍ଷା ବୃହତ୍ତର ଅଟେ । ତତ୍ସମୁଦାୟ ସାରଳାଦାସ କହିପାରି ନାହାନ୍ତି । ତଥାପି ବିଷୟାବତରଣିକା ସ୍ୱରୂପ ପ୍ରାୟ ଦୁଇ ପତ୍ର ପାଠମାତ୍ର ଲେଖି ଅଛନ୍ତି ।

ଏହାପରେ ୧୬୮ ଅଧ୍ୟାୟରେ ନବମ ଶାନ୍ତିପର୍ବାଦର ଅନୁଶାସନ ପର୍ବର ବିଷୟମାନ ଲେଖିବା ହେତୁ ଥାଇ, ନାମ ପର୍ଯ୍ୟନ୍ତ ବିଲୋପ କରିଦେଇ ଅଛନ୍ତି । ତଥାପି ମହାପ୍ରସ୍ଥାନିକ ପର୍ବର ନାମ ନ ଦେଇ ତହିଁ ସମ୍ବନ୍ଧୀ କଥା ସାରାଂଶକୁ ସ୍ୱର୍ଗାରୋହଣ ପର୍ବରେ ଭୁକ୍ତ କରି ଅଛନ୍ତି । ପରନ୍ତୁ ତାଳପତ୍ର ପୁସ୍ତକରେ ମୂଷଳୀ ପର୍ବର ନାମ ମଧ୍ୟ ଠିକ୍ ନିର୍ଦ୍ଦିଷ୍ଟ ନାହିଁ । କିନ୍ତୁ ତହିଁ କୃଷ୍ଣଚରିତ୍ ତତ୍ପରବର୍ତ୍ତୀରେ ହରିବଂଶ ପର୍ବ ନାମର ଉଲ୍ଲେଖ ଦେଖା ଯାଉଅଛି । ସାରଳା ମହାଭାରତର ବିଶେଷତଃ ଉତ୍ତରାର୍ଦ୍ଧ ଅର୍ଥାତ୍ ଗଦାପର୍ବ ପ୍ରାରମ୍ଭରୁ ସ୍ୱର୍ଗାରୋହଣ ପର୍ବ ପର୍ଯ୍ୟନ୍ତ ଛାପା ଆଉ ତାଳପତ୍ର ପୁସ୍ତକରେ ପ୍ରାରମ୍ଭ ଓ ପରିସମାପ୍ତି (ପର୍ବ ପ୍ରାରମ୍ଭ ଓ ଶେଷ କଥା) ଏକପ୍ରକାର ରହିନାହିଁ । ଏହା ଆଦର୍ଶ ଲେଖକମାନଙ୍କର ବୁଦ୍ଧି-ଦୁର୍ବିଧାତାର ବିଷମ ଚାତୁର୍ଯ୍ୟର ଫଳ । ଏଥିପାଇଁ କବି ଦାୟୀ ନୁହନ୍ତି । ଏହାର ପ୍ରତ୍ୟକ୍ଷ ପ୍ରମାଣ ପାଠକେ କ୍ରମଶଃ ପାଇ ପାରିବେ । ସମ୍ପ୍ରତି ସଭାପ୍ରମୁଖପର୍ବଗତ ବିଷୟବୈଷମ୍ୟ ବିବୃତ କରାଯାଉ ।

ପ୍ରିୟ ପାଠକଗଣ ! ସାରଳା ମହାଭାରତର ସମଗ୍ର ପର୍ବମାନଙ୍କର ପ୍ରତ୍ୟେକ ଘଟଣାକୁ ମୂଳ ସହିତ ମିଳାଇବାକୁ ଉଦ୍ଦେଶ୍ୟ ସମଗ୍ର ଭାରତ ପାଠ କରି ଦେଖିଅଛୁଁ, ସମଧିକ ସ୍ଥଳରେ ବିଷୟବୈଷମ୍ୟ ଘଟିଅଛି । ସେହି ସେହି ସ୍ଥାନମାନ ମଧ୍ୟ ଉଲ୍ଲେଖ କରି ରଖିଅଛୁଁ । ମୂଳ ସଙ୍ଗେ ତାହାର ଯେଉଁ ଯେଉଁ ଅଂଶ ମିଳୁନାହିଁ, ବା ଏକପ୍ରକାର ହେଉନାହିଁ, ମୂଳାତିରିକ୍ତ ଯାହା ଯାହା ଅଧିକନ୍ତୁ ଲେଖା ଅଛି, ଅଥଚ ଯାହା ଯାହା କାଳ୍ପନିକ ଓ ଅନ୍ୟ ପୁରାଣରୁ ଆନୀତ, ସେ ସବୁ ମଧ୍ୟ ନିର୍ଦ୍ଦେଶପୂର୍ବକ ରଖିଅଛୁଁ ; କିନ୍ତୁ ଦେଖିଲୁ ଯେ, ତତ୍ସମୁଦାୟର ବିବରଣ ଇତଃ-ପୂର୍ବେ ପ୍ରକାଶିତ ଅଂଶର ଅନୁକ୍ରମରେ ପ୍ରତ୍ୟେକ ଚରିତ୍ର ସନ୍ନିଧାନରେ ପ୍ରାସଙ୍ଗିକ ପରିଚୟ ପ୍ରଦାନପୂର୍ବକ ଲେଖିଗଲେ ଉଦ୍ଦେଶ୍ୟ ଭାରତାଦର୍ଶସ୍ୱରୂପ ବୃହଦାକାର ଆଉ ଗୋଟିଏ ସ୍ୱତନ୍ତ୍ର ବାଳଭାରତ ହୋଇ ପଡ଼ିବ । ପରନ୍ତୁ କେତେକ ବିଷୟର ପରିଚୟ ନିତାନ୍ତ ତ୍ୟାଗ କଲେ ଲେଖକଙ୍କ ପ୍ରତିଜ୍ଞାନୁମୋଦିତ କର୍ତ୍ତବ୍ୟରୁ ବିଚ୍ଛେଦ-ପୂର୍ବକ ପ୍ରକୃତ ସତ୍ୟକୁ ଲୁକ୍କାୟିତ ରଖିବାକୁ ହେବ ; ପୁଣି ପାଠକ ସମାଜରେ ନିଗୂଢ଼ ପ୍ରତାରକ ହେବାକୁ ପଡ଼ିବ । ଅତଏବ "ତାଂ ନ୍ୟୂନପ୍ୟତାଂ ମାତରଂ ମଙ୍ଗଳାନାଂ, ଧେନୁଂ ଧୀରାଃ ସୂନୃତାଂ ବାଚମାହୁଃ" ଏହି ମହର୍ଷୀୟ ପ୍ରବଚନରେ ପ୍ରଣୋଦିତାନ୍ତଃକରଣ ହୋଇ ବହିର୍ନିଃସୃତ ସତ୍ୟାଭୂତ କଥାର ଉପଲବ୍ଧି ସଙ୍କାଶେ ପ୍ରତ୍ୟେକ ବିଷୟର ଦିଗ୍ଦର୍ଶନ ସ୍ୱରୂପ ଲେଖାରେ ପ୍ରବୃତ୍ତ ହେଉଅଛୁଁ ।

ମୂଳ ସଭାପର୍ବର ପ୍ରାରମ୍ଭରେ ମହାମାୟ ମୟଦାନବ ଅର୍ଜୁନଙ୍କର ପୂର୍ବୋପକାର-ମୂଳକ ଉପଚିକୀର୍ଷାରେ ପାଣ୍ଡବମାନଙ୍କ ପାଇଁ ଯାହା କି ଅଭୂତପୂର୍ବ ଓ ଅଦ୍ୱିତୀୟ ତାଦୃଶ ଲୋକୋତ୍ତର ସନ୍ମନୁଷ୍ୟମନଃ-ପ୍ରନ୍ତମ ସୁପ୍ରସନ୍ନ ରତ୍ନମୟ ସଭାକୁ ଚତୁର୍ଦ୍ଦଶ ମାସରେ ନିର୍ମାଣ କରିଥିଲେ । (୧) ଏହି ବିଷୟକୁ ସାରଳାଦାସ କବି ସଭାପର୍ବସ୍ଥ ନ କରି ତତ୍ପୂର୍ବବର୍ତ୍ତୀ ପର୍ବରେ କଳ୍ପିତ ବ୍ୟତିକ୍ରମତାସହ ନିବଦ୍ଧ କରି ଅଛନ୍ତି । ତତଃପର ସମ୍ପୂର୍ଣ୍ଣତ ଲୋକପାଳ ସଭାଖ୍ୟାନାବଧି ଉପପର୍ବର (ପଞ୍ଚମାଧ୍ୟାୟ ପ୍ରାରମ୍ଭରୁ ଦ୍ୱାଦଶାଧ୍ୟାୟ ପର୍ଯ୍ୟନ୍ତ) ବିଦ୍ୱଦ୍‌ରାଜନୀତିଗର୍ଭକ ନାରଦମୁଖ-ନିଃସୃତ ଅମୃତାୟିତ "ଅଷ୍ଟାଧ୍ୟାୟୀର" କଥାଗୁଡ଼ିକ ପରିତ୍ୟାଗ କରି ଅଛନ୍ତି । ତଦନନ୍ତର ଜରାସନ୍ଧବଧ ବିଧାନରେ ଗୃହୀ ଊଣା ଲକ୍ଷେ ରାଜା କାରାଗାରରେ ଉପରୁଦ୍ଧୀଭୂତ ଥିବା, ଶ୍ରୀକୃଷ୍ଣସହାୟ ଭୀମାଦି ମାଗଧଚତୁର୍ଦ୍ୱାରସ୍ଥ ଜରାସନ୍ଧ ପ୍ରଭୃତିଙ୍କର ଉଲ୍ଲଂଘନପୂର୍ବକ ବିଶାଳ ଶାଳ୍ମଳୀଶାଳ ବିଚ୍ଛେଦନ କରିବା ଇତ୍ୟାଦିରେ କେତେକ ଅମୂଳକ କଥାମାନ ବୈଲକ୍ଷଣ୍ୟ ସହକାରରେ ଲେଖି ଅଛନ୍ତି । ଅଥ ପାରାଶର୍ଯ୍ୟ ମତରେ ଶ୍ରୀକୃଷ୍ଣ-ସନାଥ ଭୀମପ୍ରମୁଖ ଅମନ୍ଦସୁନ୍ଦରକନ୍ଦର ଗୋରଥାଦ୍ରିଧ ଭୂଧରର ଚୈତ୍ୟକ ଶୃଙ୍ଗ ଭଙ୍ଗପୂର୍ବକ ଜରାସନ୍ଧ ନଗରୀରେ ପ୍ରବେଶ କରିବା ପାଇଁ ପ୍ରଥମତଃ ତନ୍ନିହ୍ନ ବଜ୍ରସାର ବାର୍ଷୁକଜଳଦ-ଗମ୍ଭୀରସ୍ୱନ ଭେରୀତ୍ରୟକୁ ମାତ୍ର ଧ୍ୱସ୍ତ କରିଥିଲେ । ତେତେବେଳେ ଦୃଢ଼ସନ୍ଧ ଜରାସନ୍ଧଙ୍କ କର୍ତ୍ତୃକ ଷଡ଼ଶୀତି ରାଜା ମାତ୍ର ବନ୍ଦୀଭୂତ ଥିଲେ । ଆଉ ଚତୁର୍ଦ୍ଦଶ ରାଜା ସ୍ୱତନ୍ତ୍ର ଥିଲେ ।(୨) ପୁନଶ୍ଚ ଏହି କବି ମହୋଦୟ ସ୍ୱମତ ସମର୍ଥନାର୍ଥ ନିର୍ଜୀବ ଭେରୀ ଓ ଶାଳ୍ମଳୀ ବୃକ୍ଷର ମାନୁଷୀକରଣଭାବରେ ତଥାଚ ଦ୍ୱାସ୍ଥ ଗର୍ଦ୍ଦଭ ସମ୍ବନ୍ଧରେ ପ୍ରଶ୍ନ ଓ ସମାଧାନ-ପୂର୍ବକ ତିନିଗୋଟି କାଳ୍ପନିକ ଚରିତ ଅବତାରିତ କରି ଅଛନ୍ତି । (୩) ସର୍ବଥ

---

(୧) ଈଦୃଶୀଂ ତାଂ ସଭାଂ କୃତ୍ୱା ମାସୈଃ ପରିଚତୁର୍ଦଶୈଃ ।
ନିଷ୍ଠିତାଂ ଧର୍ମରାଜାୟ ମୟୋ ରାଜନ୍ ନ୍ୟବେଦୟତ୍ ।

ସ. ପ. ୩ ଅ. ୩୮ ଶ୍ଳୋକ ।

(୨) ଷଡ଼ଶୀତିଃ ସମାନୀତାଃ ଶେଷା ରାଜଂଚତୁର୍ଦ୍ଦଶ ।
ଜରାସନ୍ଧେନ ରାଜାନଃ ତତଃ କ୍ରୂରଃ ପ୍ରବର୍ତ୍ତ୍ୟତେ ।

ସ. ପ. ୧୫ ଅ. ୨୫ ଶ୍ଳୋକ ।

(୩) ଆମ୍ଭମାନଙ୍କ ଆଦିମ ଭାରତକର୍ତ୍ତା ଅଳୀକକଳ୍ପିତ ହେଉ କିମ୍ବା ନବ୍ୟଲୀକ ହେଉ ଯେପରି ଶାଳ୍ମଳୀର କଥା ଅବତାରଣା କରି ଅଛନ୍ତି,

ଭୀମସେନ ପ୍ରଥମାହବରେ ପରାଜିତ ହୁଅନ୍ତି ବୋଲି ଏହାଙ୍କ ହୃଦୟରେ ସମ୍ପୂର୍ଣ୍ଣ ବିଶ୍ୱାସ ବଦ୍ଧମୂଳ ହୋଇ ରହିଥିବାରୁ ଏଠାରେ ଉପ୍ରୋକ୍ତ ବିଶ୍ୱାସର ପ୍ରତ୍ୟେଦନାରେ କହି ଅଛନ୍ତି କି, ଭୀମ ସ୍ୱୀୟ ନିସର୍ଗସୁଲଭ ବିସ୍ମରଣଶୀଳତାବଶରୁ ବାହୁଦ୍ୱୟ ଜରାସନ୍ଧ ତନୁର ଭେଦ ବିସ୍ମରଣରେ କିଂକର୍ତ୍ତବ୍ୟବିମୂଢ଼ ଓ ଅଦୃଷ୍ଟୋପାୟ ହେବାରୁ ଶ୍ରୀକୃଷ୍ଣ ଖଣ୍ଡିଏ ବସ୍ତୁକୁ ଦ୍ୱିଫାଳ କରି ଶତ୍ରୁବଧର ଉପାୟ ଦର୍ଶାଇ ଦେଲେ । ତେତେବେଳେ ଭୀମକର୍ମା ଭୀମସେନ ବୀରଗାମିନୀ ଜୟଲକ୍ଷ୍ମୀକି ପ୍ରାପ୍ତ ହେଲେ । ଶ୍ରୀ ସାରଳାଦାସଙ୍କ ପରି କାଶୀରାମଦାସ ମହାଶୟ ମଧ୍ୟ ଏ ସ୍ଥଳରେ ଏତାଦୃଶ ସ୍ମାରକସ୍ୱରୂପ ଗୋଟିଏ କଥା କହିଅଛନ୍ତି । [୧] ଏଥିରୁ ଅନୁମିତ ହୁଏ ଯେ ଏହାର ଅନୁକରଣୀୟ କୌଣସି ପ୍ରକାର କଥା ଅନ୍ୟ ପୁରାଣାଦିରେ ନିଗଦିତ ଥାଇପାରେ । କିନ୍ତୁ ଏ ସ୍ଥଳରେ ଶ୍ରୀକୃଷ୍ଣଙ୍କର ହସ୍ତିନାରୁ ଦ୍ୱାରକା ପ୍ରୟାଣ ସମୟରେ ମଧ୍ୟମାର୍ଗରେ ଶବର ବ୍ୟାଧାଦିଙ୍କୁ ମାଂସ ଖାଦ୍ୟାଦି ଆନୟନାର୍ଥ, କୁବେରଙ୍କୁ ପ୍ରଚୁର ରତ୍ନାଦି ପ୍ରଦାନାର୍ଥ, ମୟଙ୍କୁ ସଭାସମୁପସ୍ଥାପନାର୍ଥ ସମାଦେଶ-କରଣ ପ୍ରଭୃତି ଅନେକଗୁଡ଼ିଏ ମୂଳାନୁକ୍ତ କଥାର ସବିସ୍ତର ପ୍ରସରଣ ଅନାବଶ୍ୟକ ବୋଧହୁଏ ।

---

ସେପରି ବଙ୍ଗ ଭାରତକର୍ତ୍ତା କାଶୀରାମ ମଧ୍ୟ ଅତି ଚତୁର ମହାନାଗ ନିବାରଣାର୍ଥ କୃଷ୍ଣାଦିଷ୍ଟ ଗରୁଡ଼ଙ୍କର ସମାବେଶନରୂପକ ଅମୌଳିକ କଥାର ଅବତାରଣ କରି ଅଛନ୍ତି ।

ଏଇରୂପ ବିସ୍ତର କରେନ ଚିନ୍ତନ,
ହାର ତ୍ୟଜ କରିଲେନ ଗିରି ଆରୋହଣ ।
ନାଗେର କାରଣ ହେବ ଖଗପତି-ପତି,
ଖଗପତି ସ୍ମରଣ କରେନ ଶୀଘ୍ରଗତି ।
ଆଇଲ ଭୁଜଙ୍ଗରିପୁ କୃଷ୍ଣେର ସ୍ମରଣେ,
ଏ ତିନଭୁବନ କମ୍ପେ ଯାହାର ଗର୍ଜନେ ।
ଭୟେତେ ଭୁଜଙ୍ଗ ହୁଇ ପ୍ରବେଶ ପାତାଲେ,
କୃଷ୍ଣେର ମେଲାଣି ମାଗି ଖଗପତି ଚଲେ । ସ. ପ. ୧୮୯ ପୃଷ୍ଠା ।

[୧] ବୃକୋଦରେ ଦେଖାଇୟା ଦିଲେନ ଶ୍ରୀନାଥ ।
ଦୁଇକରେ ଧରି ଚିରିଲେନ ବେଣାପାତ ॥ ଇତ୍ୟାଦି ।
ସ. ପ. ୧୯୨ ପୃଷ୍ଠା ଦେଖ ।

ଅତଃପର ଦିଗ୍‌ବିଜୟୋପପର୍ବ ପ୍ରାରମ୍ଭରେ ଉକ୍ତ ଅଛି କି ଯୁଧିଷ୍ଠିରଙ୍କର ପବିତ୍ର-ସୌଭ୍ରାତ୍ର-ସ୍ୱଭାବ-ଭୂଷିତ ଭୀମ ପ୍ରମୁଖ ଭ୍ରାତୃଚତୁଷ୍ଟୟ ଯଥାକ୍ରମେ ପ୍ରାଚୀ ଉଦୀଚୀ ପ୍ରତୀଚୀ ଓ ଅବାଚୀ ଦିଗକୁ ଜୈତ୍ରଯାତ୍ରା କଲେ । [୨] ସାରଳାଦାସ କବି ଏହି ଶୃଙ୍ଖଳିତ ଦିଗ୍‌ବିଭାଗ କ୍ରମକୁ ସ୍ୱକୃତକୋଷରେ ଠିକ୍‌ପର୍ଯ୍ୟାୟକ୍ରମରେ ଯଥାଯଥ ରଖି ନ ପାରି କିଞ୍ଚିତ୍ ଭିନ୍ନକ୍ରମ କରିଦେଇ ଅଛନ୍ତି [୩] ବିଶେଷତଃ ଏହାଙ୍କ ବର୍ଣ୍ଣିତ ଭୀମାଦି ଦିଗ୍‌ବିଜୟକ୍ରମ ମୂଳଠାରୁ ବହୁ ଦୂରରେ ପ୍ରତିଷ୍ଠିତ । ଏତତ୍-ପ୍ରକରଣରେ "ଭୀମାଦିମାନେ ରାଜନ୍ୟବୃନ୍ଦଙ୍କୁ ନିମନ୍ତ୍ରିତ ଓ ଅଧୀନ କରିବାକୁ ଯାଇ ଦୁର୍ବୃତ୍ତ କିମ୍ବା ଅବଜ୍ଞାକାରୀ ରାଜାମାନଙ୍କୁ ପରାଭୂତ କିମ୍ବା ନିହତ କରି ସ୍ୱର୍ଣ୍ଣରତ୍ନାଦି ଆଣିଥିଲେ" ଏତିକିମାତ୍ର କଥାର ପ୍ରକୃତତତ୍ତ୍ୱ ବା ମୌଳିକସତ୍ତ୍ୱ ସାରଳା ଭାରତଦ୍ୱାରା ପ୍ରତିପାଦିତ ହୋଇ ପାରିବ । ଅନ୍ୟାନ୍ୟ ବିଷୟ ଓ ବର୍ଣ୍ଣନାଗୁଡ଼ିକ ଆଉ ନାମ-ଧାମାଦି ସମସ୍ତ ଉକ୍ତକବିଙ୍କ କପୋଳକଳ୍ପିତ । ତଥାପି ଏ ସବୁ ତାହାଙ୍କ ମହତୀ ଶକ୍ତିର ସୂଚକ ଓ ପ୍ରଜ୍ଞାପରିଚାୟକ । ମୂଳରେ ପଞ୍ଚବିଂଶାଧ୍ୟାୟ ପ୍ରାରମ୍ଭରୁ ଦ୍ୱାତ୍ରିଂଶ ଶେଷ ପର୍ଯ୍ୟନ୍ତ ୨୧୮ ଶ୍ଳୋକରେ ମାତ୍ର ଦିଗ୍‌ବିଜୟ ପର୍ବ ସମାପ୍ତ । ଏହାକୁ ସାରଳାଦାସ କବି ନାନାବିଧ ଅବାନ୍ତର କଥାମାନଙ୍କରେ ସୁବିସ୍ତୃତ କରି ଅଛନ୍ତି ।

---

[୨] ସସୈନ୍ୟାଃ ପ୍ରଯୟୁଃ ସର୍ବେ ଧର୍ମରାଜେନ ପୂଜିତାଃ ।
ଦିଶଂ ଧନପତେରିଷ୍ଟାମଜୟତ୍ ପାକଶାସନିଃ ।
ଭୀମସେନସ୍ତଥା ପ୍ରାଚୀଂ ସହଦେବସ୍ତୁ ଦକ୍ଷିଣାଂ ।
ପ୍ରତୀଚୀଂ ନକୁଲୋ ରାଜନ୍ ଦିଶଂ ବ୍ୟଜୟତାସ୍ତ୍ରବିତ୍ ।
ସ. ପ. ୨୫ ଅ: ୯, ୧୦ ଶ୍ଳୋକ ।

[୩] କ. ଆପଣେ ଶାଢ଼ୀ ଯେ ଦେଲେ ବାୟୁ ନନ୍ଦନକୁ ।
ତୁମ୍ଭେ ବିଗେବିଜେ କର ପଶ୍ଚିମ ଦିଗକୁ ॥
ଖ. ଯୁଧିଷ୍ଠିରଙ୍କ ସନ୍ନିଧିରେ ବିଜେ ନନ୍ଦବାଳ ।
ସନ୍ନିଧିକୁ ଡକାଇଲେ କୁମାର ନକୁଳ ॥
ବୋଇଲେ ତୁ ଏବେ ଯାଅ ଦକ୍ଷିଣ ଯେ ଦିଗ ।
ଏକୋନ ଅୟୁତ ରଜା ଘେନି ଆସ ବେଗ ॥
ଗ. ଚଳଇ ଯେ ସହଦେବ ପ୍ରଭୁଙ୍କ ବଚନେ ।
ନିମନ୍ତ୍ରିଣ ଆଣିବାକୁ ପୂର୍ବ ରାଜାଗଣେ ॥
ଛାପା ପୁସ୍ତକ ୫୪ ପୃଷ୍ଠା ଦେଖନ୍ତୁ ।

ତଥାପି ରଚନାପ୍ରଣାଳୀ ମୂଳାନୁମତ ଯାଥାତଥ୍ୟରେ ରକ୍ଷିତ ହେଲେ ସୁଦ୍ଧା ସୁକବିତ୍ୱଦ୍ୟୋତକ । କଳ୍ପନାଗୁଡ଼ିକ ସୁଦ୍ଧା ମହତ୍ତ୍ୱବ୍ୟଞ୍ଜକ ଓ ବହୁ ଶକ୍ତିସାପେକ୍ଷ । ମାତ୍ର ଅତ୍ର ଉକ୍ତ ନକୁଳଙ୍କ ଦିଗ୍‌ବିଜୟ ସନ୍ଦର୍ଭରେ ତାଳପତ୍ରସ୍ଥ ଅନେକଗୁଡ଼ିଏ ପାଠ (ସ୍ଥାନେ ସ୍ଥାନେ) ଗ୍ରନ୍ଥପାଠ୍ୟର ନାହିଁ । [୧]

ଅତଃପର ଅଧ୍ୟାୟତ୍ରୟ (୩୩—୩୫) ବା ଏକଶତ ଶ୍ଳୋକରେ ନିରସ୍ତ ସ୍ୱ ରାଜସୂୟ ପର୍ବ, ଅଧ୍ୟାୟ ଚତୁଷ୍ଟୟ (୩୬—୩୯) ବା ଏକାଦଶାଧିକଶତଶ୍ଳୋକରେ ଅର୍ଘାହରଣପର୍ବ ଅଧ୍ୟାୟଷଟ୍‌କ (୪୦—୪୫) ବା ବଂଶୋତ୍ତର ଦ୍ୱିଶତ ଶ୍ଳୋକରେ ଶିଶୁପାଳବଧପର୍ବ ଧାରାବାହିକରୂପେ ନିବଦ୍ଧ ଅଛି । ଏହି ମିତପ୍ରସର ପ୍ରକରଣ-ତ୍ରୟକୁ ଉଜ୍ଜଳ ମହାଭାରତକର୍ତ୍ତା ସେହି ସେହି ସ୍ଥାନରେ ଅନ୍ୟାନ୍ୟ ପ୍ରକାର କଥା ଓ ଉପକଥାମାନଙ୍କୁ ଆନୁଷଙ୍ଗିକ ରଖି ଅତିବିସ୍ତୃତ କରି ଅଛନ୍ତି । ରାଜସୂୟ-ପର୍ବ ପାଠରେ ଯାଜ୍ଞିକାଧିକାର ନିଯୋଗ ପରିପାଟି କଥିତ ଭିନ୍ନପ୍ରକାର ହେଲେ ସୁଦ୍ଧା କାର୍ଯ୍ୟାନୁଗୁଣ ବ୍ୟକ୍ତିମାନଙ୍କୁ ନିଯୋଗି ଅଛନ୍ତି । ଏଥି ମଧ୍ୟରେ କୁତ୍ରଚିତ୍ ସଙ୍ଗତସନ୍ଦର୍ଭର ସାମଞ୍ଜସ୍ୟ ଲଗାଇ, ଅପିଚ କୁତ୍ରଚିତ୍ ଭ୍ରାନ୍ତି ବା ପ୍ରମାଦବଶତଃ ନାନା କଥା କହି ଅଛନ୍ତି ।

(୧) ଯଯାତିପୁତ୍ର ଯାଯାତିକ ଦୁହେଁ ପିତୃଶାପବିମୋଚନାର୍ଥ କାଳଞ୍ଜନ ଓ କାଳଧ୍ୱଂସ ନାମରେ ସଭାର ଦ୍ୱାସ୍ଥ ଓ ଡଗରସ୍ୱରୂପେ ଆସିଥିବା,

(୨) ପାଣ୍ଡବମାନଙ୍କର ଭବିଷ୍ୟମାଣ ଅଜ୍ଞାତବାସର ସ୍ମରଣରେ ଯୁଧିଷ୍ଠିର ବିରାଟରାଜଙ୍କୁ ପ୍ରତ୍ୟକ୍ଷତଃ ସମ୍ୟକ ଦର୍ଶନ ନ ଦେବା (୧) ଏବଂ ପଞ୍ଚହବିର୍ଯାବ-ସାନରେ ବିନ୍ଦୁମୈକରସ ଶ୍ରମାସେନ ଅନୁକୂଳ ଗଜହସ୍ତିକାପ୍ରହାରରେ ତାହାଙ୍କୁ ଧର୍ମରାଜଙ୍କ ଅଭିମୁଖରେ ଅତ୍ୟାଲ୍ପକ୍ଷଣ ମାତ୍ର ଉପସ୍ଥିତ ରଖିବା,

(୩) ବିରାଟ ନୃପତିଙ୍କ ନିମନ୍ତ୍ରଣପୂର୍ବକ ସଙ୍ଗେ ଆଣି ନାହାନ୍ତି ବୋଲି ଶ୍ରୀକୃଷ୍ଣ ରୋଷାମର୍ଷପରିତ ହୃଦୟରେ ଲଲାଟତଟନିକଟ-ଘଟିତବିକଟ ଭ୍ରୂକୁଟି ହୋଇ

---

[୧] ମୂଳ ଦିଗ୍‌ବିଜୟ ପର୍ବରେ ଯେପରି ଅର୍ଜୁନାଦିକୃତ ତତ୍ ତତ୍ ଦିଗସ୍ଥ ରାଜାମାନଙ୍କ ପ୍ରତି ନିମନ୍ତ୍ରଣକ୍ରିୟା ମଧ୍ୟ ଏକାବେଳକେ ଉକ୍ତ ଅଛି । ଓଡ଼ିଆ ଭାରତରେ ମଧ୍ୟ ତଦନୁରୂପ; କିନ୍ତୁ ବଙ୍ଗ କାଶୀରାମଦାସଙ୍କ ଭାରତରେ ଦିଗ୍‌ବିଜୟ ପରେ ନିମନ୍ତ୍ରଣପ୍ରକ୍ରିୟା ଅନ୍ୟତ୍ର ପୃଥକ୍ ଗଦିତ ।

(୧) ଗ୍ରନ୍ଥପାରେ ୨୯୬ ଏବଂ ୩୩୨ ପୃଷ୍ଠା ପରେ ଦେଖନ୍ତୁ ।

ଆକସ୍ମିକ ସଂଗ୍ରାମାରମ୍ଭରେ ଭୀମଙ୍କ ମସ୍ତକ ଛେଦନାର୍ଥ [୨] ଚନ୍ଦ୍ରହସ୍ତ ହେବାରୁ ଭୀମ ଭୀତ ହୋଇ ଅବନତଧ୍ଵନିରେ ପଶ୍ଚାତ୍‌ପଦ ହେବା,

(୪) ଉଚ୍ଛିଷ୍ଟ ମହାଦର ଭସ୍ମୀକରଣାର୍ଥ ମେରୁଶୃଙ୍ଗ ଋଷିଙ୍କ ଆନୟନାଦି ଚରିତ, [୩]

(୫) ହିଡ଼ିମ୍ବିକା ଓ ଦ୍ରୌପଦୀ ଦେବୀଙ୍କର ପରସ୍ପର ସାପତ୍ନିକ ଅସୂୟା-ଜନିତ ଭର୍ତ୍ସନା ଓ ଶାପଦାନ ବୃତ୍ତାନ୍ତ, [୪]

(୬) ଘଟୋତ୍କଚଙ୍କ ଦ୍ଵାରା ଲଙ୍କେଶ ବିଭୀଷଣଙ୍କୁ ଆମନ୍ତ୍ରି ଅଣାଇବା ଏବଂ ତଦୀୟ ସତ୍କାରକରଣାର୍ଥ ଲାଙ୍ଗୁଳାଗ୍ରବିନ୍ୟସ୍ତ-କପିସନ୍ଦୋହ ହନୁମାନ୍ ଶ୍ରୀକୃଷ୍ଣଙ୍କ ସ୍ମରଣମାତ୍ରେ ଉପସ୍ଥିତ ହେବା,

(୭) ତଥାତ ପ୍ରାସ୍ତାବକମତେ ଯୁଗନ୍ୟାସ ରାଜାଙ୍କ ଚରିତ, [୫]

(୮) ଧୃଷ୍ଟଦ୍ୟୁମ୍ନଙ୍କ ପ୍ରତି ଯୁଧିଷ୍ଠିରଙ୍କ ନମସ୍କାରରେ ଶ୍ରୀକୃଷ୍ଣ ସାସୂୟ ଓ ଅହଙ୍କାରସଙ୍କୁଳମନା ହେବାରୁ ବ୍ୟାସଦେବ ଧାଷ୍ଟଦ୍ୟୁମ୍ନେସ୍ଵ ମହତ୍ତ୍ଵସୂଚକ ଜନ୍ମବୃତ୍ତାନ୍ତରେ ତାହାଙ୍କୁ ପ୍ରୀତ କରିବା, [୬]

(୯) ମାର୍ଗଣପ୍ରାର୍ଥିତ ଦାନ ବିନା ଅମୋଘଦଯୋଗ ଯାଗର ଫଳ ବ୍ୟର୍ଥୀକରଣାର୍ଥ ଦୁରାଗ୍ରହଗ୍ରାହଗ୍ରହାବିଷ୍ଟ ଜନଷ୍ଟସତ୍ତ୍ଵ-ପ୍ରକୃତିକ ଦୁଷ୍ଟଚେଷ୍ଟ ଦୁର୍ଯ୍ୟୋଧନାଦିଙ୍କ ମନ୍ତ୍ରଣାରେ ଶିଶୁପାଳ ଶତରଥ ସ୍ଵର୍ଣ୍ଣ ମାଗିବା ସ୍ଥଳରେ ଭଣ୍ଡାର ରିକ୍ତ ପଡ଼ିଅଛି ବୋଲି ଭାଣ୍ଡାଗାରିକ ଦୁର୍ଯ୍ୟୋଧନ ଜଣାଇବା,

---

[୨] ଶ୍ରୀକରେ ଚନ୍ଦ୍ର ଧରିଲେ ଦେବ ଶିରୀବନ୍ତି ।
ଭୟ ପାଇ ଭୀମସେନ ପଛେ ଗଲେ ଘୁଞ୍ଚି ॥
ସ. ପ. ଛପା ପୁସ୍ତକରେ ୨୯୮ ପୃଷ୍ଠା ଦେଖନ୍ତୁ ।

[୩] ସ. ପ. ଛପାରେ ୩୦୩—୩୦୫ ପୃଷ୍ଠା ଦେଖନ୍ତୁ ।

[୪] ସ. ପ. ଛପା ପୁସ୍ତକରେ ୩୧୧—୩୧୨ ପୃଷ୍ଠା ଦେଖନ୍ତୁ ।

[୫] ସ. ପ. ଛପା ପୁସ୍ତକରେ ୩୨୯—୩୩୨ ପୃଷ୍ଠା ଦେଖନ୍ତୁ ।

[୬] ସ. ପ. ଛପା ପୁସ୍ତକରେ ୩୩୫—୩୩୬ ପୃଷ୍ଠା ଦେଖନ୍ତୁ ।

(୧୦) ତତ୍ପରେ ବଗଳପ୍ରବାନର୍ଗଳ ଦୁଷ୍କୃତିନିଗଳ ଧର୍ମବିଚାର ଅମୋଘବାକ୍ ଯୁଧିଷ୍ଠିରଙ୍କ ଆଦେଶରେ ସମାଦିଷ୍ଟ ଦୁର୍ଯୋଧନଙ୍କ ହସ୍ତସ୍ପର୍ଶମାତ୍ରେ ଲୌହପ୍ରସ୍ତରାଦି ସ୍ୱର୍ଣ୍ଣରତ୍ନାଦିରେ ପରିଣତ ହେବା, [୧]

(୧୧) ଗୋବିନ୍ଦ ଦୈତ୍ୟାପତ୍ୟ ଜେନାବଳୀ ନାମକ ନଗରରେ ଅଧୀଶ୍ୱର ଜୟସିଂହ ଦୈତ୍ୟ ଯାଜ୍ଞିକ ନିମନ୍ତ୍ରଣରକ୍ଷିତ୍ୟ-ସମ୍ପ୍ରବୃଦ୍ଧ-କ୍ରୋଧାନ୍ଧତାରେ ଯୁଦ୍ଧାର୍ଥ ଆସି ଫାଲ୍ଗୁନଙ୍କଦ୍ୱାରା ନିହତ ହେବା ଏବଂ ତଦାଗତ ମାର୍କଣ୍ଡେୟଙ୍କ [୨] ପ୍ରଶ୍ନରେ ମହର୍ଷି ଦ୍ୱୈପାୟନ ଗୋବିନ୍ଦେସ୍ୱ ଜନ୍ମବିବରଣାଦି କହିବା ବୃତ୍ତାନ୍ତମାନ ପକ୍ଷିବିତ କରି ଅଛନ୍ତି । ଏ ସବୁ ମୂଳ ମହାଭାରତରେ କଥିତ ନାହିଁ ସତ୍ୟ, ମାତ୍ର ଏତାଦୃଶସ୍ୱ ଘଟନାମାନଙ୍କରୁ କେତେକ ଅନ୍ୟାନ୍ୟ ପୁରାଣାଦିରେ ସମୁଦିତ ବୋଲି ପ୍ରତୀତ ହୁଅନ୍ତେ ।

ମତ୍ସ୍ୟାଧିପଙ୍କ ସମ୍ବନ୍ଧରେ ଏଠାରେ ଯାଦୃଶ ବିସ୍ମୟବ୍ୟଞ୍ଜକ କିମ୍ବା ଅବିମୃଷ୍ୟକାରିତାସୂଚକ ବ୍ୟାପାରମାନ ଉକ୍ତ ଅଛି, କାଶୀରାମଦାସଙ୍କ ବଙ୍ଗ ଭାରତରେ ସୁଦ୍ଧା ଏତତ୍ପ୍ରକରଣରେ ସ୍ଥାନେ ସ୍ଥାନେ ତଦ୍ରୂପ ଘଟନା ବର୍ଣ୍ଣିତ ଥିବାର ଦେଖାଯାଏ । ସମାଲୋଚ୍ୟ ଭାରତରେ ଯୁଧିଷ୍ଠିର ଦେବ କିମ୍ବା ତଦନ୍ୟ ସାମାଜିକମାନଙ୍କ ମତରେ ମତ୍ସ୍ୟାଧିପ ବିରାଟଙ୍କୁ ପଞ୍ଚଦିବସାବଧି ଅପେକ୍ଷକରୁପେ ଦ୍ୱାରସ୍ଥ କରି ସମ୍ୟକ୍ ଦର୍ଶନ ନ ଦେବା, ସମଞ୍ଜସ ହେଉ କିମ୍ବା ଅସମଞ୍ଜସ ହେଉ କୌଣସି ପ୍ରକାର ଏକ କାରଣ ଉକ୍ତ ହୋଇଅଛି; କିନ୍ତୁ ବଙ୍ଗ ଭାରତରେ ମତ୍ସ୍ୟାଧିପ ପ୍ରଭୃତି ରାଜାମାନେ ରାଜଦର୍ଶନାପେକ୍ଷାରେ ମାସାବଧିକ ଓ ସମାଧିକ କାଳ ଦ୍ୱାରସ୍ଥ ହୋଇ ରହିଥିବା ଅହେତୁକ ଭାବରେ ଲେଖା ଅଛି । [୩] ସେ

---

[୧] ସ୍ଥପା ସଭାପର୍ବ ୩୩୮ — ୩୩୯ ପୃଷ୍ଠା ଦେଖନ୍ତୁ ।

[୨] ସଭାପର୍ବ ସ୍ଥପା ପୁସ୍ତକରେ ୩୩୯ — ୩୪୨ ପୃଷ୍ଠା ଦେଖନ୍ତୁ ।

[୩] ୧. ଅଗଣିତ ସୈନ୍ୟ ଯାହା ଧନେ ନାହିଁ ଅନ୍ତ ।
ରାଜ୍ୟକର ଲୟେଆଛେ ମାସେକ ପର୍ଯ୍ୟନ୍ତ ॥
ଇତ୍ୟାଦି, ବଙ୍ଗଭାରତ, ସ. ପ. ୨୦୯ ପୃଷ୍ଠା ।

୨. ବ୍ରହ୍ମାର ପ୍ରପୌତ୍ର ଦେବ ଅନେକ ଏସେଛେ ।
ଦୁଇ ତିନ ମାସ ଦ୍ୱାରେ ରହିୟା ଗିୟାଛେ ॥
ଇତ୍ୟାଦି, ବ. ଭା. ସ. ପ୍ର. ୨୦୯ ପୃଷ୍ଠା ।

ଉଦଧିବଳୟିତା ସମଗ୍ର ଧରଣୀର ଚକ୍ରବର୍ତ୍ତୀ ନିଭୃବନାଖଣ୍ଡପ୍ରଭବ ହେଲେ ସୁଦ୍ଧା ଜଣେ ନିମନ୍ତ୍ରିତ ରାଜାଙ୍କୁ ଗଳହସ୍ତପ୍ରଦାନ ସର୍ବଥା ଅନୁଚିତ; ମାତ୍ର କବି ପାଣ୍ଡବାୟୁ ଅଖଣ୍ଡଳାଡମ୍ବରଙ୍କ ଆଖଣ୍ଡୈଶ୍ୱର୍ଯ୍ୟର ସର୍ବୋତ୍କର୍ଷ ଓ ନିରଙ୍କୁଶତ୍ୱ ପ୍ରଦ୍ୟୋତନାର୍ଥ ସମ୍ପୂର୍ଣ୍ଣାଡମ୍ବରୋକ୍ତିରେ ଉପବର୍ଣ୍ଣିତ ଜଣେ ଏହିପରି ଲେଖି ଥିବାର ଅନୁମିତ ହୁଏ । ଏତାଦୃଶ କାହିଁକି, ଏହା ଅପେକ୍ଷା ବହୁପରିଗଣିତ ଭୀମକୃତ ଦାକର ଓଡ଼ିଆ ବଙ୍ଗଳା ଭାରତରେ ମଧ୍ୟ ସମ୍ବଗଣ୍ଡ ଧର୍ମରାଜଙ୍କ ରାଜସୂୟ ବର୍ଣ୍ଣନ ପ୍ରସ୍ତାବରେ ଲେଖା ଅଛି । [୧] ହିଡ଼ମ୍ବା ଓ ଦ୍ରୌପଦୀ ଦେବୀଙ୍କର ଅନ୍ୟୋଽନ୍ୟସାପତ୍ନ୍ୟହେତୁକ

---

[୧] ୧. ତାର ସଙ୍ଗେ ଗେଲ ଜନେକ ନୃପବର ।
ଦେଖିୟା ବଡ଼ଇ ରୁଷ୍ଟ ହୈଲ ବୃକୋଦର ॥
ମାତୁଳେ ରାଖିୟା ଆର ଅନ୍ୟ ରାଜଗଣେ ।
ଟେକା ମାରି ବାହିର କରିଲ ତତକ୍ଷଣେ ॥
ବ. ଭା. ସ. ପ. ୨୦୯ ପୃଷ୍ଠା ।

୨. ରାଜ-ଆଜ୍ଞା ପାଇୟା ଛାଡ଼ିଲ ଦ୍ରୁପଦେରେ ।
ତାର ସଙ୍ଗେ ରାଜା କତ ପଶିଲ ଭିତରେ ॥
ସେହି ହେତୁ ପିତା ମୋରେ କରିଲେନ କ୍ରୋଧ ।
ଶ୍ୱଶୁରେର କଥା ନା ରାଖିଲ ଉପରୋଧ ॥
ବାହିର କରିୟା ସେ ଦିଲେନ ରାଜଗଣେ ।
ଦ୍ୱାରିଗଣେ ବହୁ କ୍ରୋଧ କରିଲେନ ମନେ ॥
ବ. ଭା. ସ. ପ. ୨୦୯ ପୃଷ୍ଠା ।

୩. ଆଉ ଏକ ସ୍ଥାନରେ ଲେଖାଅଛି କି, କେତେକ ରାଜା ଦର୍ଶନାଭୁ-ରତାରେ ପ୍ରବେଶିବାରୁ ଭୀମଙ୍କ ଆଦେଶରେ ବନ୍ଧଘରେ ବନ୍ଧ ହେଲେ ।

ବିଭୀଷଣ ଲଇୟା ଗେଲେନ ଗଦାଧର ।
କତଦୂରେ ଦେଖିଲେନ ଭୀମ ଅନୁଚର ॥
ବୃତଗୋଷ୍ଠୀ ନୃପତିରେ କରିୟା ବନ୍ଧନ ।
କେଶ ଧରି ଲଇୟା ଯାଇଛେ ଭୃତ୍ୟଜନ ॥
ଇତ୍ୟାଦି, ସ. ପ. ୨୧୦ ପୃଷ୍ଠା

ଅତି ମାଂସଳ ଆଦର୍ଶାନୁମୋଦିତ ଉପାଦାନସମ୍ଭୂତ ନିରର୍ଥକ ରୁକ୍ଷାକ୍ଷରସଙ୍କଳିତ ଉଦ୍ଧର୍ଣନା ଓ ଶାପଦାନ ବୃତ୍ତାନ୍ତ ମଧ୍ୟ ବଙ୍ଗୀୟ କାଶୀରାମ ମହାଭାରତରେ ପ୍ରତିପାଦିତ ଅଛି । * ସାରଳାଦାସ ମହୋଦୟ ଏକ ଜାତୀୟତା ବା ସମଚେଷ୍ଟିତାର ବିସ୍ତରରେ ଏଠାରେ ବିଭୀଷଣାଦିଙ୍କ କାର୍ଯ୍ୟକୁ ବୈତମ୍ୟେୟ ଘଟୋତ୍କଚଙ୍କ କର୍ତ୍ତୃକ ଟିକିଏ ବିସ୍ତୃତ ଭାବରେ ଉପପାଦିତ କରି ଅଛନ୍ତି; ମାତ୍ର ମୂଳ ଗ୍ରନ୍ଥରେ ଯାଜ୍ୟ-ବିଜୟୀ ସହଦେବ ମରୁକଚ୍ଛ ଦେଶରେ ଉପନୀତ ହୋଇ ପୌଲସ୍ତ୍ୟ ବିଭୀଷଣଙ୍କ-ଠାକୁ ବିଦୁଶତ ଦୂତ ପ୍ରେରଣ କରିଥିବା ଏବଂ ତଦା ଲଙ୍କାଧିନାଥ ବହୁବିଧ ରତ୍ନାଦି-ସହିତ ଉପାୟନକୁ ସାଦରେ ଉପସ୍ଥାପିତ କରାଇବା ବିଷୟ ସଂକ୍ଷିପ୍ତତଃ ଉକ୍ତ ଅଛି । † ଏହି ମୂଳ ବିଷୟକୁ ବଙ୍ଗୀୟ କାଶୀରାମଦାସ ମହାଶୟଙ୍କ ପାର୍ଥଙ୍କଦ୍ୱାରା ପରିସାଧିତ ଏବଂ ସାରଳାଦାସଙ୍କ ପରି ନାନା କଥାର ମେଳକ କରି ଅଛନ୍ତି ।

---

* (କ) ଯଥାୟ ଦ୍ରୌପଦୀ ଭଦ୍ରା ରତ୍ନସିଂହାସନେ ।
ବ୍ରହ୍ମା ବସିଲ ଗିୟା ତାର ମଧ୍ୟସ୍ଥାନେ ॥
ଅହଙ୍କାରେ ଦ୍ରୌପଦୀରେ ସମ୍ଭାଷ ନା କୈଲ ।
ଦେଖିୟା ପାର୍ଷତୀ ଦେବୀ ଅନ୍ତରେ କୁପିଲ ॥
ବ. ଭା. ସ. ପ. ୨୦୭ ପୃଷ୍ଠା ।

ପାର୍ଷତୀ = ପୃଷତ୍‌ଙ୍କର ତନୟା ଦ୍ରୌପଦୀ ।
ପୃଷତ୍ = ଦ୍ରୁପଦଙ୍କର ଅନ୍ୟତମ ନାମ ॥

(ଖ) କର୍ଣ୍ଣେର ଏକଘ୍ନୀ ଅସ୍ତ୍ର ବଜ୍ରେର ସମାନ ।
ତାର ଘାତେ ତୋର ପୁତ୍ର ତ୍ୟଜିବେ ପରାଣ ॥
ପୁତ୍ରେର ଶୁନିୟା ଶାପ ହିଡ଼ମ୍ବା କୁପିଲ ।
ଝୁଦ୍ଧା ହୟେ ହିଡମ୍ବା କୃଷ୍ଣାରେ ଶାପ ଦିଲ ॥
ନିର୍ଦ୍ଦୋଷେ ଆମାର ପୁତ୍ରେ ଦିଲେ ତୁମି ଶାପ ।
ତୁମିଓ ପୁତ୍ରେର ଶୋକେ ପାବେ ବଡ଼ ତାପ ॥
ଯୁଦ୍ଧ କରି ମରେ କ୍ଷତ୍ରି ଯାୟ ସ୍ୱର୍ଗବାସ ।
ବିନା ଯୁଦ୍ଧେ ତୋର ପଞ୍ଚପୁତ୍ର ହବେ ନାଶ ॥
ସ. ପ. ୨୦୭ ପୃଷ୍ଠା ।

† ମୂଳ ସଭାପର୍ବ ଏକତ୍ରିଂଶାଧ୍ୟାୟ ଦ୍ୱିସପ୍ତତି ଶ୍ଳୋକାରମ୍ଭରୁ ଦେଖନ୍ତୁ ।

ଏ ଲେଖନ୍ତି କି, ଅଗ୍ରାୟଣକର୍ମା ବିଭୀଷଣ ଆସି ସଭାର ଦକ୍ଷିଣ ଦ୍ୱାରରେ ଅବତରିଲେ । [୧] ଶ୍ରୀକୃଷ୍ଣ ଆସି ତଦଭିନନ୍ଦନ କଲେ । ବୈଶ୍ରବଣ ତଦୀୟ ପାଦବନ୍ଦନପୂର୍ବକ ରତ୍ନାଦି ଉପାୟନ ପ୍ରଦାନ କଲା ପରେ ସ୍ୱାମୀ ଧର୍ମରାଜଙ୍କ ଦର୍ଶନାର୍ଥ ଶ୍ରୀକୃଷ୍ଣ ସମାହ୍ୱାନ କଲାରୁ ସେବ୍ୟସେବାହେବାକଯୁକ୍ତ [୨] ବିଭୀଷଣ କହିଲେ, ପ୍ରଭୋ ! ଆପଣ ତ ଜଙ୍ଗମସ୍ଥାବରାତ୍ମକ ଜଗନ୍ମଣ୍ଡଳର ଏକମାତ୍ର ସ୍ୱାମୀ ଅଟନ୍ତି; ଭବଦୀୟ ପାଦଦର୍ଶନ ଅନ୍ତର୍ନିଶାର ପ୍ରାଚୀସନ୍ଧ୍ୟାସ୍ୱରୂପ ତମସ୍ତୋମ-ବିଧ୍ୱଂସକ ଆଜି ଜନନପଦବାଜ ଘାଳର ତାପନିସ୍ପନ୍ନବର୍ତ୍ତିକ; ସମ୍ପ୍ରତି ଭବଦୀୟ ନିଷ୍ପ୍ରତ୍ୟୂହବିକ ମ୍ୟମାଣ କରୁଣାରୁ ମୁଁ ସାଧିତାଖିଳମନୋରଥ ହୋଇଅଛି । ଅନ୍ୟ କାହାର ଦର୍ଶନର ଆଉ ଅପେକ୍ଷା ନାହିଁ । ତତ୍ପରେ ଶ୍ରୀକୃଷ୍ଣ ନାନା ପ୍ରକାର ବୁଝାଇବାରୁ ସେ ଅଗତ୍ୟା ଯୁଧିଷ୍ଠିରଙ୍କଠାକୁ ଯିବାର ସମ୍ମତ କଲେ, ମାତ୍ର ତତ୍ପ୍ରଣାମରେ ଅନିଚ୍ଛୁକ ଥିଲେ । [୧] ଶ୍ରୀକୃଷ୍ଣ ବିଭୀଷଣଙ୍କୁ ସମଭିବ୍ୟାହାରରେ ନେଇ ଦକ୍ଷିଣପୂର୍ବାଦକ୍ରମରେ ଦ୍ୱାରଚତୁଷ୍ଟୟରେ ତତ୍ ତତ୍ ଅଧିକାର-ପ୍ରତିଷ୍ଠିତ ସାତ୍ୟକି, ଘଟୋତ୍କଚ, ଅନିରୁଦ୍ଧ ଓ ଦୁର୍ଯ୍ୟୋଧନଙ୍କ ଦ୍ୱାରା ବିଭୀଷଣଙ୍କ ଅନ୍ତଃ ପ୍ରବେଶାର୍ଥ ନିବାରିତ ହେଲେ । [୨] ପରେ ଯେ କୌଣସି ଉପାୟରେ ଭିତରେ ପ୍ରବିଷ୍ଟ ହେଲେ । ତତ୍ ବିଘଟନ ସଂଘଟନାଘଟନପଟୁ ସତ୍ୟସଂକଳ୍ପ ବିଶ୍ୱାତ୍ମା ବିଶ୍ୱମ୍ଭର ସ୍ୱୀୟ ବିଶ୍ୱରୂପ ପ୍ରକାଶ କଲାରୁ ନିଖିଳ ଲୋକେ ମୂର୍ଚ୍ଛିତ ହୋଇ ପଡ଼ିଲେ । ଏହି କୌଶଳର ଅବସରରେ ଯୁଧିଷ୍ଠିରଙ୍କ ପ୍ରତି ବିଭୀଷଣଙ୍କର ଦଣ୍ଡପ୍ରଣାମ ସାଧିତ ହେଲା । ଇତ୍ୟାଦି ।

ଏ ତ ଗଳ୍ପ ରାଜସୂୟପର୍ବ ପାଠରେ ମୂଳାନୁକ୍ତ ବିଷୟମାନଙ୍କର ପଲ୍ଲବନ-ବିସ୍ତା । ତା ପରେ ଅର୍ଘାହରଣ ପର୍ବର ପାଠରେ ଋଷିଶୃଙ୍ଗ-ଋଷ୍ୟଶୃଙ୍ଗଙ୍କ

---

[୧] ଦକ୍ଷିଣଦ୍ୱାରେତେ ଉତ୍ତରିଲେ ବିଭୀଷଣ ।
ମିଶାମିଶି ହୋଇଲା ରାକ୍ଷସ ନରଗଣ ॥ ସ. ପ. ୨୦୭ ପୃଷ୍ଠା ।

[୨] ହେବାକ=ଗ୍ରୀବା । ଏହି ଶବ୍ଦଟି ଅପ୍ରଥିତ ହେଲେ ସୁଦ୍ଧା ପଦସଂଘଟନାର୍ଥ ଅତି ସୁନ୍ଦର ।

[୧] ଯଥା ଲଇଯ୍ୟା ଯବେ ସଂହତି ପାଇବ ।
କଦାଚିତ ଅନ୍ୟଜନେ ମାନ୍ୟ ନା କରିବ ॥ ସ. ପ. ୨୦୮ ପୃଷ୍ଠା ।

[୨] ବିଭୀଷଣ ଧର୍ମରାଜ ଦର୍ଶନାର୍ଥ ସ୍ୱୟଂ ଦ୍ୱାରକୁଦ୍ୱାର ପ୍ରତିଧାବିତ ହେବାର କଥା ସାରଳାଦାସ ମଧ୍ୟ ଲେଖି ଅଛନ୍ତି ।

ସମାଗମନରେ ପ୍ରାସ୍ତାବକମତେ ତପସ୍ୟ ଜନ୍ମବିବରଣ [୩] ଆଉ କାସୁକୀ ନିମନ୍ତ୍ରଣାର୍ଥ ପାତାଳୋପଚିଷ୍ଟ [୪] ଅର୍ଜୁନ ଧନୁଃକୋଟିରେ ଧଣ୍ଡଧାରଣପୂର୍ବକ ନାଗରାଜଙ୍କୁ ସଦକ୍ଷେତ୍ରକୁ ପ୍ରେରଣ କରିଥିବା କଥା ସାରଳାଦାସ ମହୋଦୟ ଅତିରିକ୍ତ ଲେଖି ଅଛନ୍ତି । ଏ ସବୁ ମୂଳରେ ଅନୁକ୍ତ. ମାତ୍ର ଏମନ୍ତ ବଙ୍ଗଭାରତକର୍ତ୍ତା କାଶୀରାମ ଦାସ ମହାଶୟ ମଧ୍ୟ ଶିବରାତ୍ରିସ୍ମୃସ୍ ସତ୍ତ୍ୱଶାଳୀ ଗାଣ୍ଡୀବକୋଦଣ୍ଡପଣ୍ଡିତ ଅଖଣ୍ଡଧୈର୍ଯ୍ୟରେ ସପ୍ତଦିନାବଧି ଭୂଭାର ବହନ କରିଥିବା କଥା ଲେଖିଅଛନ୍ତି । [୨]

ମୂଳରେ ଲେଖାଅଛି, ପ୍ରଜ୍ଞା ଜ୍ଞାନ ପ୍ରଭୃତିରେ ସମୃଦ୍ଧ ବୟୋବୃଦ୍ଧ ଭୀଷ୍ମଦେବ ପତିବ୍ର ସଭରେ ଶ୍ରୀକୃଷ୍ଣଙ୍କ ସର୍ବାଗ୍ରେ ଅର୍ଘ ପ୍ରଦାନ କରିବାକୁ ସମ୍ମତି ପ୍ରଦାନ ପୂର୍ବକ ବୃଥାହଂକାର-ଗ୍ରନ୍ଥିଳହୃଦୟ ଶିଶୁପାଳଙ୍କୁ ତୁଚ୍ଛ କୁପ୍ରାର୍ଥ ମଣିବାରୁ ଦୁର୍ଦ୍ଧର୍ଷ ଦୁଷ୍ଟପ୍ରକୃତି ଦାମଘୋଷ କ୍ରୋଧବିଲୋଡ଼ିତାଙ୍ଗ ହୋଇ ଭୀଷ୍ମଙ୍କୁ ପାପାତ୍ମସ୍ୱ ହଂସ ସହ ତୁଳନାପୂର୍ବକ ଭର୍ତ୍ସନା କରିଥିଲେ । [୩] ସାରଳାଦାସ କବି ଏଠି

---

[୩] ସ. ପ. ୩୪୬—୩୪୭ ପୃଷ୍ଠାରେ ଆର୍ଯ୍ୟଶୃଙ୍ଗିକ କଥା ଦେଖନ୍ତୁ ।

[୪] ହିମବନ୍ତ ଗିରି ନିକଟେ ଉଦ୍ୟାନ ଗିରି ତଟେ ।
ତହିଁର ସନ୍ନିଧେ ଅଛି ପାତାଳକୁ ବାଟେ ॥
ଏ ବାଟେ ଅର୍ଜୁନ ପାତାଳକୁ ଗଲେ । ସ୍ଥପାରେ ୩୪୮ ପୃଷ୍ଠା ଦେଖନ୍ତୁ ।

[୨] ଭୀମଙ୍କ ପ୍ରତି ଶ୍ରୀକୃଷ୍ଣ—

(କ) ଅନ୍ୟ କ୍ରମେ ନହେ ଏହି ରାଜସୂୟ ସଭ ।
ଏକଲକ୍ଷ ରାଜା ଆସି ହୟେଛେ ଏକଭ ॥

× × × ×

ପାତାଳେ ରହିଲ ପିଯ୍ବା ପାର୍ଥ ଧନୁର୍ଦ୍ଧର ।
ବହନ୍ତ କରିବାରେ ତୁମି ସବେ ଏକେଶ୍ୱର ॥ ସ. ପ. ୨୧୦ ପୃଷ୍ଠା ।

(ଖ) ଯଜ୍ଞସ୍ଥାନେ ନାଗରାଜ ଆଇଲ ସାତଦିନ ।
ସପ୍ତଦିନ ହୈଲ ସଖା ଅନ୍ନ ଜଲ-ହୀନ ॥
ବୁଝିଯ୍ବା ବୁଝିଯ୍ବା ନାଗ କୈଲ ଅବଗ୍ରହ ।
ସଖାର ଉପରେ ଦିଲ ଧରଣୀର ଭାର ॥ ସ. ପ. ୨୧୫ ପୃଷ୍ଠା ।

[୩] ସମୁଦ୍ରୋପକଣ୍ଠରେ ଗୋଟିଏ ଜରାଜୀର୍ଣ୍ଣ ହଂସ ଅନ୍ୟାନ୍ୟ ପକ୍ଷିମାନଙ୍କୁ ଧର୍ମୋପଦେଶ ଦେଇ ବାସ କରିଥାଏ । ମାତ୍ର ସେହି ପକ୍ଷିମାନଙ୍କ ଅଜ୍ଞାତସାରରେ ପ୍ରତ୍ୟହ ତପାସ୍ଥ ଡ଼ିମ୍ବଗୁଡ଼ିକୁ କବଳିତ କରି ଦେଉଥାଏ ।

ସନ୍ଦର୍ଭରେ ମୌଳିକ ଦୃଷ୍ଟାନ୍ତ ନ ଦେଇ ତତ୍‌ସ୍ଥଳଭାବଦ୍ୟୋତକ ବରଦାସୁକ ନାମକ ବ୍ରାହ୍ମଣଙ୍କ କଥା ଲେଖି ଅଛନ୍ତି । [୪] ଏଥିରୁ ଅନୁମିତ ହୁଏ, ମତ୍ତମତ୍ତମ କଳ୍ପନାପ୍ରିୟ ସାରଳାଦାସ କବି ମହୋଦୟ ଏତାଦୃଶ କେତେକ ସ୍ଥଳମାନଙ୍କରେ ଜ୍ଞାନପୂର୍ବକ ସ୍ୱେଚ୍ଛା ପ୍ରଣୋଦନରେ ମୌଳିକ ଚରିତ୍ର ଓ ନାମଧାମାଦି ତ୍ୟାଗ କରି ଆତ୍ମୀୟ ବିଷୟ ଘଟନନୈପୁଣ୍ୟବତ୍ତ୍ୱର ପ୍ରକାଶନାର୍ଥ କାଳ୍ପନିକ ଚରିତାଦିର ସଂଯୋଗ କରି ଅଛନ୍ତି ।

ଯଥାକ୍ରମରେ ଦାମଘୋଷ ଶିଶୁପାଳବଧ ଓ ଯାଜ୍ଞିକ ପରିଶିଷ୍ଟ କ୍ରିୟାମାନ ସମ୍ପନ୍ନ ହେବାରୁ ସମବେତ ରାଜନ୍ୟବୃନ୍ଦ ସ୍ନେହାବନ୍ତ ହୃଦୟରେ ହୁତାଗ୍ନିହୋତ୍ର, ଗୁରୁଜନବତ୍ସଳ, ଅଖଣ୍ଡାଖଣ୍ଡଳୈଶ୍ୱର୍ଯ୍ୟସମ୍ପନ୍ନ ଯୁଧିଷ୍ଠିରଙ୍କର ବନ୍ଦନା କରି ତଦୀୟ ଆଦେଶମତେ ସ୍ୱ ସ୍ୱ ସ୍ଥାନକୁ ପ୍ରସ୍ଥାନ କଲେ । ଶକୁନି ସହାୟ ଦୁର୍ଯ୍ୟୋଧନ ମାତ୍ର ସେହି ଅଦୃଷ୍ଟପୂର୍ବ ଲୋକାଶ୍ଚର୍ଯ୍ୟରମଣୀୟ ମହାସଭାରେ କିଞ୍ଚିତକାଳ ଅବସ୍ଥାନ କଲେ । ସାରଳାଦାସ କବି ମହୋଦୟ ଏ ସ୍ଥଳରେ ଦୁର୍ଯ୍ୟୋଧନଙ୍କର ମୂଢ଼ତା ଓ ଉନ୍ମତ୍ତତା-ଜନିତ ବିଷୟାନଭିଜ୍ଞତା ପ୍ରକାଶନାର୍ଥ ମୂଳରେ କିଞ୍ଚିତ ବ୍ୟବଧାନ ପରେ ପ୍ରାସ୍ତାବିକ ମତରେ ସଭାପର୍ବ ସପ୍ତଚତ୍ୱାରିଂଶାଧ୍ୟାୟରେ ଉକ୍ତ ଘଟନାମାନଙ୍କୁ ଏଠାରେ ଲେଖି ଅଛନ୍ତି । ଏପରି ଲେଖିବାରେ ବିଷୟମାନଙ୍କର ଅନ୍ୟୋନ୍ୟ-ସଂଲଗ୍ନତା ଓ ସଂଗତସନ୍ଦର୍ଭତା ମଧ୍ୟ ସମୀଚୀନ ହୋଇଅଛି । କିନ୍ତୁ ବ୍ରହ୍ମାଙ୍କ

---

ଏକଦା ଏକ ପ୍ରାଜ୍ଞ ପକ୍ଷୀ ଏହା ପ୍ରତ୍ୟକ୍ଷ କଲାରୁ ସମସ୍ତ ପକ୍ଷୀ ମିଶି ହଂସକୁ ନିହତ କଲେ । ଏହାହିଁ ତତ୍‌କଥାର ସ୍ଥୂଳାଂଶ ।

[୪] ପୂର୍ବ ନିଷ୍କୁଟ ଦ୍ୱୀପ ବରଦାସୁକ ନାମକ ଏକ ବୃଦ୍ଧ ବ୍ରାହ୍ମଣ ନାନାବିଧ ଦାନ ପ୍ରତିଗ୍ରହ କରି କୁଶଚରେ ବାସ କରୁଥିଲେ । ସମୟରେ ପ୍ରୋକ୍ତ ବ୍ରାହ୍ମଣ ଅନ୍ୟ ସ୍ଥାନକୁ ପ୍ରସ୍ଥାନ କଲେ । ତତ୍‌ସ୍ଥ ଲୋକେ ନବାଗତ ବ୍ରାହ୍ମଣଙ୍କର ନୈଷ୍ଠିକ ବେଶ ଦେଖି ଆଦରପୂର୍ବକ ସତ୍କାର କରୁଥାନ୍ତି । ମାତ୍ର ସେହି ଛଦ୍ମବେଶ ବ୍ରାହ୍ମଣଟି "ମୁଁ ଅନ୍ନ ଭୋଜନ କରେ ନାହିଁ" ବୋଲି ସମସ୍ତଙ୍କୁ କହି ଜଣା ସମୟରେ ପାକଶାଳାରୁ ଅନ୍ନବ୍ୟଞ୍ଜନାଦି ଚୌର୍ଯ୍ୟ-ବୃତ୍ତିରେ ଯଥେଷ୍ଟ ଭୋଜନ କରୁଥାନ୍ତି । ଦିନେ ତାହାଙ୍କର ଏହି କପଟକୌଶଳ ସୂପକାରଙ୍କର ପ୍ରତ୍ୟକ୍ଷୀଭୂତ ହେବାରୁ ସେ ଲୋକଙ୍କ କର୍ତ୍ତୃକ ତାଡ଼ିତ ଓ ନିର୍ବାସିତ ହେଲେ । ଏହାହିଁ ତତ୍‌କଥାର ସ୍ଥୂଳାଂଶ ।

ମସ୍ତକୋତ୍ପାଟନରୁ ମହାଦେବ ବ୍ରହ୍ମହତ୍ୟା-ଦୋଷରେ ଲିପ୍ତ ହେବା ପ୍ରଭୃତି କଥା, [୧] ଅଥଚ ବାସବେୟ ଅର୍ଜୁନ ବିଷ୍ଣୁଙ୍କ ରକ୍ତ, ଶିବଙ୍କ ମାଂସ, ବ୍ରହ୍ମାଙ୍କ ମସ୍ତକ ଓ ଇନ୍ଦ୍ରଙ୍କ ତେଜରେ ଗଠିତ ବୋଲି ସିଦ୍ଧାନ୍ତ କଲି ପରେ ଯାଗ-ପ୍ରତ୍ୟାବୃତ୍ତ ବାସୁକିଙ୍କ ସମ୍ମତିକ୍ରମେ ଅର୍ଜୁନ,ତତ୍ପୁତ୍ର ତନୁଜା ସନ୍ଧ୍ୟାବଳୀଙ୍କର ପାଣିଗ୍ରହଣ-ପୂର୍ବକ ପୁନଶ୍ଚ [୨] ପାତାଳରେ ମାସତ୍ରୟ ଅବସ୍ଥାନ କରିଥିବା କଥାକୁ ପୂର୍ବ ଗଳ୍ପର ଆନୁଷଙ୍ଗିକରୂପେ ଅତି ଲେଖି ଅଛନ୍ତି । ଏହି ସନ୍ଦର୍ଭଦ୍ୱୟ ମୂଳ ଗ୍ରନ୍ଥରେ ଉକ୍ତ ନାହିଁ । କବି ସ୍ୱୀୟ କପୋଳକଳ୍ପନାରେ ଲେଖି ଅଛନ୍ତି କିମ୍ବା ଅନ୍ୟ ଗ୍ରନ୍ଥାନୁକରଣରେ ଲେଖି ଅଛନ୍ତି, ତାହା ହଠାତ୍ କହିଦେଇ ନ ପାରୁଁ । ମାତ୍ର ଅର୍ଜୁନ ନାଗକନ୍ୟା ଉଲୂପୀଙ୍କି ମାତ୍ର ଗ୍ରହଣ କରି ଥିବାର ପ୍ରମାଣ ମୂଳରେ କଗବର ଦେଖାଯାଉ ଅଛି ।

ଇତଃପର ଦ୍ୟୂତପର୍ବରେ ଅଧ୍ୟାୟଚତୁଷ୍ଟୟରେ [୩] ପାଣ୍ଡବୀୟ ଲୋକୋତ୍ତର ଐଶ୍ୱର୍ଯ୍ୟ ବର୍ଣ୍ଣନା ଯାହା କି ଦୁରହଙ୍କାରଗ୍ରାହଗ୍ରହପୀଡ଼ିତମାନସ ଅପରିମିତ ଦୃଷ୍ଟି ଲୋଳନତ ଦୁରିତଭରିତହୃଦୟ ଦୁର୍ଯୋଧନଙ୍କ ମୁଖରେ ପର୍ଯ୍ୟାୟ-କ୍ରମରେ ବର୍ଣ୍ଣିତ ଅଛି, ସେ ସବୁ ସାରଳାଦାସ କବି ଏ ସ୍ଥଳରେ ଲେଖି ନ ଥିଲେ ସୁଦ୍ଧା ଅନ୍ୟାନ୍ୟ ସ୍ଥଳମାନଙ୍କରେ ପ୍ରସଙ୍ଗତଃ ଲେଖିଦେଇ ଅଛନ୍ତି । ଦ୍ୟୂତପର୍ବଟି ମୂଳରେ ଯେପରି ଭାବରେ ବିସ୍ତୃତ, ସାରଳାଦାସ କବି ସେପରି କରି ନାହାନ୍ତି ସତ୍ୟ, ପରନ୍ତୁ ପ୍ରକ୍ଷିପ୍ତ କଥାମାନଙ୍କୁ ପ୍ରସାରିତ କରି ସୁଦ୍ଧା ମୌଳିକ ସାରାଂଶକୁ ଯଥାଯଥ କରି ଅଛନ୍ତି । ମାତ୍ର ପ୍ରାଥମିକ ଦ୍ୟୂତକ୍ରୀଡ଼ା ସମୟରେ କଲ୍ୟାଣଗୁଣରିକ୍ତ ଅଜାତଶତ୍ରୁ ଯୁଧିଷ୍ଠିର ଏକାକୀ ହସ୍ତିନାକୁ ଯିବା, ନରବଧିପୁରୁଷାର୍ଥଲମ୍ପନପ୍ରବଣ ଭୀମାଦି ଭ୍ରାତୃଚତୁଷ୍ଟୟ ଦ୍ୱାରକାରେ ଅବସ୍ଥିତ ଥିବା, ଆଉ ଦ୍ରୌପଦୀ ଦେବୀ ବାରୁଣାବନ୍ତରେ ମାତ୍ର ରହିଥିବାର କହି ଅଛନ୍ତି । [୪] ଏହା ମୌଳିକ

---

[୧] ଛାପାରେ ସଭାପର୍ବ । ୩୬୯ – ୩୭୦ ପୃଷ୍ଠା ଦେଖନ୍ତୁ ।

[୨] ନାଗୁଣୀର ସଙ୍ଗତେ କ୍ରିଡ଼ାରସଚିତ୍ତେ ।
 ପାତାଳେ ରହିଲେ ତିନ ମାସ ପର୍ଯ୍ୟନ୍ତେ ॥ ସ. ପ. ୩୭୭ ପୃଷ୍ଠା ।

[୩] ୫୦, ୫୧, ୫୨, ୫୩ ଅଧ୍ୟାୟମାନଙ୍କରେ ।

[୪] * * * * ଗୃହ ଭାଇ ପ୍ରବେଶିଲେ ଏସନ ସମୟେ ॥
 ବାରୁଣାବନ୍ତେ ଦେଖିଲେ ନାହାନ୍ତି ଯୁଧିଷ୍ଠି ।
 ନ ଦେଖି ବିକଳ ହେଲେ ଭାଇ ଗୁରୁଗୋଟି ॥

ସମବେତଭୂପସମରୁ ଭିନ୍ନ । ଅଥଚ ସିଂହାଧ୍ୟୁଷିତକନ୍ଦରକୁ ଇନ୍ଦୁର ଧର୍ଷଣ କଲ ନ୍ୟାୟ କାଳାକୃଷ୍ଟ-ବାଳ ରାଜବାଲ୍ଲଭ୍ୟ-ପ୍ରଗଲ୍ଭ ଅଶାସନୀୟ ଦୁଃଶାସନ ଦ୍ରୌପଦୀ ଦେବୀଙ୍କର ବସ୍ତ୍ରହରଣ କରୁଥିବା ସ୍ଥଳରେ ଦୁଇଶ୍ଳୋକ ଉଦ୍ଧୃତ ହେଉଥିବାର ଚରିତକୁ ସଙ୍ଗତସମେ ପ୍ରକ୍ଷିପ୍ତ କରି ଅଛନ୍ତି । ତନ୍ମଧ୍ୟରୁ ସାର କ୍ଷୁଦ୍ରାଂଶ ଏହି – ପୂର୍ବଜନ୍ମରେ ଦ୍ରୌପଦୀ କେତୁକା ରୂପରେ ସୁଧୀର ନାମକ ବ୍ରହ୍ମାଙ୍କ କନ୍ୟାକୁ ହେବା ସମୟରେ ତଦାଗତ ଭଗବାନ୍ ନାରାୟଣ କେତୁକାଙ୍କୁ ନିବାରଣପୂର୍ବକ କହିଥିଲେ କି, ଏହି ବ୍ରହ୍ମା ଦ୍ୱାପରରେ ଶଶୀଶର୍ମାରରେ ଉତ୍ପନ୍ନ କେଶାକର୍ଷଣ କରିବେ, ତେତେବେଳେ ତୁମ୍ଭେ ଏହାଙ୍କ ମୃତ୍ୟୁର କାରଣ ହେବ । ଦ୍ୱିତୀୟତଃ ଶନୈଶ୍ଚରଙ୍କ ଦୈବାତ୍ମକ ଉପଦ୍ରବରେ ଭଗବାନ୍ ସୂର୍ଯ୍ୟଦେବ ଦ୍ରୌପଦୀଙ୍କର ଦ୍ୱିତୀୟାବତାରଭୂତା ଏକାବଳୀନାମ୍ନୀ ପାର୍ବତୀଙ୍କଠାରୁ ପଞ୍ଚପଞ୍ଚାଶକୋଟି ରକ୍ତାଂଶୁକ ମାଗିନେଇ ଦ୍ୱାପରେ କୌରବସଭା ତଳେ ପ୍ରତ୍ୟର୍ପଣ କରିବାର ସ୍ୱୀକାର କରିଥିଲେ । ଇତି । [୫]

ଅତଃପର ସଭାପର୍ବର ପରିଶେଷ ଅନୁଦ୍ୟୁତପର୍ବରେ ଉକ୍ତ ଅଛି, ଯେତେବେଳେ ପ୍ରଥମ ଦ୍ୟୁତକ୍ରୀଡାରେ ହୃତସର୍ବସ୍ୱ ପାଣ୍ଡବମାନେ ପ୍ରଜ୍ଞାଦୃଷ୍ଟି ଧୃତରାଷ୍ଟ୍ରଙ୍କ ପ୍ରସାଦରୁ ପୂର୍ବବତ୍ ସମ୍ପ୍ରାପ୍ତ-ସମ୍ପୂର୍ଣ୍ଣାଧିକାର ହୋଇ ଇନ୍ଦ୍ରପ୍ରସ୍ଥକୁ ପ୍ରସ୍ଥାନ କରୁଥିଲେ, ତାହାର ଅନନ୍ତବ୍ୟବହିତ ସମୟରେ ଧୃତରାଷ୍ଟ୍ର ଭର୍ତ୍ସଣକୁନ ପ୍ରମୁଖଙ୍କ କୂଟ ନୀତିରେ ମୋହିତ ହୋଇ ଅର୍ଦ୍ଧପଥରୁ ପାଣ୍ଡବମାନଙ୍କୁ ପ୍ରତ୍ୟାବୃତ୍ତ କରାଇଥିଲେ । ମାତ୍ର ସାରଳାଦାସଙ୍କ ମତରେ ପ୍ରଥମ ଦ୍ୟୁତ ପରେ ନିର୍ଦ୍ଧୂତାଖିଳ-କଲ୍ମଷ ପାଣ୍ଡବମାନେ ପୁନଶ୍ଚ ପ୍ରାପ୍ତୈଶ୍ୱର୍ଯ୍ୟ ହୋଇ ଅନେକ ସମୟ ବାରୁଣାବନ୍ତରେ ଯାପିତ କରିଥିଲେ । (୧) ଏଥି ମଧ୍ୟରେ ଅର୍ଜ୍ଜୁନଙ୍କ ପତ୍ନୀ

---

ଅର୍ଜ୍ଜୁନର ଅଗ୍ରତରେ ଦ୍ରୌପଦୀ ବୋଇଲେ ।
ହସ୍ତିନା ରାଜ୍ୟକୁ ଯୁଧିଷ୍ଠିର ଦେବ ଗଲେ ॥
ସ. ପ. ଛାପାରେ ୩୮୭ ପୃଷ୍ଠା ଦେଖନ୍ତୁ ।
ତା ପରେ ସମସ୍ତେ ସେଠାରୁ ପ୍ରସ୍ଥାନ କରି ଅଛନ୍ତି ।

[୫] ସ. ପ. ୪୦୭ ପୃଷ୍ଠାରୁ ଆରମ୍ଭ କରି ଦେଖନ୍ତୁ ।

(୧) ବର ପାଇ ଦ୍ରୌପଦୀ ପାଣ୍ଡବଙ୍କୁ ଘେନ ।
ବାରୁଣାବନ୍ତେ ଯାଇ ପ୍ରବେଶ ଯାଜ୍ଞସେନୀ ॥ ଇତ୍ୟାଦି ।
ସ. ପ. ୪୧୦ ପୃଷ୍ଠା ପ୍ରାରମ୍ଭରୁ ଦେଖନ୍ତୁ ।

ନାଗକନ୍ୟା ସନ୍ଧ୍ୟାବାଳୀଙ୍କ ଗର୍ଭଜାତ ଆର୍ଜୁନି ନାଗାର୍ଜୁନ ସମ୍ପ୍ରାପ୍ତବୟସ୍କ ହେଲା ପରେ ତକ୍ଷକପୁତ୍ର ବାଚାବଳଙ୍କ ପ୍ରଦତ୍ତ ଜାରଜାତାପବାଦରେ ସଂକ୍ଳିନ୍ନମନା ଓ ପିତୃବିଦ୍ବେଷ୍ଟ୍ ହୋଇ କାଶୀରେ ତପସ୍ୟା କରିବା, ସେ ପୁଣି ଆଶୁତୋଷ କୈଳାସ-ନାଥଙ୍କଦ୍ୱାରା ଔରସ ପୁତ୍ରବତ୍ ଅନୁଗୃହୀତ ହୋଇ ବହୁବିଧ ଶସ୍ତ୍ରାସ୍ତ୍ରଗ୍ରାମରେ ପାରଦର୍ଶୀ ହେବା, ଗଣ୍ଡକ ମୃଗୟାର୍ଥ ସମାଗତ ସ୍ୱପିତା ଅର୍ଜୁନଙ୍କୁ ସେହି ସଂଗ୍ରାମ ମହୋତ୍ସବପ୍ରମୋଦନାର୍ଥର ନାଗାର୍ଜୁନ କ୍ଷତ୍ରଧର୍ମକାର୍କଶ୍ୟରୁ ଦ୍ୱନ୍ଦ୍ୱ ଯୁଦ୍ଧରେ ନିହତ କରିବା, ସେହି ଦୁଃସମ୍ବାଦ-ଦୁଃଖିତ ଇନ୍ଦ୍ରାଦି ବୃନ୍ଦାରକବୃନ୍ଦ ଓ ଶ୍ରୀକୃଷ୍ଣ ତତ୍ର ଉପଗତ ହୋଇ ନାଗାର୍ଜୁନପକ୍ଷକ ମହାଦେବଙ୍କ ସହ ଘୋରାହବ କରିବା, ପରିଶେଷରେ ଅର୍ଜୁନ ପୁନରୁଜ୍ଜୀବିତ ହେବା ପ୍ରଭୃତି କଥାମାନଙ୍କୁ ପ୍ରକ୍ଷିପ୍ତରୂପେ ଅତି ବିସ୍ତୃତଭାବରେ ଲେଖି ଅଛନ୍ତି । ଆର୍ଜୁନି ନାଗାର୍ଜୁନଙ୍କ କଥା କେଉଁ ପୁରାଣରେ ଅବା ଇତିହାସରେ ଉକ୍ତ ଅଛି, ଠିକ୍ କହି ନ ପାରୁଁ । କିନ୍ତୁ ପ୍ରୋକ୍ତ ବୃତ୍ତାନ୍ତ ବହୁ ପୁରାଣଶ୍ରୁତିଜ୍ଞ ଶ୍ରୀମାନ୍ ସାରଳାଦାସଙ୍କ ପ୍ରସାଦରୁ ଉତ୍କଳରେ ଆବାଳବୃଦ୍ଧ ବିଦିତ ଅଛନ୍ତି । (୨)

ଶ୍ରୀମାନ୍ ସାରଳାଦାସଙ୍କ ମହାଭାରତର ବନପର୍ବୀୟ * ଚରିତ୍ରମାନଙ୍କର ଅନୁକ୍ରମ ମୌଳିକପାଠ ପରିପାଟି ଅପେକ୍ଷା ନିତାନ୍ତ ଭିନ୍ନ ପ୍ରକାର । ପରନ୍ତୁ ଘୋର ଗହନାରଣ୍ୟକାନ୍ତାରବର୍ତ୍ମବର୍ତ୍ତୀ ପଥିକ ଶନୈଃ ଶନୈଃ ପଥଭ୍ରାନ୍ତ ହେଲା ପ୍ରାୟ ସୁଚିନ୍ତନପୁରଃସରଣ-କର୍ତ୍ତବ୍ୟାବଧାରଣବିରହରୁ ଏ ମହାଶୟ ଏହି ପର୍ବରେ ଅନେକତ୍ର ଭ୍ରାନ୍ତ ଧାରଣାରେ ପଡ଼ି ଅମାର୍ଗରେ ଗୃଳିଯାଇ ଇଚ୍ଛାନୁମତରେ କେତେ କଥା କହିଯାଇ ଅଛନ୍ତି । ଏଥିରେ ପୁଣି ଅଲେଖ ଲେଖକ ଓ ଛାପାକାରଙ୍କର ସମୁଚ୍ଛୃଙ୍ଖଳା ବ୍ୟାପାର ସୁଦ୍ଧା ଅନଳ୍ପାଧିପତ୍ୟ ସ୍ଥାପନ କରିଅଛି ।

---

(୨) ଛାପା ପୁସ୍ତକରେ ୪୧୦—୪୪୪ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

* ଏହି କବି ମହୋଦୟ ପର୍ବାନୁଗଣନାରେ ମଧ୍ୟପର୍ବକୁ ଦ୍ୱିତୀୟ ସ୍ଥାନୀୟ କରି ଥିବାରୁ ଆରଣ୍ୟକ ପର୍ବକୁ ଚତୁର୍ଥ କରି ଲେଖି ଅଛନ୍ତି ।

ସଭାପର୍ବ ଅନ୍ତେ ଆରଣ୍ୟକପର୍ବ କଥା । ଚତୁର୍ଥ ଖଣ୍ଡର ଶୁଣିମା ବାରତା ॥

ଏହାକୁ ଛାପାକାର ମହାଶୟ ପରିବର୍ତ୍ତନ କରି "ତୃତୀୟ ଖଣ୍ଡର ତୁହି ଶୁଣ ହେ ବାରତା" ଏପରି କରିଦେଇ ଅଛନ୍ତି । ବ. ପ. ୧୫ ପୃଷ୍ଠା ।

ସର୍ବ୍ବପାଶାବପାଶିତ ଅପାକୃତକଥ ପୁଣ୍ୟଗାଥ ପାର୍ଥିବ ପ୍ରବୀର ପାଣ୍ଡବମାନେ କତବଦ୍ୟୁତରେ ହୃତସର୍ବସ୍ୱ ହୋଇ ବନକୁ ପ୍ରସ୍ଥାନ କଲେ; ଇତ୍ୟାକାର କଥା-ଗୁଡ଼ିକ ଆପାତତଃ ବନପର୍ବର ଆଦ୍ୟମ ବର୍ଣ୍ଣନୀୟ ବିଷୟ । ଏହ ପ୍ରନିଦ୍ଧାନ୍ତି ଗ୍ରୁପ ପୁସ୍ତକରେ ପ୍ରଥମତଃ ସଭାପର୍ବର ପରିଚ୍ଛେଦରେ ବୃଥାଲ୍ୱବିସ୍ତାରରେ ଉକ୍ତ ଥାଇ ତତ୍ପର ବନପର୍ବ ପ୍ରାରମ୍ଭରେ ପ୍ରାୟଶଃ ଅଷ୍ଟପୃଷ୍ଠାବଧିକ ଆଲୋଚିତ ହୋଇଅଛି । ସର୍ବୋପଦ୍ରୁତ ସୁବର୍ଦ୍ଧିତବଚନ ବନବାସଦୁଃଖକର୍ଷିତ ପାଣ୍ଡବଗଣଙ୍କ ନିକର ଅନାର୍ଯ୍ୟକାର୍ଯ୍ୟ-ସମ୍ପାଦିତ ଅଖଣ୍ଡୈଶ୍ୱର୍ଯ୍ୟର ପ୍ରଦର୍ଶନରେ କ୍ଷମନସ୍କ କରାଇବା ପାଇଁ ଫଳମୂଳସ୍ଥପୁଷ୍ପାଦିପରିବୃଷିତ ପ୍ରବାସକନନ ତାତ୍କାଳିକ ପାଣ୍ଡବୀୟ ସଦନାଭୂତ ବନକୁ ଦୁର୍ଯ୍ୟୋଧନଙ୍କ ସମାଗମନ, ସୁଧାନ୍ତଃପତନଦେଶରେ ତତ୍ରାଗତ କ୍ରୋଧାନ୍ଧ ଚିତ୍ରସେନ ଗନ୍ଧର୍ବସେନ ଗନ୍ଧର୍ବ ବୃନ୍ଦକ୍ଷିତଚରଣ ପ୍ରାପ୍ତ ଦୌର୍ଯ୍ୟୋଧନକ-ଚମୂ-ଚମୂରୁସମ୍ମଦକୁ ବିଧ୍ୱସ୍ତ କରି ଆୟୋଧନଗତ ଦୁର୍ଯ୍ୟୋଧନଙ୍କୁ ବନ୍ଧନକଷ କରିବା ପ୍ରଭୃତିକ ଚରିତ ସନ୍ନିଧାନଟି ଗ୍ରୁପ ପୁସ୍ତକରେ ବନପର୍ବର ଆଦ୍ୟମ ପ୍ରସ୍ତାବରେ ଏବଂ ତାଳପତ୍ର ପୁସ୍ତକରେ ସଭାପର୍ବାବସାନରେ ଲେଖାଅଛି । ଉଭୟଥା ଏହା ଅସମୀଚୀନ । ସଭାର ଅନ୍ତିମ ହେଉ କିମ୍ବା ବନର ଆଦ୍ୟମ ହେଉ, ଏହା ଅଯଥା ସ୍ଥାନସନ୍ନିବେଶ ଦୋଷ ଓ ଆକାଳିକପଖ୍ୟାପନାପବାଦରୁ ମୁକ୍ତ ହୋଇ ନ ପାରେ । ଏତତ୍ପ୍ରମ୍ଭବରେ କବି କେବଳ ପ୍ରଥମତଃ ଭ୍ରାନ୍ତ ପଥର ପଥିକ ହୋଇ ଅଛନ୍ତି ବୋଲିବାକୁ ହେବ । କାରଣ କୁମତିମତ୍ତମ ଦୁର୍ଯ୍ୟୋଧନଙ୍କର ଚୈତ୍ରସେନକ ପରାଭବାନୁଭବ ଶ୍ରୁତିବୃଦ୍ଧ ସର୍ବ୍ବପ୍ରତିଶ୍ରବ ପାଣ୍ଡୁପୁତ୍ରମାନଙ୍କର ବନବାସ ସମାପ୍ତିର ଆସନ୍ନକାଳରେ ଅର୍ଥାତ୍ ବନବାସର ପ୍ରାୟଶଃ ଏକାଦଶ ବର୍ଷରେ ଘଟିଥିବା ପାଣ୍ଡବୀୟ ସର୍ବ୍ବଭୂତମତସିଦ୍ଧ । † ଦାସ କବି ମହୋଦୟ ବ୍ୟାସୋକ୍ତ ପୂର୍ବାପର ଚରିତମାନଙ୍କର ସାମୟିକ ଅନୁକ୍ରମଣିକାକୁ ଠିକ୍ ମନସ୍ଥ କରି ନ ପାରି ଏପରି ଦୁଃସ୍ଥାନଶୋଚ୍ୟା ଦଶାରେ ପକାଇ ଦେଇ ଅଛନ୍ତି ।

ମୂଳରେ ପ୍ରଥମତଃ ପାଣ୍ଡବମାନେ ବନଯାତ୍ରାର ପ୍ରଥମାବସଥରମ୍ୟ କାମ୍ୟକବନସ୍ଥ ଥିବା ସମୟରେ କୌର୍ଯ୍ୟଭୀର-ଭୀମର ବକାସୁରର ସହୋଦର *

---

† ବନପର୍ବ ୨୩୮ ଅଷ୍ଟତ୍ରିଂଶୋତ୍ତରଦ୍ୱିଶତାଧ୍ୟାୟ ପ୍ରାରମ୍ଭରୁ ଦେଖନ୍ତୁ ।

* ଅପିଚ ଭାରତାନୁକାରୀ ଅନନ୍ତ ଭଟ୍ଟଙ୍କ କୃତ ଭାରତ ଚମ୍ପୂରେ ମଧ୍ୟ ଏହିପରି ଅଛି—

ଅହଂ ବକସ୍ୟ ବୈଭ୍ରାତା କର୍ମୀର ଇତି ବିଶ୍ରୁତଃ ।
ବନେଽସ୍ମିନ୍ କାମ୍ୟକେ ଶୂନ୍ୟେ ନିବସାମି ଗତଜ୍ୱରଃ ॥ ବ. ପ. ୩୪ ଅ:

ଅମାତ-ତାପ-କର୍ମୀର ଦୈତ୍ୟର ବଧୋପାଖ୍ୟାନ ଏବଂ ସାଧଣଙ୍କ ଶାଲ୍ୱ ଦୈତ୍ୟବଧ କମ୍ବା ସୌଭିବଧର ଉପାଖ୍ୟାନ ଉକ୍ତ ଅଛି । ଉତ୍କଳ ଭାରତର କବି ଏ ସ୍ଥଳରେ ଏତଦୁଭୟ ଉପାଖ୍ୟାନକୁ ତ୍ୟାଗ କରି ଅଛନ୍ତି । ସୌଭବଧୋପାଖ୍ୟାନ ବିସର୍ଜନର କାରଣ ବୁଝାଯାଇ ନ ପାରେ; ମାତ୍ର ଅବଶ୍ୟ କର୍ମୀରର ଆବଶ୍ୟକ ପ୍ରମାପଣ ଚିହ୍ନଣରୁ ଭ୍ରାନ୍ତିମୂଳକ ବା ଅଭ୍ରାନ୍ତ ହେଉ, କବି ଜ୍ଞାନପୂର୍ବକ ବିରତ ହୋଇଥିବେ, ଏହାହିଁ ଅନୁମେୟ । କାରଣ ଇତଃପୂର୍ବେ ଆଦିପର୍ବରେ ଏହି ନାମକୁ ଭ୍ରାନ୍ତସ୍ମୃତି-ମୂଳକ ପରିଣାମରେ ପକାଇ କୁମ୍ଭୀରରେ ପରିଣତ କରି ପକାଇ ଅଛନ୍ତି ।

ଅତଃପର ଦ୍ୱେଷ୍ୟବିଧ୍ୱଂସନଦୃଢ଼ବଦ୍ଧକଚ୍ଛ ଭାରର୍ଷଭ ଧୌମ୍ୟାଦିସନାଥ ବିଗତକଳ୍ମଷ ଭ୍ରାତୃଗଣର ସଜାନ ସାନୁଚର ଯୁଧିଷ୍ଠିର ପ୍ରଥମେ କତିପୟକାଳ ନିମନ୍ତେ ପୁଣ୍ୟ-କାମ୍ୟ କାମ୍ୟକବନ ତ୍ୟାଗ କରି ବାଚଂଯମିକସୁଖାବହ ଦ୍ୱୈତବନରେ ନିବାସ କରିଥିଲେ । † ମାତ୍ର ସାରଳାଦାସ ମହୋଦୟ ଏଠାରେ କେବଳ କାହିଁକି କୁତ୍ରାପି ଦ୍ୱୈତବନର ନାମ ଆଦୌ ଗ୍ରହଣ କରି ନାହାନ୍ତି । [୧] ପରନ୍ତୁ ସେମାନେ କାମ୍ୟକବନରୁ [୨] ଗୟାକ୍ଷେତ୍ରକୁ ଯାତ୍ରା କଲେ ବୋଲି ଅପିଚ ତଦବଧି ଚିରବିଧିକାଧିପୀଡ଼ିତା ଅଜ୍ଞାତପୂର୍ବବ୍ୟସନା ମାତା କୁନ୍ତୀ ଦେବୀ ସମଭିବ୍ୟାହାରରେ ଥିଲେ ବୋଲି ଲେଖି ଅଛନ୍ତି । ମାତ୍ର ଦୁର୍ଭାଗ୍ୟର ନିର୍ବାସିତ ପାଣ୍ଡବମାନଙ୍କର ବନବାସରେ କୁନ୍ତୀଙ୍କ ସହ ସମବସ୍ଥାନ ଏକାନ୍ତ ଅମୂଳକ । ସଭାପର୍ବୀୟ ପୁତ୍ରମାନଙ୍କ ବନପ୍ରସ୍ଥାନ ସମୟରୁ ଗ୍ରୀଷ୍ମରେ ସଜଳନୟନରୁ ଊଦକସତ୍ତ୍ୱ

---

† ତତସ୍ତେ ପ୍ରୟଯୁଃ ସର୍ବେ ପାଣ୍ଡବା ଧର୍ମଚାରିଣଃ ।
ବ୍ରାହ୍ମଣୈର୍ବହୁଭିଃସାର୍ଦ୍ଧଂ ପୁଣ୍ୟଂ ଦ୍ୱୈତବନଂ ସରଃ ॥
ବ. ପ. ୩୪ ଅ:

ପାଣ୍ଡବମାନଙ୍କର ବନବାସରେ ଦ୍ୱୈତବନ ପ୍ରତି ଏହା ପ୍ରଥମ ଯାତ୍ରା ।

[୧] ଏ ମହୋଦୟ ସଂସ୍କୃତରେ ତାଦୃଶ ସାହିତ୍ୟାଧିକାରୀ ନ ଥିବେ । ତାହାହେଲେ ଭାରବିକାବ୍ୟର ସଦ୍ଗୁଣ ଶ୍ଳୋକଟିଏ ମନେ ପଡ଼ନ୍ତା ନାହିଁ କି ?

[୨] ଗୟାଶ୍ରାଦ୍ଧ କଲେ ପିତୃଲୋକଙ୍କୁ ଦେଖି ।
ଯୁଧିଷ୍ଠିର ପଚାରିଲେ ମାତା ଯେ କୁନ୍ତୀଙ୍କି ॥
ଛାପା ବ. ପ. ୨୮ ପୃଷ୍ଠା ।

ପର ପ୍ରପୀଡ଼ିତା ଉପରକ୍ତାବନ୍ତ୍ୟ ଓ ନଷ୍ଟୋପୃତଷ୍ଟାବ ପ୍ରାପ୍ତ ଶ୍ରୀତଷ୍ଟାନା ପୃଥାଦେବୀ ଅଜ୍ଞାନାଦ୍ ଭବୁର ବିଦୁରଙ୍କ ଗୃହରେ ଅବସ୍ଥାନ କରୁଥିଲେ । *

ଅପିଚ ଦାସ କବିଙ୍କ ପ୍ରଦର୍ଶିତମତେ ପାଣ୍ଡବମାନେ ଶଯ୍ୟାବସ୍ଥିତ ଥିବା ସମୟରେ ପାରଶ୍ୱଧିକଲଲାମ ସମୁଧିକପଣ୍ଡ ପର୍ଶୁରାମଙ୍କର ସ୍ୱଜନମା-ଶିରଶ୍ଛେଦନ ବୃତ୍ତାନ୍ତ ଉକ୍ତ ଅଛି । ଏହା ମୂଳରେ ଅପ୍ରତିପାଦିତ ସତ୍ୟ, ମାତ୍ର ଅସତ୍ୟ ବ୍ୟାସମୁନି ମତର ଅଦୂରଦର୍ଶିତା ଯୋଗୁଁ ୧ମ ଚରିତ ପ୍ରଖ୍ୟାପନପଟୁତା ବଳରୁ ଶୁଦ୍ଧମୁନି କବି ଏ ସ୍ଥଳରେ ଯେ କୌଣସି ପ୍ରକାରେ କଥାସନ୍ଦର୍ଭ ଲଗାଇ ଲେଖି ପକାଇ ଅଛନ୍ତି ଏବଂ ସେମାନେ ତତଃପର ଶିବବନକାଶ-କାଶୀବାସୀ ହେଲେ ବୋଲି କହି, ଭର୍ତ୍ତୃପୂତସମେତା ଭବାମା ମାତାରଧାର-ବିଦାର ପରିହାରପୂର୍ବକ ବାରାଣସୀ-ବାସିମା ହେବାର ଚରିତକୁ ବର୍ଣ୍ଣିତ କରି ଅଛନ୍ତି । ଏହି ସବିଧାନ ମୌଳିକ ବିଧାନରୁ ଭିନ୍ନ ହେଲେ ସୁଦ୍ଧା ବୋଧହୁଏ ଅଳୀକ ନୁହେ । ଏଠାରେ ଚରିତ ଚିତ୍ରଣରେ ମଧ୍ୟ କବି ପ୍ରବଣାନ୍ତରାନୁସରଣକୁ ଶରଣ କରିଥିବେ । ଅପିଚ ତଦାନୀଂ କାଶୀନିବାସୀ ବାସବ ଅର୍ଜୁନଙ୍କୁ ବାସବ ତତ୍ପଶ୍ଚାତ୍ରାବରକାନୁମତରେ ନିବାତ-କବଚାଦି ବଧାର୍ଥ ମାତଳଙ୍କଦ୍ୱାରା ସ୍ୱର୍ଗକୁ ଆମିତ କରିବା, ପ୍ରାର୍ଥ ସେଠାରେ ପିତୃନିର୍ଦ୍ଦିଷ୍ଟ କାର୍ଯ୍ୟ ନିର୍ବାହ ପରେ ଆପଣା ପ୍ରତି ଶରଂସୁ ଉର୍ବଶୀଙ୍କ ପ୍ରଦତ୍ତ ଏକବର୍ଷାଧିକ ବର୍ଷବଉତ୍ତର ଶାପ ପାଇବା ପ୍ରଭୃତି ଦୂରବର୍ତ୍ତିତ ଘଟନାଗୁଡ଼ିକ ଲେଖି ଅଛନ୍ତି; କିନ୍ତୁ ଏହା ତତ୍ ତତ୍ ଘଟନା ସଙ୍ଘଟନର ସାମୟିକ ହିସାବରେ ଔପପତ୍ତିକ ନୁହେ ।

---

* ଅତଏବ ବନପର୍ବ ପ୍ରାରମ୍ଭରେ ଯୁଧିଷ୍ଠିର କହି ଅଛନ୍ତି କି—

ଶ୍ୱଶ୍ରୁଃ ପିତାମହୋ ରାଜା ବିଦୁରୋ ଜନନୀ ଚ ମେ । ୧ ଅ:
ସୁହୃଜ୍ଜନଶ୍ଚ ପ୍ରାୟେଣ ମେ ନଗରେ ନାଗସାହ୍ୱୟେ ॥ ବ. ପ. ୩୪ ଶ୍ଳୋକ ।

ତଦନୁମତ ଭାରତଚମ୍ପୂରେ ମଧ୍ୟ ଏହିପରି ଲେଖାଅଛି -

ଉଥ୍ଥାୟାଥ ସ୍ୱ ଶିବିରଦ୍ଭ୍ରଃ କ୍ଷଣମପିହାରଣୀ ସ୍ଥାତୃମସ୍ୟାମଯୁକ୍ତଂ
ପ୍ରତ୍ୟର୍ଥିସ୍ୱୀକୃତାୟାଂ ସିତ ମହ ସଦନୈଃ ସତ୍ୟସନ୍ଧଃ ସଜାନଃ ।
ପାଞ୍ଚାଳୀ କନ୍ତୁର୍ନିଧାୟ ଦ୍ରୁତମିବ ମନ୍ଦତରମନ୍ତ୍ରୁଉପ୍ୟମାନାଂ ॥ ଇତ୍ୟାଦି ।

ମୂଳ ଗ୍ରନ୍ଥରେ ଲେଖାଅଛୁ, କାନ୍ତାରବର୍ତ୍ମବର୍ତ୍ତୀ ଶାନ୍ତାକ୍ରାନ୍ତ ପାଣ୍ଡବମାନେ କେତେକ-ସମୟୋପଗମରେ ବୈପ୍ୟାସକ ନିଦେଶମତେ ଦ୍ୱୈତବନରୁ ପୁନରପି ସେହି କର୍ମୀରବଧାମଢ଼ତ-ପଞ୍ଚବ୍ରୀତ-ସ୍ୱାଧ୍ୟାୟଘୋଷ-ମୁଖରିତ ସୁସଜ୍ଜିତ କାମ୍ୟକ ବନକୁ ପ୍ରସ୍ଥାନ କଲେ । *ସେଠାରେ ପ୍ରଥମାନନ୍ଦିତ୍ତି ବିଶାଳଶାଳମୂର୍ତ୍ତି ଅର୍ଜୁନ ଭାବି-ସଂଗ୍ରାମରେ ଅପାନସତ୍ତ୍ୱ ନଦୀ-ସନ୍ତାନପ୍ରମୁଖାଭିମୁଖରେ ଜୟବୈଜୟନ୍ତୀର ପ୍ରାପ୍ତି ସକାଶେ "ଯଶଏବ ଜନ୍ମଫଳମାତ୍ମବତାଂ" ଭାବ ପୁରୁହୂତ ପ୍ରସାଦତଃ ଅସ୍ତ୍ରଶସ୍ତ୍ର ସମ୍ପତ୍ତି ପାଇବା ପାଇଁ ଦୈପବତ ହୈମପ୍ରସ୍ଥକୁ ପ୍ରସ୍ଥାନ କରି ପୌରନ୍ଦର-ସାକ୍ଷାତ୍କାର ପ୍ରାପ୍ତି ପରେ ତଦାଦେଶାନୁସାରେ ସେହି ଦର୍ବୀକର-ବରକଙ୍କଣ-ଖର୍ବୀକରଣପଟୁ ଉର୍ବୀଧରରେ ସର୍ବେଶ୍ୱର ମହାଦେବଙ୍କ ଦିଦୃକ୍ଷାରେ କଠୋର ତପସ୍ୟାନିଷ୍ଠ ହେଲେ । ଆଶୁତୋଷ ଭଗବାନ୍ ମହାଦେବ କୈରାତବେଶରେ ଘୋରଘୂତ୍କରଣଘୋଣ-ଘୋଣି-ପ୍ରଦର୍ଶନପୁରଃସର ଅନ୍ତର୍ଗ୍ରଡ଼ାନୁମୋଣ ହୃଦୟରେ ଅର୍ଜୁନଙ୍କ ସହ ବିକଟାଳ ସଂଗ୍ରାମ କରଣାନନ୍ତର ଅବିରତମୁଖର-ଜ୍ୟାଳଞ୍ଜିକ ପୌରୁହୂତିଙ୍କଠାରେ ପରାଜୟ ସ୍ୱୀକାର କରି ପାଶୁପତ, ବ୍ରହ୍ମଶିର ପ୍ରଭୃତି ସମନ୍ତ୍ରାସ୍ତ୍ରଗ୍ରାମ ପ୍ରଦାନ କଲେ । ସାଦରରେ କହିଲେ କି, ହେ ଭାରତର୍ଷଭ ଅର୍ଜୁନ ! ତୁମ୍ଭେ ମାମକ ବରପ୍ରସାଦରୁ ଜୈତ୍ରଯାତ୍ରାରେ ସର୍ବଥା ଭୀଷ୍ମଦ୍ରୋଣାଦିଙ୍କୁ ପରାଭୂତ କରିବାରେ ଅବ୍ୟର୍ଥସାମର୍ଥ୍ୟ ହେବ । ସଂପ୍ରତି ବାଞ୍ଛୋକ୍ଷିପ୍ତ ବସନ୍ତ ପ୍ରତି ପ୍ରସ୍ଥାନ କର । ତଦନନ୍ତର ହର-ତିରୋଧାନର ଅନତିବ୍ୟବହିତ କାଳରେ ପ୍ରାଗାଦିକ-କୁଭାଧିପ ଇନ୍ଦ୍ରବରୁଣାଦି ସେଠାରେ ସମବେତ ହୋଇ ପାର୍ଥମନୋରଥ ସାର୍ଥକରଣାର୍ଥ ସ୍ୱସ୍ୱ ଅସ୍ତ୍ରଶସ୍ତ୍ରମାନ ପ୍ରଦାନ କଲେ । ସୁତରାଂ ସ୍ୱର୍ଗକୁ ଆସିବାପାଇଁ ନାକନାୟକ ନିମନ୍ତ୍ରଣ କଲେ । ତତଃପର ପୁରୁହୂତାତ୍ମଜ ମାତଳିସନାଥ ପାର୍ଥ ନିସର୍ଗସୁଖନିକେତ ସ୍ୱର୍ଗରେ ପ୍ରବେଶ କରି ପୁରନ୍ଦରକର୍ତ୍ତୃକ ବହୁସତ୍କୃତ ହୋଇ ବହୁବିଧ ଅସ୍ତ୍ରଶସ୍ତ୍ର ଓ ଅନବଦ୍ୟା ଗାନ୍ଧର୍ବବିଦ୍ୟା ଶିକ୍ଷାପୂର୍ବକ [୧] ନିବାତକବଚମାନଙ୍କୁ ହୃଦ୍‌ବିଦାରଣରେ କୃତପ୍ରୟାଣ-ପ୍ରାଣ [୨] ପ୍ରବାତକବଚ କରିବା ପାଇଁ ଏବଂ କଳହାୟମାନ

* ସ ବ୍ୟାସବାକ୍ୟମୂଢ଼ତୋ ବନାଦ୍ଦ୍ୱୈତବନାତ୍ତତଃ ।
ଯଯୌ ସରସ୍ୱତୀକୂଳେ କାମ୍ୟକଂ ନାମ ତଦ୍‌ବନଂ ॥ ବ. ପ. ୩୬ ଅ:

[୧] ନିବାତକବଚ = ଅଭେଦ୍ୟକବଚ ।

[୨] ପ୍ରବାତକବଚ = ପ୍ରଭେଦ୍ୟକବଚ ।

କାଳକେୟପ୍ରମୁଖଙ୍କୁ କାଳଖେଳାତିଥୀକରଣାର୍ଥ ତତ୍ର ବର୍ଷପଞ୍ଚକ ଅବସ୍ଥାନ କରିଥିଲେ । [୧] ଏତାବତ୍ ସମୟ ମଧ୍ୟରେ ଏକଦା ତନ୍ମାତୃକଳ୍ପା ଅନଳ୍ପ-ମାନ୍ମଥବିକାରା ଉର୍ବଶୀଙ୍କଠାରୁ ଶୁକ୍ରଭେଦକନପୁଂସକତ୍ୱ ପ୍ରାପ୍ତ ହୋଇଥିଲେ । ଇନ୍ଦ୍ରାଦିଷ୍ଟ ମହର୍ଷି ଲୋମଶ ଅର୍ଜୁନବିରହସନ୍ତପ୍ତ ଯୁଧିଷ୍ଠିରଙ୍କଠାକୁ ଆସି ସମାଶ୍ୱାସନରେ ତୀର୍ଥଭ୍ରମଣାର୍ଥ ପ୍ରବର୍ତ୍ତାଇବାରୁ ପ୍ରୋକ୍ତ ପାଞ୍ଚବର୍ଷରେ ସାନୁଗସାନୁଜ ସାନୁପାର୍ଶ୍ୱିକ ଧର୍ମରାଜଙ୍କର ସମଗ୍ର ତୀର୍ଥାଟନ ସମ୍ପନ୍ନ ହୋଇଥିଲା ।

ଇତ୍ୟାକାରକ ପ୍ରକୃତ ଘଟଣାଗୁଡ଼ିକୁ ସାରଳାଦାସ କବି ମହୋଦୟ ଯଥାଯଥ ଲେଖି ନାହାନ୍ତି । କାରଣ ଇତିପୂର୍ବରୁ ଅସତ୍ୟ ମହାଦେବଙ୍କ ସହ ଅର୍ଜୁନଙ୍କ ଆହବିକ ପ୍ରତିଦ୍ୱନ୍ଦ୍ୱକୁ ଆଦିପର୍ବରେ ଦୁଃସ୍ଥାନସ୍ଥିତ କରିଦେଇ ଥିବାରୁ ଏ ସ୍ଥଳରେ ଏତତ୍ ଭିନ୍ନ କଥାକୁ ଅନ୍ୟଥା ସମର୍ଥନ କରି ଅଛନ୍ତି । ପୁନଶ୍ଚ କହି ଅଛନ୍ତି କି ଏତାବତ୍ ପର୍ଯ୍ୟନ୍ତ ସୁଭଦ୍ରା ଓ କୁନ୍ତୀଦେବୀ ପାଣ୍ଡବମାନଙ୍କର ସମଭିବ୍ୟାହାରିଣୀ ଥିଲେ । ଏଥିଠାରୁ ଶ୍ରୀକୃଷ୍ଣ ସ୍ୱାନୁଜାଙ୍କୁ ଦ୍ୱାରକାକୁ, ବିଦୁର ଭ୍ରାତୃଜାୟାଙ୍କୁ ହସ୍ତିନାକୁ ନେଲେ । (୨) ଅଥଚ ପାଣ୍ଡବମାନେ କାଶୀକ୍ଷେତ୍ରର ଅନ୍ତର୍ଗତ ଅସ୍କନ୍ଦାଭିଧବନରେ ଅବତରିବା ସମୟରେ ବଶୀଶ ବଶିଷ୍ଠଙ୍କ ଗାଭୀ ଅପହରଣର ଶାପରେ ଅଙ୍ଗୀଭୂତ ଅନଳବସୁଙ୍କୁ ଯୁଧିଷ୍ଠିର ଚକ୍ଷୁଦାନ କରିଥିଲେ ବୋଲି ମୂଳାନୁକ୍ତ ଏକ କଥା ସନ୍ଦର୍ଭକୁ ଅବତାରିତ କରି ଅଛନ୍ତି । ତତଃପର ପ୍ରୋକ୍ତ ଅସ୍କନ୍ଦବନରେ କେବଳ ଏକାକିନୀ ନିର୍ଗଳଭୁବନାତିରିକ୍ତ-ଲାବଣ୍ୟ ସମ୍ପତ୍ତିଶାଳିନୀ ଯାଜ୍ଞସେନୀଙ୍କୁ ବଳାତ୍ ଜଘୃଷ୍ଟ ଦୁର୍ମେଧ ସିନ୍ଧୁଦେଶୀନରପତି ଜୟଦ୍ରଥ ଅପହରଣ କରି ଧୈର୍ଯ୍ୟଦତ୍ତ ହସ୍ତୋତ୍ତୋଳ ସମୁପବୃଂହିତସିଂହନାଦ ଭୀମଙ୍କ କର୍ତ୍ତୃକ ପଞ୍ଚଧା (୩) ଛିନ୍ନକେଶ ଓ ବହୁ ତାଡିତ ହୋଇ "ରାଜନ୍ୟାନାଂ ପରପରିଭବୋ-

---

[୧] ବୃହଦ୍ଭାସ୍ୱସ୍ତୁ କୌନ୍ତେୟୋ ଭ୍ରାତୃନ୍ ସସ୍ମାର ପାଣ୍ଡବଃ ।
ପୁରନ୍ଦରନିୟୋଗାଚ୍ଚ ପଞ୍ଚାବ୍ଦାନବସତ୍ ସୁଖୀ ॥
ବ. ପ. ୪୪ ଅ. ୫ ଶ୍ଳୋକ ।

(୨) ବନପର୍ବ ଛପା ପୁସ୍ତକରେ ୬୭ ପୃଷ୍ଠା ଦେଖନ୍ତୁ ।

(୩) ଦ୍ରୌପଦୀ ବ୍ରବୀତ୍ ଭୀମଂ ଅଭିପ୍ରେକ୍ଷ୍ୟ ଯୁଧିଷ୍ଠିରଂ ।
ଦାସୋଽୟଂ (ଅୟଂ = ଜୟଦ୍ରଥଃ) ମୁଚ୍ୟତାଂ ରାଜ୍ଞଃ ତ୍ୱୟା ପଞ୍ଚସଟଃ କୃତଃ । ବ. ପ. ୨୭୧ ଅ. ୧୮ ଶ୍ଳୋକ ।

ଷ୍ଟଜଯକ୍ଷ୍ମାକ୍ସ୍ କାର୍ତ୍ତୈଃ" ଏହା ଭାବି ପାଣ୍ଡବ ଭବ-ଜିଗୀଷାରେ ତପୋନଷ୍ଟ ହେବାର କଥା ଲେଖି ପକାଇ ଅଛନ୍ତି; କିନ୍ତୁ ଏହା ଯଥାସ୍ଥାନସନ୍ନିବେଶିତ ନୁହେ । ନରନ୍ତର ଚନ୍ଦ୍ରାବକଳ୍ପକଳ୍ପନାକୁଳ-ହୃଦୟରେ ସାଧୁସଦୟ ଦୁଷ୍ଟାଧକ୍ଷବକ୍ଷଃସ୍ଥଳ-ଦଳନଦକ୍ଷ ନିହ୍ନର୍ଯ୍ୟକ୍ଷ ପାଣ୍ଡବ ମହୋଦୟମାନଙ୍କ ବନବାସ ଦ୍ୱାଦଶ ବର୍ଷର ଅତ୍ୟଲ୍ପାବଶିଷ୍ଟ କାଳରେ ଏବଂ ସୌଦାମଣି ଅର୍ଜୁନଙ୍କ ସହାବସ୍ଥାନ ସମୟରେ ଏହି ଘଟନାଟି ଘଟିଥିଲା । ଶ୍ରୀ ସାରଳାଦାସ କବି ପୌରାଣିକ ବହୁ ଧନ୍ଦାରେ ପଡ଼ି ଆକସ୍ମିକ ସ୍ମୃତିମାଧ୍ୟରୁ ବହୁ ବପ୍ରକୃଷ୍ଟ ଚରିତକୁ ନିକଟାକୃଷ୍ଟ କରି ଆଣି ପକାଇ ଅଛନ୍ତି । ଅନନ୍ତର ଯାଦବଦାୟାଦ ପାଣ୍ଡୁଦାୟାଦମାନେ ଅସ୍ତନ୍ଦ ବନ ତ୍ୟାଗପୂର୍ବକ ଅନତିଦୂରବର୍ତ୍ତୀ ନନ୍ଦକେଶ୍ୱର ନେରେ ଅବସ୍ଥିତ ହେଲେ; ଅପିଚ ତଦାବସ୍ଥାନ ସମୟରେ ମାତୃସଦନବର୍ତ୍ତିନୀ ସୁଭଦ୍ରା ଦେବୀଙ୍କର ଅଭିନବ ପୁତ୍ର ଅଭିମନ୍ୟୁଙ୍କ ଉତ୍ପତ୍ତି ବୃତ୍ତାନ୍ତ ଶୁଣିଥିଲେ ବୋଲି କହି ଅଛନ୍ତି । ଏହା ନିତାନ୍ତ ଅଳୀକ ଓ ଅସଙ୍ଗତ । ଅନ୍ଧପରମ୍ପରାନୁଗତ ଶ୍ରାବଣିକ ଜ୍ଞାନଯୋଗ୍ୟ କିମ୍ବା ଅମନ୍ଦ-ପ୍ରମାଦବଶତଃ ଏହି କବି ମହାଶୟ ଭ୍ରାନ୍ତ ଧାରଣାରେ ପଡ଼ି ଏପରି କହି ପକାଇ ଅଛନ୍ତି । ଏହି ବନବାସର ବହୁ ପୂର୍ବରୁ ଅଭିମନ୍ୟୁ ପ୍ରଭୃତି ସୌଭଦ୍ର ଓ ଦ୍ରୌପଦେୟ ପାଣ୍ଡବେୟ-ମାନେ ଜନ୍ମଗ୍ରହଣ କରି ରାଜସୂୟ ଯାଗ ସମୟକୁ ସମୁଜ୍ଜ୍ୱିତଶୈଶବ ଥିଲେ । ଅତଏବ ସେହି ସବନ-ସମାପ୍ତି ପରେ ରାଜାମାନେ ଯେତେବେଳେ ଯୁଧିଷ୍ଠିରଙ୍କ-ଠାରୁ ବିଦାୟଗ୍ରହଣପୂର୍ବକ ସ୍ୱ ସ୍ୱ ନଗରାଭିମୁଖରେ ପ୍ରତିପ୍ରସ୍ଥାନ କରିଥିଲେ, ତେତେବେଳେ କତିପୟ ରାଜାଙ୍କୁ ସମ୍ମାନପୂର୍ବକ ଅନୁଗମନ କରିବା ପ୍ରସଙ୍ଗରେ ସଭାପର୍ବୀୟ ପଞ୍ଚଚତ୍ୱାରିଂଶ ଅଧ୍ୟାୟରେ ଉକ୍ତ ଅଛି କି, ପାର୍ବତୀୟ ମହାରଥମାନଙ୍କ ସମ୍ମାନାର୍ଥ ଦ୍ରୌପଦୀ ଓ ସୁଭଦ୍ରାଙ୍କ ପୁତ୍ରମାନେ ଅନୁଗମନ କରିଥିଲେ । ଇତ୍ୟାଦି । [୧]

---

[୧] ଦ୍ରୌପଦେୟାଃ ସସୌଭଦ୍ରାଃ ପାର୍ବତୀୟାନ୍ ମହାରଥାନ୍ ।
ଅନୁଗଚ୍ଛଂସ୍ତଥୈବାନ୍ୟାନ୍ କ୍ଷତ୍ରିୟାନ୍ କ୍ଷତ୍ରିୟର୍ଷଭାଃ । ଇତି ।

ଅପିଚ—

ଯେତେବେଳେ ଅଙ୍ଗୀକୃତଦୌତ୍ୟକର୍ମ ଶ୍ରୀକୃଷ୍ଣ ହସ୍ତିନାକୁ ଗଲେ ତେତେବେଳେ କୁନ୍ତୀଦେବୀ କୁଶଳ ପ୍ରଶ୍ନରେ କହିଅଛନ୍ତି କି—

ପ୍ରିୟାନ୍ ପୁତ୍ରାନ୍ ପରିତ୍ୟଜ୍ୟ ପାଣ୍ଡବାନନୁରୁଦ୍ଧ୍ୟତେ,
ମହାଭିଜନସମ୍ପନ୍ନା ସର୍ବକାମୈଃ ସୁପୂଜିତା ।
ଈଶ୍ୱରୀ ସର୍ବକଲ୍ୟାଣୀ ଦ୍ରୌପଦୀ କଥମୁଚ୍ୟତେ ॥

ଉ. ପ. ୮୯ ଅ: ୪୫, ୪୬ ଶ୍ଳୋକ ।

ଏ ସ୍ଥଳରେ ସନ୍ଧାନୁସରଣରେ ଉପଲବ୍ଧ ହୁଏ ଯେ, ଯେତେବେଳେ ଶସ୍ତ୍ରାର୍ଥ ସ୍ୱର୍ଗତ ଅର୍ଜ୍ଜୁନଙ୍କ ବିପ୍ରୟୋଗରେ ଏକାନ୍ତ ସନ୍ତପ୍ତ ସଭାର୍ଯ୍ୟ ଯୁଧିଷ୍ଠିରାଦି ଭ୍ରାତୃଚତୁଷ୍ଟୟ ପୂର୍ବୋକ୍ତ କାମ୍ୟକବନରେ ଅବସ୍ଥିତ ଥିଲେ । ଏଠାରେ ବୃହଦର୍ଥ ଋଷିପ୍ରବର ବୃହଦଶ୍ୱ ଯୁଧିଷ୍ଠିରଙ୍କୁ ତଦ୍ରୂପଦୁଃଖୀ ନଳରାଜାଙ୍କ ଉପାଖ୍ୟାନ ପ୍ରଖ୍ୟାନ କରିବା, (୧) ସଦ୍‌ବୃତ୍ତିସନ୍ତୁଷ୍ଟ ସମାଗତ ଦେବର୍ଷି ନାରଦ ତୀର୍ଥଭ୍ରମଣସତ୍‌ଫଳମାନ ଶ୍ରବଣ କରାଇବା (୨) ଏବଂ ରାଜପୁରୋଧା ସତ୍‌କର୍ମପ୍ରଗୂରବେଧା ଗୀଷ୍ପତିମେଧା ଧୌମ୍ୟ ଋଷି ଅନେକଧା ତୀର୍ଥମାନଙ୍କ କଥାମାନ ଶୁଣାଇବା (୩) ତତ୍ପରେ ପ୍ରାକ୍‌ଶଂସିତ ଇନ୍ଦ୍ରାଦିଷ୍ଟ ତତୋପଗତ ମହର୍ଷି ଲୋମଶ ତୀର୍ଥଯାତ୍ରାହେତୁକ ସୌହାମଣି ସନ୍ଦେଶ ଜଣାଇବା ଉକ୍ତ ଅଛି । ଶ୍ରୀ ସାରଳାଦାସ କବି ଏହି ସନ୍ଧାନମାନଙ୍କରେ ନଳୋପାଖ୍ୟାନ ଛଡ଼ା ଅନ୍ୟ ସବୁ ସୁବୃଦ୍ଧି ସାଧ ନ ଥିବାରୁ ଏକାବେଳକେ ତ୍ୟାଗ କରିଦେଇ ଅଛନ୍ତି । ତଦ୍ଭିନ୍ନ ବଖାଣିବାରେ ସ୍ୱପଟୁ ଶ୍ରୀ ଶୁଦ୍ରମୁନି କବି ଅଂଶୋକ୍ତ ନଳୋପାଖ୍ୟାନର ବିବକ୍ଷୁ ହୋଇ ଯୁକ୍ତା ମୂଳାନୁଗତ ସ୍ଥାନରେ ଯଥାସମୟରେ ପ୍ରକାଶ କରି ନାହାନ୍ତି । ସ୍ୱର୍ଗାଗତ ଅର୍ଜୁନଙ୍କ ସମାଗମ ପରେ ବହୁ ଅସଙ୍ଗକୃଷ୍ଟ ସ୍ଥାନରେ ଯେ କୌଣସି ପ୍ରକାରେ ସମାସତଃ ମାତ୍ର କହି-ଦେଇ ଅଛନ୍ତି । ତଥାତ ଏ ସମୟରେ ଅର୍ଥାତ୍ ଯୁଧିଷ୍ଠିରାନ୍ତିକୋପନୀତ ବ୍ୟାସଦେବ ତାହାଙ୍କୁ ନଳୋପାଖ୍ୟାନ ପ୍ରଖ୍ୟାତ କଲା ସମୟରେ ପାଣ୍ଡବମାନେ ଦଣ୍ଡକାରଣ୍ୟସ୍ଥ ଥିଲେ ବୋଲି ମଧ୍ୟ ବ୍ୟକ୍ତ କରି ପକାଇ ଅଛନ୍ତି । *

ଅତଃପର ମୂଳଗ୍ରନ୍ଥରେ ଦ୍ୱିନବତିତମାଧ୍ୟାୟ ପ୍ରାରମ୍ଭରୁ ଷଟ୍‌ପଞ୍ଚାଶୋତ୍ତର-ଶତତମାଧ୍ୟାୟ ଶେଷଯାଏ ସାନୁଚର ସାନୁଯାତ୍ରିକ ଯୁଧିଷ୍ଠିରାଦି ଭ୍ରାତୃଚତୁଷ୍ଟୟଙ୍କର † ତୀର୍ଥଭ୍ରମଣ ପ୍ରକରଣରେ ପ୍ରସ୍ତାବବଶତଃ କ୍ରମରେ ଶଂଶିତ ଉପାଖ୍ୟାନ ଓ ଚରିତ-ମାନ ଯଥାସ୍ଥାନରେ ଯଥାକ୍ରମେ ପ୍ରତିପାଦିତ ଅଛି ।

---

[୧] ଏକପଞ୍ଚାଶାଧ୍ୟାୟରୁ ଆରମ୍ଭ କରି ଏକୋନାଶୀତିତମ ଅଧ୍ୟାୟାନ୍ତଯାଏ ଦେଖନ୍ତୁ ।

[୨] ୮୧ – ୮୫ ଅଧ୍ୟାୟମାନ ଦେଖନ୍ତୁ ।

[୩] ୯୬ – ୯୨ ଏହି ଅଧ୍ୟାୟମାନ ଦେଖନ୍ତୁ ।

* ଛାପା ପୁସ୍ତକରେ ୨୭୬ – ୨୯୮ ପୃଷ୍ଠା ଦେଖନ୍ତୁ ।

† ଏ ସମୟରେ ଅର୍ଜୁନ ସ୍ୱର୍ଗରେ ଥିଲେ ।

(୧) ଅଗସ୍ତ୍ୟାଶ୍ରମରେ ଅଗସ୍ତ୍ୟୋପାଖ୍ୟାନ ଅର୍ଥାତ୍ ବାତାପିସଂହାରମୂଳକ ଘଟଣାମାନ ।

(୨) ଭୃଗୁତୀର୍ଥରେ ରାମଙ୍କ କର୍ତ୍ତୃକ ପରଶୁରାମତେଜୋହରଣ ସମାଚାର ।

(୩) ତତ୍ପର ବୃତ୍ରବଧୋପାଖ୍ୟାନ ।

(୪) ଅଗସ୍ତ୍ୟଙ୍କର ସମୁଦ୍ରଶୋଷଣ ଓ ବିନ୍ଧ୍ୟାଦ୍ରି-ଖର୍ବୀକରଣ ପ୍ରକ୍ରିୟା ।

(୫) ସଗରରାଜ ପୁତ୍ରମାନେ ଅଗସ୍ତ୍ୟଶୋଷିତ ସମୁଦ୍ରର ଖନନପୂରଣ କରିବା ପ୍ରଭୃତି କଥା ।

(୬) ତତ୍ପର ଗଙ୍ଗାବତରଣ ବୃତ୍ତାନ୍ତ ।

(୭) କୌଶିକୀ ନଦୀ ତୀର୍ଥରେ ଋଷ୍ୟଶୃଙ୍ଗ-ଉପାଖ୍ୟାନ ।

(୮) କାଳିଙ୍ଗ [୧] ମହେନ୍ଦ୍ରାଚଳରେ ଜାମଦଗ୍ନ୍ୟଙ୍କ ଉପାଖ୍ୟାନ ଅର୍ଥାତ୍ ସେ ଯେପରି ସମସ୍ତ କ୍ଷତ୍ରିୟମାନଙ୍କୁ ନିହତ କରିଥିଲେ ଇତ୍ୟାଦି ।

(୯) ଶର୍ଯ୍ୟାତି ନୃପତିଙ୍କ କନ୍ୟା ସୁକନ୍ୟାଙ୍କ ଉପାଖ୍ୟାନ [୨] ।

(୧୦) ଯୌବନାଶ୍ୱେୟ ମାନ୍ଧାତୃଙ୍କ ଉପାଖ୍ୟାନ ।

(୧୧) ସୋମକ ନୃପତିଙ୍କ ପୁତ୍ର ଜନ୍ତୁରାଜଙ୍କ ଉପାଖ୍ୟାନ ।

(୧୨) ଅନନ୍ୟସାମାନ୍ୟ ମାନ୍ୟତମ ବଦାନ୍ୟ ଉଶୀନର ନରପତିଙ୍କ ସମ୍ବନ୍ଧରେ ଶ୍ୟେନକପୋତୀୟ ଉପାଖ୍ୟାନ ।

(୧୩) ସମଙ୍ଗା ନଦୀତୀର୍ଥପ୍ରସଙ୍ଗତଃ କହୋଡ଼ଙ୍କ ପୁତ୍ର ଅଷ୍ଟାବକ୍ରଙ୍କ ଚରିତ କଥନ ।

(୧୪) ତତଃପର ଭରଦ୍ୱାଜଙ୍କ ପୁତ୍ର ଯବକ୍ରୀତଙ୍କ ଉପାଖ୍ୟାନ [୩] ।

(୧୫) ଗନ୍ଧମାଦନଜିଗମିଷୁ [୪] ଯୁଧିଷ୍ଠିରାଦିଙ୍କୁ ତତ୍ସ୍ଥାନପ୍ରାପ୍ତ୍ୟର୍ଥ ଭୀମ ଘଟୋତ୍କଚ ଗମନ ବୃତ୍ତାନ୍ତ ।

---

[୧] ତତଃ ସମୁଦ୍ରତୀରେଣ ଜଗାମ ବସୁଧାଧିପଃ ।
ଭ୍ରାତୃଭିଃ ସହିତୋ ବୀରଃ କଳିଙ୍ଗାନ୍ ପ୍ରତି ଭାରତ ॥ ବ. ପ. ୧୧୪ ଅ:

[୨] ୧୨୧ – ୧୨୫ ଅଧ୍ୟାୟମାନଙ୍କରେ ଉକ୍ତ ଅଛି ।

[୩] ୧୩୫ – ୧୩୮ ଅଧ୍ୟାୟରେ ଅଧ୍ୟାୟମାନଙ୍କରେ ଉକ୍ତ ଅଛି ।

[୪] ପରିଗୃହ୍ୟ ଦ୍ୱିଜଶ୍ରେଷ୍ଠାନ ଜ୍ୟେଷ୍ଠାଃ ସର୍ବଧନୁଷ୍ମତାଂ ।
ପାଞ୍ଚାଲୀ ସହିତା ରାଜନ୍ ପ୍ରୟୟୁର୍ଗନ୍ଧମାଦନଂ ॥ ୧୪୩ ଅ:

(୧୬) ଦ୍ୟୂତଚରତର୍ଷ୍ୟା ପାର୍ଥଙ୍କର ହର୍ଷାର୍ଥ ପାର୍ଥଦର୍ଶୀ ଭୀମସେନଙ୍କର ସୌଗନ୍ଧିକାହରଣ ଚରିତ [୧] ।

(୧୭) ବଦରିକାଶ୍ରମରେ ଜଟାସୁରବଧ ଚରିତ ।

(୧୮) ତଦନନ୍ତର ଆର୍ଷ୍ଟିଷେଣ ମହର୍ଷିଙ୍କର ଧର୍ମୋପଦେଶ କଥନ ।

(୧୯) ଯୁଧିଷ୍ଠିରାଦିଙ୍କର କୁବେର ଦର୍ଶନ ଏବଂ ମେରୁ ଦର୍ଶନ ।

(୨୦) ତତଃ ଗନ୍ଧମାଦନରେ ନିବାତକବଚବୃତ୍ତ ଅର୍ଜୁନଙ୍କ ସମାଗମ ।

ଅତଃପର ଅମନ୍ଦାମୋଦମେଦସ୍ୱୀ ନିବେଦ୍ୟମାନ-ସ୍ୱକୀୟ କଳାପ ସମାଗତ ଅର୍ଜୁନଙ୍କ ସହ ଭାରବରେଷ୍ଠ ଧର୍ମିଷ୍ଠଗରିଷ୍ଠ ପତ୍ନୀନଷ୍ଟ ଯୁଧିଷ୍ଠିରାଦି ଭ୍ରାତୃବୃନ୍ଦ ଗନ୍ଧମାଦନ ତ୍ୟାଗପୂର୍ବକ ପୂର୍ବାଧ୍ୟୁଷିତ ଦ୍ୱୈତବନରେ ଉପଗତ ହେଲେ । ସେଠାରେ ଅଜଗରଭୂତ ନହୁଷଙ୍କ ମୁକ୍ତିପ୍ରଦାନ ପରେ କାମ୍ୟବନକୁ ଯାତ୍ରା କଲେ । କ୍ରମଶଃ କାମ୍ୟବନରେ ସପତ୍ନୀକ ଶ୍ରୀକୃଷ୍ଣ ସନାରଦ-ସନାତନ ମାର୍କଣ୍ଡେୟଙ୍କର ପାଣ୍ଡବସମାବେଶରେ ତତ୍କଥିତ ମାର୍କଣ୍ଡେୟସମସ୍ୟାରେ [୨] ଯଥାକ୍ରମେ ବହୁବିଧ ଧର୍ମାଚରଣିକ କଥା ସହ ଇନ୍ଦ୍ରଦ୍ୟୁମ୍ନ-ଉପାଖ୍ୟାନ, ଧୁନ୍ଧୁମାର ଉପାଖ୍ୟାନ, ପତିବ୍ରତୋପାଖ୍ୟାନ ଏବଂ ସ୍କନ୍ଦୋପାଖ୍ୟାନ ନାମରେ ଉପାଖ୍ୟାନ-ପଞ୍ଚକ ସମ୍ବଦ୍ଧ ଅଛି । ପ୍ରୋକ୍ତ ସମସ୍ୟା ସମାପନର ଅବ୍ୟବହିତ ପରେ ପାତିବ୍ରତ୍ୟ-ସମ୍ବନ୍ଧୀୟ ଦ୍ରୌପଦୀ-ସତ୍ୟଭାମା-ସମ୍ବାଦ-ସନ୍ଦର୍ଭର ଶେଷରେ ଶ୍ରୀକୃଷ୍ଣାଦି ସ୍ୱସ୍ୱ ସ୍ଥାନକୁ ପ୍ରସ୍ଥାନ କରିବା, ପାଣ୍ଡବମାନେ ପୁନଶ୍ଚ ଦ୍ୱୈତବନରେ ପ୍ରବିଷ୍ଟ ହେବା, ଅହଙ୍କାର-ରକ୍ଷୋନିବାସବୃକ୍ଷ-ରୁକ୍ଷବକ୍ଷ କପଟ ଦୁର୍ଯ୍ୟୋଧନଙ୍କର ପ୍ରାକ୍‌ସୂଚିତ ଘୋଷଯାତ୍ରା-ପ୍ରକରଣ, ଭୁବନୈକବୀରାଭିମାନୀ କର୍ଣ୍ଣଙ୍କର ଦିଗ୍‌ବିଜୟପ୍ରକରଣ [୩] ଏବଂ ଯୁଧିଷ୍ଠିରଙ୍କର ମୃଗସ୍ୱପ୍ନ-ବୃତ୍ତାନ୍ତ ଯଥାକ୍ରମେ ଲେଖାଅଛି । ଅନନ୍ତର କତିପୟ ଦିନାପଗମରେ ଧର୍ମଧବଳଚରିତ ଧର୍ମରାଜଙ୍କର ଅନୁମତିମତେ ପାଣ୍ଡବମାନେ ପୁନଶ୍ଚ ତୃଣବିନ୍ଦୁସରସ୍ତଟସ୍ଥ କାମ୍ୟକବନକୁ ପ୍ରତ୍ୟାବୃତ୍ତ ହେଲେ । ସେମାନେ

---

[୧] ୧୪୬ – ୧୫୬ ଅଧ୍ୟାୟମାନଙ୍କରେ ଉକ୍ତ ଅଛି ।

[୨] ୧୮୩ – ୨୩୧ ଅଧ୍ୟାୟମାନ ଦେଖନ୍ତୁ ।

[୩] ଗତ୍ୱୈତମାହେନ୍ୟବସତ୍ ରାଜା ଦୁର୍ଯ୍ୟୋଧନସ୍ତଦା ।
ପ୍ରସ୍ଥିତୋବାହନୈଃ ସର୍ବୈଃ ତତୋଦ୍ୱୈତବନଂ ସରଃ ॥

ବ. ପ. ୨୩୮ ଅ: ୨୯ ଶ୍ଳୋକ ।

ସେତେବେଳେ କାମ୍ୟକସ୍ଥ ଥିବା ସମୟରେ ତତ୍ରାଗତ ବ୍ୟାସଦେବୋକ୍ତ ଦାନ-ଧର୍ମାନୁପ୍ରାଣିତ ମୌଦ୍‌ଗଲଚରିତ ଦୁର୍ଯ୍ୟୋଧନପ୍ରେରିତ ଦୁର୍ବାସା ମୁନିଙ୍କର ପାଣ୍ଡବଙ୍କ ପ୍ରତି ଶ୍ରୀକୃଷ୍ଣଙ୍କର ଅପ୍ରତିମ ଦୟାମହତ୍ତ୍ୱ ଜ୍ଞାନ କରି ସସାଧ୍ୱସ ପଳାୟନ, କୌଣସି ଋଷିବର୍ଯ୍ୟଙ୍କର ଅରଣିରକ୍ଷାର୍ଥେ ମୃଗାନୁଧାବୀ ଯୁଧିଷ୍ଠିରାଦିଙ୍କ ଅନୁପସ୍ଥିତିରେ ଏକାକିନୀ ଦ୍ରୌପଦୀଙ୍କର ନୈଷ୍ଠିକବୃତ୍ତରକ୍ଷକ ଜୟଦ୍ରଥକର୍ତ୍ତୃକ ଅପହରଣ ଓ ତତ୍‌ପରାଭୂତକ୍ରମ ଲିଖିତ ଅଛି । ପୁଣି ସେତେବେଳେ ପାଞ୍ଚାଳୀଙ୍କି ସୈନ୍ଧବ ନେଲା ପରି ମୈଥିଳୀଙ୍କୁ ଭୁବନରାବଣ ରାବଣ ନେଇଥିଲେ ବୋଲି ମାର୍କଣ୍ଡେୟଙ୍କଦ୍ୱାରା ରାମଙ୍କ [୧] ଆଜନ୍ମାଭିଷେକ କଥା ଓ ଦ୍ରୌପଦୀ ପ୍ରତିମ ପତିବ୍ରତା ସାବିତ୍ରୀ ଥିଲେ ବୋଲି ସାବିତ୍ରୀ-ଉପାଖ୍ୟାନ ସମ୍ବଦ୍ଧ ଅଛି । ଉତ୍ତମାଦିରକରଗିରିଦାତକୀର୍ତ୍ତିସନ୍ତତି ପାଣ୍ଡୁସନ୍ତତିମାନଙ୍କର ବନବାସର ଦ୍ୱାଦଶ ବର୍ଷ ପ୍ରାପ୍ତ ଗତ ତ୍ରୟୋଦଶ ପ୍ରାରମ୍ଭ ହେବାରୁ ଇନ୍ଦ୍ରଦେବ କର୍ଣ୍ଣଙ୍କର କୁଣ୍ଡଳକବଚହରଣାର୍ଥ ଉଦ୍ୟତ ହେବା [୨] ଏବଂ ପ୍ରାସଙ୍ଗିକ ସଙ୍ଗତିବଶତଃ କର୍ଣ୍ଣଜନ୍ମ ବୃତ୍ତାନ୍ତ [୩] ମଧ୍ୟ ଆନୁଷଙ୍ଗିକ ରହିଅଛି । ଅତଃପର ସେହି ତ୍ରିଭୁବନ ବିଶ୍ରୁତ ବୀରମାନଙ୍କର ବନବାସର ଅନ୍ତିମକାଳରେ କାମ୍ୟକବନରୁ ପୁନରପି ଦ୍ୱୈତବନ ପ୍ରତ୍ୟାଗମନ; [୪] ବନବାସ ଓ ବନପର୍ବର

---

[୧] ୨୭୨ — ୨୯୧ ଅଧ୍ୟାୟମାନଙ୍କରେ ରାମାୟଣ କଥାମାନ ଲେଖାଅଛି ।
୨୯୨ — ୨୯୮ ଏପରି ଅଧ୍ୟାୟମପ୍ତକରେ ସାବିତ୍ରୀଙ୍କ କଥା ଲେଖାଅଛି ।

[୨] ଦ୍ୱାଦଶେ ସମତିକ୍ରାନ୍ତେ ବର୍ଷେ ପ୍ରାପ୍ତେ ତ୍ରୟୋଦଶେ ।
ପାଣ୍ଡୂନାଂ ହିତକୃଚ୍ଛକ୍ରଃ କର୍ଣ୍ଣଂ ଭିକ୍ଷୁଂ ମୁଦ୍ୟତଃ ॥
ବ. ପ. ୨୯୯ ଅ: ୫ ଶ୍ଳୋକ ।

[୩] ୩୦୨ — ୩୦୮ ଅଧ୍ୟାୟମାନଙ୍କରେ କର୍ଣ୍ଣଜନ୍ମ ବୃତ୍ତାନ୍ତ ପାଇବେ ।

[୪] ପ୍ରତ୍ୟାଜଗ୍ମୁଃ ସରଥାଃ ସାନୁଯାତ୍ରାଃ ।
ସର୍ବୈଃ ସାର୍ଦ୍ଧଂ ସ୍ୱଚଗୌରିଗବୈଶ୍ଚ ॥
ତତଃ ପୁଣ୍ୟଂ ଦ୍ୱୈତବନଂ ନୃବୀରାଃ ।
ନିସ୍ତୀର୍ଯ୍ୟୋଗ୍ରଂ ବନବାସଂ ସମଗ୍ରଂ ॥ ୩୦୯ ଅ: ୪୦ ଶ୍ଳୋକ ।

ଏବଂ ହୃତାୟାଂ କୃଷ୍ଣାୟାଂ ପ୍ରାପ୍ୟକ୍ଳେଶମନୁତ୍ତମଂ,
ବିହାୟ କାମ୍ୟକଂ ରାଜା ସହ ଭ୍ରାତୃଭିରଚ୍ୟୁତ ।
ପୁନର୍ଦ୍ୱୈତବନଂ ଗମ୍ୟଂ ଆଜଗାମ ଯୁଧିଷ୍ଠିରଃ ॥ ୩୧୦ ଅ: ୨ ଶ୍ଳୋକ ।

ସର୍ବଶେଷରେ ଧର୍ମବକବୃତ୍ତାନ୍ତ ଏବଂ ସେହି ବିପଶ୍ଚିତ୍ତମ ଅପଶ୍ଚିମ ଗତମତ ମହାତ୍ମନ ପାଣ୍ଡବମାନଙ୍କର ପଶ୍ଚିମହାତ୍ମନ-ସ୍ମୁଲଙ୍ଘନାଥ ସୁବର୍ଣ୍ଣର ଲେଖାଅଛି ।

ଶ୍ରୀ ସାରଳାଦାସ କବି ଏହି ସବୁ ସନ୍ଦର୍ଭମାନଙ୍କ ମଧ୍ୟରୁ ସମଧିକ ତ୍ୟାଗ କରି ଯାହା କିଛି ଅଂଶତଃ କିମ୍ବା ପୂର୍ଣ୍ଣତଃ ଲେଖି ଅଛନ୍ତି, ସେ ସବୁ ଅନେକସ୍ଥ ଅନ୍ୟୋନ୍ୟସଂଗତିସଂଲଗ୍ନତାବିହୀନ ହୋଇ ଅଯଥାସ୍ଥାନବିନ୍ୟସ୍ତ ହୋଇଯାଇ ଅଛି । ଏହି କବି ମହୋଦୟ ପ୍ରଥମତଃ ପ୍ରଗାଢ଼ ଶୁଶ୍ରୂଷାବଳରେ ବଳୀୟାନ୍ ହୋଇ ସାଗରୋପମ ଅତି ଗହନ ମହାଭାରତର ଲେଖାରେ ସାହସପୁରଃସର ସଚେଷ୍ଟ ହୋଇ ଉଠିଲେ ସତ୍ୟ, କିନ୍ତୁ ଏହାଙ୍କର ଶୁଶ୍ରୂଷାବଳାନୁପ୍ରାଣିତ ସ୍ମୃତି ସର୍ବତ୍ର ଧାରାବାହିକ ଓ ସୁଶୃଙ୍ଖଳରୂପେ ଅକ୍ଷୁର୍ଣ୍ଣା ଓ ଉଜ୍ଜ୍ୱଳା ରହିପାରି ନାହିଁ । ପୁଣି ତାହାଙ୍କ ଗଭୀର ସ୍ମୃତିର ସମୁନ୍ମୀଳନ ଓ ସମୁଜ୍ଜୃମ୍ଭଣ ସମସ୍ତ ସମୟରେ ଯଥା ସ୍ଥାନରେ ଯଥା ପ୍ରକାରେ ହୋଇପାରି ନାହିଁ । ସେ ମହାତ୍ମା ଅନନ୍ୟସାମାନ୍ୟ ଶୁଶ୍ରୂଷାବଳରୁ ଯାହା ଆତ୍ମୀୟ ଅବ୍ୟାହତ ସ୍ମୃତିକୋଷରେ ରଖିଥିଲେ, ସେଥି ମଧ୍ୟରୁ ଯାହା ଯେତେବେଳେ ସ୍ମରଣପଥାରୂଢ଼ ହେଲା, ତାହା ତେତେବେଳେ ଲେଖିଗଲେ । ଅତଏବ ଅନେକସ୍ଥ ଚରିତମାନଙ୍କର ଦୁଃସ୍ଥାନଶୋଚ୍ୟ ଦଶା ଘଟିଲା । ବନପର୍ବରେ ମୂଳରେ ଉକ୍ତ ପ୍ରାକ୍‌ପ୍ରଦର୍ଶିତ ପ୍ରକରଣମାନଙ୍କରୁ ସର୍ପରୂପୀ ନହୁଷଙ୍କ ମୁକ୍ତିଚରିତ, ଲୋମଶମୁନିସମାଗମ, ଧର୍ମବକ ବୃତ୍ତାନ୍ତ, ଦ୍ରୌପଦୀହରଣ ଚରିତର ଅଂଶଭୂତ ଚନ୍ଦ୍ରାଶତଗ୍ରନ୍ଥିକହୃଦୟ ପରାଭବ-ଲଜ୍ଜାକଳଙ୍କିତମୁଖ ଜୟଦ୍ରଥଙ୍କ ତପସ୍ୟା ଓ ବରପ୍ରାପ୍ତି ବିଷୟ, ମାର୍କଣ୍ଡେୟ ସମାଗମ, ମୁଦ୍‌ଗଲପଣ୍ଡାଙ୍କ ଚରିତ, ସଗରପୁତ୍ରମାନଙ୍କ କଥା ଓ ଗଙ୍ଗାବତରଣାଦି ବୃତ୍ତାନ୍ତ, ଋଷ୍ୟଶୃଙ୍ଗ ଜନ୍ମ ଓ ରାମଜନ୍ମାଦି ଚରିତ, ଦ୍ରୌପଦୀ-ସତ୍ୟଭାମା-ସମ୍ବାଦ, ନଳୋପାଖ୍ୟାନ ଏବଂ ଶ୍ୟେନ-କପୋତୀୟ ବୃତ୍ତାନ୍ତମାନ [୧] କେବଳ ମୂଳ ଅପେକ୍ଷା କିଞ୍ଚିତ୍ ଭିନ୍ନ ପ୍ରକାର ହେଲେ ସୁଦ୍ଧା ସ୍ୱକୀୟ ସ୍ମରଣ ସମୟାନୁକ୍ରମରେ ଲେଖି ଅଛନ୍ତି । ସାରଳାଦାସ କବି କେବଳ ଏ ସ୍ଥଳରେ କାହିଁକି, ସର୍ବତ୍ର ମୂଳଗତ ଧର୍ମଶାସ୍ତ୍ରବିଷୟକ ଓ ତତ୍ତ୍ୱବିଷୟକ ଯାବତୀୟ ସମ୍ବାଦ ଓ ଉପଦେଶଗୁଡ଼ିକ ତ୍ୟାଗ କରିଅଛନ୍ତି କହିଲେ ଚଳେ । ପରନ୍ତୁ ସେ ସବୁ ଛଡ଼ା ଚରିତପ୍ରଖ୍ୟାପନପ୍ରବୀଣ ଥାଇ ମଧ୍ୟ ଏଠାରେ ସୁକନ୍ୟୋପା-ଖ୍ୟାନ, ମାନ୍ଧାତୃ ଉପାଖ୍ୟାନ, ଯବକ୍ରୀତୋପାଖ୍ୟାନ ପ୍ରଭୃତି ବଂଶତତ୍ତ୍ୱାଧିକ ଚରିତକ

[୧] ଶ୍ୟେନ-କପୋତୀୟ ବୃତ୍ତାନ୍ତ ଛାପା ପୁସ୍ତକରେ ଏ ସ୍ଥଳରେ ଦେଖାଯାଏ ନାହିଁ; ମାତ୍ର ତାଳପତ୍ର ପୁସ୍ତକରେ ଏହିଠାରେ ଲେଖାଅଛି ।

ଘଟନାମାନଙ୍କୁ ସୁଦ୍ଧା ତ୍ୟାଗ କରିଦେଇ ଅଛନ୍ତି । ବର୍ଣ୍ଣନାତତ୍ତ୍ୱପ୍ରିୟ ସାରଳାଦାସ କବି ମୂଳର ଏତେଗୁଡ଼ିଏ ବିଷୟ ତ୍ୟାଗ କଲେହେଁ; ପର୍ବଟି ଯେପରି ବିସ୍ତୃତ ହେବ ତାହାର ଯେ କୌଣସି ପ୍ରକାର ଉପାୟ କରିବାକୁ ମଧ୍ୟ ନ କରି ଛାଡ଼ି ନାହାନ୍ତି । ତତ୍କାଳର ପୁରାଣାଦିରେ ସମ୍ମାନିତ ତଥାଚ କାଳ୍ପନିକ ନାମରେ ଅଙ୍କିତ ଚରିତ-ଉପାଖ୍ୟାନମାନଙ୍କୁ ଏଥିରେ ପ୍ରକ୍ଷିପ୍ତ କରି ପର୍ବଟିକୁ ବଢ଼ାଇ ଦେଇ ଅଛନ୍ତି । ଯଥା—

(୧) ପାଣ୍ଡବମାନେ କୌତୁକବନରେ ଥିବା ସମୟରେ ହରିତାଳିକା ଚତୁର୍ଥୀର ଚନ୍ଦ୍ରଦର୍ଶନରେ ଲୋକେ ଇନ୍ଦ୍ରକୃତ ବ୍ରହ୍ମହତ୍ୟା ପାପରେ ଲିପ୍ତହେବା ବୃତ୍ତାନ୍ତ ।

(୨) ବ୍ରାହ୍ମଣବିଶେଷବେଶଧାରୀ ଶ୍ରୀକୃଷ୍ଣ କର୍ଣ୍ଣପୁତ୍ରଙ୍କର ମାଂସପ୍ରିୟ ହୋଇ ତାହାଙ୍କୁ ପୁନରୁଜ୍ଜୀବିତ କରିବାର ବୃତ୍ତାନ୍ତ ।

(୩) ପାଣ୍ଡବମାନଙ୍କର ଦ୍ୱୈତବନରେ ଅବସ୍ଥିତି ସମୟରେ ଇନ୍ଦ୍ରଦେବ ନିବାତକବଚର ପୁତ୍ର ହିରଣ୍ୟକବଚର ବଧାର୍ଥ ଅର୍ଜୁନଙ୍କୁ ନିଶ୍ଚୟବାର ପୁନଶ୍ଚ ସ୍ୱର୍ଗକୁ ନେବାରୁ ଧୂର୍ତ୍ତବ୍ରାହ୍ମଣବେଶ ହିରଣ୍ୟକବଚ ମାୟାରେ ଯୁଧିଷ୍ଠିରଙ୍କୁ ସ୍ଥାନାନ୍ତରିତ କରି ଅର୍ଜୁନ କର୍ତ୍ତୃକ ନିହତ ହେବା । [୧]

(୪) ଗୋଦାବରୀ ତୀର୍ଥ ପ୍ରସ୍ଥାନ ପ୍ରସଙ୍ଗରେ ନାଗକନ୍ୟା ବେଲାବତୀ ଓ ଭୀମଙ୍କ ପୁତ୍ର ବଳିବେଲାଳଙ୍କର ବିଜୟ ବୃତ୍ତାନ୍ତ । [୨]

(୫) ପାଣ୍ଡବମାନେ ଗୌତମାଶ୍ରମରେ ଥିବା ସମୟରେ ଅହଲ୍ୟା ଓ ଅଞ୍ଜନାଙ୍କର ଶାଖାପ୍ରଶାଖାଯୁକ୍ତ ବିସ୍ତୃତ ବ୍ୟଞ୍ଜକ ବୃତ୍ତାନ୍ତ । [୩]

---

[୧] ସାରଳାଦାସ କବି ମୂଳଗ୍ରନ୍ଥୋକ୍ତ ଜଟାସୁର ଚରିତ୍ରଘଟନାମାନଙ୍କୁ ଠିକ୍ ସମ୍ପୂର୍ଣ୍ଣତଃ ମନସ୍ଥ କରି ନ ପାରି ବୋଧହୁଏ ତଦନୁକରଣରେ ଯୁଧିଷ୍ଠିରଙ୍କର ସ୍ଥାନାନ୍ତର ସମ୍ପୃକ୍ତ ଏହି ବିଷୟଟି ଅନ୍ୟଥା ଏହିଠାରେ ଲଗାଇ ଅଛନ୍ତି । ପରନ୍ତୁ ମୂଳରେ ସ୍ଥାନାନ୍ତରେ ହିରଣ୍ୟ-କବଚର ନାମ ମଧ୍ୟ ଦେଖାଯାଏ ।

[୨] ବ. ପ. ସ୍ତ. ପ୍ର. ୧୨୭—୧୪୧ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

[୩] ୧୪୧—୧୫୨ ପୃଷ୍ଠା ପର୍ଯ୍ୟନ୍ତ ଲେଖାଅଛି ।

(୬) ଶ୍ରୀଗିରି ପର୍ବତରେ ଥିବା ସମୟରେ ମଲ୍ଲିକାର୍ଜ୍ଜୁନ ବୃତ୍ତାନ୍ତର ଆମ୍ରେଡ଼ନ । [୧]

(୭) ମନୋହରବନରେ ଥିବା ସମୟରେ କାଶୀକ୍ଷେତ୍ର ବୃତ୍ତାନ୍ତ ।

(୮) କାଳଚନଗରାଧିପତି କଳୁମ୍ବ ଦୈତ୍ୟର ତ୍ରିପୁରବାସୀ ଦାନବଗଣଙ୍କୁ ଅର୍ଜ୍ଜୁନ ସ୍ୱର୍ଗରେ ବିବାଦ କରିବାର ଚରିତ ।

(୯) ଅକାଳରେ ସତ୍ୟଆମ୍ରର କଥା । [୨]

(୧୦) ଗୋକର୍ଣ୍ଣ ତୀର୍ଥରେ ଥିବା ସମୟରେ ଜାମ୍ବବତୀଙ୍କ ପୁତ୍ରୀ ସରଳା ଦେବୀଙ୍କ ହରଣ ବୃତ୍ତାନ୍ତ । [୩]

(୧୧) ଏକାମ୍ରବନରେ ଥିବା ସମୟରେ ଉଦାସୀ ଆଶ୍ରମ ବେଶରେ (ଗୋପାଳୁଣୀ ବେଶରେ) ଅସୁରଦ୍ୱୟଙ୍କୁ ଦମନ କରିବା ଚରିତ । [୪]

(୧୨) ସ୍ୱବଣର ପୂର୍ବାପୂ ବୃତ୍ତାନ୍ତର ବିବରଣ । [୫]

(୧୩) ଅର୍କଦୈତ୍ୟ ଓ ଚନ୍ଦ୍ରଭାଗା ମହାତ୍ମ୍ୟ । [୬]

---

[୧] ଇତିପୂର୍ବେ ସଭାପର୍ବରେ ମଲ୍ଲିକାର୍ଜ୍ଜୁନଙ୍କ ବିଷୟରେ ଯାହା ଯାହା କହିଥିଲେ, ସେହିଗୁଡ଼ିକୁ କେବଳ ଏଠାରେ ଆମ୍ରେଡ଼ିତ କରି ଅଛନ୍ତି ।

[୨] ୨୦୧ – ୨୦୮ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

ଏହି ବୃତ୍ତାନ୍ତଟି କଳ୍ପିତ ବୋଧହୁଏ ସତ୍ୟ, ମାତ୍ର ଏହି ଦୃଶ୍ୟ ସତ୍ୟ ଆମ୍ରର କଥା କାଶୀରାମଦାସ ମହାଶୟ ମଧ୍ୟ ସ୍ୱକୃତ ବଙ୍ଗୀୟ ମହାଭାରତର ଏକ ସ୍ଥାନରେ କେବଳ ଲେଖି ଅଛନ୍ତି । ସାରଳାଦାସଙ୍କ ମତରେ ସତ୍ୟଆମ୍ର ବୀଜାରୋପଣରେ କ୍ରମଶଃ ଫଳବାନ ହୋଇଅଛି । କାଶୀରାମଦାସଙ୍କ ସତ୍ୟଆମ୍ର ଶୂନ୍ୟେ ଶୂନ୍ୟେ ଶାଖାରେ ଲଗ୍ନ ହୋଇଅଛି— ଏତିକି ମାତ୍ର ପ୍ରଭେଦ । ବଙ୍ଗଭାରତ ଭ. ପ. ୩୬୪ – ୩୬୬ ପୃଷ୍ଠାମାନ ଦେଖନ୍ତୁ । ଏଥିରୁ ଅନୁମିତ ହୁଏ ଯେ, ଏହା ଅମୂଳକ ହେଲେ ସୁଦ୍ଧା ଜନଶ୍ରୁତି ପ୍ରସିଦ୍ଧ ଥିବ ।

[୩] ୨୦୯ – ୨୩୭ ପୃଷ୍ଠାରେ ସରଳା ହରଣ ଦେଖନ୍ତୁ ।

[୪] ୨୩୮ – ୨୪୧ ପୃଷ୍ଠାମାନଙ୍କରେ ଭଗବାନଙ୍କର ଗୋପାଳୁଣୀ ବେଶ ଚେଷ୍ଟା ଦେଖନ୍ତୁ ।

[୫] ୨୪୧ – ୨୪୪ ପୃଷ୍ଠାମାନ ଦେଖନ୍ତୁ ।

[୬] ୨୪୪ – ୨୪୬ ପୃଷ୍ଠାମାନ ଦେଖନ୍ତୁ ।

(୧୪) ପାଣ୍ଡବମାନଙ୍କର ରାମେଶ୍ୱର ତୀର୍ଥ ସମୀପସ୍ଥାନରେ ବିଭୀଷଣ ରାମଙ୍କ ଶରଣ ନେବା ବୃତ୍ତାନ୍ତ ।

(୧୫) ପାଣ୍ଡବମାନେ ଯମନିକ ତୀର୍ଥରେ ଥିବା ସମୟରେ ଜରାଶବର ପ୍ରଭୃତିଙ୍କ ବୃତ୍ତାନ୍ତ । [୧]

(୧୬) ଇନ୍ଦ୍ରଦ୍ୟୁମ୍ନ ରାଜା ଶ୍ରୀ ଜଗନ୍ନାଥଙ୍କ ମୂର୍ତ୍ତି କରାଇବା ପ୍ରଭୃତି କଥା । [୨]

---

[୧] ସାରଳାଦାସ ମହାଭାରତରେ ଅନେକ ସ୍ଥଳରେ ଶ୍ରୀ ପୁରୁଷୋତ୍ତମକ୍ଷେତ୍ରକୁ ଯମନିକ ତୀର୍ଥ ବୋଲି ଲେଖି ଅଛନ୍ତି ।

[୨] ମୂଳରେ ସମୁଦ୍ଧୃତ ଇନ୍ଦ୍ରଦ୍ୟୁମ୍ନଙ୍କ ଚରିତ ସଂପୂର୍ଣ୍ଣ ଭିନ୍ନପ୍ରକାର । ଯଥା— ପାଣ୍ଡବମାନେ ମହର୍ଷି ମାର୍କଣ୍ଡେୟଙ୍କୁ "ଆପଣଙ୍କ ଅପେକ୍ଷା ଚିରଜୀବୀତର କେହି ଅଛନ୍ତି କି?" ଏହା ପଚାରିବାରୁ ସେ କହିଲେ କି ସ୍ୱର୍ଗବିଚ୍ୟୁତ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ଅଛନ୍ତି । ତା ପରେ ମାର୍କଣ୍ଡେୟ ଓ ଇନ୍ଦ୍ରଦ୍ୟୁମ୍ନଙ୍କ ଆଳାପରେ "ଆପଣଙ୍କ ଅପେକ୍ଷା ଚିରଜୀବୀ କିଏ" ବୋଲି ଇନ୍ଦ୍ରଦ୍ୟୁମ୍ନ ପ୍ରଶ୍ନ କଲାରୁ କ୍ରମଶଃ ପ୍ରାକାରକର୍ଣ୍ଣ ଉଲୁକ, ଇନ୍ଦ୍ରଦ୍ୟୁମ୍ନ-ପୁରଃସ୍ଥ ନାଡ଼ିଜଂଘ ନାମକ ବକ ଓ ତତ୍‌ସରଃସ୍ଥ ଅକୂପାର ନାମକ କଚ୍ଛପର କଥା ଲେଖାଅଛି । ସେହି ସ୍ୱଚ୍ଛାତ୍ମା କଚ୍ଛପଟି ଇନ୍ଦ୍ରଦ୍ୟୁମ୍ନଙ୍କ ସମ୍ବନ୍ଧରେ କହିଲେ କି—

କିମହମେନଂ ନ ପ୍ରତ୍ୟଭିଜ୍ଞାସ୍ୟାମୀହ ହ୍ୟନେନ ସହସ୍ରକୃତ୍ୱୋଽଗ୍ନିଚିତ୍ୟୁପା ଆହିତାଃ । ସରଶ୍ଚୈତଦସ୍ୟ

ଦକ୍ଷିଣାର୍ଥଂ ଦତ୍ତାଭିର୍ଗୋଭିରତି କ୍ରମଣାଦ୍ଭିଃ କୃତଂ ।

ଅତ୍ର ଚୈବଂ ପ୍ରତିବସାମିତି । ବ. ପ. ୧୯୮ ଅ:

ଏହି ଇନ୍ଦ୍ରଦ୍ୟୁମ୍ନଙ୍କୁ ମୁଁ କାହିଁକି ଜାଣି ପାରିବି ନାହିଁ? ଏ ତ ଏହିଠାରେ ସହସ୍ର ସହସ୍ର ଯାଗ କରି ଯୂପମାନ ପ୍ରତିଷ୍ଠିତ କରି ଅଛନ୍ତି । ଏହି ସରୋବରଟି ତ ଏହି ମହାତ୍ମାଙ୍କର ଦାନ ଜଳରେ ସମୁତ୍ପନ୍ନ, ତଦବଧି ମୁଁ ଏଠାରେ ନିବାସ କରୁଅଛି । ଏମନ୍ତ ସମୟରେ ଦେବଲୋକରୁ ରଥ ଉପଗତ ହେଲା । ତହିଁରେ ଇନ୍ଦ୍ରଦ୍ୟୁମ୍ନ ସ୍ୱର୍ଗକୁ ପ୍ରସ୍ଥାନ କଲେ ।

(୧୭) ପାଣ୍ଡବମାନେ ଯେତେବେଳେ ରୈବତପର୍ବତସ୍ଥ ଥିଲେ, ସେତେବେଳେ ରେବନ୍ତଙ୍କ ବୃତ୍ତାନ୍ତ । [୧]

(୧୮) ଜଟାସୁରଭଗନୟା ଜାଳନୀକ ଭୀମସେନ ଗାନ୍ଧର୍ବ ବିଧାନମତେ ଗ୍ରହଣ କରି ଶୃଙ୍ଗାରରେ ନିରତ କରିବା ।

(୧୯) ରେବାନଦୀ ତୀରରେ ରେବାଦୈତ୍ୟ ସହ ନକୁଳଙ୍କ ସୌହାର୍ଦ୍ଦସ୍ଥାନ ପ୍ରତିଷ୍ଠା । [୨]

(୨୦) ସପ୍ତାମଣ୍ଡମୀ ସମ୍ବନ୍ଧରେ ମାର୍କଣ୍ଡେୟୋକ୍ତ କୌଶିକନାମକ ବ୍ରାହ୍ମଣଙ୍କର ଉପାଖ୍ୟାନ । [୩]

(୨୧) ଅସ୍ତନବନରେ ଅଜ୍ଞାତବାସାର୍ଥ ମନ୍ତ୍ରଣାପ୍ରସ୍ତାବରେ ବର୍ଣ୍ଣିତୋକ୍ତ ମେରୁଶୃଙ୍ଗ ଦୈତ୍ୟର କନ୍ୟା ତ୍ରିପୁରମୋହିନୀଙ୍କ ସହିତ ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନଙ୍କର ବିବାହବିଧି ଏବଂ ଅର୍ଜୁନଙ୍କଦ୍ୱାରା ମେରୁଶୃଙ୍ଗ ନିହତ ହେବା ଚରିତ ।

(୨୨) ପୂର୍ବକାଳୀନ ଶ୍ୱେତରାଜା ବଟବୃକ୍ଷରୂପେ ଜନ୍ମିଥିବା ପ୍ରଭୃତି କଥା ।

(୨୩) ପାଣ୍ଡବମାନେ ସର୍ବସାଧାରଣଙ୍କ ଚକ୍ଷୁରେ ଅଜ୍ଞାତ ରହନ୍ତୁ ବୋଲି ଶ୍ରୀକୃଷ୍ଣ ଜଳଘୋଷ ମନ୍ତ୍ର ପ୍ରଦାନ କରିବା । [୪]

---

ତଥାପି ଏ ସବୁ ଦେଖି ଅନୁମାନ ହୁଏ, ଉତ୍କଳର ପ୍ରାଚୀନ ପୁରାଣୈକବେତ୍ତା ମତିମାନ୍ ସାରଳାଦାସ ମହୋଦୟ ଏହାର ବିସ୍ତୃତ ଚରିତମାନ ପୁରାଣେତର-ମାନଙ୍କରୁ ପଢ଼ି କିମ୍ବା ଶୁଣି ତାହାର ଅନୁକରଣରେ ସ୍ୱଭାରତରେ ଇନ୍ଦ୍ରଦ୍ୟୁମ୍ନଙ୍କ ଚରିତକୁ ଲେଖିଥିବେ ।

[୧] ୨୯୯ – ୩୦୫ ପୃଷ୍ଠାମାନଙ୍କରେ ଉକ୍ତ ଅଛି ।

[୨] ୩୧୦ – ୩୧୩ ପୃଷ୍ଠା ।

[୩] ୩୧୭ – ୩୨୦ ପୃଷ୍ଠା ।

[୪] ଜଳଘୋଷ ବୋଲି ଏକ ମନ୍ତ୍ରର ଗୋଟିଏ ।
ପାଣ୍ଡବଙ୍କୁ ଶିଖାଇଲେ ପ୍ରସନ୍ନ ହୃଦୟେ ॥
ଏହେ ଉପାସନେ ତୁମ୍ଭେ ଚାରିବ ସବୁନ୍ତ ।
କେହି ଜାଣି ନ ପାରିବେ ତୁମ୍ଭ ବର୍ଣ୍ଣ ମୂର୍ତ୍ତି ॥
ପ୍ରତ୍ୟକ୍ଷେ ପରୀକ୍ଷା କରାଇଲେ ଜନାର୍ଦ୍ଦନ ।
ଯୁଧିଷ୍ଠିର ଦେଖିଲେ ଯେ ପାଣ୍ଡୁର ବରଣ ॥

(୨୪) ଅର୍ଜୁନଙ୍କ ଖଡ଼ ରେଖାରେ ଦୁଇଗୋଟି ମହାନ୍ ଶିଂଶପା ବୃକ୍ଷ ଜନ୍ମିବା ପ୍ରଭୃତି କଥା ।

ଏହି ତାବତ୍ ବିଷୟଗୁଡ଼ିକ ଶ୍ରୀମାନ୍ ସାରଳାଦାସ ମହୋଦୟଙ୍କର ବହୁ ପୁରାଣଶ୍ରୁତିଜନିତ ବଳରୁ ହେଉ କିମ୍ବା କେତେକ ତଦୀୟ ବିସ୍ମୟଜନକ ଅସାଧାରଣ କଳ୍ପନାନିପୁଣ ବୁଦ୍ଧିମତାର ବଳରୁ ହେଉ, ଅନ୍ୟାନ୍ୟ ବୈଷୟିକଫଳଗ୍ରତାର ସଦଭାବରେ ହେଉ କିମ୍ବା ଅସଦଭାବରେ ହେଉ, ଯେ କୌଣସି ପ୍ରକାରେ ସମ୍ଭାବିତ କାରଣ ସହ ଉକ୍ତ ହୋଇଅଛି । ଏଥିରେ ଶ୍ରୋତୃବର୍ଗଙ୍କର ସମ୍ପୂର୍ଣ୍ଣ ଆସ୍ଥା ଅନାସ୍ଥା ସମ୍ବନ୍ଧରେ ଅଧିକ ବା କୁହାଯାଇ ପାରେ ? ଯାହାର ହୃଦୟ ବିଶୁଦ୍ଧ ଜ୍ଞାନାଲୋକରେ ଆଲୋକିତ, ସେ କାହାର ଭ୍ରାନ୍ତଧାରଣାରେ ପଡ଼ିନାହିଁ, ସତ୍ୟ ଅସତ୍ୟାବୃତ ହେଲେ ସୁଦ୍ଧା ଅବଗତ ହୋଇପାରେ, ତଦୀୟ ହୃଦୟ ଯାହାକୁ ମାନେ, ତହିଁରେ ସେ ଆସ୍ଥାବାନ୍ ହୁଏ, ଅନ୍ୟର କଥାରେ ଭୁଲେ ନାହିଁ । ସର୍ବଥା ସର୍ବଦା ପ୍ରକୃତତଃ ହୃଦୟର ବିଶ୍ୱାସହିଁ ମୂଳ । "ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ ।" ଅଥଚ ମୂଢ଼ର ବିଶ୍ୱାସ ଅଭିଜ୍ଞର ବିଶ୍ୱାସର ତୁଲ୍ୟ ଫଳଦାୟକ । ଏହି ମାତର ପକ୍ଷପାତି ହେଲେ, ଏ ସମ୍ବନ୍ଧରେ ବିଶେଷ କହିବା ଅନାବଶ୍ୟକ । ପରନ୍ତୁ ଏତିକ କହିଲେ ଯଥେଷ୍ଟ ହେବ ଯେ ଯେଉଁମାନେ ଭାରତ ପାଠରେ କେବଳ

---

ଭୀମସେନ ରୂପ ଯେ ଗଉରବର୍ଣ୍ଣ ଦିଶି ।
କିଂଶୁକ ପରାୟେ ତାର ଶରୀର ପ୍ରକାଶି ॥
ଅର୍ଜୁନର ଶରୀର ନୀଳ ଉତ୍ପଳର କାନ୍ତି ।
ନବାଢ଼ ସୂର୍ଯ୍ୟ ଜାଣି ଦିଶିଲା ତାର ଜ୍ୟୋତି ॥
ନକୁଳ ଶରୀର ଯେ ଶୁଦ୍ଧ ସ୍ଫଟିକର ବର୍ଣ୍ଣ ।
ଉସାଣପର ଜାଣି ମାଦ୍ରୀର ନନ୍ଦନ ॥
ସହଦେବର ଶରୀର ସୁରଭିର ଭଳି ।
କନକରୁଚିର ଶରୀର ତାହାର ଝଳି ॥
ଝଳିଲା ସୁବର୍ଣ୍ଣ ପ୍ରାୟେ ଦ୍ରୌପଦୀର କାୟେ ।
ଶରୀର ବିକାଶିଲା ଗଉରବର୍ଣ୍ଣ ପ୍ରାୟେ ॥
ଦେଖ ହୋ ମହାତ୍ମା ନାରାୟଣ ମନ୍ତ ଗୋଟି ।
ଏକା ମସ୍ତକ ଦଶୁର ବର୍ଣ୍ଣମାନ ଫାଟି ॥

ବ. ପ. ୩୪୭ ପୃଷ୍ଠା

ଶ୍ରୀମଦ୍ ବ୍ୟାସଦେବଙ୍କ ବଚନାନୁଗାମୀ, ସେମାନେ ଏ ସବୁରୁ ଅନେକାଂଶ ଅସତ୍ୟ-ଭୂତ ମନେ କରି ପାରନ୍ତି, କିନ୍ତୁ ଯେଉଁମାନଙ୍କର ମୂଢ଼ ହେତୁ ବା ଜ୍ଞାନଗୁଡ଼ ହେତୁ ବିଶ୍ୱାସ ପ୍ରଗାଢ଼ ହେଲା, ସେମାନେ ଅବଶ୍ୟ ଏଥିରେ ଅସ୍ଥାପର ହେବେ, ସନ୍ଦେହ ନାହିଁ । କାରଣ ଏହା ଅମୂଳକ ହେଲେ ସୁଦ୍ଧା ମିଥ୍ୟାମୂଳକ ନୁହେ, ପୁରାଣେତିହାସାନ୍ତରର ଅନୁକରଣରେ ଲିଖିତ ମାତ୍ର । [୧]

ଅଭିଜ୍ଞ ପାଠକେ ! ଏହି ପ୍ରକରଣର ପରିଶେଷରେ ଏହା ବ୍ୟକ୍ତ କରି ରଖିବା ଉଚିତ ଯେ ଶ୍ରୀ ସାରଳାଦାସ ମହୋଦୟ ପ୍ରମାଦବଶତଃ ଅର୍ଜୁନି ଅଭିମନ୍ୟୁଙ୍କ ଜନ୍ମ ପରି ଯୌଧିଷ୍ଠିରିବ ଦ୍ରୌପଦେୟମାନଙ୍କ ଜନ୍ମ ମଧ୍ୟ ନିତାନ୍ତ ଅସଙ୍ଗତ କରି ଲେଖି ପକାଇ ଅଛନ୍ତି । ସେ କହନ୍ତି କି ବନବାସୀ ପାଣ୍ଡବମାନେ ଗଣ୍ଡକୀ ତୀରସ୍ଥ ବନରେ ଅବସ୍ଥିତ ଥିବା ସମୟରେ ଦ୍ରୌପଦୀ ଦେବୀ ବିଶ୍ୱଦେବା-ମାନଙ୍କ ଅଂଶରେ ପଞ୍ଚପାଣ୍ଡୁ ପୁତ୍ରମାନଙ୍କ ଔରସରେ ଗର୍ଭବତୀ ହେଲେ । କ୍ରମଶଃ ସେମାନେ ଗୋମତୀ ତୀର୍ଥସ୍ଥ ହେବା ସମୟରେ ଅନ୍ତଃସତ୍ତ୍ୱା ଦ୍ରୌପଦୀଙ୍କର ବୈଜନନ ମାସ ହେଲା । [୨] ତତ୍ପରେ ସେ ଯୁଧିଷ୍ଠିରାଦିଙ୍କ ଔରସରେ ଯଥାକ୍ରମେ ଜୟଦେବ, ବଳସେନ, ପରମାନନ୍ଦ, ପ୍ରାକର୍ମିକେଶରି ଓ ସୁନସେନ ନାମକ ପଞ୍ଚପୁତ୍ର ପ୍ରସବ କଲେ । ତଦାର୍ନାଂ ପାଣ୍ଡବେୟ-ମାତାମହ ତୀର୍ଥଯାତ୍ରାର୍ଥ ସମାଗତ ଦ୍ରୁପଦରାଜ ତତ୍ରତ୍ୟ ଥିବାରୁ ଦୌହିତ୍ରମାନଙ୍କୁ ସ୍ୱଗୃହକୁ ନେଇଗଲେ । ଇତ୍ୟାଦି ।

ସାରଳାଦାସ କବି ଯେଉଁ ସମୟରେ ପାଣ୍ଡବେୟମାନଙ୍କର ପ୍ରମାଦମୂଳକ ଜନ୍ମକାଳ କଳ୍ପନା କରି ଅଛନ୍ତି, ସେମାନେ ସେତେବେଳେ ସମ୍ବର୍ଦ୍ଧିତଶୈଶବ ଓ ସଂପ୍ରାପ୍ତତାରୁଣ୍ୟ ଥିଲେ । ଅତଏବ ଅର୍ଜୁନଙ୍କ ତପସ୍ୟାର୍ଥ ପ୍ରସ୍ଥାନ ସମୟରେ ଅର୍ଥାତ୍ ବନବାସର ପ୍ରାରମ୍ଭରେ ପ୍ରସ୍ତାବବଶତଃ ମୂଳ ଗ୍ରନ୍ଥରେ ଉକ୍ତ ଅଛି କି ଇତଃପୂର୍ବରୁ ପାଣ୍ଡବେୟମାନେ ମହାରଥ ହୋଇ ଦେଦୀପ୍ୟମାନ ଅଛନ୍ତି । ଯଥା—

---

[୧] ଶ୍ରୀ କାଶୀରାମ ଦାସ ମହାଶୟ ମଧ୍ୟ ସ୍ୱକୃତ ବଙ୍ଗଭାରତରେ ଏତାଦୃଶ ବହୁ ବିସ୍ମୃତ ଶ୍ରୀକୃଷ୍ଣରଜତରଥ ପ୍ରଭୃତି କେତେଗୁଡ଼ାଏ କଥାକୁ ପୁରାଣାନ୍ତକରଣରେ ବନପର୍ବରେ ଲେଖି ଅଛନ୍ତି । ଏ ସବୁ ସୁଦ୍ଧା ଅମୂଳକ ହେଲେହେଁ ଅଳୀକ ନୁହେ ।

[୨] ଗଣ୍ଡକୀ ତୀର୍ଥେ ହେଲେ ବହୁତ ମହର୍ଷି ।
ଦ୍ରୌପଦୀ ଦଶମାସ ହେଲେ ଗର୍ଭବାସୀ ॥
ଛାପା ପୁସ୍ତକରେ ୧୫୧—୧୫୨ ପୃଷ୍ଠା ଦେଖନ୍ତୁ ।

ପ୍ରତିବିନ୍ଧ୍ୟୋ ଯୁଧିଷ୍ଠିରାତ୍ ସୁତସୋମୋ ବୃକୋଦରାତ୍ ।
ଅର୍ଜୁନାତ୍ ଶ୍ରୁତକୀର୍ତ୍ତିସ୍ତୁ ଶତାନୀକସ୍ତୁ ନାକୁଳିଃ ॥
କନିଷ୍ଠାତ୍ ଶ୍ରୁତକର୍ମା ଚ ସର୍ବେ ସତ୍ୟପରାକ୍ରମାଃ ।
ପ୍ରଦ୍ୟୁମ୍ନୋ ଯାଦୃଶଃ କୃଷ୍ଣ! ତାଦୃଶାସ୍ତେ ମହାରଥାଃ ॥

ଭ. ପ୍ର. ୧୨ ଅ: ୭୨, ୭୩ ଶ୍ଳୋକ ।

ବିରାଟ ପର୍ବ ଛାପା ପୁସ୍ତକଗତ ପାଠାନୁସାରେ ଆରମ୍ଭତଃ ବୈବସ୍ୱତ ମନୁଙ୍କ ପ୍ରଶ୍ନର ଅନ୍ତର୍ଗତ ଚୋଟିଏ ବିଷୟ ଏଭୁ ଯେ ଚୈତ୍ରସେନକ ପରାଭବୋ-ତ୍ତୀର୍ଣ୍ଣ କର୍ଣ୍ଣସଖା ଭୂପମାନ ଦୁର୍ଯ୍ୟୋଧନ କପରି ଅବା ଅପମାନ ସହ୍ୟ କରି ରହିଲେ । [୧] କିନ୍ତୁ ଅସ୍ଥାନୋତ୍‌ଥାପିତ ଏହି ଅକାଳିକ ପ୍ରଶ୍ନର ଉତ୍ତର ଏଠାରେ ପ୍ରଦତ୍ତ ହୋଇନାହିଁ ।

ଅନନ୍ତର ଅଜ୍ଞାତ-ବାସୋଦ୍ୟତ ପ୍ରଜ୍ଞାତାବଗନ୍ତବ୍ୟ ପାଣ୍ଡବମାନଙ୍କର ଆନୁପାର୍ଶ୍ୱିକ ଋଷିଗଣ ଓ ଧୌମ୍ୟ ପୁରୋଧାଙ୍କର ଚିନ୍ତନବୃତ୍ତ୍ୟର୍ଥ ବିଦାୟ ପ୍ରଦାନ-ପୂର୍ବକ କ୍ରୋଡୀକୃତକୋଟର-ଶମୀପାଦପରେ ଅସ୍ତ୍ରଶସ୍ତ୍ରମାନଙ୍କର ସଂସ୍ଥାପନ ସବିଧାନ ପ୍ରତିପାଦିତ ଅଛି, କିନ୍ତୁ ତାଳପତ୍ର ପୁସ୍ତକରେ ଏତଦ୍‌ବିଷୟଟି ବନପର୍ବର ସର୍ବାବସାନରେ ନିଗଦିତ ଥିବାରୁ ବିରାଟ ଦେଶ ପ୍ରତି ପ୍ରସ୍ଥାନକରଣ ପ୍ରାରମ୍ଭରୁ କେବଳ ପର୍ବ ଆରବ୍‌ଧ ହୋଇଅଛି । ଛାପା ପୁସ୍ତକରେ ଏ ତତ୍‌ସମ୍ବନ୍ଧୀୟ ପ୍ରାୟଶଃ ଚତୁଃପୃଷ୍ଠାବଧିକ ଅଧିକ ପାଠ ପୁନରୁକ୍ତ ହୋଇଅଛି । ଶଂସିତ ଋଷିଗଣ ପ୍ରଭୃତିଙ୍କର ବିଦାୟ ଓ ଶମୀରେ ଅସ୍ତ୍ର-ବିନ୍ୟାସ ପ୍ରକ୍ରିୟା ମୌଳିକ ପାଣ୍ଡୁଲିପିରେ ବିରାଟପର୍ବସ୍ଥ ହେଲେ ସୁଦ୍ଧା ଓଡ଼ିଆ ଛାପା ପୁସ୍ତକରେ ଆବଶ୍ୟକତାର ଅଭାବରେ ଉଭୟତ୍ର (ବନ ଓ ବିରାଟ ପର୍ବରେ) ଉଲ୍ଲେଖ କରି ଯା ପୁନରୁକ୍ତ-ଦୋଷାବହ କେବଳ । ଗ୍ରନ୍ଥକର୍ତ୍ତା ଶ୍ରୀ ସାରଳାଦାସ ମହୋଦୟ ଏପରି କରି ନ ଥିବେ । ପଦିତ ଅନ୍ୟାନ୍ୟ ତାଳପତ୍ର ପୁସ୍ତକମାନଙ୍କରେ ମଧ୍ୟ ପ୍ରୋକ୍ତ ବୃତ୍ତାନ୍ତ ଆମ୍ରେଡ଼ିତ ଥାଏ, ତେବେ ଅନୁଲେଖକମାନଙ୍କର ବୁଦ୍ଧି ଦୁର୍ବିଧତାମୂଳକ ପରିବର୍ଦ୍ଧନ ବୋଲି କହିବାକୁ ହେବ ।

---

[୧] ଦୁର୍ଯ୍ୟୋଧନ ଅପମାନ ସହିଲା କେମନ୍ତେ ।
ବନ୍ଧନରୁ ମୁକ୍ତ ହୋଇ କି ଭାବିଲା ଚିତ୍ତେ ॥
ଏଥିର ଚରିତ ମୋତେ କହ ମହାମୁନି— ଭ. ପ. ଛାପା ୨ ପୃ: ।

ମୂଳ ଗ୍ରନ୍ଥରେ ସମୂଦ୍ଧିତ ଯୁଧିଷ୍ଠିରଙ୍କ ବନବାସର ଆପ୍ରାରମ୍ଭାନ୍ତ ଅନୁଗତ ସୂତ-ପୌରଗଜପ୍ରମୁଖ [୧] ତଥାଚ ପାର୍ଷ୍ଣିଗ୍ରାସବ୍ରବୃତଣୀ ପରିଚ୍ଛରକାମାନଙ୍କର ସତ୍ୟଭୂତ କଥା ଶ୍ରୀ ସାରଳାଦାସ କେବଳ ସ୍ଫୁଟଦୋଷଗ୍ର କରିପାରି ନ ଥିବାରୁ ତତ୍ସମ୍ବନ୍ଧ ବୃତ୍ତାନ୍ତ କୁତ୍ରାପି ବ୍ୟକ୍ତ କରିପାରି ନାହାନ୍ତି ! ପୁଣି ବିରାଟ ବର୍ଷପୂର୍ବରୁ ଯୁଧିଷ୍ଠିରାଦଙ୍କର ସମାଗମନାନୁକ୍ରମକୁ କଷ୍ଟତ୍ ବ୍ୟତ୍ୟାସ କରିଦେଇ ଅଛନ୍ତି । ନିଜ ଧାମପିଧାନ ସୁବିଧାନ ପାଣ୍ଡବମାନଙ୍କ ଜୟଜୟନ୍ତାଦ [୨] ଅନତିରଞ୍ଜିତ ନିଗୂଢ଼ା-ଭିଧାନଗୁଡ଼ିକୁ ଏକାବେଳକେ ଅନ୍ତର୍ଦ୍ଧାନ-ବିଧାନ କରି ପକାଇ ଅଛନ୍ତି । ପରନ୍ତୁ ଯେ କି ସର୍ବାବସ୍ଥାରେ ଉତ୍କର୍ଷାପକର୍ଷ-ସମଚିତ୍ତ, ଯାହାଙ୍କର ପୁଣି ପରମହଂସଭାବ ଅବିରତ ଦେଦୀପ୍ୟମାନ, ସେହି ବିଗତକଳ୍ମଷ ବୀତମତ୍ସର ଯୁଧିଷ୍ଠିରଦେବ କାଳ-ବିପର୍ଯ୍ୟୟବଶରୁ କଙ୍କ ହେବା [୩] ଏବଂ ଦୁର୍ବାରଗର୍ବାପହ, ଦର୍ବୀକର ଭୀମସେନ ପ୍ରଦର୍ଶିତସୂଦଭାବରେ ପ୍ରବିଷ୍ଟ ହୋଇଥିବା କଥାକୁ ଠିକ୍ କହି ଅଛନ୍ତି । ମାତ୍ର ବୈଭତ୍ସବ କୃତ୍ରିମ ବୃହନ୍ନଳା ନାମଟିକୁ ବୃହନ୍ନଳା ପଦରେ ପରିଣତ କରି ଅଛନ୍ତି [୪] ।

---

[୧] ପୁରୋହିତୋଽସ୍ମାକଂ ଅଗ୍ନିହୋତ୍ରାଣି ରକ୍ଷତୁ ।
ସୂତପୌରଗବୈଃ ସାର୍ଦ୍ଧଂ ଦ୍ରୁପଦସ୍ୟ ନିବେଶନେ ॥
ଇନ୍ଦ୍ରସେନମୁଖାଶ୍ଚେମେ ରଥାନାଦାୟ କେବଳାନ୍ ।
ଯାନ୍ତୁ ଦ୍ୱାରବତୀଂ ଶୀଘ୍ରମିତି ମେ ବର୍ତ୍ତତେ ମତିଃ ॥
ଇମାଶ୍ଚ ନାର୍ଯ୍ୟୋ ଦ୍ରୌପଦ୍ୟାଃ ସର୍ବାଶ୍ଚ ପରିଚାରିକାଃ ।
ପାଞ୍ଚାଳାନେବ ଗଚ୍ଛନ୍ତୁ ସୂତପୌରଗବୈଃ ସହ ॥ ବି. ପ. ୪ ଅଃ ।

[୨] ଜୟୋ ଜୟନ୍ତୋ ବିଜୟୋ ଜୟତ୍ସେନୋ ଜୟଦ୍‌ବଳଃ ।
ଇତି ଗୁହ୍ୟାନି ନାମାନି ତେଷାଂ ଚକ୍ରେ ଯୁଧିଷ୍ଠିରଃ ॥ ୫ ଅଃ ।

[୩] ଟିପ୍ପଣୀରେ ପ୍ରକାଶ ରଖିବା ଉଚିତ ଯେ "କଙ୍କୋ ନାମ ଦ୍ୱିଜୋ ଭୂତ୍ୱା ମତାକ୍ଷଃ ପ୍ରିୟଦେବନଃ" । ମୂଳରୁ ଏହି ନାମକୁ ଶ୍ରୀମାନ ସାରଳାଦାସ ମହୋଦୟ ଯଥାଯଥ ଦେଇ ଅଛନ୍ତି, କିନ୍ତୁ ସଙ୍କେ ଦେଖିଲେ ଗ୍ରନ୍ଥକାର ମହାଶୟ କଙ୍କକୁ କୁଙ୍କ ଓ କୋଙ୍କ କରି ପକାଇ ଅଛନ୍ତି ।

[୪] ପିନଦ୍ଧକମ୍ବୁଃ ପାଣିଭ୍ୟାଂ ତୃତୀୟାଂ ପ୍ରକୃତିଂ ଗତଃ ।
ବେଣୀକୃତଶିରା ରାଜନ୍ ନାମ୍ନା ଚୈବ ବୃହନ୍ନଳା ॥

ତତ୍ପର ସ୍ତ୍ରୀକୃତାଶ୍ୱବାରକର୍ମ ନଶାକରମନୋରମ କଶାକର ନକୁଳ ପ୍ରବେଶ ମାତ୍ରକେ ମୂଳରେ ଅନୁକ୍ତ କଣ୍ଟକ ଦୂନବାର ଅଶ୍ୱବେଗ ଅଶ୍ୱଙ୍କୁ ସବାଭରେ ପଞ୍ଚଭୂତସବଶ୍ୟ କରବା, ସେ ପୁଣି ସେହ ନଗ୍ରହରୂପ ଅନୁଗ୍ରହରୁ ପ୍ରାପ୍ତ ଦ୍ରବ୍ୟ ବଗ୍ରହରେ ଆତ୍ମହ୍ୱସଦ୍ଧକାରେ ଦେବଗୃହ ପ୍ରାପ୍ତ ହେବାର ପ୍ରତପାଦନ କର ତତ୍ପୂ ମ ୂଳତନ କନ୍ଧବୃତ୍ତାନ୍ତ ଲେଖି ଅଛନ୍ତି କ ଯୁବ ଏକଦା ସ୍ୱର୍ଗୀୟ କ୍ଷେତ୍ରପାଳ ବାମଦେବ ସୂର୍ଯ୍ୟଙ୍କ ମନ୍ଦୁ ରୁ ଆଗତ ବଗତ ତୁରଙ୍ଗକୁ ପ୍ରତ୍ୟର୍ପଣ ନ କଲରୁ ସେ ଶାପ ଦେଲେ ଯେ ତୁମ୍ଭେ ଅଶ୍ୱାଧିକାରକରଣରୁ ଅଦ୍ୟାବଧି ଅଶ୍ୱ ହୋଇ ମର୍ତ୍ତ୍ୟ ଔରସଜାତ ନକୁଳଙ୍କ [୧] ହସ୍ତରୁ ମୁକ୍ତ ହେବ । ଇତ୍ୟାଦ । ପୁଣି ଭୂପାଳ ପ୍ରକାଶ ଗୋପାଳବେଶ ସହଦେବ ବହୁଲୋକମନ୍ଦନା ବନ୍ଧ୍ୟମାଳସଦନା କୃତ-ଜଦନା ଦୁର୍ଦ୍ଧର୍ମନା ପୃଥୁନା ନାମ୍ନୀ ଗାଭୀକୁ ସ୍ୱୀକୃତ କରବା, ପ୍ରୋକ୍ତ ନୈତକା ଅଗୀତ ଭାଷାରେ ତାହାଙ୍କ ସହ ସମ୍ଭାଷ କରବା, ସେ ପୁଣି ଦେବଗବୀ କପିଳାଙ୍କ ସନ୍ତାନ ଥିବାରୁ ପୂର୍ବେ ସ୍ୱକୀୟ ଦୈବୀ ସତ୍ତ୍ୱରେ ପାନୀୟ ପାନନ୍ଦ୍ଧାବହେଳାରେ ଜଳଧିକ ନର୍ଜଳ କରଥିଲେ ବୋଲ ସମୟରେ ସେହି ବୃନ୍ଦାରକବୃନ୍ଦଙ୍କ ସବନ୍ଦନ ପ୍ରାର୍ଥନାରେ ତଦୀୟ ମାତା ନଜର ଅମିତ କ୍ଷୀରବୈଭବରେ କ୍ଷୀରୋଦାଦ ଉଦଧି-ସନ୍ଦୋହକୁ ପୁନଃ ପୂର୍ଣ୍ଣୀକୃତ କରଥିବା, [୨] ପ୍ରଭୃତ ଅନେକ ତଦୁପାଙ୍ଗଭୂତ ପ୍ରସଙ୍ଗକୁ କାରଣ ନର୍ଦ୍ଦେଶପୂର୍ବକ ଲେଖି ଅଛନ୍ତି । [୩] ଏହା ତାହାଙ୍କର ବହୁ ପୁରାଣଶ୍ରୁତ କଥାର ଅନୁକୃତ-କଳ୍ପନାପ୍ରସୂତ କମ୍ବା କୌଣସି ନଗୂଢ଼ ପୌରାଣିକ ବବରଣର ଅବକଳାନୁକୃତ, ତାହା କହୁ ଠିକ୍ ବୁଝାଯାଇ ନ ପାରେ । ସେ ଯାହାହେଉ ପଚ୍ଛକେ ସନ୍ଦର୍ଭାରମ୍ଭଟି ନତାନ୍ତ ଅସନ୍ଦର୍ଭ ହୋଇନାହିଁ ।

ଅତଃପର ମୂଳରେ ଭୀମପରାକ୍ରମ ସିଂହବକ୍ରମ ଭୀମସେନଙ୍କର ମଲ୍ଲ ଓ ଶାର୍ଦ୍ଦୂଳାଦ ସହ ଯୁଦ୍ଧପ୍ରକ୍ରିୟା ସମାସତଃ ଓ ସୂକ୍ଷ୍ମତଃ ସମ୍ବାଦତ ଅଛି ଯେ

---

[୧] ନକୁଳ ସୂର୍ଯ୍ୟଙ୍କ ଔରସଜାତ ବୋଲ ସାରଳାଦାସଙ୍କ ହୃଦୟରେ ପ୍ରାମାଣିକ ବଶ୍ୱାସ ବଦ୍ଧମୂଳ ରହଥିଲା ।

[୨] ଛପା ପୁସ୍ତକରେ ୩୨ — ୩୪ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

[୩] ନକୁଳଙ୍କର ଅଶ୍ୱ ପରୀକ୍ଷା ସ୍ଥଳରେ ମୂଳାନୁକ୍ତ ବହୁତଗୁଡ଼ିଏ ଅଶ୍ୱବେଗ ବବରଣର ଦେଶୀୟ ନାମ ଏବଂ ସହଦେବଙ୍କର ଗୋ ପରୀକ୍ଷା ସ୍ଥଳରେ ଗୋ ବେଗ ବବରଣର ଦେଶୀୟ ନାମଗୁଡ଼ିଏ ଦେଇ ଅଛନ୍ତି ।

ପାଣ୍ଡବମାନଙ୍କର ବିରାଟଦେଶ ନିବସନର ତିନି ମାସ ପରେ [୧] ଶମ୍ଭୁ—ବୃକୋଦରଙ୍କଲୁ ଦେବସନ୍ଥ ବୃକୋଦର ମହାବଳ ସୁବିଖ୍ୟାତ ଜୀମୂତ ନାମକ ମହାମଲ୍ଲକୁ ଯୁଦ୍ଧରେ ନିହତ କଲା ପର ଅନ୍ୟାନ୍ୟ ମଲ୍ଲମାନଙ୍କୁ ମଧ୍ୟ ଅକାଳକାଳକବଳରେ ପକାଇଲେ । ତଦା ତଦୀୟ ଅତିମାନୁଷ ପରାକ୍ରମପରିତୁଷ୍ଟ ରାଜା ଭୀମଙ୍କୁ ନିରୁପମ-ପୌରୁଷ ଦେଖି ସିଂହଶାର୍ଦ୍ଦୂଳାଦିର ପ୍ରତିଭଙ୍କ କରି କୌତୁକାହବବିଳାସ ମେଣ୍ଟାଇଥିଲେ । [୨] ମାତ୍ର ସେଠାରେ ଅଳ୍ପପ୍ରସର ମଲ୍ଲାହବର ବର୍ଣ୍ଣନା ଉକ୍ତ ଥିଲେ ସୁଦ୍ଧା ଶାର୍ଦ୍ଦୂଳାଦିର ସାମ୍ପରାୟିକ ବ୍ୟାପାର ବର୍ଣ୍ଣିତ ନ ଥାଇ କେବଳ ସୂଚିତ ମାତ୍ର ହୋଇଅଛି ।

କିନ୍ତୁ ବିସ୍ତୃତପ୍ରିୟ ସାରଳା ଦାସ କବି ମଲ୍ଲାହବ ସନ୍ଦର୍ଭକୁ ପଲ୍ଲବିତ କରି ପ୍ରାୟ ମୂଳରେ ସୂଚିତ ବ୍ୟାଘ୍ରଯୁଦ୍ଧର ସୂକ୍ଷ୍ମସ୍ୱରୂପ ପ୍ରମାଣକୁ ଆଦର୍ଶ କରି ତନ୍ମୂଳକ ବହୁତଗୁଡିଏ ସାଙ୍ଗୋପାଙ୍ଗ କଥା ସମୟବ୍ୟତ୍ୟୟ କ୍ରମରେ ଲେଖି ଅଛନ୍ତି । ସେ କହି ଅଛନ୍ତି କି ପାଣ୍ଡବଗଣ ବିରାଟଦେଶରେ ଧନୁ ମାସରୁ ଆଦି କରି ଷଷ୍ଠ ମାସ ଅବସ୍ଥିତି କରଣାନ୍ତର ସପ୍ତମ ମିଥୁନ ମାସରେ ଜରା ନାମକ ଶବର ମହାବଳ ଶାର୍ଦ୍ଦୂଳ ସହ ସମାଗତ ହେଲା [୩] । ଅମିତବଳ ଜାତକାଢ

---

[୧] ଅଥ ମାସେ ଚତୁର୍ଥେ ତୁ ବ୍ରହ୍ମଣଃ ସୁମହୋତ୍ସବଃ ।
ଆସୀତ୍ ସମୃଦ୍ଧୋ ମତ୍ସ୍ୟେଷୁ ପୁରୁଷାଣାଂ ସୁସମ୍ମତଃ ॥
ତତ୍ର ମଲ୍ଲାଃ ସମାପେତୁଃ ଦିଗ୍ଭ୍ୟୋ ରାଜନ୍ ସହସ୍ରଶଃ ।
ବି. ପ. ୧୩ ଅ: ୧୪ ଶ୍ଳୋକ ।

ଏହି ଅଧ୍ୟାୟରେ ଭୀମଙ୍କର ଅଶସ୍ତ୍ର ଯୁଦ୍ଧ ବର୍ଣ୍ଣିତ ଅଛି ।

[୨] ଯଦାସ୍ୟ ତୁଲ୍ୟଃ ପୁରୁଷୋ ନ କଶ୍ଚିତ୍ ତତ୍ର ବିଦ୍ୟତେ ।
ତତୋ ବ୍ୟାଘ୍ରୈଶ୍ଚ ସିଂହୈଶ୍ଚ ଦ୍ୱିରଦୈଶ୍ଚାପ୍ୟଯୋଧୟତ୍ ॥
ଏତିକି ମାତ୍ର ସୂଚିତ ହୋଇଅଛି ।

[୩] ଏହି ଶବରର ବୃତ୍ତାନ୍ତ ୩୦—୪୦ ପୃଷ୍ଠାଯାଏ ଦେଖନ୍ତୁ । ପୂର୍ବ ତ୍ରେତା ଯୁଗରେ ଅଙ୍ଗଦଙ୍କର ପିତୃନାଶଜନିତ ମାନସିକ ବିଦ୍ୱେଷ ଥିବାର ଜାଣି ରାମଚନ୍ଦ୍ର ତଦୀୟ ହସ୍ତରେ ଦ୍ୱାପରରେ ଅବସାନରେ ସ୍ୱୀୟ ପ୍ରାଣ ଦେବାପାଇଁ ତାହାଙ୍କୁ ଜରା ଶବରରୂପେ ଜନ୍ମ ହେବାକୁ ବର ପ୍ରଦାନ କରିଥିବା, ସେହି ଜରାଶବର ବର୍ତ୍ତମାନ ଶାର୍ଦ୍ଦୂଳ ଆଣିଥିବା କଥାକୁ ପୂର୍ବଣାନ୍ତସନ୍ଧୁକରଣରେ ଏଠାରେ ଲେଖି ଅଛନ୍ତି ।

ଶାର୍ଦ୍ଦୂଳାକ୍ରମଣଭୋଗଜନିତ ଶରୀରୋପାତ ଓ ସେହି ମୃତ ପିଣ୍ଡର ପରକାଳ ଘଟିଲେ ଶର୍ଦ୍ଦୂଳ ଶରୀରେ ସକଳରୋଗବନ୍ତର ରହିଲା। ସେବେ ବିଷ୍ଣୁଦୂତମାନେ ଆସି ଶାର୍ଦ୍ଦୂଳଙ୍କୁ ଗ୍ରହଣ କରିବା ନିମନ୍ତେ ତାହାଙ୍କ ଲାଗି ଆପଣା ଆପଣାର ଯୁଦ୍ଧ କଲେ। ଶାର୍ଦ୍ଦୂଳ ଭୋଗଜଙ୍ଗମ ରୁଦ୍ର ଦୂତଙ୍କ ହସ୍ତରେ ପ୍ରତିହତ ହୋଇ ସ୍ୱର୍ଗକୁ ଗଲେ।

ଶାର୍ଦ୍ଦୂଳ ଭୋଗାଙ୍କ କଥା ଶୁଣି ଦେବର୍ଷି ନାରଦଙ୍କ ପ୍ରଶ୍ନ ପରେ ଶାର୍ଦ୍ଦୂଳଙ୍କ ଚରିତ୍ର

ଶାର୍ଦ୍ଦୂଳାଦ୍ଭବଶରୋଦ୍ଧତରେ ଶରୋଧତ ଲାତକ ପ୍ରାପ୍ତ କେବଳ ଗର୍ଜନୋଦ୍ଧତ ରକ୍ତ ତାହା ସହିତ ପ୍ରତିଭଟ ହେବାକୁ ନ ପାରିବାରୁ ପ୍ରମତ୍ତ ଅମିତବଳବନ୍ତ ଦନ୍ତାବଳକୁ ପ୍ରତିଦ୍ୱନ୍ଦୀ କଲେ। ହସ୍ତୀ ନିହତ ହେଲାରୁ ତଦ୍ଦେହନର୍ଗତ ପୁରୁଷ ଜଣେ ଧର୍ମାବତାର ଯୁଧିଷ୍ଠିରଙ୍କ ଦର୍ଶନରେ ସ୍ୱର୍ଗବାସୀ ହେଲେ; ତତ୍ପରେ ଯୁଧିଷ୍ଠିରାଦେଷ୍ଟ ଭୀମଙ୍କ ଦ୍ୱାରା ବିନଷ୍ଟ ଶାର୍ଦ୍ଦୂଳର ଅବୟବାବର୍ଜିତ ଦିବ୍ୟ ପୁରୁଷ ବିମାନରେ ସ୍ୱର୍ଗଲୋକକୁ ପ୍ରସ୍ଥାନ କଲେ।

ଏଠାରେ ଶାର୍ଦ୍ଦୂଳଦେହନର୍ଗତ ଦିବ୍ୟ ପୁରୁଷଙ୍କ ପ୍ରାକ୍ତନ କର୍ମବିପାକ ସମ୍ବନ୍ଧରେ ପ୍ରଶ୍ନ ଉତ୍ଥାପିତ ହେଲାରୁ ଇତଃପୂର୍ବେ ଦ୍ରୌପଦୀ ଚରଣପୃ ପ୍ରକରଣରେ ନଗଦ୍ଧତ ଇନ୍ଦ୍ର ଓ ଭୃଷ୍ଟା ଋଷିଙ୍କ ବିବାଦମୂଳକ କଥା-ପ୍ରଥାଟିକୁ କଳ୍ପିତ ଭିନ୍ନ କ୍ରମରେ ଅସଙ୍ଗତାପୂର୍ବକ କହି ଥିବାର ଲେଖାଅଛୁ [୧]। ମାତ୍ର ଏ ସବୁ

[୧] ପ୍ରୋକ୍ତ ଚରିତର ସଂକ୍ଷିପ୍ତାଂଶ ଏହ୍ୱ— କଦାଚିତ୍ ସ୍ୱର୍ଗପ୍ରାପ୍ତ ସ୍ଥୂଳ ନାମକ ଋଷିଙ୍କୁ ଇନ୍ଦ୍ର କୌଣସି କାରଣବଶତଃ ଆସନ ପ୍ରଦାନ କଲେ ନାହିଁ ବୋଲି ଋଷି ବିର୍ଯ୍ୟ କ୍ରୁଦ୍ଧ ହୋଇ ବାସବାଧିଷ୍ଠିତ ସ୍ଥାନ ପ୍ରାପ୍ତି ସକାଶେ ତପସ୍ୟାରେ ରତ ହେଲେ। ତଦବଗମନରେ ଭୀତ ଦେବରାଜ ତପଃସିଦ୍ଧି ଭଙ୍ଗାର୍ଥ ସ୍ୱକୀୟ ପୂତ ଓ ମନ୍ତ୍ରଙ୍କ ନିଦେଶିବାରୁ ସେ ଦୁହେଁ ଋଷିଙ୍କ ଦେହରେ ଆବେଶରେ ରହି ତାହାଙ୍କୁ କାମାସକ୍ତ କରାଇଲେ। ସ୍ଥୂଳ ଋଷି ମୃଗୀ ମୈଥୁନରେ ରତ ହେଲେ। ସେତେବେଳେ ମୃଗୀ ଗର୍ଭରୁ ତ୍ୱଷ୍ଟାସନ୍ତୁତି ଘଟିଲା। ସ୍ଥୂଳର୍ଷି ସ୍ୱପୁତ୍ର ତ୍ୱଷ୍ଟାଙ୍କୁ ସ୍ୱପ୍ରତି ସ୍ୱର୍ପତିଙ୍କ ଦୁର୍ବୃତ୍ତ ସବୁ ଜଣାଇ ତପଃପ୍ରଭାବରେ ଐନ୍ଦ୍ରପଦବୀ ଗ୍ରହଣାର୍ଥ ଆଦେଶିଲେ। "ତ୍ୱଷ୍ଟାକୁ ଗୃହିଁ ବୋଲେ ସ୍ଥୂଳ ମହାଋଷି। ତୁ ଯାଇ ସ୍ୱର୍ଗରେ ବସି ଇନ୍ଦ୍ର ହୁଅସି।" ସୁତରାଂ ତ୍ୱଷ୍ଟା ତାହା ଇଷ୍ଟ ମଣିଲେ ନାହିଁ। ମାତ୍ର ତତ୍ପୂର୍ବ ଭୂତ ମହର୍ଷି ଇନ୍ଦ୍ରତ୍ୱ ପ୍ରାପ୍ତି ସକାଶେ କୈଳାସରେ ତପୋନିଷ୍ଠ ରହି ସର୍ପଦଷ୍ଟ ହେଲେ। ଆଶ୍ରିତବତ୍ସଳ ଭଗବାନ୍ ମହାଦେବ ନାରଦଙ୍କ ମୁଖରେ ବ୍ରହ୍ମାଙ୍କୁ ଜଣାଇଲେ କି ଏହି ଭୂତ ଋଷିଙ୍କ ପ୍ରାଣଦାନପୂର୍ବକ ଇନ୍ଦ୍ରପଦରେ ପ୍ରତିଷ୍ଠିତ କର। ବ୍ରହ୍ମା ତଦାଦେଶ କାର୍ଯ୍ୟରେ ପରିଣତ କଲେ। "ଅଗସ୍ତ୍ୟ ବୋଇଲେ ଶୁଣ ହୋ ନୃପତି। ଇନ୍ଦ୍ରପଦେ ବସିଲେ ସ୍ଥୂଳ ଋଷିଙ୍କ ନାତି।" (ବ. ପ. ୫୦ ପୃଷ୍ଠା) କିନ୍ତୁ ଇନ୍ଦ୍ର ଭୂତ ଋଷିଙ୍କୁ ବଜ୍ରରେ ନିହତ କଲେ।

ଉପସ୍ଥାପିତ ପ୍ରଶ୍ନର ସମୁଚିତ ଉତ୍ତର ହୋଇ ନାହିଁ । ଏଠାରେ ବୋଧହୁଏ କବି ଅବିଶ୍ରାନ୍ତ ରଚନା ପ୍ରବାହର ଆବେଗ ବା ଆବର୍ତ୍ତରେ ପଡ଼ି ପ୍ରମାଦତଃ ଏହିପରି କରି ପକାଇ ଅଛନ୍ତି । ଅତଏବ ପ୍ରୋକ୍ତ ଅସଂଲଗ୍ନ ଚରିତକୁ ଉଭୟତଃ ସମ୍ବନ୍ଧ ରହିତ କରି ଡ୍ରୋଣଙ୍କ ଅବସ୍ଥାନ ନ୍ୟାୟ ମଧ୍ୟରେ ଲେଖି ଦେବାକୁ ବାଧ୍ୟ ହୋଇ ଅଛନ୍ତି । ପ୍ରତ୍ୟୁତ୍ପନ୍ନମତି ଶ୍ରୀ ସାରଳାଦାସ ମହାଶୟ ପ୍ରାକ୍ କଳ୍ପିତ କଥାକୁ ଅସଙ୍ଗତ-ମଣି ପ୍ରୋକ୍ତ ଗଜଶାର୍ଦ୍ଦୂଳବିଷୟକ ପ୍ରଶ୍ନର ପୁନରୁତ୍ଥାନ କରାଇ ସଙ୍ଗତ ଉତ୍ତର ପ୍ରଦାନ କରି ଅଛନ୍ତି ଯେ [୧] ଏକଦା ପ୍ରସୁପ୍ତ ସ୍ଥୂଳ ଋଷିଙ୍କ ଦେହରେ ଇନ୍ଦ୍ରଙ୍କ ପୁତ୍ର ଦୁହେଁ ସୂକ୍ଷ୍ମଶରୀରତଃ ପ୍ରବିଷ୍ଟ ହୋଇ ଋଷିଙ୍କ କାମୋନ୍ମତ ବାତୁଳ ପ୍ରାପ୍ତ କରାଇ ସେ ଅନୁକ୍ଷଣ ହରିଣୀସୁରତକ୍ଷଣରେ ବ୍ୟାପୃତ ହେଲେ । ସମୟରେ ସୁପ୍ତ ସ୍ଥୂଳ ଋଷିଙ୍କ ଦେହରୁ ବିନିର୍ଗତ, ଉପରେ ପଳାୟିତ ଶଂସିତ ବାସବେୟ ଦ୍ୱୟଙ୍କୁ ସେ ଦେଖି ଗଜ ଓ ବ୍ୟାଘ୍ର ହୁଅ ବୋଲି ଅଭିଶାପ ଦେଲେ । ଇତ୍ୟାଦି ।

ଏହା ଅମୂଳକ ହେଲେହେଁ ସଙ୍ଗତସାଙ୍ଗତ୍ୟରୁ ବହିଷ୍କୃତ ନୁହେଁ । ତଦପି ଏତାଦୃଶ ତାତ୍କାଳିକସଙ୍ଗତସମ୍ପନ୍ନ ଅବଲମ୍ବି ଉତ୍ତର ପ୍ରଦାନରେ ସମର୍ଥ ପ୍ରତ୍ୟୁତ୍ପନ୍ନ-ମତି ସାରଳାଦାସ ମହୋଦୟ ପ୍ରାକ୍‌ପ୍ରକାଶିତ ଇନ୍ଦ୍ରତ୍ୱଷ୍ଟାଙ୍କ ବୈଦ୍ରୋହମୂଳକ କଥାକୁ ଏ ସ୍ଥଳରେ ଲେଖି ନ ଥିବେ; ଅନ୍ୟ କେହି ପୂର୍ବଶ୍ରୁତ ବଳରେ ପ୍ରକ୍ଷିପ୍ତ କରି ଦେଇଥିବେ; ଏହି ଆଶଙ୍କାର ଅବକାଶ ନାହିଁ । କାରଣ କବି ନିଜେ ଆବେଗରେ ପଡ଼ି ତର ଅଭ୍ୟସ୍ତ ଅଥ ଅସଂଲଗ୍ନ କଥାକୁ ହଠାତ୍ ପ୍ରମାଦତଃ କହିଦେଇ ତଦ୍ଦୋଷରୁ ନିର୍ମୁକ୍ତ ହେବାକୁ ସାବଧାନ ରହିବାର ପ୍ରମାଣ ସେହି

---

ଇନ୍ଦ୍ର ନିର୍ମୂଳନାର୍ଥ ପ୍ରଧାବିତ ତ୍ୱଷ୍ଟାଙ୍କ ଅମୋଘକାଳାଗ୍ନିକଳ୍ପ ବ୍ରହ୍ମକ୍ରୋଧ ଭୟରେ ଇନ୍ଦ୍ର ସ୍ୱକୀୟ ପଞ୍ଚାଙ୍ଗୀକୃତ ଆତ୍ମାକୁ ଧର୍ମାଦି ଦେବଗଣଙ୍କ-ଠାରେ ନିହିତ କରି ବ୍ରହ୍ମବଧ-ଦୂଷିତ ପାପାତ୍ମା ସହିତ ତ୍ୱଷ୍ଟାଙ୍କ ଶାପରେ ଦଗ୍ଧ ହେଲେ । ପରେ ସମୟାନୁକ୍ରମରେ ଧର୍ମାଦି ଅଧିଷ୍ଠିତ ଓ ସ୍ୱଧୃତ ଇନ୍ଦ୍ରଙ୍କ ପଞ୍ଚାତ୍ମାରୁ ପଞ୍ଚପାଣ୍ଡବମାନେ ଉତ୍ପନ୍ନ ହେଲେ ।

[୧] ବୈବସ୍ୱତମନୁ ଅଗସ୍ତିଙ୍କୁ ପଚ୍ଛରିଲେ ।
ସେ ଗଜ ବ୍ୟାଘ୍ର ଦୁହେଁ କେମନ୍ତ ହୋଇଲେ ॥
ଏ ସ୍ଥଳରେ ଛାପାକାର ଛାପା ପୁସ୍ତକରେ ଭୁଲ କରି ଅଛନ୍ତି ।
ବି. ପ. ୬୧ ପୃଷ୍ଠା ଦେଖନ୍ତୁ ।

ସ୍ଥଳରେ ମିଳୁଅଛି । କଥାଟି ଏ ସ୍ଥଳରେ ଅସଂଲଗ୍ନ ହୋଇଗଲା ବୋଲି ଭାବି ଆପେ ଭାରତଚରିତର ଦୁରଧିଗମ୍ୟତ୍ୱ ଓ ଅଗାଧତ୍ୱ ପ୍ରକାଶ କରି ପ୍ରୋକ୍ତ ସଙ୍ଗତ ଉତ୍ତର ପ୍ରଦାନାର୍ଥ ଶ୍ରୀ ସାରଳାଦେବୀଙ୍କୁ ସବିନୟ ସ୍ତୁତି ଓ ପ୍ରାର୍ଥନା କରି ଅଛନ୍ତି । ଏଥିରୁ ଏହା ମଧ୍ୟ ଉପଲବ୍ଧ ହୁଏ ଯେ ଏ କବି ମହୋଦୟ କଳ୍ପନା କିମ୍ବା ଦେବୀଦତ୍ତ ଜ୍ଞାନବୈଭବରେ ଲେଖି ଲେଖି ଯାଇ ଯେ ସ୍ଥଳରେ ଅଗାଧ ବା ଜଟିଳ କିମ୍ବା ଅସଙ୍ଗତ ମଣନ୍ତି, ସେଠାରେ ସର୍ବାଭୀଷ୍ଟପ୍ରଦାୟିନୀ ଶ୍ରୀ ସାରଳା ଦେବୀଙ୍କର ସ୍ତୁତି କରି ଭକ୍ତି-ପ୍ରବଣ ହୃଦୟରେ ଅନ୍ୟ କଳ୍ପନା ବା ବିସ୍ତାରପୂର୍ବକ କଥାକୁ ସଙ୍ଗତ ଓ ସମ୍ପୂର୍ଣ୍ଣ କରି ନଅନ୍ତି ।

ଅଭିଜ୍ଞ ପାଠକେ! ଯଦିଚ ଏହାହିଁ ସ୍ଥିର ହେଲା ତେବେ ଏତଦ୍ୱାରା ପକ୍ଷେ ଏହି ମହାକବିଙ୍କର ଅନନ୍ୟ ସାମାନ୍ୟ ଶକ୍ତିମତ୍ତାର ଜାଜ୍ୱଲ୍ୟମାନ ପ୍ରମାଣ ମଧ୍ୟ ମିଳିଲା ନାହିଁକି ? କବି ଯଦି ରଚନାବେଗରେ ପଡ଼ି ନାମାଦି ସାଦୃଶ୍ୟରୁ ହଠାତ୍ ପୂର୍ବାଭ୍ୟସ୍ତ କଥାଟାକୁ ଅସ୍ଥାନରେ ଅସଙ୍ଗତ ସମୟରେ ଲେଖି ପକାଇଲେ, ତତ୍ପରସ୍ତାତ୍ ସମ୍ୟକ୍ ଅବଗତ ହୋଇ ସୁଦ୍ଧା ସେଟାକୁ ଗ୍ରନ୍ଥ ମଧ୍ୟରୁ ଉଠାଇ ଦେଇ ନାହାନ୍ତି କାହିଁକି ? ପରନ୍ତୁ ଉଠାଇ ଦେବା ତ ତାଦୃଶ ଶ୍ରମସାପେକ୍ଷ ନୁହେଁ । କିଞ୍ଚିତ ସମୟ ଓ ଲେଖନୀର ବିଶ୍ରାମ ମାତ୍ର ଆବଶ୍ୟକ । ତେବେ ଏହାହିଁ ସ୍ୱୀକାର କରିବାକୁ ହେବ ଯେ ଏହାଙ୍କ ଲେଖାରେ ଲେଖନୀର ସେପରି ବିଶ୍ରାମ ଘଟିନାହିଁ । ବିଚାର କରନ୍ତୁ, ଇଦାନିନ୍ତନ ଅନେକ ଲେଖକ କେତେ ଆଡ଼ୁ କେତେ ପ୍ରକାର ପ୍ରାଚୀନ ଲେଖକ ବା କବିମାନଙ୍କର ଏକତ୍ରୀକୃତ ସୁପ୍ରଦର୍ଶିତ ଶାବ୍ଦିକ ଐତିହାସିକ ଆଲଂକାରିକ ପ୍ରଭୃତି ସୁସିଦ୍ଧ ସୁସଂସ୍କୃତ ମାଲ ମସଲା ନେଇ କବିତା ବା ରଚନାର ପାକରେ ପ୍ରବେଶ କରିଥାନ୍ତି । କେତେ ପ୍ରକାର ସୌକାର୍ଯ୍ୟ ଓ ସାହାଯ୍ୟ ପାଇଥାନ୍ତି । କେତେଗୁଡ଼ାଏ ଅନୁକରଣୀୟ ଘଟନାକୁ ଆକ୍ଷିସମକ୍ଷରେ ଆଦର୍ଶ କରି ରଖିଥାନ୍ତି । ତଥାପି ଲେଖା ଅନେକତ୍ର ନିୟମିତ ମାର୍ଗରୁ ପ୍ରାସ୍ଖଳିତ ହୋଇ ପଡ଼େ ତ ? କେତେକେତେବେଳେ କେତେଥର ଅବା ଆବୃତ୍ତି କରି ପାଠର ଯୋଗ ବିଯୋଗ କରି ନ ଥାନ୍ତି ? ସୁବିଚାର କରି ନେଲାବେଳେ ପ୍ରାୟ ଗୃହ ପୃଷ୍ଠା ପାଠରୁ କେତେ ଅସଙ୍ଗତ କଥାକୁ ଉଠାଇ ଦେଇଥାନ୍ତି । ଏ ସବୁ କରି ସୁଦ୍ଧା ଆଧୁନିକ ଅନେକ ଲେଖକଙ୍କ ଲେଖା ଦୋଷସଙ୍କୁଳ । ଉତ୍କଳର ସର୍ବପ୍ରଥମ କବି, ଔତ୍କଳୀୟ ଶାଶ୍ୱତ ସାରସ୍ୱତ କୀର୍ତ୍ତିର ଆଦିମ ସୃଷ୍ଟିକର୍ତ୍ତା, ଅନନ୍ୟପ୍ରଯୋଗାନପେକ୍ଷୀ, ଅନନ୍ୟ-ସହାୟ ଆଦର୍ଶହୀନ ଶ୍ରୀମାନ୍ ସାରଳାଦାସ ମହୋଦୟ ଏ ସବୁର ବିପରୀତ

ଗୁଣବିଶିଷ୍ଟ ଥିଲେ । ତାହାଙ୍କର ମତ ଓ ଲେଖନୀର ଗତି କଦାପି ପଶ୍ଚାତ୍ ପ୍ରତି-ନିବୃତ୍ତ ହେଉ ନ ଥିଲା । ନିଶିତ ସୂଚ୍ୟଗ୍ର ଲୌହ-ଶଳାକା ହସ୍ତରେ କର୍କଶ ପିଚ୍ଛିଳ ତାଳପତ୍ରରେ ଅବିଶ୍ରାନ୍ତ ବାରିଧାରା ତୁଲ୍ୟ ପ୍ରଖର ବେଗରେ ସେ ଲେଖି ଯାଉଥିଲେ । ରଚନା ବେଳେ ପଦବିନ୍ୟାସର ପୁନଃ ପରିବର୍ତ୍ତନରେ ସୁଦ୍ଧା ଲେଖନୀକୁ ବିଶ୍ରାମ ଦେଉ ନ ଥିଲେ । ହୃଦୟରୁ ଅଙ୍କୁରୋଚ୍ଛ୍ୱାସରେ ଯାହା ନିର୍ଗତ ହେଉଥିଲା, ତାହାହିଁ ପତ୍ରସ୍ଥ କରି ଦେଉଥିଲେ । ଏଥିରେ କୌଣସି ପ୍ରକାର ବିଚାରଦ୍ୱାର ଅବସର ନାହିଁ, ଏହା ସମ୍ପୂର୍ଣ୍ଣ ବିଶ୍ୱାସମାତ୍ର ।

ଅତଃପର ରାଜବଲ୍ଲଭ ବଲ୍ଲବରୂପୀ ଶ୍ରୀମସେନ ମଲ୍ଲଡଲ୍ଲଜଙ୍କ ସହ ବାହୁଯୁଦ୍ଧ କରିବା, ଅପିଚ ଜମ୍ବୁଦ୍ୱୀପେଶ୍ୱରଙ୍କର ଖଗବର କେଶରୀ ଉପାଧିଭୂଷିତ ମଲ୍ଲକୁ ନିହତ କରିବାରୁ ତଦ୍ଦେହାବଭୂତ ଅଭୂତ ଦିବ୍ୟ ପୁରୁଷ ସ୍ୱର୍ଗର ଆତିଥ୍ୟ ଗ୍ରହଣ କରିବା, ପୁଣି ତତ୍‌ପୂର୍ବ ଦେହ ଓ ଶାପବୃତ୍ତାନ୍ତ ଲେଖି ଅଛନ୍ତି । ଏହି ଅଭିଶାପିକାଦି ବୃତ୍ତାନ୍ତମାନ କଳ୍ପନାନୁପ୍ରାଣିତ ବା ମନଗଢ଼ା ପରି ବୋଧହୁଏ । ତତ୍ପର ଶ୍ରୀମଙ୍କର ଗୌଷ୍ଠ ଶୌଖ୍ୟ ଓ ନଳ ନାମରେ ଅଭିହିତ ସୁବହିତ ବିବିଧ ପାକକ୍ରିୟା-ସୁପକ୍ୱ ଭକ୍ଷ୍ୟ-ଭୋଜ୍ୟାଦିର ଅମିତ ଭୋଜନରେ ପରିତୁଷ୍ଟ ବିରାଟରାଜଙ୍କୁ ଯୁଧିଷ୍ଠିରଙ୍କର ଆଗସ୍ତିକ ମନ୍ତ୍ରର ପ୍ରଦାନକ୍ରିୟାବୈଚିତ୍ର୍ୟ ଏବଂ ତତ୍ସମର୍ଥନାର୍ଥ ଇତଃପୂର୍ବେ ବନପର୍ବରେ ଅଗସ୍ତି କର୍ତ୍ତୃକ ବିନାଶିତ ବ୍ରହ୍ମଘ୍ନ ଆତାପି ଓ ବାତାପିଙ୍କ ଚରିତକୁ କହିଥିବାର ଉକ୍ତ ଅଛି । ବୋଧହୁଏ ଏହା ଦାସ ମହୋଦୟଙ୍କର କଳ୍ପିତ ସନ୍ଦର୍ଭ ।

ଅତଃପର କୀଚକବଧ ପ୍ରକରଣ ପ୍ରାରମ୍ଭରେ ସମୟ ନିର୍ଦ୍ଦେଶ କରି ଅଛନ୍ତି କି ପାଣ୍ଡବମାନେ ଧନୁ ମାସାବସାନରେ [୧] ଅର୍ଥାତ୍ ମାଘ ପ୍ରାରମ୍ଭରେ ବିରାଟ ରାଜ୍ୟରେ ପ୍ରବିଷ୍ଟ ହୋଇଥିଲେ । କ୍ରମଶଃ ସମାଗତ ବସନ୍ତରେ ଯୁଧିଷ୍ଠିରଦେଶ-ମତେ ବାସନ୍ତିକ ନାବକେଳି ମହୋତ୍ସବ ସମାରବ୍ଧ ହେଲା । ଏହି ଉତ୍ସବ ସମୟରେ କେବଳ କୀଚକ ନିର୍ଯ୍ୟାଣ ସଙ୍ଘଟିତ ହୋଇଅଛି । ତାହାହେଲେ ଏହାଙ୍କ ମତରେ ପାଣ୍ଡବମାନଙ୍କର ବିରାଟରାଜ୍ୟ ପ୍ରବେଶର ଚତୁର୍ଥ ମାସରେ କୀଚକର ଅତ୍ୟାଚାରଚେଷ୍ଟା ଘଟିଥିବାର ପ୍ରତିପନ୍ନ ହେଉଅଛି । ପରନ୍ତୁ ଏହି ମହୋଦୟ

[୧] ଅଗସ୍ତି ବୋଇଲେ ପାଣ୍ଡବ ଥିଲେ ସେ ଗୁପତେ ।
ଅଜ୍ଞାତବାସେ ପଶିଲେ ଧନୁ ମାସ ଅନ୍ତେ ॥ ବ. ପ. ୭୬ ପୃଷ୍ଠା ।

କେବଳ ଇତଃପୂର୍ବେ ଭୀମଙ୍କର ବ୍ୟାଘ୍ରାଦି ସହ ଯୁଦ୍ଧନର୍ଦ୍ଦେଶସ୍ଥଳରେ କହି ଅଛନ୍ତି, ପାଣ୍ଡବମାନେ ବିରାଟ ରାଜ୍ୟରେ ଧନୁ ମାସରୁ ଆରମ୍ଭ କରି ଛମାସ ଅବସ୍ଥାନ କଲା ପରେ ଭୀମବୈସ୍ତ୍ରାଧ୍ରି ସମର୍ଦ୍ଦ ଘଟିଥିଲା । ଉଭୟସ୍ଥ ନର୍ଦ୍ଦିଷ୍ଟ ସାମୟିକ ବିବରଣକୁ ବିସ୍ମର କଲେ ଏବଂ ଦମ୍ଭରସ୍ତାତ୍ର ପ୍ରକାଶିତ ସମୟମାନଙ୍କୁ ଦେଖିନେଲେ ଏ ମହାଶୟ ପ୍ରମାଦବଶତଃ ପୂର୍ବାପର ବର୍ଣ୍ଣନାରବିଶ୍ଟତାରୁ ସମୟ ନିର୍ଦ୍ଦେଶକୁ ଏପରି ବୈଷମ୍ୟରେ ପକାଇ ଥିବାର ସ୍ପଷ୍ଟ ଜଣାଯାଏ । କିନ୍ତୁ ସତ୍ୟତଃ ଦ୍ରୌପଦୀଙ୍କର ଆସେଚନକ ରୂପ ସନ୍ଦର୍ଶନରେ ମୋମୁଦ୍ୟମାନ କୀଚକର ଦୁର୍ବାର ଦୁର୍ବ୍ୟାପାର ଘଟନା ପାଣ୍ଡବୀୟ ଅଜ୍ଞାତବାସର ପ୍ରାୟଶଃ ଏକାଦଶ ମାସରେ ସଂଘଟିତ ହୋଇଥିଲା । [୧]

ତଦନନ୍ତର ପଞ୍ଚେଷ୍ଟବୃଣିଖବଞ୍ଚିତ-ବିବେକ ମୀଚକର୍ମା କୀଚକର ଗୃହ ପ୍ରତି ଦ୍ରୌପଦୀ ଦେବୀଙ୍କୁ ସୁଦେଷ୍ଣାଙ୍କର ବ୍ୟାଜମୂଳକ ପ୍ରେରଣାନୁକ୍ରମକୁ ମୂଳଗ୍ରନ୍ଥତଃ ଅନ୍ୟଥା ହେଲେ ସୁଦ୍ଧା ଏ କବି ମହୋଦୟ ଠିକ୍ ମିତସଙ୍ଗତ କରି ଅଛନ୍ତି । କୃଷ୍ଣାଙ୍କୁ ବରାବର କୀଚକଠାକୁ ପ୍ରେରିବା ନ କରି ଚତୁର୍ହ୍ନୀ ସୁରଭିକା ପ୍ରତି [୨] ପତ୍ରିକାବ୍ଦ୍ଧିକା ରୂପେ ପଠାଇ ଥିବାର ବର୍ଣ୍ଣି ଅଛନ୍ତି ଏବଂ ଦ୍ରୌପଦୀଙ୍କ ପ୍ରାର୍ଥନାରେ ସୂର୍ଯ୍ୟପ୍ରେରିତ ଅଦୃଶ୍ୟ ରାକ୍ଷସ ପରିବର୍ତ୍ତରେ ଗୁପ୍ତା ମାୟା ନାମରେ ଦେବଦୂତ-ଦ୍ୱୟଙ୍କର ଆବିର୍ଭାବ କରାଇ ଅଛନ୍ତି । [୩] ମାତ୍ର କୀଚକାମିତଭୟାତୁରା ଦ୍ରୌପଦୀ ପ୍ରଚ୍ଛନ୍ନଭାବରେ ଯୁଧିଷ୍ଠିରାଦିଙ୍କୁ କୀଚକର କଥା ଜଣାଇଥିବା ପ୍ରସ୍ତାବରେ ସେ ସମୟକୁ ଅଜ୍ଞାତବାସର ଅବଶିଷ୍ଟ ସାର୍ଦ୍ଧ ଦ୍ୱିମାସ ଥିବାର ପ୍ରମାଦତଃ କହି ଅଛନ୍ତି;

---

[୧] ବସମାନେଷୁ ପାର୍ଥେଷୁ ମତ୍ସ୍ୟସ୍ୟ ନଗରେ ତଦା ।
ମହାରଥେଷୁ ଛନ୍ନେଷୁ ମାସା ଦଶ ସମାଯଯୁଃ ॥
ତସ୍ମିନ୍ ବର୍ଷେ ଗତପ୍ରାୟେ କୀଚକସ୍ତୁ ମହାବଳଃ ।
ସେନାପତିର୍ବିରାଟସ୍ୟ ଦଦର୍ଶ ଦ୍ରୁପଦାତ୍ମଜାଂ ॥
୧୪ ଅ. ୧ – ୪ ଶ୍ଳୋକ ।

[୨] କୀଚକର ଦାସୀ ନାମ ଅଟେ ସୁରଭିକା ।
ତାହାର ଗୋଚରେ ଲେଖାଗୋଟି ନେଇ ଦେଖା ॥

[୩] ଗୁପ୍ତା ମାୟା ଦୁହିଁଙ୍କି ସେ ଦେବ ହକାରି ।
ଆଜ୍ଞା ଦେଲେ ସୈରନ୍ଧ୍ରୀକି ରଖ ଯା ଆବୋରି ॥ ୬୮ ପୃଷ୍ଠା ।

କିନ୍ତୁ ସେତେବେଳେ ସାର୍ଦ୍ଧେକମାସ ମାତ୍ର ଅବଶିଷ୍ଟ ଥିଲା । ଅତଏବ କର୍ମ-ବିପାକତଃ ପୃଥୁଶରୀରକୃଚ୍ଛୋପଧାନ ମହାନସଭୂଶୟାନ ଭୀମସେନ ଦ୍ରୌପଦୀଙ୍କୁ "ଦେବୀ ! ସୁଗନ୍ଧଦ୍ରବ୍ୟମଣ୍ଡିତା ଦ୍ୱିଜାତି-ମନ୍ତ୍ରପୂତା ଯଜ୍ଞମଧ୍ୟସ୍ଥା ବେଦୀକୁ କି ଚଣ୍ଡାଳ ସ୍ପର୍ଶ କରିପାରେ ? ଦୁଃଖ ସମ୍ବରଣ କର । ସାର୍ଦ୍ଧେକମାସ ପରେ ତୁମ୍ଭେ ତ ମହାରାଜ୍ଞୀ ହେବ, ବର୍ତ୍ତମାନ ହୃଦୟ ସ୍ଥିର କର" ଇତ୍ୟାଦି ବାକ୍ୟରେ ସାନ୍ତ୍ୱନା କରିଥିଲେ । [୧] ଯାହାହେଉ ଶ୍ରୀମାନ୍ ସାରଳାଦାସ ମହୋଦୟ କୀଚକବଧ-ସମ୍ବିଧାନର ଅନ୍ୟାନ୍ୟ କଥାମାନଙ୍କରେ ନିତାନ୍ତ ବୈଷମ୍ୟ ବା ବିରୂପତାର ଶରଣ କରି ନାହାନ୍ତି ସତ୍ୟ, ମାତ୍ର କୀଚକକୁ ତଦୀୟ ସହାବେଦୋର୍କ ଅଳୀକ ପ୍ରେମସଙ୍କେତ ଜଣାଇବା ପାଇଁ ଦ୍ରୌପଦୀ ଦେବୀ ନିଜେ ଗନ୍ଧମାଲ୍ୟାଦି ହସ୍ତରେ ସେହି ପାପିଷ୍ଠକିଶସ୍ତୁର ଦ୍ୱାରସ୍ଥ ହୋଇଥିଲେ ବୋଲି ଲେଖିବା ସୁବିଜ୍ଞର ନୁହେଁ । ପ୍ରକୃତତଃ ଦେବୀ ସମାଗତ ଚେଟୀ ବା ଦାସୀର ମୁଖରେ ଏହା ନିବାହିତ କରି-ଥିଲେ । ଅପିଚ ବିରାଟ ନୃପତି ସ୍ୱଶାଳକ ଓ ସେନାନୀ କୀଚକକୁ ପରଦିବସ ସଭାକୁ ଆନୟନାର୍ଥ ସମାଦେଶିବାରୁ ଅନୁଚରବର୍ଗ କ୍ରମଶଃ କବ୍ତୁମାର୍ଗମାର୍ଗଣରେ ତାଣ୍ଡବମଣ୍ଡପରେ ପିଣ୍ଡୀଭୂତ କୀଚକର ମୃତପିଣ୍ଡକୁ ଦେଖିବା ପ୍ରଭୃତି କଥାକୁ ସମୟ ଓ ନିୟମର ବିପର୍ଯ୍ୟୟରେ ଲେଖି ଉପ-କୀଚକମାନଙ୍କ ନାମାବଳୀକୁ ପ୍ରାସକୀଚକ, ଧୀକୀଚକ, ବିଚେକ, ବାଚେକ, ବଳଚେକ, ବଦ୍ଧୁଚେକ, ବିଶ୍ୱଚେକ ଇତ୍ୟାକାରକୁ ବିଲକ୍ଷଣ ପରିଣାମରେ ପରିଣତ କରିବା ଯଥାର୍ଥତଃ ସମୁଚିତ ନୁହେ [୨] । କିନ୍ତୁ

---

[୧] ସା ହାର୍ଦ୍ଧଂ କ୍ଷମକାଳଂ ତ୍ୱଂ ମାସମର୍ଦ୍ଧଂଚସମ୍ମିତଂ (ମାସମର୍ଦ୍ଧସମନ୍ୱିତଂ)
ପୂର୍ଣ୍ଣେ ତ୍ରୟୋଦଶେ ବର୍ଷେ ରାଜ୍ଞଃ ରାଜ୍ଞୀ ଭବିଷ୍ୟସି ।
ଶ୍ରୀ କୃଷ୍ଣ ସିଂହ ମଧ୍ୟ ଏହି ସାର୍ଦ୍ଧେକମାସକୁ ନିର୍ଦ୍ଧାରିତ କରି ଅଛନ୍ତି ।
ଯଥା—

ବାକି ତିନ ପକ୍ଷ କାଳ ଯିବା ଅଛି,
ଗଲେ ତ ଆମ୍ଭେ ଦେବା ଦୁଃଖକୁ ମୁଚୁଛୁ । ବି. ପ. ୨୫ ପୃଷ୍ଠା ।

ସାରଳାଦାସ ଅଧିକତଃ ସମୟକୁ ବୈଷମ୍ୟରେ ପକାଇଥିଲା ପରି କାଶୀରାମଦାସ ମଧ୍ୟ ନିଜ ବଙ୍ଗ ଭାରତରେ ନ୍ୟୂନତଃ ବୈଷମ୍ୟରେ ନିହିତ କରି ଅଛନ୍ତି । ସେ କହନ୍ତି କି ଏ ସମୟକୁ ଅଜ୍ଞାତବାସର ଏକ ମାସ ମାତ୍ର ଅବଶିଷ୍ଟ ଥିଲା । ବ. ଭା. ୩୯୭ ପୃଷ୍ଠା ଦେଖନ୍ତୁ ।

[୨] ଛାପା ପୁସ୍ତକରେ ୧୦୦ ପୃଷ୍ଠା ଦେଖନ୍ତୁ ।

କରି ମହୋଦୟ ଅମୂଳ୍ୟରେ ଏପରି ନାମରେ ନାମିତ କରିବାର ଅନୁମିତ ହୁଏ । ପାଠକେ ! ବ୍ୟାସଦେବଙ୍କ ମତରେ କୀଚକର ପ୍ରାଣମୋଚନ ସମୟକୁ ଅଜ୍ଞାତବାସର ତ୍ରୟୋଦଶ ଦିବସ ମାତ୍ର ଅବଶିଷ୍ଟ ଥିବାର ପ୍ରମାଣ ମିଳୁଅଛି । ଯେତେବେଳେ ଦ୍ରୌପଦୀ ଦେବୀଙ୍କ ଦେ କାଶାଭି ‘ବିଦେହ ବିରାଟନୃପତି ଗୃହକାର୍ଯ୍ୟରେ ତାଙ୍କର ସମବ- ସ୍ଥାନର ଅସ୍ୱୀକାର ପ୍ରକାଶ କରିଥିଲେ, ସେତେବେଳେ ଶ୍ରୀକୃଷ୍ଣା ସୁଦେଷ୍ଣାଙ୍କୁ ଆଶ୍ୱାସବିଶ୍ୱାସ ପ୍ରଦାନରେ ଆଉ ତ୍ରୟୋଦଶ ଦିବସ ମାତ୍ର ରହିବା ପାଇଁ ଜଣାଇ ଅଛନ୍ତି [୧] । ଅତଏବ କହିବାକୁ ହେବ ଯେ କୀଚକର ଏହି ମୀତ ନାଟକାଭିନୟାବସାନ ଏକମାସାଧିକ ହୋଇଥିଲା ।

ଅତଃପର ଗୋଗ୍ରହପ୍ରକରଣ ପ୍ରାରମ୍ଭରେ ସାରଳାଦାସ କହନ୍ତି କି ପ୍ରଥମତଃ ସ୍ୱନଗର୍ଣକଥା ନବାହଗବାହ ପ୍ରମତ୍ତ ଦୁର୍ଯୋଧନଙ୍କ ସମ୍ମତିକ୍ରମେ ତ୍ରିଗର୍ତ୍ତ ରାଜା ସୁଶର୍ମା ବିରାଟଗୋଗ୍ରହଣାର୍ଥ ମାର୍ଗଶୀର୍ଷ କୃଷ୍ଣ ପଞ୍ଚମୀ ସୋମବାରରେ ବିରାଟରାଜ୍ୟ ପ୍ରତି ଅଭିଯାନ କଲେ । ଇତଃପୂର୍ବେ କୀଚକବଧ ସମୟକୁ ବୃଷ ମାସ କହି ଏବଂ ତଦା ଅଜ୍ଞାତବାସର ମାସଦ୍ୱୟ ଅବଶିଷ୍ଟ ନିର୍ଦ୍ଧାରିତ କରି ତ୍ରିଗର୍ତ୍ତରାଜଙ୍କ ଗୋଗ୍ରହ ଅଭ୍ୟାଗ୍ରର ମାର୍ଗଶୀର୍ଷ ବୋଲି କହିବା ସମ୍ପୂର୍ଣ୍ଣ ଅସଙ୍ଗତ । ପ୍ରତ୍ୟେକ ଘଟନାରେ ମାସ ତିଥି ବାରାଦିର ନିର୍ଦ୍ଧାରଣ କରିବା ଦାସ ମହାଶୟଙ୍କର ସ୍ୱଭାବସିଦ୍ଧ ଥିବାରୁ ସତ୍ୟାସତ୍ୟ ପ୍ରତି କମ୍ବା ପୂର୍ବାପର ପ୍ରତିପାଦିତ ଓ ପ୍ରତିପାଦନୀୟ କଥା ପ୍ରତି ଦୃଷ୍ଟିର ନ ରଖି ବାକ୍‌ଧୋରଣୀର ଆବେଗରେ ପଡ଼ି ଚରିତ ବ୍ୟାଖ୍ୟାନର ଉଦ୍ବେଗରେ ଉଦ୍‌ବିଗ୍ନ ହୋଇ ଅବିଶ୍ରାନ୍ତ ବାକ୍‌ବୈଖରୀର ପ୍ରବାହକୁ ସଂଯତ ରଖି ନ ପାରି ଯେ କୌଣସି ପ୍ରକାରେ ସାମୟିକ ନିର୍ଦ୍ଧାରଣମାନ କରି ଆସି ଅଛନ୍ତି । କିନ୍ତୁ ଏ ସ୍ଥଳରେ ମାସର କଥା ଯାହାହେଉ ପକ୍ଷନିର୍ଦ୍ଧାରଣଟି ମାତ୍ର ଘୁଣାକ୍ଷର ନ୍ୟାୟ ଯଥାର୍ଥ ହୋଇ ଯାଇଅଛି । କାରଣ ମୂଳଗ୍ରନ୍ଥରେ କୃଷ୍ଣପକ୍ଷ ଅଷ୍ଟମୀରେ ସୁଶର୍ମାଙ୍କ ସମ୍ଭାବିତ ଏତତ୍ସମ୍ବନ୍ଧ ଅଭିଯାନର ପ୍ରମାଣ ମିଳୁଅଛି । [୨]

---

[୧] ତ୍ରୟୋଦଶାହମାତ୍ରଂ ତୁ ରାଜା କ୍ଷାମ୍ୟତୁ ଭାବିନି,
କୃତକୃତ୍ୟା ଭବିଷ୍ୟନ୍ତି ଗନ୍ଧର୍ବାସ୍ତେ ନ ସଂଶୟଃ ।

[୨] ଆଦାତୁଂ ଗାଃ ସୁଶର୍ମାଥ କୃଷ୍ଣପକ୍ଷସ୍ୟ ସପ୍ତମୀଂ ।
ଅପରେ ଦିବସେ ସର୍ବେ ରାଜନ୍ ସମ୍ଭୂୟ କୌରବାଃ ।
ଅଷ୍ଟମ୍ୟାନ୍ତେ ନ୍ୟଗୃହ୍ଣନ୍ତ ଗୋକୁଳାନି ସହସ୍ରଶଃ ।
ବି. ପ. ୩୦ ଅଧ୍ୟାୟ ।

ତା ପରେ ଯୁଦ୍ଧସନ୍ନଦ୍ଧ ଅରୁଦ୍ଧବେଗ ସୁଶର୍ମାଙ୍କ ସହ ଭୀମାଦିସନାଥ ବିରାଟରାଟଙ୍କ ଆହବକ ଘଟନାକୁ ଏକତଃ ଯଥାପ୍ରକାର କରି ସୁଦ୍ଧା ଅନ୍ୟତଃ ଭୀମଙ୍କର ସୁମାନ୍ତବରୂଦ୍ଧ ଔଦ୍ଧତ୍ୟସମର୍ଥନରୁ କ୍ଷାନ୍ତ ହୋଇ ନାହାନ୍ତି । ସେ କହନ୍ତି କି ବିରାଟବନ୍ଧନରେ କ୍ରୋଧାନ୍ଧୀଭୂତ ଭୀମସେନ ଧାଇଁ ଯାଇ ସୁଶର୍ମାଙ୍କ ପରି ବିରାଟଙ୍କୁ ମଧ୍ୟ କେଶାକୃଷ୍ଟ ଓ ଆପାଦପୃଷ୍ଠଭୂମିକ କରି ଯୁଧିଷ୍ଠିରଙ୍କ ସ୍ମୁମୁରେ ଉପସ୍ଥାପିତ କଲେ । [୧] ଅପିତ ପରେ ଲେଖି ଅଛନ୍ତି କି ପରାଭବପରିକ୍ଷତ ସୁଶର୍ମା ଭଗ୍ନବଳ ସହ ବିରାଟଦେଶରୁ ହସ୍ତିନାରେ ପ୍ରବିଷ୍ଟ ହେଲେ ପରେ [୨] ତଦ୍ଦୁଃଖ-ଦୁଃଖିତ ଦୁର୍ଯ୍ୟୋଧନ ଭୀଷ୍ମାଦି ସହ ବିରାଟ ବଳରେ ବିରାଟ ଆକ୍ରମଣାର୍ଥ ଯାତ୍ରା କଲେ । ଇତ୍ୟାଦି । ଏହା ତାହାଙ୍କର ପ୍ରାମାଦିକ । ସୁଶର୍ମାଙ୍କ ଅଭିଯାନର ପର ଦିବସ କେବଳ ଦୁର୍ଯ୍ୟୋଧନାଦି ବିରାଟରାଜ୍ୟ ପ୍ରତି ଯୁଦ୍ଧଯାତ୍ରା କରିଥିଲେ । ଅତଏବ କୌରବମାନେ ଉତ୍ତରଗୋଗ୍ରହରେ ବ୍ୟାପୃତହେବା ସମୟରେ ଭୀମାଦିସନାଥ ବିରାଟରାଜ ତେଣେ ସୁଶର୍ମାଙ୍କ ପ୍ରତୀକାରରେ ତତ୍ପର ଥିଲେ । ବୈରାଟିକମାନଙ୍କ ମଧ୍ୟରୁ ଉତ୍ତର କେବଳ ରାଜଭବନରେ ଉପସ୍ଥିତ ଥିଲେ । ଏହି ସନ୍ଦର୍ଭକୁ ସାରଳାଦାସ ମହୋଦୟ ଠିକ୍ ମନେ ରଖି ନ ପାରି ଉତ୍ତରଗୋଗ୍ରହ ସମୟରେ ବିରାଟଙ୍କର ପ୍ରାସାଦରେ ଅନବସ୍ଥିତି ଦର୍ଶାଇବାପାଇଁ କହନ୍ତି କି ବିରାଟ ନୃପତି ସୁଶର୍ମାଙ୍କୁ ପରାସ୍ତ କରି ପାଣ୍ଡବମାନଙ୍କ ସହିତ ସ୍ୱଭବନରେ ପ୍ରବେଶିବାର କେତେକ ଦିବସ ପରେ କଳିଙ୍ଗ ଦେଶର ରାଜା ଗାରବାହୁ (ଯାହାଙ୍କ ପିତା କୀଚକକର୍ତ୍ତୃକ ନିହତ ହୋଇଥିଲେ) ବୈର-ନିର୍ଯ୍ୟାତନାର୍ଥ ବିରାଟ ଆକ୍ରମଣ କଲାରୁ ବିରାଟ ତେଣେ ଯୁଦ୍ଧରେ ଭୀମାଦିଙ୍କ ସହ ବ୍ୟାପୃତ ରହିଲେ । ଅବଶ୍ୟ ଦାସଙ୍କ କଳିଙ୍ଗ ଦେଶର ନାମ "କଳିଙ୍ଗ" ପ୍ରଦତ୍ତ ହୋଇଥିବାରୁ ତଦୀୟ ଅନଳ୍ପ କଳ୍ପନାଶିଳ୍ପ-ଧୁରୀଣତା ମଧ୍ୟ ସ୍ପଷ୍ଟତଃ ଜଣାପଡ଼ି ଯାଉଅଛି ।

ଇତଃ ପାପମନ୍ତ୍ରିତ ଅମର୍ଯ୍ୟାଦା ଦୁର୍ଯ୍ୟୋଧନଙ୍କର ଗୋଧନାକ୍ରମଣ ସ୍ଥଳରେ ଅନେକଗୁଡ଼ିଏ ବିଚିତ୍ର କଳ୍ପନାପ୍ରସୂତ କଥାମାନ ଲେଖିଅଛନ୍ତି କି

---

[୧] ଡାହାଣେ ହିଗଉ ବାମେ ବିରାଟର ବାଳ,
ଅନ୍ତରୀକ୍ଷେ ନଏ ପାଦ ନ ଲାଗଇ ତଳ । ୧୧୮ ପୃଷ୍ଠା ।

[୨] ଭଗ୍ନବଳ ଯେଣେ ହିଗର୍ତ୍ତେଶ୍ୱର ଆସି ।
ଧନୁ ଶୁକ୍ଳ ତ୍ରୟୋଦଶୀ ହସ୍ତିନାରେ ପଶି । ଇତ୍ୟାଦି । ୧୨୦ ପୃଷ୍ଠା ।

ସହଦେବଙ୍କ ମୁଖରେ ସନ୍ତୁଷ୍ଟା ଖୁରଶୃଙ୍ଗାଗ୍ରୁଧା ପୃଥ୍ୱିନା ଗାଈ ଗୋସୈନ୍ୟ ସହ କୌରବଚତୁରଙ୍ଗ ସୈନ୍ୟକୁ ପରାସ୍ତ ଓ ପରାହସ୍ତ କଲେ । [୧] ପ୍ରସାଦତଃ ଶ୍ରୀକୃଷ୍ଣଙ୍କ ପ୍ରଦତ୍ତ ତପାସ୍ତ୍ର ଭୃଙ୍ଗଦ୍ୱୟରେ ସହଦେବ ପ୍ରତ୍ୟକ୍ଷତଃ ଚତୁର୍ଭୁଜ ହୋଇ ଐଶ୍ୱରିକ ସତ୍ତ୍ୱରେ କୁରୁ ସୈନ୍ୟକୁ ଅସ୍ତବ୍ୟସ୍ତ କଲେ । [୨] ଗୋହତ୍ୟା ଭୟରେ କୌରବ ବୀରମାନେ ପଶୁପୀଡ଼ିତ ହୋଇ ଯୁଦ୍ଧ ଗୋସୈନ୍ୟ ବିନାଶରୁ ନିବୃତ୍ତ ହେଲେ [୩] ଇତ୍ୟାଦି ।

ଅତଃପର ଗୋଧନାପହରଣ ସମ୍ବାଦରେ ପ୍ରକୁପିତ ପ୍ରାକ୍ ଅନ୍ତଃପୁର-ବୀରସମ୍ବାଦ ଯୋଧପ୍ରବୀର ଉତ୍ତରଙ୍କର ଯୁଦ୍ଧାର୍ଥ ସନ୍ନାହ ପ୍ରକ୍ରିୟାରେ ଅର୍ଜୁନ ତପାସ୍ତ୍ର ସାରଥ୍ୟ ସାଧନାଥ ସହଦେବଙ୍କ ବାକ୍ୟରେ ସମ୍ମତ ପ୍ରକାଶ କରିଥିଲେ ବୋଲି ଲେଖି ଅଛନ୍ତି । କିନ୍ତୁ ସତ୍ୟତଃ ସନ୍ତତ ପରୀହମୋଦ୍ରୋହ-ବବୃଦ୍ଧମାନସ ପ୍ରୁଷ୍ଟଦୁଷ୍ଟାଶିଷ୍ଟରାଜନ୍ୟବୃନ୍ଦ ଅର୍ଜୁନ ଉକ୍ତମତ ଅନ୍ତେବାସିମ ଉତ୍ତରଙ୍କ ଅନୁରୋଧରେ ଉତ୍ତରଙ୍କର ସାରଥି ହୋଇଥିଲେ । ସେ ଯାହାହେଉ ଏ ସ୍ଥଳରେ ସହଦେବଙ୍କ ମୁଖରେ ଯାହା ଅଜ୍ଞାତବାସର ଦିନଦ୍ୱୟ [୪] ମାତ୍ର ଅବଶିଷ୍ଟ ଥିବାର ପ୍ରକାଶ କରି ଅଛନ୍ତି, ତାହା ମୂଳ ସହିତ ପ୍ରାୟ ଏକପ୍ରକାର ହୋଇଅଛି ।

---

[୧] ଛାପାରେ ୧୨୮, ୧୨୯ ପୃଷ୍ଠା ଦେଖନ୍ତୁ ।

[୨] ଛାପା ପୁସ୍ତକରେ ୧୩୧ ପୃଷ୍ଠା ଦେଖନ୍ତୁ ।

[୩] ଏ ସ୍ଥଳରେ ଗୋହତ୍ୟା ଅତି ଦୁସ୍ତର ପାପ, ଏହା ସ୍ଥିର କରିବାପାଇଁ ପୌରାଣିକ ଗାଥାକାର କହୁଅଛନ୍ତି କି ଏକଦା ମହାଦେବ ଗଙ୍ଗାତୀରରେ କୁଶବାଟିକା ଥୋଇ ସ୍ନାନ କରୁଥିଲେ, ଇତ୍ୟବସରେ ସୁରଭିଙ୍କ ନନ୍ଦିନୀ ନନ୍ଦିନୀ ଆସି କୁଶମୁଷ୍ଟିକ କବଳିତ କରିଦେବା ଦେଖି ମହାଦେବ ପ୍ରହାର କଲାରୁ ନନ୍ଦିନୀଙ୍କ ମସ୍ତକ ଛିନ୍ନ ହୋଇ ତପାସ୍ତ୍ର ହସ୍ତରେ ବଜ୍ରଲେପ ଭୁଲ୍ୟ ଲଗ୍ନ ହୋଇ ରହିଗଲା, ଇତ୍ୟାଦି ।

[୪] କରପତ୍ର ଯୋଡ଼ି ସହଦେବ ଯେ ବୋଇଲା ।
ତିନିଶ ସତାବନ ଦିନ ଶେଷ ହୋଇଲା ॥
ଆଜ ତିନଗୋଟି ଦିନ ଅଛଇ ଲେଖନ୍ତେ ।
କହୁଛିଁ ଦୋଷ ନୋହିବ ଆମ୍ଭଙ୍କୁ ଜାଣନ୍ତେ ॥

ତଦନନ୍ତର ଉତ୍ତରମହାସାଗରସ୍ଵୋପମ ଖ୍ରୀକର ଦୁର୍ବିଗ୍ରାହ୍ୟ କୌରବ ସୈନ୍ୟ ଦର୍ଶନରେ ସଞ୍ଜାତରୋମହର୍ଷଣ ଅନ୍ତମାନ ସ୍ତ ବୈଷ୍ଟିକ ଉତ୍ତରଙ୍କର ପଳାୟନ ସମୟରେ ଅର୍ଜୁନ ଶନ୍ନଦ୍ୱଲ ଶୁନନାମକ୍ ରାଜାଙ୍କ ପୁନ ଚତୁଷ୍ଟୟଙ୍କ ବୀରଭ୍ରକାହାଣୀ କହି ଉତ୍ତରଙ୍କୁ ଟିକିଏ ସତେଜ କରାଇ ଥିବାର ଯାହା ଲେଖି ଅଛନ୍ତି, ତାହା ଅମୌଳିକ ହେଲେହେଁ ଅସଙ୍ଗତ ହୋଇନାହିଁ । [୧] ତତଃପର ସୋତ୍ତର ଅର୍ଜୁନ ଶମୀ ସମୀପସ୍ଥ ହେବା ସ୍ଥଳରେ କହନ୍ତି କ, କୁନ୍ତୀଦେବୀ ପ୍ରଭୃତି ପ୍ରୋକ୍ତ ଶମୀ ସ୍ୱରୂପରେ ଅବସ୍ଥିତ ଥିଲେ । [୨] ବୋଧହୁଏ ସାରଳାଦାସ ମହାଶୟ କୌଣସି ପ୍ରକାର ଆଶୟାଥରେ ଏହା ପ୍ରକାଶ କରିଥିବେ । ତତ୍ପରେ ଶରହରଣାର୍ଥ ତତ୍ପର ଉତ୍ତର ବୃକ୍ଷକୋଟରହସ୍ତ ହେଲରୁ ତତ୍ପରକ୍ଷାଣ କାଳକାଳେଶୟ ଦଂଶିବା, ଭୁଜଙ୍ଗବିଷଭଙ୍ଗଜାଙ୍ଗଲିକ ପ୍ରାପ୍ତ ଅର୍ଜୁନ ନିର୍ମୋଘ ମନ୍ତ୍ରବଳରେ ତାହାଙ୍କୁ ନିର୍ବିଷ କରିବା, ପ୍ରୋକ୍ତ କରାଳକାଳଭୁଜଙ୍ଗ ବୈରନିର୍ଯାତନାର୍ଥ କର୍ଣ୍ଣଙ୍କ ଆଶ୍ରୟ କରି ପ୍ରାକ୍ପ୍ରବୃତ୍ତ ଖାଣ୍ଡବଦାହରେ ଅର୍ଜୁନ ତଦୀୟ ବଂଶଧରମାନଙ୍କୁ ନିହତ କରିଥିଲେ ବୋଲି ଇଦାନୀଂ ଦନ୍ଦଶନାର୍ଥ ଶମୀକୋଟରରେ ଲୁକ୍କାୟିତ ରହି ଦୈବଗତ୍ୟା ଅର୍ଜୁନ କୋଟରରେ ହସ୍ତ ନ ଦେବାରୁ ବୈଷ୍ଟିକଙ୍କୁ ଦଂଶନ କରିଥିବା ପ୍ରଭୃତି କଥା ଜଣାଇଲା ପରେ ଅର୍ଜୁନ ଏକ୍ଷଣି ଯୁଦ୍ଧାର୍ଥ ଆସିବେ, ତୁମ୍ଭେ ମୋତେ ଶରରୂପେ ତତ୍ପ୍ରତି ପ୍ରେରଣ କର, ମୁଁ ତାଙ୍କୁ ନିହତ କରିବି, ଇତ୍ୟାଦି-ରୂପେ ପ୍ରାର୍ଥନା କରିବା, କର୍ଣ୍ଣ ଭାବୀ ଜୟାଶାରେ ସ୍ୱୀକୃତ ହେବା ପ୍ରଭୃତି କଥା ଲେଖି ଅଛନ୍ତି । ବୋଧହୁଏ ଶ୍ରୀ ସାରଳାଦାସ କବି ଏ ସବୁ ଏ ସ୍ଥଳରେ କହିବା ପାଇଁ ଅନ୍ୟ ପୌରାଣିକ ସନ୍ଦର୍ଭକୁ ଆଶ୍ରୟ କରି ଅଛନ୍ତି ।

ଅନନ୍ତର ପାର୍ଥପ୍ରବୀର ପାଣ୍ଡବୀୟ ଶସ୍ତ୍ରମାନଙ୍କର ପରିଚୟ ପ୍ରଦାନ କରି-ଥିବା ସ୍ଥଳରେ ଉତ୍ତରଙ୍କ ପ୍ରଶ୍ନକ୍ରମରେ ସେ ଯେତେବେଳେ ଆପଣାର ତ୍ରିଭୁବନ-ସ୍ମରଣୀୟ ଦଶ ନାମର ବିବରଣ କହିଥିଲେ, ସାରଳାଦାସ ମଧ୍ୟ ତଦନୁରୂପ

[୧] ୧୪୪ ପୃଷ୍ଠା ଦେଖନ୍ତୁ ।

[୨] ପାଣ୍ଡୁ କୋଇଲା ଅଟନ୍ତି ସେ ବୃକ୍ଷର ମୂଳ ।
ଶ୍ୟାମ ମାଦ୍ରୀ ସୁତେ ହୋଇଛନ୍ତି ଗୃହି ଡାଳ ॥
ଉପର ଶାଖା ଅଟନ୍ତି ଧରମ ମୁଧିଷ୍ଠି ।
ପାଞ୍ଚାଳୀଦେବୀ ଅଟଇ ତହିଁ ପୁଷ୍ପ ଗୋଟି ॥ ୧୪୭ ପୃଷ୍ଠା ।

କହିପାଇ ଅଛନ୍ତି । କିନ୍ତୁ (୧୫୫ ପୃଷ୍ଠାରେ) ଦେଖିବେ, ତାହାର କଞ୍ଚିତ୍ ମାତ୍ର ବ୍ୟତ୍ୟୟ ହୋଇ ଯାଇଅଛି । ଏଥିରେ ଅନୁକ୍ତ ପାର୍ଥନାମ ପ୍ରଦତ୍ତ ହୋଇ ଶାପ୍ରସମ୍ଭୂତ (୧) ଜିଷ୍ଣୁ ଓ ବିଜୟ ନାମ କଥିତ ଦେଖା ଯାଉଅଛି । (୨) ଅନୁମାନ କରିବାକୁ ହୁଏ, ଏହା ପରବର୍ତ୍ତୀ ଲେଖକମାନଙ୍କର ମତଦ୍ୱୈଧ୍ୟର ବିଷମ ଫଳ ହୋଇଥିବ ।

ଶମୀ ସମୀପରେ ଉତ୍ତରଙ୍କ ପ୍ରଶ୍ନରେ ଅର୍ଜୁନ ତହିଁ ଶମୀସ୍ଥ ବିବିଧ-କବଚ ଓ ଗାଣ୍ଡୀବମାନଙ୍କ ପ୍ରାକ୍ତନ ବୃତ୍ତାନ୍ତ, ଶମୀବୃକ୍ଷର ହରିହରାତ୍ମକଶକ୍ତିପ୍ରସୂତତ୍ୱ ଇତ୍ୟାଦି କେତେକ ଅମୂଳକ ଇତିହାସ ପ୍ରକାଶ କରି ଥିବାର ଲେଖି ଅଛନ୍ତି । ଇତ୍ୟବସରରେ ଇନ୍ଦ୍ରାଦିଷ୍ଟ ସୁଦୃଷ୍ଟ ମାତଳି କଣ୍ଠାଦି ଭୂଷଣମାନ ଓ ଦେବଦତ୍ତ ଶଙ୍ଖ ଆଦି ଉପସ୍ଥାପିତ କରିବା ଏବଂ ତତ୍ଶଙ୍ଖପ୍ରାପ୍ତିର ଐତିହାସିକ ଘଟନା

---

(୧) ଅର୍ଜୁନଃ ଫାଲଗୁନୋ ଜିଷ୍ଣୁଃ କିରୀଟି ଶ୍ୱେତବାହନଃ ।
ବୀଭତ୍ସୁର୍ବିଜୟଃ କୃଷ୍ଣଃ ସବ୍ୟସାଚୀ ଧନଞ୍ଜୟଃ ॥

(୨) ପାଠକେ, ଏ ସ୍ଥଳରେ ପ୍ରକାଶ କରିଦେବା ଉଚିତ ଯେ— ଇତଃପୂର୍ବେ ଆଦିପର୍ବ ପାଠରେ ପ୍ରକାଶିତ ମତିମାନ୍ ଶ୍ରୀ ସାରଳାଦାସଙ୍କ ପ୍ରଦର୍ଶିତ ହସ୍ତିନାସ୍ଥ ଯୋଗେଶ୍ୱର ମହାଦେବଙ୍କ ପୂଜାରେ କୁନ୍ତୀ ଓ ଗାନ୍ଧାରୀଙ୍କର ବିବାଦମୂଳକ ଚରିତଟିକୁ ଅବହେଳା ଅର୍ଜୁନଙ୍କ ଦଶନାମ ବ୍ୟୁତ୍ପତ୍ତି ପ୍ରକାଶନରେ ବଙ୍ଗ ଭାରତକର୍ତ୍ତା କାଶୀରାମଦାସ ମହାଶୟ ଠିକ୍ ଅବିକଳ ଲେଖି ଅଛନ୍ତି । ପରନ୍ତୁ ସେ କହନ୍ତି କି ତଦବଧି ଅର୍ଜୁନ ଧନଞ୍ଜୟ ନାମରେ ଅଭିହିତ ହେଲେ । ଯଥା—

ଆମରି ସନ୍ତୁଷ୍ଟ ହୟେ ବଲେନ ବଚନ ।
ଧନପତି ଜିନ ତୁମି କରିଲେ ପୂଜନ ॥
ଆଜି ହୈତେ ନାମ ତବ ହୈଲ ଧନଞ୍ଜୟ ।
ଧନଞ୍ଜୟ ନାମରେ ଜାନହ ଏ ଆଶୟ ॥ ବି. ପ. ୪୧୨ ପୃଷ୍ଠା ।

କିନ୍ତୁ ଏହା ମୌଳିକ ମତର ଅନୁମତ ନୁହେ । ବ୍ୟାସଙ୍କ ମତରେ ଧନଞ୍ଜୟ ନାମର ବ୍ୟୁତ୍ପତ୍ତି ଅନ୍ୟଥା ଉକ୍ତ ଅଛି । ଯଥା—

ସର୍ବାନ୍ ଜନପଦାନ୍ ଜିତ୍ୱା ବିତ୍ତମାଦାୟ କେବଳଂ ।
**ମଧ୍ୟେ ଧନସ୍ୟ ତିଷ୍ଠାମି ତେନାହୁର୍ମାଂ ଧନଞ୍ଜୟଂ ॥ ବି. ପ.**

ଏବଂ ଶ୍ରୀକୃଷ୍ଣପ୍ରଣୋଦିତ ଦାରୁକ ନନ୍ଦିଘୋଷ ରଥ ସମର୍ପଣ କରିଥିବା କଥା ଲେଖାଅଛି । [୧] ଏତାବତ୍ ବିଷୟଗୁଡ଼ିକ ମୂଳାନୁମତ ନୁହେଁ । ମୂଳ ଗ୍ରନ୍ଥରେ ଉକ୍ତ ଅଛି, ଅର୍ଜୁନ ତୃଣସ୍ଥାପିତକୃତଚ୍ଛାଦକ ସ୍ତ୍ରୀବେଶ ତ୍ୟାଗପୂର୍ବକ ସୁବିଶ୍ବାସ-ପ୍ରସୂତ ହୃଦୟରେ ବୈଶ୍ୱାନରଙ୍କୁ ଧ୍ୟାନ କଲନ୍ତି ପ୍ରାକ୍ ତଦ୍ଦତ୍ତ ଦିବ୍ୟ ରଥ ବ୍ୟୋମରୁ ଭୂମିରେ ଅବତୀର୍ଣ୍ଣ ହେଲା । [୨] ପରେ ଅର୍ଜୁନ କୌରବସୈନ୍ୟସାଗରରେ ସଧୈର୍ଯ୍ୟରେ ପ୍ରବିଷ୍ଟ ହେଲେ । ମୂଳରେ ଯେପରି ଅର୍ଜୁନଙ୍କର ସମାଗମନାବ-ଗମନରେ କୃପ ଭୀଷ୍ମ ଦ୍ରୋଣାଦି ତତ୍ପ୍ରତି ଭୂରିନୈକବାରତ୍ତ ପ୍ରକାଶପୂର୍ବକ ଯୁଦ୍ଧସନ୍ଧାହରୁ ବିରତ ହେବାପାଇଁ ଦୁର୍ଯ୍ୟୋଧନଙ୍କୁ "ମହତନ୍ତ୍ରରସା ବଲଂଭୟନ୍ ନିଜ ଦୋଷେଣ କୁଧୀର୍ବିନଶ୍ୟତି" ଇତ୍ୟାକାରକ ସଦୁପଦେଶମାନ ଦେଇଥିଲେ, ସାରଳାଦାସଙ୍କ ଭାରତରେ ସେପରି ନୁହେଁ । କିନ୍ତୁ ଯୁଦ୍ଧପ୍ରକ୍ରିୟା ହିଁର ପ୍ରସର ମୂଳ ଅପେକ୍ଷା କିଛି ଊଣା ନୁହେଁ । [୩] ସାରଳାଦାସଙ୍କ ଭାରତରେ ଅର୍ଜୁନ ରଣାଙ୍ଗଣରେ ପ୍ରବେଶ କରିବାମାତ୍ରେ ଆତ୍ମପରିଚୟ ଦେଇ ଥିବାର ଉକ୍ତ ଅଛି । ମାତ୍ର ମୂଳମତେ ଯେତେବେଳେ ଅଦ୍ୱିତୀୟ ଧନୁର୍ଦ୍ଧର ପିତାମହ ଭୀଷ୍ମଦେବଙ୍କୁ ଯୁଦ୍ଧା ପଳାୟମାନ ଦେଖି ଦୁର୍ଯ୍ୟୋଧନ ସ୍ୱୟଂ ଯୁଯୁତ୍ସାରେ ପ୍ରୋତ୍ସାହିତ ହୋଇ ପ୍ରଧାବିତ ହେଲେ, ସେତେବେଳେ ଅର୍ଜୁନ ଆତ୍ମପରିଚୟ ପ୍ରଦାନରେ ତାହାଙ୍କୁ ଅଧିକ୍ଷେପ କରି ଅଛନ୍ତି । [୪] ଅମିତ କୌରବବଳ ଯୁଗପତ୍ ମୋହନାସ୍ତ୍ରରେ

---

[୧] ୧୫୭—୧୬୨ ପୃଷ୍ଠା ଦେଖନ୍ତୁ ।

[୨] ସ୍ୱାକ୍ ପପାତ ରଥଂ ତୂର୍ଣ୍ଣଂ ଦିବ୍ୟରୂପଂ ମନୋହରଂ ।

[୩] କେହି କେହି ଗ୍ରନ୍ଥକାରର ଅସମଗ୍ରଦର୍ଶୀ କହନ୍ତି, କୌରବକର୍ତ୍ତୃକ ଗୋହରଣ ଏବଂ ଯୁଦ୍ଧାଦିର ବୃତ୍ତାନ୍ତ ମୂଳ ତୁଳନାରେ ଅତି ସଂକ୍ଷିପ୍ତ କରି ଅଛନ୍ତି । ଦେଖନ୍ତୁ, କୌରବକର୍ତ୍ତୃକ ଗୋହରଣପ୍ରକ୍ରିୟା ୧୨୫ ପୃଷ୍ଠାରୁ ୧୮୬ ପୃଷ୍ଠା ପର୍ଯ୍ୟନ୍ତ ବିସ୍ତୃତ ଅଛି । ଏଥି ମଧ୍ୟରେ ବୀରମାନଙ୍କର ଅର୍ଜୁନଙ୍କ ସହ ଲଢ଼ିଖେଳା ୧୬୨ ପୃଷ୍ଠାରୁ ୧୮୬ ପୃଷ୍ଠା ଯାଏ ଯଥା ପ୍ରକାର ପ୍ରସାରିତ ହୋଇଅଛି ।

[୪] ଯୁଧିଷ୍ଠିରସ୍ୟାପି ନଦେଶକାଶ ପ୍ରାର୍ଥସ୍ତୃଷ୍ଣୟୋ ଯୁଧି ସଂସ୍ଥିତୋଽସି ।
ତଦର୍ଥମାବୃତ୍ୟ ମୁଖଂ ପ୍ରଯୁଙ୍କ୍ଷ ନରେନ୍ଦ୍ର ବୃତ୍ତଂ ସର ଧାର୍ତ୍ତରାଷ୍ଟ୍ର ॥
୬୫ ଅଧ୍ୟାୟ ।

ମୋହିତ ହେଲାରୁ ଶ୍ରୀ ସାରଳାଦାସ ଯେପରି ସୌବଳ ଶକୁନିଙ୍କି ଗର୍ଦ୍ଦଭପୃଷ୍ଠଶାୟୀ, ଦୁର୍ଯ୍ୟୋଧନଙ୍କୁ ଚଣ୍ଡାଳପାଦନ୍ୟସ୍ତ-ମସ୍ତକ କରିବା ପ୍ରଭୃତି ଅର୍ଜ୍ଜୁନଙ୍କର ଅମୀତି-ପ୍ରଣୋଦିତ ବର୍ଦ୍ଧିତୀକରଣର କାର୍ଯ୍ୟମାନ ଦେଖାଇ ଅଛନ୍ତି, ତାହା ସମ୍ପୂର୍ଣ୍ଣତଃ ମୂଳାନୁମୋଦିତ ନୁହେ। ମୂଳରେ ଏତିକିମାତ୍ର ବର୍ଦ୍ଧିତୀକରଣ ଉକ୍ତ ଅଛି ଯେ, ଅର୍ଜ୍ଜୁନ "ନଶ୍ଚିନ୍ତକୋପଃ ସ୍ୱଜନେ ବଧେପ୍ସୁ" ଏହା ଭାବି ଉତ୍ତରଦେଶପାଳନାର୍ଥ ଉତ୍ତରଙ୍କ କର୍ତ୍ତୃକ ଖ୍ୱଷ୍ଣାଦିଙ୍କର ଓ ମାନାଧିକ ଆୟୁଧିକମାନଙ୍କ ବସ୍ତ୍ରାଳଂକାର ହରଣପୂର୍ବକ ଦୁର୍ଯ୍ୟୋଧନଙ୍କର ମୁକୁଟମାତ୍ର ଛେଦନ କରିଥିଲେ।

ତତ୍ପରେ ସାରଳାଦାସ ମହାଶୟ ସ୍ୱାଭାବିକ-ସ୍ୱପ୍ନାପସ୍ମାର-ବିସ୍ମାରିତ-ବିବେକ ବିରାଟଙ୍କ କର୍ତ୍ତୃକ ଅକ୍ଷଣଳାକାରେ ଯୁଧିଷ୍ଠିରଙ୍କ ବିକ୍ଷତମସ୍ତକ ହେବାର କାରଣଭୂତ ପ୍ରାକ୍ତନଦୁଷ୍କର୍ମଫଳସୂଚକସ୍ୱରୂପ ଲେଖି ଅଛନ୍ତି କି, ଏକଦା ଶୈଶବରେ ଯୁଧିଷ୍ଠିର ଏକ କକର୍ଶ କର୍କର ପାଷାଣରେ ମଣ୍ଡୂକକୁ ପୃଷ୍ଠରେ ଘାତ କରି ହତ କରି ଥିବାରୁ ଯମରାଜ ଏତାଦୃଶ ଶାପ ଦେଇଥିଲେ। [୧] ଅପିଚ ଏହି ପ୍ରକରଣର ଅବସାନରେ ଅଜ୍ଞାତବାସର ଦିବସତ୍ରୟ ମାତ୍ର ଅବଶିଷ୍ଟ ଥିବାର ମଧ୍ୟ ପ୍ରକାଶ କରି ଅଛନ୍ତି। [୨] ଏହା ମୌଳିକ ମତର ଅନୁମତ ହୋଇଅଛି। ମୂଳରେ ବିରାଟଭୂପ କୌରବବିଜେତା ମହାପୁରୁଷ କେଉଁଠି ଅଛନ୍ତି ବୋଲି ଜିଜ୍ଞାସା କରନ୍ତେ ଉତ୍ତର ଉତ୍ତର କରି ଅଛନ୍ତି ଯେ, ସେହି ଦେବପୁରୁଷ କାଲି ବା ତତ୍ପର ଦିବସରେ ଅବଶ୍ୟ ଦେଖାଦେବେ। [୩] ଏଥିଦ୍ୱାରା ମଧ୍ୟ ଦିନତ୍ରୟ ଅବଶିଷ୍ଟ ଥିବାର ପ୍ରତୀୟମାନ ହେଉଅଛି।

ମୂଳ ବିରାଟ ପର୍ବର ସର୍ବାବସାନ ବୈବାହିକ ଉପପର୍ବର [୪] ପ୍ରାରମ୍ଭରୁ ଲେଖାଅଛି କି, କୌରବବାହିନୀ ବିଜୟ କମ୍ବା ଉତ୍ତର ଗୋଗ୍ରହର ତୃତୀୟ

---

[୧] ଯମ ବୋଲେ ବିନାଦୋଷେ ହତ୍ୟାକଲୁ ଯେତି।
ତା ମସ୍ତକେ ପଡ଼ୁ ମତ୍ସ୍ୟରାଜ ପଶାକାଠି ॥ ବି. ପ. ୧୯୦ ପୃଷ୍ଠା।

[୨] ଏ ଗୁପତ ତିନି ଦିନ ହେବୁ ଭୁଞ୍ଜି ଭୁନି— ୧୯୧ ପୃଷ୍ଠା।

[୩] ଅନ୍ତର୍ଦ୍ଧାନଂ ଗତସ୍ତତ୍ର ଦେବପୁତ୍ରୋ ମହାବଲଃ।
ସ ତୁ ଶ୍ୱୋବା ପରଶ୍ୱୋବା ମନ୍ୟେ ପ୍ରାଦୁର୍ଭବିଷ୍ୟତି॥ ୬୯ ଅ:

[୪] ୬୯ — ୭୨ ଅଧ୍ୟାୟମାନ ଦେଖନ୍ତୁ।

ଉତ୍ସବରେ ଦେବସଙ୍ଘ ସିଂହସଂହନନ କୃତ ମନ୍ତ୍ରଣ ଏକ ନିଷ୍ପନ୍ନ କାର୍ଯ୍ୟ ପାଣ୍ଡବ-ମାନେ କୃତସ୍ନାନ-ସ୍ୱସ୍ତ୍ୟୟନ ଓ ସମଳଂକୃତରେ ମନ୍ତ୍ରହୁତ ହୁତାଶନକଳ୍ପ ତେଜଃ-ପ୍ରଜ୍ୱଳିତ ହୋଇ ସାନୁଚରପାର୍ଷଦ ବିରାଟଭୂପେନ୍ଦ୍ରଙ୍କୁ ବିସ୍ମୟସ୍ତିମିତ-ତାରକେକ୍ଷଣ ଓ ଶଶୀପ୍ରମାଣଚେତା କରି ତଦୀୟ ସିଂହାସନୋପରି ସମାସୀନ ଓ ଅଭିଷିକ୍ତ ହେଲେ । (୧) କିନ୍ତୁ ଏ ସ୍ଥଳରେ ବୈଷମ୍ୟପ୍ରିୟ ସାରଳାଦାସ ମହୋଦୟ ଅସଙ୍ଗ ଯୌଧିଷ୍ଠିରାଭିଷେକକ୍ଷଣକୁ କେତେକ ଅତିରିକ୍ତ କଥାରେ ଆଶ୍ଚର୍ଯ୍ୟତର୍ଯ୍ୟ କରି ବର୍ଣ୍ଣି ଅଛନ୍ତି । ସେ କହନ୍ତି କି, ପ୍ରଥମତଃ ସହଦେବଙ୍କ ମନ୍ତ୍ରଣାରେ ସଭାର୍ଯ୍ୟ ଯୁଧିଷ୍ଠିରାଦିମାନେ ନିଶା ସମୟରେ ପୂର୍ବୋକ୍ତ ସର୍ବଶର୍ମିକର୍ମାଭ୍ୟୁଦୟିକ ଶମୀ ସମୀପରେ ଉପଗତ ହେଲେ । ଦୈବଗତ୍ୟା ବ୍ୟାସ, ବିଶ୍ୱାମିତ୍ର, ଧୌମ୍ୟ ପ୍ରଭୃତି ଋଷିମାନେ ଓ ଯଦୁବଂଶୀୟମାନେ ତତ୍ର ସମ୍ପ୍ରାପ୍ତ ହେଲେ । ପୁଣି ଇନ୍ଦ୍ରଙ୍କ ସମାଦେଶରେ ବିଶ୍ୱକର୍ମା ସୁଧର୍ମା ସଭାକୁ ସମୁପସ୍ଥାପିତ କଲେ । ତଦା ଯୁଧିଷ୍ଠିର ଦେବ ଦେବଗଣଙ୍କୁ ଧରି ମହାସମାରୋହରେ ସତୂର୍ଯ୍ୟରବ-ବ୍ରହ୍ମଘୋଷପୁରଃସର ଆପୂର୍ଯ୍ୟମାଣ ବହୁଳକାହାଳକୋଳାହଳରେ ଅଭିଷିକ୍ତ ହେଲେ । ଅଭିଷେକ ପରେ ସମାଗତ ସମବେତ ଦେବବୃନ୍ଦ ଓ ବନ୍ଧୁବର୍ଗ ଯେଝା ସ୍ଥାନକୁ ପ୍ରସ୍ଥାନ କଲାରୁ ସାନୁଜ ସଭାର୍ଯ୍ୟ ଯୁଧିଷ୍ଠିର ପୂର୍ବବତ୍ ବିରାଟନଗରସ୍ଥ ହୋଇ ବୈରାଟିକ ସିଂହାସନରେ ସମାସୀନ ହେଲେ । (୨)

ପାଠକେ, ବିରାଟଦେଶରେ ନିର୍ବାହିତ ଯୁଧିଷ୍ଠିରଙ୍କ ଅଭିଷେକ ସମୟକୁ ମାସାଦି ନିର୍ଦ୍ଧାରଣରେ ଶ୍ରୀ ସାରଳାଦାସ ମକର ଶୁକ୍ଳ ଚତୁର୍ଥୀ ବୋଲି କହି ଅଛନ୍ତି । (୩) ଏହା ସମ୍ପୂର୍ଣ୍ଣ ଭ୍ରାନ୍ତିସଙ୍କୁଳ । ପରନ୍ତୁ ଶ୍ରୀମାନ୍ ରାଜା କୃଷ୍ଣସିଂହଙ୍କ

---

(୧) ତତସ୍ତୃତୀୟେ ଦିବସେ ଭ୍ରାତରଃ ପଞ୍ଚପାଣ୍ଡବାଃ
ସ୍ନାତାଃ ଶୁକ୍ଳାମ୍ବରଧରାଃ ସମୟେ ଚରିତବ୍ରତାଃ ।
ବିରାଟସ୍ୟ ସଭାଂ ଗତ୍ୱା ଭୂମିପାଳାସନେଷ୍ୱଥ
ନିଷେଦୁଃ ପାବକପ୍ରଖ୍ୟାଃ ସର୍ବେ ଧିଷ୍ଣ୍ୟେଷ୍ୱିବାଗ୍ନୟଃ ॥ ୭୦ ଅ:

(୨) ୧୯୫ ପୃଷ୍ଠା ଦେଖନ୍ତୁ । ଏହି ଅଭିଷେକର ପ୍ରଧାନ ସମ୍ବତ୍ସର ବର୍ଣ୍ଣିତ ଅଛି । ଅପିଚ ଏହାପରେ ଦେଖିବେ ଅଭିମନ୍ୟୁ ଓ ଉତ୍ତରାଙ୍କ ପରିଣୟ-କ୍ଷଣକୁ ସୁଦ୍ଧା କିଞ୍ଚିତ୍ ବିଭିନ୍ନତାରେ ନିର୍ଣ୍ଣୟ କରି ଅଛନ୍ତି ।

(୩) ସ୍ଥାପାରେ ୧୯୪ ପୃଷ୍ଠା ଦେଖନ୍ତୁ ।

ଭାରତରେ ଆଷାଢ଼ ପୂର୍ଣ୍ଣିମା ବୋଲି ସମସ୍ତ ଯାହା ନିର୍ଦ୍ଧାରିତ ହୋଇଅଛି, ତାହା ଯଥାର୍ଥ ବୋଧହୁଏ । (୧) କାଶୀରାମଦାସ ବଙ୍ଗଭାରତରେ ମଧ୍ୟ ତାହାହିଁ କହି ଅଛନ୍ତି । (୨) କିନ୍ତୁ ମଦ୍ ଦୃଷ୍ଟ ମୁଦ୍ରିତ ମୂଳ ଗ୍ରନ୍ଥରେ ଏପରି ଉକ୍ତି ଥିବାର ଦେଖା ଯାଇନାହିଁ । ତଥାପି ପ୍ରଶ୍ନିତ ହେଁ, ଅନ୍ୟାନ୍ୟ ପୁସ୍ତକମାନଙ୍କରେ ଥାଇପାରେ । କାରଣ ପ୍ରୋକ୍ତ ସମସ୍ତ ନିର୍ଦ୍ଦେଶକୁ ଧରି ତତ୍ପରସ୍ଥାନ୍ତ ପ୍ରବର୍ତ୍ତିତ କେତେକ ଘଟଣାମାନଙ୍କର ସାମଗ୍ରିକ ବିବରଣର ପ୍ରମାଣମାନଙ୍କୁ ମିଳାଇ ନେଲେ ସୁସଙ୍ଗତ ହୋଇଅଛି । ଅପିଚ କେତେକ ହସ୍ତ ଲିଖିତ ପୁସ୍ତକମାନଙ୍କରେ ମଧ୍ୟ ପାଠର ନ୍ୟୂନାଧିକତା ହୋଇଥାଏ । ପାଠକେ ତତ୍ ତତ୍ ପ୍ରମାଣମାନ ଯଥାସ୍ଥାନରେ କ୍ରମଶଃ ଯଥାସମ୍ଭବ ପାଇ ପାରିବେ । ବର୍ତ୍ତମାନ ଦୁଇଗୋଟି କଥାରେ ଏ ବିଷୟକୁ ସୁସିଦ୍ଧାନ୍ତ କରି ଏହି ପ୍ରକରଣର ସମାପ୍ତି କରିବୁଁ ।

ଅଷ୍ଟାଦଶଦିବସାବସାନ ମହାଭାରତ ଯୁଦ୍ଧ ସମ୍ଭବତଃ ହିମାନ୍ତ୍ୟସ୍ତ ଓ ଶିଶିରାରମ୍ଭରେ ସମାରବ୍ଧ ହୋଇଥିଲା । ସେ ଯୁଦ୍ଧର ତ୍ରୟୋଦଶ ଦିବସରେ ସୌଭଦ୍ର ଅଭିମନ୍ୟୁ ପଞ୍ଚତ୍ୱପ୍ରାପ୍ତ ହୋଇଥିଲେ । ତେତେବେଳେ ପ୍ରାପ୍ତପଞ୍ଚତ୍ୱ ପତିଙ୍କ ଶୋକରେ ସମଭିଗତପ୍ରା ବୈରାଟୀ ଉତ୍ତରା ତନୀୟ ବିଳାପରେ ଛଅ ମାସ ମାତ୍ର ଅଭିମନ୍ୟୁଙ୍କ ସହାବସ୍ଥାନ ପାଇଥିବାର ଏବଂ ସପ୍ତମରେ ସେ ନିହତ ହୋଇ-ଥିବାର ବ୍ୟକ୍ତ କରି ଅଛନ୍ତି । (୩) ଏଥିରୁ ସ୍ପଷ୍ଟ ପ୍ରତିପନ୍ନ ହେଉଅଛି ଯେ, ବିରାଟ ଦେଶରେ ସମ୍ପନ୍ନ ଯୁଧିଷ୍ଠିରଙ୍କ ଅଭିଷେକର ଅର୍ଥାତ୍ ଅଜ୍ଞାତବାସ ସମାପ୍ତିର ପ୍ରାୟ ଛଅ ମାସରେ ଭାରତ ଆହବିକ ପ୍ରଳୟ ଘଟିଥିଲା ଏବଂ ପ୍ରୋକ୍ତ ଆଭିଷେକିକୋତ୍ସବ ଆଷାଢ଼ ପୂର୍ଣ୍ଣିମାରେ ସୁସାଧିତ ହୋଇଥିଲା ।

ତତଃପର ବହୁ ରାଜନ୍ୟଯୋଗ ଉଦ୍ୟୋଗପର୍ବର ନାମକରଣ ବନବାସ ଦୁଃଖକର୍ଷିତ ପାଣ୍ଡବମାନଙ୍କର ନ୍ୟାଯ୍ୟାନୁମୋଦିତ ଅର୍ଦ୍ଧରାଜ୍ୟପ୍ରାପ୍ତି ହେତୁକ

---

(୧) କୃଷ୍ଣସିଂହ ଭାରତ ବିରାଟପର୍ବର (ଗୁପାରେ) ୮୪ ପୃଷ୍ଠା ଦେଖନ୍ତୁ ।

(୨) କାଶୀରାମ ମହାଭାରତର ୪୩୫ ପୃଷ୍ଠା ଦେଖନ୍ତୁ ।

(୩) ସୌଭଦ୍ର ବିହରନ୍ କାଲେ ସରେଥାଃ ସୁକୃତାନ ମେ ।
ଏତାବାନିହ ସଂବାସୋ ବିହିତସ୍ତେ ମୟା ସହ ।
ଷଣ୍ମାସାନ୍ ସପ୍ତମେ ମାସି ତ୍ୱଂ ବୀର ନିଧନଂ ଗତଃ ।
ସ୍ତ୍ରୀ. ପ. ୨୦ ଅ, ୨୮ ଶ୍ଳୋକ ।

ସମୁଦ୍‌ଯୋଗକରଣରେ ହୋଇଅଛି । ଏଠାରେ ଆପାତତଃ ସଞ୍ଜୟଯାନାଭିଧ ଉପପର୍ବର ପ୍ରାରମ୍ଭରୁ ଅଭିମନ୍ୟୁଙ୍କ ବିବାହର ଅବ୍ୟବହିତ ପରେ ବିରାଟରାଜଙ୍କ ବିରାଟ ସଭାରେ ସମ୍ମତ ପାଣ୍ଡବସମୃଦ୍ଧି ସହିତ ଶ୍ରୀକୃଷ୍ଣ ପ୍ରଭୃତି ନୃପତିବୃନ୍ଦସମ୍ମତ ଦ୍ରୁପଦାଦିଙ୍କ ସହିତ "ମନ୍ତ୍ରମୂଳଂ ହି ବିଜୟଂ" ଏହିମତର ସପକ୍ଷତାରେ ରାଜ୍ୟାର୍ଥ ବିଗ୍ରହ ଓ ଯୁଦ୍ଧାର୍ଥ ସହାୟୀଭୂତ ପାର୍ଥିବମାନଙ୍କର ନିମନ୍ତ୍ରଣ ସ୍ଥିର କରି ଅଛନ୍ତି । ସେତେବେଳେ ଶ୍ରୀକୃଷ୍ଣ ଦ୍ରୁପଦଙ୍କୁ କହିଲେ କି, ବର୍ତ୍ତମାନ ଆମ୍ଭେମାନେ ସ୍ୱସ୍ଥାନକୁ ପ୍ରସ୍ଥାନ କରୁଅଛୁଁ, ଆପଣ ସର୍ବାପେକ୍ଷା ବୟୋବୃଦ୍ଧ ଓ ମତିବୃଦ୍ଧ ଏବଂ ଦ୍ରୋଣ ଓ କୃପଙ୍କର ସଖା ଅଟନ୍ତି; ଅତଏବ ଆପଣ କେବଳ ଭୂୟିଷ୍ଠଶୀଳବୟୋବୃଦ୍ଧ ପ୍ରତିପନ୍ନ ପ୍ରୟୋଜନ ବିରାଟଙ୍କ ସହ ଏ କାର୍ଯ୍ୟ ସବୁ ନିଷ୍ପନ୍ନ କରିବେ । ଯେପରି "ନଶ୍ଚେଷ୍ଟ୍ୟାଃ କ୍ଷତ୍ରିୟା ମଦାଃ" ଏହି ଅପବାଦରେ ଦୂଷ୍ୟମାନମାନସ ନ ହେବୁଁ, ତାହାହିଁ କରିବେ । ଏହା କହି ଶ୍ରୀକୃଷ୍ଣ ଦ୍ୱାରକାପ୍ରତିନିବୃତ୍ତ ହେବାରୁ ବିରାଟାଦି ସାଂଗ୍ରାମିକ ବିଷୟର ଆୟୋଜନ କଲେ । ତଥାପି ପ୍ରଥମତଃ ଦ୍ରୁପଦରାଜ ନିଜ ପୁରୋହିତ ପ୍ରଭୃମନୋଽନୁଗ ଦେଶକାଳାର୍ଥ-ସଂବାଦୀ ବାମଦେବଙ୍କୁ ଉଭୟ କୁଳର ଶାନ୍ତିରକ୍ଷାର୍ଥ ଦୁର୍ଯ୍ୟୋଧନଙ୍କଠାକୁ ପ୍ରେରଣ କରିଥିଲେ । (୧) ତତ୍ପୁରସ୍ତାତ୍ ରାଜାମାନଙ୍କଠାକୁ ନିମନ୍ତ୍ରଣାର୍ଥ ଦୂତ ପ୍ରେରଣ କରାଗଲା ।

କିନ୍ତୁ ଶ୍ରୀ ସାରଳାଦାସ ମହାଶୟ ରାଜାମାନଙ୍କର ଏହି ନିମନ୍ତ୍ରଣପ୍ରକ୍ରିୟା ପର୍ବର ବହୁ କଥା ପରେ ଅର୍ଥାତ୍ ଯୁଦ୍ଧଭୂମି ପ୍ରତି ସୈନ୍ୟନିର୍ଯ୍ୟାଣ ଓ ଶିବିର-ସନ୍ନିବେଶ ବିବରଣୀ ନିର୍ବାହ ପରେ ଲେଖି ଅଛନ୍ତି । ଅପିଚ କହନ୍ତି କି, ପାଣ୍ଡବ-ମାନେ ଅଭିମନ୍ୟୁଙ୍କ ବିବାହ ପରେ ଇନ୍ଦ୍ରପୁରସଂକାଶ ଇନ୍ଦ୍ରପ୍ରସ୍ଥରେ ଉପସ୍ଥିତ ହୋଇ ରାଜ୍ୟାର୍ଥ ଜୟୋଦଯୋଗ୍ଯ଼ଲସ୍ପୃହିତ ଯୁଧିଷ୍ଠିରଙ୍କ ଆଦେଶରେ ସ୍ୱୀୟ ପୁରୋହିତ ଉପାୟଚତୁଷ୍ଟୟାଭିଜ୍ଞ ଧୌମ୍ୟଙ୍କୁ ଧାର୍ତ୍ତରାଷ୍ଟ୍ର ପ୍ରତି ପ୍ରେରଣ କରିଥିଲେ (୨)

(୧) ଦ୍ୱାରକାଂ ତୁ ଗତେ କୃଷ୍ଣେ ଯୁଧିଷ୍ଠିରପୁରୋଗମାଃ,
ଚକ୍ରୁଃ ସାଂଗ୍ରାମିକଂ ସର୍ବଂ ବିରାଟଶ୍ଚ ମହୀପତିଃ । ଉ. ପ. ୪ ଅ:

(୨) ଧାର୍ତ୍ତରାଷ୍ଟ୍ର ଅଗ୍ରତେ କହିବ ଗୁରୁ ଯାଇ ।
ଇନ୍ଦ୍ରପ୍ରସ୍ଥ ରାଜ୍ୟ ମୋର ଛାଡ଼ୁ କୁରୁସାଇଁ ॥ ଇତି ॥

କାଶୀରାମଦାସଙ୍କ ମହାଭାରତରେ ସୁଦ୍ଧା ପ୍ରଥମତଃ ବିରାଟ ଦେଶରୁ ଧୌମ୍ୟଙ୍କୁ ପଠାଇଥିବା କଥା ଉକ୍ତ ଅଛି ।

ଏବଂ ଧୃତରାଷ୍ଟ୍ରପ୍ରେରିତ ଅଜ୍ଞାନଭଦ୍ରର ବଦୂର ଯୁଧିଷ୍ଠିରଙ୍କୁ କେତେକ ଦିନପାଇଁ ସାଂଗ୍ରାମିକୋଦ୍ୟୋଗରୁ ନିବୃତ୍ତ ହେବା ସକାଶେ ଜଣାଇ ଥିଲେ । ଏ ସମୟକୁ ଯୁଧିଷ୍ଠିରଙ୍କର ବୟଃପ୍ରମାଣ ପଞ୍ଚବିଂଶ ବର୍ଷ ହୋଇ ଥିବାର ଏ ମହାଶୟ ସିଦ୍ଧାନ୍ତ କରି ଅଛନ୍ତି, ମାତ୍ର ତାହା ସୁସଙ୍ଗତ ବୋଧହୁଏ ନାହିଁ । ଏହା ତାହାଙ୍କର ଅନୁମାନକ ତତ୍ତ୍ୱରସିଦ୍ଧ କିମ୍ବା ଅନୁଲେଖକଙ୍କର ଅଳୀକବଦ୍ଧି ଗ୍ରନ୍ଥପ୍ରକ୍ଷେପିତ ବୈଦଗ୍ଧ୍ୟର ନିର୍ଣ୍ଣୟ, ତାହା କିଛି ସ୍ଥିର କରାଯାଇ ନ ପାରେ । ତଥାଚ ଏହା ସୁଦ୍ଧା ତାଳପତ୍ର ଅପେକ୍ଷା ଛାପାରେ କିଛି ଭିନ୍ନ ପ୍ରକାର ହୋଇଅଛି । (୧) ସେ ଯାହାହେଉ ମୂଳ ଗ୍ରନ୍ଥରେ ଏତାଦୃଶ ନିର୍ଦ୍ଧାରଣ ଦେଖାଯାଇ ନାହିଁ । କିନ୍ତୁ ଏଥିକି

---

ଅଭିମନ୍ୟୁ ବିବାହ ଉତ୍ସବ ଦିନାନ୍ତରେ ।
ରଜନୀ ବଞ୍ଚିଣ ସୁଖେ ମହାପ୍ରମାଦରେ ॥
ପ୍ରାତଃକାଳେ ବସିଲେକ ବିରାଟ ସଭାୟ ।
ଶତସୂର୍ଯ୍ୟ ଶତ ଚନ୍ଦ୍ର ଯେସନ ଶୋଭା ପାୟ ॥

(ବିରାଟ ପର୍ବର ପରେ)

ଏଇ କଥା କହିଲ ସକଳ ରାଜାଗଣ ।
ତେବେ ଧୌମ୍ୟ ବଲିଲେକ ଧର୍ମର ନନ୍ଦନ ॥
ହସ୍ତିନାନଗରେ ତୁମି ଯାଅ ଶୀଘ୍ରଗତି ।
ପ୍ରୀତିବାକ୍ୟେ ବୁଝାଇଣ କୁରୁଗଣ ପ୍ରତି ॥ ୪୭୨—୪୭୫ ପୃଷ୍ଠା ॥

କିନ୍ତୁ ସାରଳାଦାସ କବି ଯାହା ଇନ୍ଦ୍ରପ୍ରସ୍ଥରୁ ଦୂତ ପ୍ରେରଣ କହନ୍ତି, ତାହା ଅସଙ୍ଗତ ।

(୧) ଯୁଧିଷ୍ଠିର ବୋଇଲେ ମୋତେ ହୋଇଥିଲା ଏକାଦଶ ବର୍ଷ ।
ପାଣ୍ଡୁ ମହାରାଜା ହୋଇଲେ ପ୍ରାଣେ ନାଶ ॥
ଅଣିଶ ବରଷରେ ମୋତେ ରୁହାଇଲେ ଜତୁଘରେ ।
ତହୁଁ ଉତୁରିଲା ପଞ୍ଚବିଂଶ ସମ୍ବତ୍ସରେ ॥
ପଞ୍ଚବିଂଶ ବରଷରେ ହୋଇଲୁ ବନବାସୀ ।
ପାଞ୍ଚାଳୀକୁ ଆଣିଲୁ ମହାଲକ୍ଷ ନାଶି ॥
ତହିଁ ଉତ୍ତାରେ ଯେ ଅଇଲୁଁ ରାଜ୍ୟକୁ ।
ପୁଣ ପଣି ତ ନ ଦେଲେ ଆମ୍ଭଙ୍କୁ ହସ୍ତିନାକୁ ॥

ଏତଦ୍ଦ୍ୱାରା ପ୍ରମାଣ ମିଳୁଅଛି ଯେ ଅର୍ଜୁନ ଯେତେବେଳେ ତ୍ରୟସ୍ତ୍ରିଂଶବର୍ଷବୟସ୍କ, ସେହି ସମୟରେ ଖାଣ୍ଡବାରଣ୍ୟଙ୍କବ ଦଗ୍ଧ କରିଥିଲେ । (୧) ତାହାହେଲେ ଦେଖନ୍ତୁ, ଖାଣ୍ଡବଦାହର କେତେକ ବର୍ଷ ପରେ ପାଣ୍ଡବମାନଙ୍କର ବନବାସ ଘଟିଥିଲା ? ତନ୍ମଧ୍ୟରେ ତ ସେମାନେ ତ୍ରୟୋଦଶ ବର୍ଷ ଅତିବାହିତ କରିଥିଲେ । ସେ ସବୁ ସମୟର ପରିମାଣ ଏକତ୍ର ସଙ୍କଳନ କରିନେଲେ, ରାଜ୍ୟାର୍ଥ ଉଦ୍‌ଯୋଗ ସମୟରୁ ଅର୍ଜୁନଙ୍କ ବୟଃପ୍ରମାଣ ଷଟ୍‌ଚତ୍ୱାରିଂଶତ୍ ଅପେକ୍ଷା ଅତିରିକ୍ତ ହେଉଅଛି । ସେତେବେଳେ ଯୁଧିଷ୍ଠିରଙ୍କର ବୟଃପରିମିତ ଅନୁମିତ ସାଧନରେ ପଞ୍ଚଚତ୍ୱାରିଂଶତ୍ ବର୍ଷର ସନ୍ନିହିତ ବୋଧହୁଏ । ଅତଏବ ପୂର୍ବଶଂସିତ ଉତ୍କଳ ଭାରତର ସିଦ୍ଧାନ୍ତ ଅଭ୍ରାନ୍ତ ବୋଲି କୁହାଯାଇ ନ ପାରେ ।

ଭବିଷ୍ୟମାଣ ମହାହବରେ ସାହାଯ୍ୟକରଣାର୍ଥ ସ୍ୱାନୁକୂଳ ରାଜାମାନଙ୍କର ନିମନ୍ତ୍ରଣପ୍ରକ୍ରିୟାରେ କେବଳ ଅର୍ଥାତ୍ ସଞ୍ଜୟଯାନାବଧି ଉପପର୍ବ ପାଠରେ ଶ୍ରୀକୃଷ୍ଣଙ୍କ ନିମନ୍ତ୍ରଣ ସକାଶେ ଅର୍ଜୁନ ଓ ଦୁର୍ଯ୍ୟୋଧନଙ୍କର ଦ୍ୱାରକାପ୍ରୟାଣ ଉକ୍ତ ଅଛି । ମାତ୍ର ଏ ମହାଶୟ ଏହି ସନ୍ଦର୍ଭକୁ ଶ୍ରୀକୃଷ୍ଣଙ୍କ ଦୌତ୍ୟକର୍ମ ସମାପନ ପରେ ଘଟିଥିବାର କହି ଅଛନ୍ତି । ପରନ୍ତୁ ତହିଁ ମୂଳାନୁକ୍ତ କେତେକ ଆନୁଷଙ୍ଗିକ ବୃତ୍ତ

---

ସମସ୍ତେକ ରହିଲୁ ବାରୁଣୀ ନଗରରେ ।
କପଟପଶା ଖେଳାଇ ସେମନ୍ତ ରାଜ୍ୟଭାରରେ ॥
ପୁଣ ଦ୍ୱାଦଶ ବରଷ ବୁଲିଲୁ ଘୋରବନ ।
ବରଷେ ତେର ଦିନ ଅଜ୍ଞାତବାସେଣ ॥
ଏବେ ସ୍ଥାନ ଖଣ୍ଡିଏ ନ ଦେଲା କୁରୁବଳି ।
ସଂସାର ଜନ ମୋତେ ନ ବୋଲିବେ ବାଛି ॥
ପୁରୋହିତେ ଆଉ କେତେ ଦୁଃଖ ସହିବୁ ସ୍ୱଭାବେ ।
ପଞ୍ଚତରିଶ ବରଷ ହୋଇଲା ମୋତେ ଏବେ ॥

ଛପା ପୁସ୍ତକରେ ଉ. ପ. ୭ ପୃଷ୍ଠା ଦେଖନ୍ତୁ । ଝମେ ଭିନ୍ନ ହୋଇଅଛି ।

(୧) ଏକାନ୍ତବିଜୟସ୍ତୋକ ଶ୍ରୂୟତେ ଫାଲ୍‌ଗୁନସ୍ୟ ଚ ।
ତ୍ରୟସ୍ତ୍ରିଂଶତ୍ ସମାଃ ସୃତ ଖାଣ୍ଡବେଽଗ୍ନିମତର୍ପୟତ୍ ।
ଜଗାୟ ଚ ସୁରାନ୍ ସର୍ବାନ୍ ନାସ୍ୟବଦ୍ଧଃ ପରାଜୟଂ ।
ଯସ୍ୟ ଯନ୍ତା ହୃଷୀକେଶଃ ଶୀଳବୃତ୍ତସମୋଯୁଧି ।

ଉ. ପ. ୫୦ ଅଧ୍ୟାୟ ୧୦, ୧୧ ଶ୍ଲୋକ ।

ମଧ୍ୟ ବିବୃତ କରି ଅଛନ୍ତି । ଇତଃପୂର୍ବେ ପାଣ୍ଡବସୌହାର୍ଦ୍ଦ୍ୟସାଧକ ଦୌତ୍ୟକର୍ମର ସାଧନାର୍ଥ ପ୍ରସ୍ଥିତ ଶ୍ରୀକୃଷ୍ଣ ଦୁର୍ମେଧ ଦୁର୍ଯୋଧନଙ୍କ ଅତ୍ୟାଗୃହରେ ପରିକ୍ଳୃପ୍ତ ହୋଇ ତାହାଙ୍କୁ ଅଲକ୍ଷୀକ କରିଥିଲେ ବୋଲି ପୁନଶ୍ଚ ଦୁର୍ଯୋଧନ ସ୍ୱୀୟ ବହୁ ଅନୁନୟ ବିନୟରେ ଅପିତ ରାମଙ୍କ ଆନୁକୂଲ୍ୟରେ ସମ୍ପତ୍ତ ସପ୍ରୀତ କୃଷ୍ଣଙ୍କ ଠାରୁ ରାଜଲକ୍ଷ୍ମୀ ପୁନଃପ୍ରାପ୍ତ ହେବା, ରାମଙ୍କ ଆଦେଶରେ ସାତ୍ୟକ ତଦନୁଜଙ୍କୁ ସ୍ୱକୀୟ ଭବନକୁ ଆଣିବାକୁ ଯାଇ ତହିଁପୂ ବିହାରଭବନରେ ଏକତ୍ର ସୁପ୍ତ ସତ୍ୟଭାମାଙ୍କଦ୍ୱାରା ସମ୍ବାହିତପାଦ କୃଷ୍ଣ ଏବଂ ଅର୍ଜୁନଙ୍କୁ ଦେଖି ତଦୁଭୟଙ୍କର ଏକ ମୂର୍ତ୍ତିତ୍ୱ ପ୍ରକାଶନ କରିବା, ବହୁ ବିଗ୍ରହ ପରେ ଅଗ୍ରଜାଦେଶମତେ ଶ୍ରୀକୃଷ୍ଣ ଅର୍ଜୁନଙ୍କର କେବଳ ସାରଥ୍ୟସ୍ୱୀକାର ସ୍ଥଳରେ ଯଦି କୃଷ୍ଣ ଅସ୍ତ୍ରହସ୍ତ ହୁଅନ୍ତି, ତେବେ ମୁଁ ଆସି ସମସ୍ତଙ୍କୁ ବିନିପାତ କରିବି ବୋଲି ରାମ ଧାର୍ତ୍ତରାଷ୍ଟ୍ରଙ୍କୁ ଆଶ୍ୱାସିତ କରିବା ପ୍ରଭୃତି ଘଟନା ମୂଳରେ ଅନୁକ୍ତ ଥିଲେ ସୁଦ୍ଧା ଏଗୁଡ଼ିକର ଆମୂଳମସ୍ତକ ସମସ୍ତ କଥା ଅଳୀକ ନୁହେ । (୧)

ଅତଃପର ମୂଳଗ୍ରନ୍ଥରେ ଉକ୍ତ ଅଛି କି ସ୍ୱଦେଶତବେଶାଭରଣପ୍ରିୟ ମହାରାଜ ଶଲ୍ୟ ପାଣ୍ଡବାନୁକୂଲ୍ୟରେ ସାହାଯ୍ୟକରଣାର୍ଥ ଆସୁଥିବାର ଜାଣିପାରି କୂଟମତି ଦୁର୍ଯୋଧନ ଉପାୟକୌଶଳରେ ତାହାଙ୍କୁ ଆପଣାର କଲେ । ଶଲ୍ୟ ଧୃତରାଷ୍ଟ୍ର-ସମ୍ଭୂକ ଦମ୍ଭସମ୍ଭୂତ ପରିଚର୍ଯ୍ୟା ସ୍ୱୀକାର କରି ସୁଦ୍ଧା ହୃତପ୍ରାର୍ଥିତ ଅକ୍ଷୁଣ୍ଣ ବାତ୍ସଲ୍ୟ-ବଶତଃ ଉପପ୍ଲବ୍ୟବାସ୍ତବ୍ୟ ଯୁଧିଷ୍ଠିରଙ୍କଠାକୁ ଯାଇ ତହିଁପୂ ପ୍ରାର୍ଥନାମତେ (୨)

---

(୧) ସ୍ୱାମୀ ଅର୍ଜୁନ ରଥେ ମୁଁ ହେବି ସାରଥି ।
ଉଭୟ କୁଳ ମଧ୍ୟସ୍ଥ ହେବି ହଳପତି ॥
ସଂଗ୍ରାମେ ଶସ୍ତ୍ର ମୁଁ ନ ଧରିବି ଦେବ ହଳି ।
ସତ୍ୟବାକ୍ୟ କହୁଛି କହିଲେ ବନମାଳୀ ॥ ଉ. ପ. ୮୨ ପୃଷ୍ଠା ।
ବଳରାମ ବୋଇଲେ ମୋ ନିୟମ ଲଙ୍ଘିଲେ ।
ମୋତେ ସୁମରିବୁ କୃଷ୍ଣ ଅସ୍ତ୍ରକୁ ଧଇଲେ ॥
ମୁହିଁ ଯାଇ ରଙ୍ଗେ କରି ଭାରତ ଯୁଦ୍ଧରେ ।
ମାରିବଇଁ ପାଣ୍ଡବନ୍ତ କୃଷ୍ଣ ସହିତରେ ॥ ଉ. ପ. ୮୪ ପୃଷ୍ଠା ।

(୨) ତତ୍ର ପାର୍ଥୋଽର୍ଜୁନୋ ରାଜନ୍ ଯଦି ମତ୍ପ୍ରିୟମିଚ୍ଛସି ।
ତେଜୋବଧଶ୍ଚ ତେ କାର୍ଯ୍ୟଃ ସୌତେରସ୍ୟାଜ୍ଞଯ୍ୟାବହଃ ।
୭ ଅଧ୍ୟାୟ ୪୪ ଶ୍ଳୋକ । ଶଲ୍ୟ ପ୍ରତି ଯୁଧିଷ୍ଠିରଙ୍କ ବାକ୍ୟ ।

ଯୁଦ୍ଧସ୍ଥ ଅର୍ଜୁନଙ୍କର ଅଭୟପ୍ରଦାନରେ ସମ୍ମତ ହୋଇ ପୂର୍ବାନୁଭୂତ ଜଟାସୁର ଘାତକ ପ୍ରଭୃତି ଜନ୍ୟ ଦୁଃଖବିସ୍ମରଣାର୍ଥ ବହୁ ସାନ୍ତ୍ୱନା ଦେଇ ସମୟରେ ନଶାଟ ନିଶାରଣ-ବଶାରଦ ଇନ୍ଦ୍ରଙ୍କର ମଧ୍ୟ ଏତାଦୃଶ ଘୋର କଷ୍ଟ ସମ୍ଭବଥିଲା ବୋଲି ଇନ୍ଦ୍ର ଓ ବୃତ୍ରାସୁରଙ୍କର ଆହବଜ ଘଟନା ବର୍ଣ୍ଣନ କରିଥିଲେ । (୧) ମାତ୍ର ସାରଳାଦାସ ମହୋଦୟ ଏ ସବୁ ଏବଂ ସଞ୍ଜୟଯାନ ପର୍ବରେ ଅନ୍ତମଣ୍ଡଳରେ ବର୍ଣ୍ଣିତ ଦ୍ରୁପଦ-ରାଜପ୍ରେରିତ ସନ୍ଦେଶହରଙ୍କ ମୁଖରୁ ପାଣ୍ଡବୀୟ ସନ୍ଦେଶ ଶ୍ରବଣରେ ଧୃତାନୁତାପ ଧୃତରାଷ୍ଟ୍ର ପାଣ୍ଡବମାନଙ୍କଠାକୁ ଶାନ୍ତିରକ୍ଷାର୍ଥ (୨) ଗାବଲ୍‌ଗଣି ସଞ୍ଜୟଙ୍କୁ ପଠାଇଥିବା ଏବଂ ଧୃତରାଷ୍ଟ୍ର ସଞ୍ଜୟଙ୍କର ସମ୍ବାଦ ପ୍ରଭୃତି କଥାକୁ ଏ ସ୍ଥଳରେ ତ୍ୟାଗ କରି ଅଛନ୍ତି ।

ମୂଳଗ୍ରନ୍ଥରେ ସଞ୍ଜୟଯାନପର୍ବ ଓ ଭଗବଦ୍‌ଯାନପର୍ବର ସନ୍ଧି ବା ମଧ୍ୟରେ ପ୍ରଜାଗରପର୍ବ ସନତ୍ସୁଜାତପର୍ବ ଆଉ ଯାନସନ୍ଧିନାମକ ଗୋଟିଏ ଅନଳ୍ପସର ଉପପର୍ବ ଉକ୍ତ ଅଛି ।

ସେଠାରେ ପ୍ରଜାଗର ଉପପର୍ବରେ ଅଙ୍ଗନାଦ୍ଧ ଭଦ୍ର ବିଦୁର ଓ ଶ୍ରୁତବୃଦ୍ଧ ସଞ୍ଜୟ ଧୃତରାଷ୍ଟ୍ରଙ୍କ ସମ୍ପ୍ରାପ୍ତାଖିଳବଦ୍ୟ ଧର୍ମରାଜଙ୍କର ସୁଗୁଣଗଣ ପ୍ରଖ୍ୟାପନପୂର୍ବକ ବ୍ୟସନନିବାସନାର୍ଥ ବହୁବିଧ ହିତବାକ୍ୟରେ ଉପଦେଶ ଦେବା, (୩) କେଶିନୀ କନ୍ୟା ନିମିତ୍ତ ବିରୋଚନ ଓ ସୁଧନ୍ୱାଙ୍କର ପ୍ରବର୍ତ୍ତିତ ବାଦବିସମ୍ବାଦ ପ୍ରକାଶ କରିବା, (୪) ଅପିଚ ହଂସରୂପୀ ଆତ୍ରେୟ ମହର୍ଷି ଓ ସାଧ୍ୟନାମକ ଦେବତା-ମାନଙ୍କର ସମ୍ବାଦମୂଳକ ବହୁ ପ୍ରକାର ଧର୍ମୋପଦେଶ ଇତ୍ୟାଦି ନାନା କଥା ପ୍ରକାଶ କରିଥିବାର ଉକ୍ତ ଅଛି । (୫)

---

(୧) ଅଷ୍ଟମାଧ୍ୟାୟ ପ୍ରାରମ୍ଭରୁ ସପ୍ତଦଶାଧ୍ୟାୟ ଶେଷଯାଏ ଇନ୍ଦ୍ର ବୃତ୍ରାସୁର ଘଟଣା ଲେଖାଅଛି ।

(୨) ବୋଧହୁଏ ସାରଳାଦାସ ମହାଶୟ ସଞ୍ଜୟଯାନ କଥା ସବୁ ଠିକ୍ ମନେ ରଖି ନ ପାରି ଇତଃପୂର୍ବେ ଶଂସିତ ବିଦୁରଯାନ କଥା ବର୍ଣ୍ଣି ଅଛନ୍ତି ।

(୩) ୩୨ ଅଧ୍ୟାୟ ପ୍ରାରମ୍ଭରୁ ୩୩ ଅଧ୍ୟାୟ ଶେଷଯାଏ ଦେଖନ୍ତୁ ।

(୪) ୩୪ ଅଧ୍ୟାୟ ଦେଖନ୍ତୁ ।

(୫) ୩୫ ଅଧ୍ୟାୟ ପ୍ରାରମ୍ଭରୁ ୩୯ ଅଧ୍ୟାୟ ଶେଷଯାଏ ଦେଖନ୍ତୁ ।

ଏହା ପରେ ବିଦୁରଙ୍କ ପ୍ରସ୍ତାବରେ ସମାଗତ ସନତ୍ସୁଜାତ ମହର୍ଷି ମୃତ୍ୟୁବିରହିତ ବ୍ରହ୍ମଜ୍ଞାନବିଷୟକ ଅଧ୍ୟାୟପଞ୍ଚକବ୍ୟାପୀ ସନତ୍ସୁଜାତ ଗୀତା ନାମକ ଗୋଟିଏ ଉପପର୍ବ ଅଭିହିତ କରି ଅଛନ୍ତି । (୧)

ତା ପରେ ଯାନସନ୍ଧିପର୍ବର ପ୍ରାରମ୍ଭରୁ ସଞ୍ଜୟ କୁରୁସଭାରେ ଯୋଦ୍ଧୃମାନ ନମୁଚିସୂଦନସମାନମାନ ଅର୍ଜୁନାଦିଙ୍କର ଅଭିମତ କଥା ଜଣାଇବା, ଭୀଷ୍ମ ଓ ଦ୍ରୋଣ କୃଷ୍ଣାର୍ଜୁନଙ୍କର ଏକାତ୍ମତା (୨) ଓ ପାଣ୍ଡବମାନଙ୍କର ଅଲୌକିକ-ପରାକ୍ରମତାର ବର୍ଣ୍ଣନାରେ କର୍ଣ୍ଣ-ଶକୁନି-ସନାଥ ଅବିବେକତା ପ୍ରତିହତମତି ଦୁର୍ଯ୍ୟୋଧନଙ୍କ ଆକ୍ଷେପ କରିବା, ତଚ୍ଛ୍ରବଣରେ ଧୃତରାଷ୍ଟ୍ର ବିହ୍ବଳ ଚିତ୍ତ ହେବା, ଧୃତରାଷ୍ଟ୍ରଙ୍କ ଶୋଚନାରେ ଉତ୍ତେଜିତ ଆପୁର ଅଗ୍ରଭୂମିର ଆରୁରୁକ୍ଷୁ ରୁକ୍ଷାକ୍ଷର-ଭାଷଣଦକ୍ଷ ଦୁର୍ଯ୍ୟୋଧନ ପାଣ୍ଡବଙ୍କୁ ଅବଶ୍ୟ ନିପାତ କରିବୁଁ ବୋଲି ବହୁ କଥା କହିବା, ଅବଗତଦେଶକାଳାବସ୍ଥିତିତତ୍ତ୍ୱ ଧୃତରାଷ୍ଟ୍ର କୁଳାନ୍ତୋଶକରବୃଦ୍ଧିର ଦୁର୍ଯ୍ୟୋଧନଙ୍କୁ ନାନା ପ୍ରକାର କଥାରେ ବୁଝାଇବା, ତଥାପି ଅବାଧ୍ୟ ହେବାରୁ ପରିଶେଷରେ "ଭୀତୋ ଭୀମସ୍ୟ ସଂପ୍ରାପ୍ତ ସ୍ମର୍ତ୍ତାସି ବଚନସ୍ୟ ମେ" (ପଛେ ଭୀମର ସମ୍ମୁଖରେ ପଡ଼ିଲେ ମୋ କଥା ସ୍ମରଣ କରିବୁ) ଏହା କହି ବିରତ ହେବା, ଗାବଲ୍‌ଗଣିଙ୍କ ମୁଖରୁ ଯୁଦ୍ଧସନ୍ଧିର କୃଷ୍ଣାର୍ଜୁନଙ୍କର ସ୍ଥିର ସିଦ୍ଧାନ୍ତ ଶ୍ରବଣ କରି କର୍ଣ୍ଣ ଆତ୍ମୋନ୍ନତିବିକଥନ କଲାରୁ ଅଖର୍ବଗର୍ବସର୍ବଂକଷପୌରୁଷ ଭୀଷ୍ମ ତାହାଙ୍କୁ ଆକ୍ଷେପ କରିବା, ତଦାକ୍ଷେପନିର୍ଦ୍ଦିଷ୍ଟ ପ୍ରହୃଦୟ କର୍ଣ୍ଣ ଭୀଷ୍ମଙ୍କ ଅସ୍ତି ଭୃଯାଏ ଶସ୍ତ୍ରତ୍ୟାଗ କରିବା, ତେତେବେଳେ ବିଦୁର ଶମଦମାଦି ସମ୍ବନ୍ଧରେ କେତେକ କହିଲା ପରେ ବୈତଂସିକଲକ୍ଷୀଭୂତ ଶକୁନିଦ୍ୱୟରେ ବିଗ୍ରହ କଥାକୁ "ଏବଂ ଯେଜ୍ଞାତୟୋଽର୍ଥେଷୁ ମିଥୋ ଗଚ୍ଛନ୍ତି ବିଗ୍ରହଂ । ତେଽମିତ୍ରବଶମାୟାନ୍ତି ଶକୁନାବିବ ବିଗ୍ରହାତ୍ ।" (୩)

---

(୧) ଚତ୍ୱାରିଂଶ ଅଧ୍ୟାୟ ପ୍ରାରମ୍ଭରୁ ପଞ୍ଚଚତ୍ୱାରିଂଶ ଅଧ୍ୟାୟ ଶେଷଯାଏ ଦେଖନ୍ତୁ ।

(୨) ଏଷ ନାରାୟଣଃ କୃଷ୍ଣଃ ଫାଲ୍ଗୁନଶ୍ଚ ନରଃ ସ୍ମୃତଃ ।
ନାରାୟଣୋ ନରଶ୍ଚୈବ ସତ୍ତ୍ୱମେକଂ ଦ୍ୱିଧାକୃତଂ ॥

ଉ. ପ. ୪୮ ଅଧ୍ୟାୟ ୨୧ ଶ୍ଳୋକ ।

(୩) ଏହାର ଜ୍ଞାତ୍ପ୍ରାଂଶ ଏହି— କୌଣସି ଏକ ଶାକୁନିକର ଜାଲନିପତିତ ପକ୍ଷିଦ୍ୱୟ ଜାଲ ସହିତ ଆକାଶରେ ଉଡ଼୍ଡୀନ ହୋଇଅଛନ୍ତି । ଶାକୁନିକ ସେମାନଙ୍କୁ ଅନୁଧାବନ କରୁଅଛି । ମାର୍ଗ ମଧ୍ୟରେ କୌଣସି ଋଷି ପ୍ରଶ୍ନ

ଇତ୍ୟାକାରକରୂପେ ପ୍ରକାଶ କରିବା ଏବଂ ଧୃତରାଷ୍ଟ୍ରଙ୍କ ସମକ୍ଷରେ ବ୍ୟାସାଦିଙ୍କ ସଞ୍ଜୟ ଶ୍ରୀକୃଷ୍ଣଙ୍କ ଭକ୍ତିପ୍ରାପ୍ତି ଓ ନାମାଳିର ବ୍ୟାଖ୍ୟାନ ପ୍ରଦାନ କରିଥିବା ବିଷୟ-ମାନ ଯଥାକ୍ରମେ ଉକ୍ତ ଅଛି ।

ପ୍ରୋକ୍ତ ଉପପର୍ବଦ୍ୱୟର କଥାମାନ ସାରଳାଦାସ ମହୋଦୟ ପ୍ରାୟଶଃ ଲେଖି ନାହାନ୍ତି କହିଲେ ଚଳେ । ଧର୍ମନୀତିମୂଳକ ପ୍ରଜାଗରପର୍ବ ଆଉ ବୈଷ୍ଣବ-ତତ୍ତ୍ୱବିଷୟକ ସନତ୍ସୁଜାତ ପର୍ବର ନାମ ପର୍ଯ୍ୟନ୍ତ ଏ ମହୋଦୟ ଆଦୌ ଗ୍ରହଣ କରି ନାହାନ୍ତି । ଯାନସନ୍ଧି ଉପପର୍ବାନ୍ତର୍ଗତ ଭୀଷ୍ମଦ୍ରୋଣାଦି-ସମ୍ବାଦାତ୍ମକ କେତେକ କଥାଂଶକୁ ମାତ୍ର ଯଥାସ୍ଥାନରେ ନ ହେଲେ ସୁଦ୍ଧା ସ୍ଥାନାନ୍ତରରେ ପ୍ରାସଙ୍ଗିକ କ୍ରମେ କହିଦେଇ ଅଛନ୍ତି । ଏହି କବି ମହୋଦୟ ପ୍ରଜାଗରପର୍ବ ଓ ସନତ୍ସୁଜାତ ପର୍ବର ବିଷୟ ସ୍ୱୀୟ ଗ୍ରନ୍ଥରେ ଅନୁକ୍ତ ରଖିଥିବା ପରି କାଶୀରାମଦାସ କୃତ ବଙ୍ଗ ଭାରତରେ ସୁଦ୍ଧା ଅନୁକ୍ତ ଅଛି । ପ୍ରୋକ୍ତ ବଙ୍ଗ ଭାରତରେ ଯାନସନ୍ଧି ପର୍ବର କଥାମାନ ସୁଦ୍ଧା ଯଥାକ୍ରମରେ ବର୍ଣ୍ଣିତ ହୋଇନାହିଁ । [୧] ମୂଳଗ୍ରନ୍ଥର କେବଳ ଅନୁକରଣଦ୍ୱାରା ଭାଷାନ୍ତରୀକୃତ ପୁରାଣମାନଙ୍କରେ ବହୁଶଃ ଏହି ଭ୍ରମ ଘଟିଥାଏ । ସେମାନେ ଚରିତ୍ରର ସ୍ଥୂଳାଂଶର ଅବଲମ୍ବନରେ କେବଳ ଲେଖିଯାଇ ଥିବାରୁ ବୋଧହୁଏ ଏପରି ହୋଇଥାଏ । ଏତାଦୃଶ ଲେଖାରେ ତତ୍ତ୍ୱ ଓ ବ୍ରହ୍ମଜ୍ଞାନର ବିଷୟମାନ ଲେଖିବାର ସୁସାଧ୍ୟ ହୋଇପାରେ ନାହିଁ । ପାଠକେ! ପ୍ରସ୍ତାବାନୁବଶତଃ ପ୍ରସ୍ତାବ କରୁଅଛୁଁ, ନୈଳଙ୍ଗରେ ଭାରତର ଅନୁବାଦ ପ୍ରାୟଶଃ ମୂଳଗ୍ରନ୍ଥର ଭୂଳାବିବୃତ । କେତେକ ସ୍ଥଳମାତ୍ର ସଂକ୍ଷିପ୍ତ କରାଯାଇ ଅଛି । ତଥାପି ତହିଁରେ ମଧ୍ୟ ଏତାଦୃଶ ଧର୍ମତତ୍ତ୍ୱ-ଜଟିଳ ବିଷୟମାନଙ୍କୁ କେଉଁଠି ଆମୂଳ-ସଂଗତ, କେଉଁଠାରେ ବା ଦୁଇ ଗୁରି

କଲେ କି, ପକ୍ଷିଦ୍ୱୟ ଜାଲମଧ୍ୟ ଆକାଶରେ ଧାବିତ ଥିଲେ ସୁଦ୍ଧା ତୁମ୍ଭେ ଯାହା ପଦବ୍ରଜରେ ତାଙ୍କୁ ଅନୁଧାବନ କରୁଅଛ, ଏ ବଡ଼ ବିଚିତ୍ର ବୋଧହୁଏ । ଶାକୁନିକ କହିଲା, ତଥାପି ଏ ଦୁହେଁ ଯେତେବେଳେ ଅନ୍ୟୋନ୍ୟବିବାଦ କରିବେ, ସେତେବେଳେ ଅବଶ୍ୟ ମୋ ହସ୍ତରେ ପଡ଼ିବେ । ପରିଶେଷରେ ତାହାହିଁ ହେଲା ।

[୧] କାଶୀରାମଦାସଙ୍କ ବଙ୍ଗ ଭାରତ ଓ ସାରଳାଦାସଙ୍କ ଭାରତରେ ଉଦ୍‌ଯୋଗ ପର୍ବରେ ଏ ସମ୍ବନ୍ଧରେ ଅନେକ ସ୍ଥଳରେ ଚରିତ ସଂସ୍ଥାନର ସାଦୃଶ୍ୟ ଦେଖାଯାଏ ।

ପଦ୍ୟରେ ଅଳ୍ପ ସଂକ୍ଷିପ୍ତ, କେଉଁଠାରେ କେବଳ ତ୍ୟାଗ କରିଅଛନ୍ତି । ତୈଲଙ୍ଗ ସାହିତ୍ୟ ବିଧାତାମାନେ ମଧ୍ୟ ମହାଭାରତର ଆନ୍ଧ୍ରୀକରଣରେ ଭଗବଦ୍‌ଗୀତା ଓ ସନତ୍ସୁଜାତୀୟ ଗୀତାକୁ ପ୍ରାୟ ତ୍ୟାଗ କରିଅଛନ୍ତି । ଶ୍ରୀ ଭଗବଦ୍‌ଗୀତାକୁ ସାରଳା-ଦାସ କବି ଦୁଇ ମୂଳ ଧାଡ଼ିରେ ଅତି ସଂକ୍ଷିପ୍ତ ବା ସୂଚିତ କରିଥିଲା ପରି ଉଭୟ ଭାଷା-ପଣ୍ଡିତ-ଧୂରୀଣ ତିକ୍କନ ସୋମଯାଜୀ ନାମକ କବି ମଧ୍ୟ ଅଷ୍ଟାଦଶାଧ୍ୟାୟ ସୁବିସ୍ତୃତ ଭଗବଦ୍‌ଗୀତାକୁ ସ୍ୱକୃତ ତୈଲଙ୍ଗ ଭାରତରେ ପାଞ୍ଚ ଛଅ ଗୋଟି ଗଦ୍ୟ ପଦ୍ୟରେ ମାତ୍ର ଅତି ସଂକ୍ଷିପ୍ତ କରି ଅଛନ୍ତି । ପରନ୍ତୁ ସନତ୍ସୁଜାତ ଗୀତାକୁ ଏକାବେଳକେ ତ୍ୟାଗ କରିଦେଇ ଅଛନ୍ତି ।

ଆମ୍ଭମାନଙ୍କର ମହାଭାରତକର୍ତ୍ତା ମହାଶୟ ଭଗବଦ୍‌ଯାନାବଧି ଉପପର୍ବର କଥା ପ୍ରାରମ୍ଭ ପୂର୍ବରୁ ଏବଂ ଧୌମ୍ୟଙ୍କର ଦୌତ୍ୟବିଦ୍ୟା ନିଷ୍ପତ୍ତି ପ୍ରସଙ୍ଗ ପରେ ଶ୍ରୀକୃଷ୍ଣ ଓ ସ୍ୱଦେଷ୍ଣାଙ୍କର ସମ୍ବାଦମୂଳକ ଅନେକଗୁଡ଼ିଏ ଅମୌଳିକ କଥା ଲେଖି ଅଛନ୍ତି । ପ୍ରମାଣାଭାବରୁ ସେ ସବୁ ଅଳୀକ କିମ୍ବା ନିର୍ବ୍ୟଳୀକ, ତାହା ଠିକ କରି କୁହାଯାଇ ନ ପାରେ । ପରନ୍ତୁ ଆମ୍ଭମାନଙ୍କ ବିଚାରତଃ ବୋଧହୁଏ ସ୍ୱଦେଷ୍ଣାଙ୍କ ଦିବ୍ୟ ମନୀଷାଦ୍ୟୋତକ ଏହି ଚରିତ-ସଂକ୍ଷିପ୍ତମାଳା ଖଣ୍ଡିକ କବିଙ୍କର ବୈଚିତ୍ର୍ୟମୟୀ ମହତୀ କଳ୍ପନାଶକ୍ତିର ମୁଖ୍ୟ ଆଲେଖ୍ୟମଞ୍ଜିକା ହୋଇଥାଇ ପାରେ । ତାହାର ସଂକ୍ଷିପ୍ତ ବିବରଣ ନିମ୍ନରେ ପ୍ରଦତ୍ତ ହେଉଅଛି । ସ୍ୱଦେଷ୍ଣା ପୂର୍ବଜନ୍ମରେ ମେନକା ଆଉ ବିଶ୍ୱାମିତ୍ରଙ୍କର ସନ୍ତାନ ଥିଲେ । ସେ ପୁଣି ଗର୍ଭସ୍ଥ ଥିବା ସମୟରେ ବିଶ୍ୱାମିତ୍ର ଉଲ୍ଲୋଳ-କଲ୍ଲୋଳତରଙ୍ଗିଣୀ ଭାବିନୀ ମେନକାଙ୍କ ପ୍ରଶ୍ନରେ ସମସ୍ତ ମନ୍ତ୍ର ଅସ୍ତ୍ରଶସ୍ତ୍ରପ୍ରୟୋଗ ପଦ୍ଧତି କହିଥିବାରୁ ଶକୁନ୍ତଳା ତତ୍ସମସ୍ତ ଅବଗତ ଥିଲେ । କାଳକ୍ରମେ ପରଜନ୍ମରେ ଶକୁନ୍ତଳା କେବଳ ଶ୍ୱେତକୀର୍ତ୍ତିଙ୍କ କନ୍ୟାରୂପେ ସମ୍ଭୂତ ହୋଇଥିଲେ । ବର୍ତ୍ତମାନ ଶ୍ୱେତବାହନ ନାମ ପ୍ରେତରାଜକେଶ୍ୱେତ-ତାତ ବିରାଟ ଏବଂ ତାହାଙ୍କ ଭାର୍ଯ୍ୟା ସ୍ୱଦେଷ୍ଣାରୂପେ ଅବତୀର୍ଣ୍ଣ ହୋଇ ଅଛନ୍ତି । ବିଶ୍ୱାମିତ୍ରସଂପ୍ରାପ୍ତ ଧନୁର୍ବେଦ ବିଦ୍ୟା ଅନବଦ୍ୟା ଶକୁନ୍ତଳା ଏହି ଜନ୍ମରେ ନିଜର ପୁତ୍ର ଶ୍ୱେତଙ୍କ ଧନୁର୍ବେଦ ରହସ୍ୟମାନ ଶିଖାଇ ଅଛନ୍ତି । ସେ ପୁଣି କଳିଯୁଗରେ ଗୁଣ୍ଡିଚାବତୀ ଆଉ ବିରାଟ ଇନ୍ଦ୍ରଦ୍ୟୁମ୍ନ ହେବେ । [୨] ଜାତସ୍ମରତାଜନ୍ୟ ସର୍ବଜ୍ଞତା ବଳରେ

---

[୨] ବିରାଟ କଳିଯୁଗେ ଉପୁଜିବେ ଇନ୍ଦ୍ରଦ୍ୟୁମ୍ନ ହୋଇ ।
ଗୁଣ୍ଡିଚା ରାଣୀ ନାମେ ଭାର୍ଯ୍ୟା ହେବ ମୂର୍ତ୍ତି ॥
ଗ୍ରନ୍ଥପାରେ ୧୮ ପୃଷ୍ଠା ଦେଖନ୍ତୁ ।

ସୁଦେଷ୍ଣା ଏସବୁ କହିଲା ପରେ ଭାବୀ ଭାରତ ଯୁଦ୍ଧରେ କୀଦୃଶ ଘଟଣାମାନ ସମ୍ଭବିବ ବୋଲି ଶ୍ରୀକୃଷ୍ଣ ପ୍ରଶ୍ନ କଲରୁ ସେ ପୁଣି ଭବିଷ୍ୟମାଣ ଯାବତୀୟ ସାଂଗ୍ରାମିକ ଘଟଣା ଆମୂଳଚୂଳ କହିଗଲେ । ଅଭିମନ୍ୟୁ ଆଦି ଆଭିମନ୍ୟବଙ୍କର ଭାବୀ ବିପତ୍ପାତ ଶ୍ରବଣରେ ଅର୍ଜୁନପ୍ରମୁଖ ଦୁଃଖବ୍ୟାକୁଳଚିତ୍ତପ୍ରାୟ ହେବାରୁ ସୁଦେଷ୍ଣା ପାରିକ୍ଷିତ-ବିପତ୍ପାତ-ପ୍ରଶମନାର୍ଥ ପୂର୍ବ ବିଶ୍ୱାମିତ୍ର ବିଶ୍ୱାମିତ୍ରଙ୍କଠାରୁ ଲବ୍ଧ ନିଜର ଅନବଦ୍ୟା-ମୃତସଞ୍ଜୀବନୀ ବିଦ୍ୟାକୁ ଶ୍ରୀକୃଷ୍ଣଙ୍କୁ ପ୍ରଦାନ କଲେ । ଦ୍ରୌପଦେୟମାନଙ୍କର ଭବିଷ୍ୟତ୍‌କାଳ ନିଧନ ଭାବି ଦ୍ରୁପଦସମ୍ଭବା ନିହତବତ୍ସା ଧେନୁ ତୁଲ୍ୟ ବିଦୂୟମାନମନସ୍କା ଶୋକସନ୍ତ୍ରାନ୍ତଶରୀରା ହୋଇ ପଡ଼ିବାରୁ ତଦ୍ଦୁଃଖାପନୋଦନାର୍ଥ ସେମାନଙ୍କର ପୌର୍ବଦୈହିକ ବୃତ୍ତାନ୍ତ କହିଲେ ଯେ, ମୁନି ହରିଶ୍ଚନ୍ଦ୍ର ନୃପ ରୋହିତାଶ୍ୱଙ୍କର ଅହେତୁକ ଦଣ୍ଡବିଧାନରେ ପଞ୍ଚ ବିଶ୍ୱେଦେବା-ମାନେ ବିଶ୍ୱାମିତ୍ରଙ୍କ ପ୍ରତି ଆକ୍ରୋଶ କରି ଥିବାରୁ ସେ ସେମାନଙ୍କୁ ଅଭିଶାପ କରିଥିଲେ କି ଇତଃପର ମାନବଜନ୍ମରେ ସପ୍ତବର୍ଷ ବୟସ୍କ ହେଲେ ତୁମ୍ଭମାନଙ୍କର ଶିରଚ୍ଛେଦ [୧] ହେବ । ବର୍ତ୍ତମାନ ପଞ୍ଚ ବିଶ୍ୱେଦେବାମାନେ ଦ୍ରୌପଦେୟ ପଞ୍ଚକ-ରୂପେ ଅବତୀର୍ଣ୍ଣ ହୋଇ ଅଛନ୍ତି । ଇତ୍ୟାଦି ।

ଏହାପରେ ସୁଦେଷ୍ଣା ଶ୍ରୀକୃଷ୍ଣଙ୍କଦ୍ୱାରା ସମାଦିଷ୍ଟ ଶଚୀପତିଙ୍କର ସ୍ମରଣ ଓ ପ୍ରାର୍ଥନାରେ ଅମୋଘପ୍ରତିଜ୍ଞା ମଘବା ଦାନଶୌଣ୍ଡାଖଣ୍ଡଳ କର୍ଣ୍ଣଙ୍କଠାରୁ ବଜ୍ରକବଚାଦି[୨] ଆନୟନ କରି ତାହା ଅର୍ଜୁନଙ୍କୁ ସମର୍ପିଥିବା ସନ୍ଦର୍ଭକୁ ସାଙ୍ଗୋପାଙ୍ଗରୂପେ ମନୋହାରିଣୀ ଭାଷାରେ ବିଶଦୀକୃତ କରି ଅଛନ୍ତି । ଏହା ଇତଃପୂର୍ବେ ବନବାସାବସାନରେ ସମ୍ପାଦିତ ହୋଇଥିଲା । କବି ପୂର୍ବାପରସ୍ଥାନର ବିସ୍ମରଣବଶରୁ ପର ପୁନଃ ଆମ୍ରେଡ଼ନ କରି ଅଛନ୍ତି । ଏହି ସମୁଦାୟର ପରିଶେଷରେ କହନ୍ତି କି

---

[୧] ଅଶ୍ୱତ୍ଥାମା ତୁମ୍ଭଙ୍କୁରେ ଦେଇ ପରମାଦ ।
ସାତ ବରଷରେ ତୁମ୍ଭେ ହୁଅ ଶିରଚ୍ଛେଦ ॥ ଉ. ପ.

ଏ ଯାହାହେଉ ଦ୍ରୌପଦେୟମାନଙ୍କର ବୟଃପରିମାଣ ସମ୍ବନ୍ଧରେ ସାରଳାଦାସ ସର୍ବଥା ଭ୍ରାନ୍ତ ଧାରଣାରେ ପଡ଼ି ଅଛନ୍ତି ।

[୨] ମହାରାଜେ ପାଣ୍ଡବନ୍ତ ଭେଟିଲେ ସହସ୍ରଯୋନି ॥
ଅଭେଦ୍ୟକବଚମଣି ବଜ୍ରହଜଡ଼ି ଅମୃତକୁଣ୍ଡଳ ।
ପାଣ୍ଡବ ଅଗ୍ରେ ନେଇ ଥୋଇଲେ ଆଖଣ୍ଡଳ ॥

ତଥାପି ଅଲୌକିକ ସର୍ବଜ୍ଞତାରେ ବସିଷ୍ଠ ଇନ୍ଦ୍ରଙ୍କ ସମକ୍ଷରେ ସୁଦେଷ୍ଣା ଏ ସମସ୍ତ ନିବେଦନ କଲାପରେ ଶ୍ରୀକୃଷ୍ଣଙ୍କୁ ପ୍ରଣାମ କରି ନଶ୍ୱର ଶରୀର ତ୍ୟାଗ କଲାରୁ ଇନ୍ଦ୍ର ତାହାଙ୍କୁ ସ୍ୱର୍ଗକୁ ଘେନିଗଲେ । [୧]

ଅତଃପର ଭଗବଦ୍‌ପାର୍ଶ୍ୱ ପୂର୍ବ ପାଠରେ ସ୍ଥୂଳତଃ ଦେଖି ନେଲେ ଏହାଙ୍କ ଭାରତରେ ତାଦୃଶ ପ୍ରଭେଦ ବା ବୈଷମ୍ୟ ଦେଖାଯାଏ ନାହିଁ । ମାତ୍ର ସ୍ୱୀକୃତ-ଦୌତ୍ୟ ଦୈତ୍ୟାରିଙ୍କର ଇନ୍ଦ୍ରପ୍ରସ୍ଥ ପ୍ରତି ପ୍ରସ୍ଥାନର ସମସ୍ତ ମିଥୁନ ମାସର [୨] କୃଷ୍ଣପକ୍ଷ ବୋଲି ଦାସ ମହୋଦୟ ବୋଧହୁଏ ଭ୍ରାନ୍ତାନୁମାନବଶତଃ ନିର୍ଦ୍ଧାରିତ କରିଦେଇ ଅଛନ୍ତି । ତାହା ସମ୍ଭବତଃ କାର୍ତ୍ତିକର ଅନ୍ତିମ ଓ ମାର୍ଗଶୀର୍ଷର ଆଦିମ ଭାଗରେ ନିଷ୍ପନ୍ନ ହୋଇଥିଲା । [୩] ଶ୍ରୀକୃଷ୍ଣ ଶାସ୍ତ୍ରବିଦ୍ଭୁବିଦ୍ୟାବିସ୍ଥାନଗୌରବ ଗୌରବ ସହରେ ନିଷ୍ପୃଷ୍ଟ ହୋଇ ଧୃତରାଷ୍ଟ୍ରଙ୍କୁ ଶର୍ମୋର୍ମିକର୍ମୀଚିତ-ଧର୍ମକର୍ମୀ ପାଣ୍ଡବମାନଙ୍କର ସନ୍ଦେଶ ଜଣାଇବା ସ୍ଥଳରେ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କର ନର-ନାରାୟଣତ୍ୱ ସୂଚନାର [୪] ଅବ୍ୟବହିତ ପରେ ପାଣ୍ଡବମାନଙ୍କ ନିଶାନ୍ତନିଶାନ୍ତ ଯଶୋବୈଭବତ୍ୱ, ଦେବବନ୍ଦମତ୍ୱ ଓ ସର୍ବଥା ଅଜେୟତ୍ୱ ସମ୍ବନ୍ଧରେ କଣ୍ୱ ମହର୍ଷି ବିଷମ-ବିଷୋପମରୋଷଜାଜ୍ୱଲ୍ୟମାନମାନସ ଦୁଃଶାସନାଗ୍ରଜଙ୍କ ସମକ୍ଷରେ ମାତଳୀୟ

---

[୧] ଇନ୍ଦ୍ର ବୋଇଲେ ତୁ ଗୋ କାହାର କୁଳବଧୂ ।
ଉଭୟ କୁଳମଣ୍ଡଣୀ ମଧ୍ୟମା ତୋର ସାଧୁ ॥
ଶୁଣି କେଶବ ପାଦେ ପ୍ରଣମିଣ ସତୀ ।
ନିଜ ପ୍ରାଣ ବିସର୍ଜନ କଲା ତତ୍‌କ୍ଷଣାନ୍ତ ॥
ସୁଦେଷ୍ଣାର ନିଜ ପ୍ରାଣ ଇନ୍ଦ୍ର ପୁଷ୍ପକେ ବସାଇ ।
ଅମର ବାରସ୍ୱର୍ଗକି ବିଜୟେ ସୁରସାଇଁ ॥

[୨] ଛାପା ପୁସ୍ତକରେ ଉ. ପ. ୩୭ ପୃଷ୍ଠା ଦେଖନ୍ତୁ ।

[୩] ତତୋ ବ୍ୟପେତେ ତମସି ସୂର୍ଯ୍ୟେ ବିମଳ ଉଦ୍‌ଗତେ ।
ମୈତ୍ରେ ମୂହୂର୍ତ୍ତେ ସମ୍ପ୍ରାପ୍ତେ ମହର୍ଚ୍ଚିଷି ଦିବାକରେ ॥
କୌମୁଦେ ମାସି ରେବତ୍ୟାଂ ଶରଦନ୍ତେ ହିମାଗମେ ।
ସ୍ଫୀତଶସ୍ୟସୁଖେ କାଳେ—ଇତ୍ୟାଦି । ଉ. ପ. ୮୨ ଅ: ।

[୪] ନରନାରାୟଣୌ ଯୌ ତୌ ତାବେବାର୍ଜୁନ କେଶବୌ ।
ବିଜାନୀହି ମହାବୀର ପ୍ରବରୌ ପୁରୁଷୋତ୍ତମୌ ॥ ଉ. ପ୍ର. ୯୫ ଅ: ।

ଉପାଖ୍ୟାନ ବା ତତ୍କନ୍ୟା ଗୁଣକେଶୀଙ୍କ ଉପାଖ୍ୟାନର ସମାଖ୍ୟାନ କରି ଅଛନ୍ତି । [୧] ତା ପରେ ମହଜ୍ଜନମାନଙ୍କ ନିବନ୍ଧ ନ ମାନି ଅଭିମାନ ଓ କ୍ରୋଧର ପରବଶ ହେବା ନିତାନ୍ତ ଦୋଷାବହ, ଏତାଦୃଶ ଆଚରଣରୁ ଗାଲବ ପୂର୍ବ କାର୍ଯ୍ୟରେ ପରାଭୂତ ହୋଇଥିଲେ, ଯଯାତି ସ୍ୱର୍ଗରାଜ୍ୟରୁ ଭ୍ରଷ୍ଟ ହୋଇଥିଲେ ବୋଲି ଧର୍ମମର୍ମ-ନିର୍ଦ୍ଦେଶନ-ବିଶାରଦ ନାରଦ କ୍ରୋଧନ ଦୁର୍ଯ୍ୟୋଧନଙ୍କୁ ବିଶ୍ୱାମିତ୍ରଶିଷ୍ୟ ଗାଲବଙ୍କର ଗୋଟିଏ ବହୁମେଳକ ଚରିତ ଆଉ ସ୍ୱସୁତା ମାଧବୀଙ୍କ ପୁଣ୍ୟବୈଭବରେ ଯଯାତି-ଙ୍କର ପୁନଃସ୍ୱର୍ଗପ୍ରାପ୍ତି-ବିଷୟକ ଇତିହାସ କହି ଅଛନ୍ତି । [୨] ଏତଦ୍‌ଚରିତ-ସମ୍ବଧାନ ବହୁକଥାନିବନ୍ଧନ ବନ୍ଧୁରତ୍ୱରୁ ବଡ଼ ଜଟିଳ ହୋଇଅଛି । ଏ ସବୁକୁ ସାରଳାଦାସ ମହାଶୟ ଲେଖିପାରି ନାହାନ୍ତି । କେବଳ ସାରଳାଦାସ କାହିଁକି, ବଙ୍ଗ ଭାରତକର୍ତ୍ତା କାଶୀରାମଦାସ ସୁଦ୍ଧା ଏ ସବୁ କହିନାହିଁ ଲେଖିପାରି ନାହାନ୍ତି । ବୋଧହୁଏ ସାମ୍ପ୍ରଦାୟିକ ଧାରାବାହିକ ସାଧାରଣ ଚରିତସମୂହରେ ମାତ୍ର ନିର୍ଭର କରି ଯେଉଁମାନେ ଭାରତ ଲେଖିଅଛନ୍ତି, ସେମାନେ ଏତାଦୃଶ ବିଷୟ ସବୁ ତ୍ୟାଗ କରିଥିବେ । କିନ୍ତୁ ଶ୍ରୀମାନ୍ ସାରଳାଦାସ ମହାଶୟ କୃଷ୍ଣାର୍ଜ୍ଜୁନଙ୍କର ନରନାରାୟଣତ୍ୱ ପ୍ରଖ୍ୟାପନ ଏ ସ୍ଥଳରେ ନ ହେଲେ ସୁଦ୍ଧା ଅନ୍ୟାନ୍ୟ ବହୁ ସ୍ଥଳରେ କରି ଅଛନ୍ତି ।

ମୂଳ ଗ୍ରନ୍ଥରେ ସଭାଜନ-ସଜ୍ଜନ-ସୁଭାଜନ ଶ୍ରୀକୃଷ୍ଣ କୌରବ ସଭାରେ ସେହି ପରାପକୃତକୃଷ୍ଣ ନିକୃତିପ୍ରିୟ ଦୁର୍ମତି ଦୁର୍ଯ୍ୟୋଧନଙ୍କୁ ସ୍ୱୀୟ ବନ୍ଧନାର୍ଥୋଦ୍ୟତ ଜାଣି ନିଜର ପ୍ରତ୍ୟେକମାନ ଦିବ୍ୟମୂର୍ତ୍ତି ପ୍ରଦର୍ଶନରେ ଭୀତ ଓ ନିରସ୍ତ କରିବା ସ୍ଥଳରେ ଭଗବଦ୍ଦିବ୍ୟରୂପଦିଦୃକ୍ଷୁ ଧୃତରାଷ୍ଟ୍ରଙ୍କ ପ୍ରାର୍ଥନାନୁସାରେ କ୍ଷଣକପାଇଁ ତାହାଙ୍କୁ ଚକ୍ଷୁଦାନ କରିଥିବାର ଉକ୍ତ ଅଛି । [୩] ସାରଳାଦାସ ମହାଶୟ ଏହି ବୃତ୍ତିକସ୍ଥାନକୁ ତ୍ୟାଗ କରି ତଦନୁକରଣରେ ଧୃତରାଷ୍ଟ୍ରଙ୍କ ସମକ୍ଷରେ ଶ୍ରୀଭଗବନ୍ମହିମା-ପ୍ରଖ୍ୟାପକ ବିଦୁରଙ୍କ ମୁଖରେ ପୂର୍ବ ଶ୍ରୀକୃଷ୍ଣ ଦ୍ୱାରକାସ୍ଥ କୌଣସି ଜାତ୍ୟନ୍ଧ ଦରିଦ୍ର ବ୍ରାହ୍ମଣଙ୍କୁ ନେତ୍ର ପ୍ରଦାନ କରିଥିବାର ସନ୍ଦର୍ଭଟିକି ପ୍ରକାଶ କରି ଅଛନ୍ତି । [୪] ତତ୍ପରେ ଭୀଷ୍ମଙ୍କ ବଚନାନୁସାରେ ଦୁଇଖଣ୍ଡି ଗ୍ରାମ ଦେବାକୁ

---

[୧] ୯୭ – ୧୦୪ ଅଧ୍ୟାୟ ଯାଏ ଦେଖନ୍ତୁ ।

[୨] ୧୦୫ – ୧୨୨ ଅଧ୍ୟାୟ ଯାଏ ଦେଖନ୍ତୁ ।

[୩] ୧୩୦ ଅଧ୍ୟାୟ ଦେଖନ୍ତୁ ।

[୪] ୭୫ ପୃଷ୍ଠା ଦେଖନ୍ତୁ ।

ଦୁର୍ଯ୍ୟୋଧନ ସମ୍ମତ ପ୍ରକାଶ କରିବା ସ୍ଥଳରେ ତଦନ୍ତଃସ୍ଫୁଟକାରକ ପରିଣାମ-ବିଷାପ୍ଲୁତ-ଆପାତ-ରମଣୀୟ-ବାକ୍ୟବିଶାରଦ ଶକୁନିଙ୍କ ମୁଖରେ ମୂଳାନୁକ୍ତ ବଳିବାମନ-ଚରିତ ବିବୃତ କରି ଅଛନ୍ତି । [୧] ତାହାର ଆନୁଷଙ୍ଗିକ ରୂପେ ବିଷ୍ଣୁ ଅପେକ୍ଷା ମହାଦେବଙ୍କର ପରମ ଦୟାଳୁତା ଓ ଆଶୁତୋଷତା, ସୁସାଧ୍ୟ ଓ ସମଧିକ ବୋଲି ଧୂଳିଖେଳାରତ ବାଳକମାନଙ୍କ ସମ୍ବନ୍ଧରେ ଗୋଟିଏ କାଳ୍ପନିକ କଥାର ଅବତାରଣା କରି ଅଛନ୍ତି । [୨]

ଶ୍ରୀକୃଷ୍ଣଙ୍କ ଆଗମନ କାରଣର ଜିଜ୍ଞାସା-ମୂଳକ ଭାନୁମତୀ ଓ ଦୁର୍ଯ୍ୟୋଧନଙ୍କର ସମ୍ବାଦ ସ୍ଥଳରେ "ବହୁ ଲୋକଙ୍କ ମତର ଉଲ୍ଲଙ୍ଘନ ଭାରୀ ବିପଜ୍ଜନକ" ଏ ସମ୍ବନ୍ଧରେ ଭାନୁମତୀଙ୍କ ଉପଦେଶରେ ଏକ କାହାଣୀ ବା କିମ୍ବଦନ୍ତୀସ୍ୱରୂପ ଅଦ୍ଭୁତ ଭାବନାଭୂତର କଥା ପ୍ରକାଶ କରି ଅଛନ୍ତି । [୩] ପାଠକେ ବୁଝିନେବେ ଇତଃପୂର୍ବେ ପ୍ରକାଶିତ ମୂଳରେ ପ୍ରତିପାଦିତ ବହୁଲୋକଙ୍କ କଥାରେ ଜ୍ଞାତାବଜ୍ଞ ଅଭିମାନ ଓ କ୍ରୋଧର ବଶବର୍ତ୍ତୀ ଗାଲବଙ୍କର ବହୁମେଳକ ଜଟିଳ ଚରିତକୁ ଅକ୍ଷୁଣ୍ଣ ଧାରାବାହିକ ସ୍ୱାର୍ତ୍ତିକଳର ଆକସ୍ମିକ ବିଲୋପରୁ ଲେଖି ନ ପାରି ଏ ମହୋଦୟ ତଦେକ-ଦେଶାନୁକରଣରେ ତନ୍ନୀତିପ୍ରତିପାଦକ ଭାବନାଭୂତର ଚରିତକୁ ସଙ୍ଗତିସାଙ୍ଗତ୍ୟ ସହ ଲଗାଇ ଅଛନ୍ତି । ତତ୍ପର ଅବସରରେ ଅଭିମାନଧନ ଦୁର୍ଯ୍ୟୋଧନଙ୍କୁ ଭାନୁମତୀଙ୍କର ସ୍ୱପ୍ନବିବରଣ ବିଜ୍ଞାପନ ସ୍ଥଳରେ କହି ଅଛନ୍ତି କି, ଭାରୀ ସଂଗ୍ରାମରେ ଭୀଷ୍ମ ଦ୍ରୋଣାଦି ନିଧନ ପରେ ନୃସିଂହ ମୂର୍ତ୍ତି ଭୀମଙ୍କ [୪] କର୍ତ୍ତୃକ

---

[୧] ଏ ସ୍ଥଳରେ ସାରଳାଦାସଙ୍କ ପରି ବଙ୍ଗ ଭାରତକର୍ତ୍ତା କାଶୀରାମଦାସ ମଧ୍ୟ ବଳିବାମନୋପାଖ୍ୟାନ ଲେଖି ଅଛନ୍ତି । ଏଥିରୁ ଅନୁମିତ ହୁଏ କି, ଏହି ସନ୍ଧାନଟି ଏ ଉଭୟଙ୍କର ଅନ୍ୟ କୌଣସି ପୁରାଣାଦିରୁ ଅନୁକୃତ ହୋଇଥିବ ।

[୨] ୭୦—୭୨ ପୃଷ୍ଠା ଦେଖନ୍ତୁ ।

[୩] ଦେଖିବେ ଏହା ବଡ଼ ବିସ୍ମୟୋତ୍ପାଦକ ।
ମାନଗୋବିନ୍ଦର ଆଗେ ଭାନୁମତୀ ବୋଲେ ।
କାଳେ ତା ହେବ ବହୁତ ବଚନ ମେଣ୍ଟିଲେ । ୭୨—୭୭ ପୃ: ।

[୪] ନରସିଂହ ମୂରତି ଯେ ଭୀମସେନ ଧରି ।
କୁମ୍ଭ ଶତାଣୋଇ ହାଣି ମାଇଲେ ସେ ଧରି ॥ ଉ. ପ. ୭୬ ପୃଷ୍ଠା ।

ସପ୍ତନବନ୍ତ ଧାର୍ତ୍ତରାଷ୍ଟ୍ର ନିହତ ହେବେ; ଇତ୍ୟାଦି । ବୋଧହୁଏ ସାରଳାଦାସ କବି ଏହି ନୈମିତ୍ତିକ ଘଟଣାଟି ଅନ୍ୟ କୌଣସି ଗ୍ରନ୍ଥରୁ ଉଦ୍ଧୃତ କରି ଅଛନ୍ତି । ଏହା ମୂଳରେ ଉକ୍ତ ନ ଥିଲେ ସୁଦ୍ଧା ଅସମ୍ଭାବିତ ନୁହେ । ଭଟ୍ଟନାରାୟଣଙ୍କ ବେଣୀସଂହାର ନାଟକରେ ସୁଦ୍ଧା ଏତାଦୃଶ ସ୍ୱପ୍ନବୃତ୍ତାନ୍ତ ବର୍ଣ୍ଣିତ ଅଛି । [୧] ଅତଃପର ମୂଳ ଭାରତରେ ଭଗବଦ୍‌ଯାନ ପରେ ଆସନ୍ନ ଅବସାନ ସ୍ଥାନରେ ଶ୍ରୀକୃଷ୍ଣ ଓ କୁନ୍ତୀ ଦେବୀଙ୍କ ସମ୍ବାଦରେ ପିତୃଭ୍ରାତୃ-ବର୍ଜିତ ସ୍ୱପୁତ୍ରଙ୍କୁ ବୀରକନ୍ୟା ବିଦୁଲା ଯୁଦ୍ଧୋତ୍ସାହ-ଉତ୍ତେଜନାର୍ଥ କଥିତ ଉପଦେଶମୂଳକ ଯେଉଁ ଇତିହାସ ଉକ୍ତ ଅଛି, [୨] ସାରଳାଦାସ ମହାଶୟ ତ୍ୟାଗ କରି ଅଛନ୍ତି ଏବଂ କହନ୍ତି କି ଶ୍ରୀକୃଷ୍ଣ ହସ୍ତିନାରେ ଦୌତ୍ୟକାର୍ଯ୍ୟ ଶେଷ ପରେ ଦୁର୍ଯ୍ୟୋଧନଙ୍କ ରାଜଲକ୍ଷ୍ମୀସହ [୩] ଦ୍ୱାରକା ପ୍ରୟାଣ କରି ବ୍ୟାସଦେବଙ୍କଦ୍ୱାରା ଯୁଧିଷ୍ଠିରଙ୍କୁ ତତ୍ର ଘଟିତ ବିଷୟମାନ ଜଣାଇ ଦେଇ-ଥିଲେ । [୪] କିନ୍ତୁ ଯଥାର୍ଥତଃ ଶ୍ରୀକୃଷ୍ଣ ଦୌତ୍ୟକୃତ୍ୟ ସମାପନ ପରେ ହସ୍ତିନାରୁ ବିରାଟର ଉପପ୍ଲବ୍ୟକୁ ଆସିଥିଲେ । [୫]

ଅତଃପର ସୈନ୍ୟନିର୍ଯ୍ୟାଣାବଧି ଉପପର୍ବ ପ୍ରାରମ୍ଭରୁ ଯୁଧିଷ୍ଠିର ଓ ଦୁର୍ଯ୍ୟୋଧନ ସେନାବିଭାଗ ଓ ସେନାଧିକାରୀ ନିର୍ଦ୍ଧାରଣପୂର୍ବକ କୁରୁକ୍ଷେତ୍ର ଯାତ୍ରା କରି ଶିବିର ସନ୍ନିବେଶ କରିବା, ଆଉ ବଳରାମଙ୍କର ତୀର୍ଥଯାତ୍ରାଗମ ପ୍ରତିପାଦିତ ଅଛି । ସାରଳାଦାସ ମହାଶୟ ଏ ସ୍ଥଳରେ ରଣାଜିରରେ ଶିବିରସନ୍ନିବେଶକରଣ ପୂର୍ବରୁ ଦୁର୍ଯ୍ୟୋଧନାଦେଶରେ ଯୁଦ୍ଧାର୍ଥ କୁରୁକ୍ଷେତ୍ର ପ୍ରତି ଅଭିଯାନ, ଯୁଧିଷ୍ଠିରଙ୍କୁ

---

[୧] ମମ ପୁନରକୁଶଳଦର୍ଶନଂ ପ୍ରତିଭାତି ସ୍ୱପ୍ନଦର୍ଶନଂ
ସଖି! ଶୃଣୁ ତଂ, ଅଦ୍ୟ କିଲ ପ୍ରମଦବନେ ଆସୀନାୟା ମମ ଅଗ୍ରତଃ
କେନାପ୍ୟତିଶୟିତଦିବ୍ୟରୂପେଣ ନକୁଲେନ ଅହିଶତଂ
ବ୍ୟାପାଦିତଂ । ଇତ୍ୟାଦି । ବେ: ସଂ: ନା: ଦ୍ୱିତୀୟାଙ୍କ ।

[୨] ୧୩୨ ଅଧ୍ୟାୟ ପ୍ରାରମ୍ଭରୁ ୧୩୫ ଅଧ୍ୟାୟ ଶେଷଯାଏ ଦେଖନ୍ତୁ ।

[୩] ଲକ୍ଷ୍ମୀଙ୍କି ସଙ୍ଗରେ ଘେନି ଦେବ ଜନାର୍ଦ୍ଦନେ ।
ଦ୍ୱାରକାପୁରକୁ ଗଲେ ତହୁଁ ଅଭିମାନେ ॥ ଇତ୍ୟାଦି ॥ ୮୭ ପୃ: ।

[୪] ଯୁଦ୍ଧାର୍ଥ ନିମନ୍ତ୍ରିତ କୃଷ୍ଣ ଅର୍ଜୁନଙ୍କ ସହ ଆସିଲା ପରେ ଫେରେ ସେ
ନିଜେ ହସ୍ତିନାବୃତ୍ତାନ୍ତ ସବୁ ଯୁଧିଷ୍ଠିରଙ୍କୁ କହିଥିବାର ଲେଖି ଅଛନ୍ତି ।

[୫] ମୂଳରେ ୧୪୬ ଅଧ୍ୟାୟ ଦେଖନ୍ତୁ ।

ଜଣାଇବା ନିମନ୍ତେ ଶକୁନିଙ୍କର ଇନ୍ଦ୍ରପ୍ରସ୍ଥ ପ୍ରତି ଆଗମନ କଷ୍ଟ ତାହାଙ୍କ ମୁଖରେ ମନୁଷ୍ୟର ବାଲ୍ୟାଦି ଅବସ୍ଥାରେ କୃତ ଚେଷ୍ଟା ସମ୍ବନ୍ଧରେ ଅନେକ ଅବାନ୍ତର କଥା କୁହାଇ ଅଛନ୍ତି । [୧] ତତ୍ପରେ ଶକୁନି ଶ୍ରୀକୃଷ୍ଣଙ୍କୁ ଭୂଭାରହରଣାର୍ଥ ଭାରତାହବର ଆବଶ୍ୟକତା, ପାଣ୍ଡବମାନଙ୍କ ଯୁଦ୍ଧାଙ୍ଗଣର ପୂର୍ବଭାଗରେ ଉପସ୍ଥିତିର ଉପଯୋଗିତା [୨] ପ୍ରଭୃତି ଜଣାଇଥିବାର ଲେଖି ଅଛନ୍ତି । ଏହାପରେ ଶ୍ରୀକୃଷ୍ଣାଦିଷ୍ଟ କାଳ ସ୍ୱର୍ଣ୍ଣଯଷ୍ଟି ରୂପେ ରଣାଙ୍ଗଣରେ ଅବସ୍ଥାନ କରିବା ନିମ କରି କୁରୁକ୍ଷେତ୍ରରେ ଉଭୟପକ୍ଷର ସେନାସନ୍ନିବେଶ କ୍ଷମକୁ ବସ୍ତର ଓ ହୃଦ୍ୟତର କରି ଲେଖି ଅଛନ୍ତି । [୩] ଶିବିର ସନ୍ନିବେଶ ପରେ ଦିକ୍‌ନିର୍ଦ୍ଧାରଣାର୍ଥ କୁଣ୍ଡଳ ପର୍ବତରୁ ଆନୀତ ଦାରୁରେ ନିର୍ମିତ ଶୁଭସ୍ତମ୍ଭ ସ୍ଥାପନ କରିଥିଲେ ବୋଲି ସେହି ବୃଷ

[୧] ଛାପା ୧୮୭ ପୃଷ୍ଠା ଦେଖନ୍ତୁ । — ଏ ସ୍ଥଳରେ ଦେବତାଙ୍କ ଦାନ୍ତବଗ୍ରହଦାରକ ଆସୁରପ୍ରକୃତିକ ଓ ଦେବପ୍ରକୃତିକ ଦୁଇଗୋଟି ଅଳସୁଆ ଚଷାଙ୍କର ଇତିବୃତ୍ତମୂଳକ ଗୋଟିଏ କାଳ୍ପନିକ କମ୍ବଦନ୍ତୀ ମଧ୍ୟ ଲେଖି ଅଛନ୍ତି ।

[୨] ସଂସ୍କୃତରେ ମଧ୍ୟ ପାଣ୍ଡବୀୟ ସେନା ପୂର୍ବଭାଗରେ ରହିବା ଉକ୍ତ ଅଛି ।

[୩] ଏ ସ୍ଥଳରେ ଏ କବି ମହୋଦୟ ଯେଉଁ ସମୟ ନିର୍ଦ୍ଧାରିତ କରି ଅଛନ୍ତି, ତାହା ମୌଳିକ ସମୟର ଅତି ବିପ୍ରକୃଷ୍ଟ ନୁହେ ।

ମାର୍ଗଶିର ଶୁକ୍ଳ ତ୍ରୟୋଦଶୀ ସୋମବାର ।
ରୋହିଣୀ ନକ୍ଷତ୍ର ଭୋଗ ହୁଏ ସେ ଦିନର ॥
ବାଳବ ନାମେ କରଣ ଅତି ଗଣ୍ଡ ଯୋଗ ।
ବଡ଼ ଘଡ଼ାନ୍ତକ ସତାଇଶ ଦିନ ଭୋଗ ॥
ସେ ଦିନ ଯେ କୌରବେ ଥାଟ ଦେଇଗଲେ ।
ବଡ଼ାଇ ସମ୍ଭବେ ଯାଇଁ ସମରେ ପଶିଲେ ॥ ଇତ୍ୟାଦି । ୯୨ ପୃ: ।

କିନ୍ତୁ ଆଜ ଏକ ସ୍ଥାନରେ ଲେଖାଅଛି କି କୌରବ ଓ ପାଣ୍ଡବମାନେ କୁରୁକ୍ଷେତ୍ରରେ ଆଶ୍ୱିନ ଶୁକ୍ଳ ଦଶମୀ ବୁଧବାର ଦିନ ଯୁଦ୍ଧାର୍ଥ ସନ୍ନଦ୍ଧ ହେଲେ । ଏଥିରୁ କି ସ୍ପଷ୍ଟ ଜଣାଯାଏ ନାହିଁ ଯେ, ଏତାଦୃଶ ସବୁକଥା ଶ୍ରୀ ସାରଳାଦାସଙ୍କର ଲେଖନୀପ୍ରସୂତ ନୁହେ ? ପରବର୍ତ୍ତୀ ଅନୁଲେଖକମାନେ ଏପରି କଦର୍ଯ୍ୟ କରିଦେଇ ଅଛନ୍ତି । ଛାପାରେ—୧୨୧ ପୃଷ୍ଠା ଦେଖନ୍ତୁ ।

ସମ୍ବନ୍ଧରେ ବ୍ରହ୍ମାଦିଙ୍କର ସ୍ତୁତି ପ୍ରଳୟାଦି ବହୁ ପ୍ରସଙ୍ଗ ସଙ୍ଗରେ ଜଟିଳ ଦେବନାଶ ବୃକ୍ଷର ଇତିବୃତ୍ତକୁ ପୁରାଣାନ୍ତର ଆଶ୍ରୟ ବଳରେ ଲେଖି ଅଛନ୍ତି । [୧]

ମୂଳ ମହାଭାରତରେ ଶିବିରସନ୍ନିବେଶାଦି ପରେ ଦୁଃସାହସସାଧ୍ୟସ-ହୃଦୟ ଦୁର୍ଯ୍ୟୋଧନ କପଟତଃ ଯୁଧିଷ୍ଠିରଙ୍କୁ ଯୁଦ୍ଧରେ ରତ କରାଇବା ପାଇଁ ନ୍ୟାସ୍ୟା-ଶ୍ଳୋକ-ଉଲୂକ ଉଲୂକନାମକ ଦୂତକୁ ପ୍ରେରଣ କରିଥିବା, ସେ ଯାଇ ନଗ୍ନର ଭିକ୍ଷୟ ଲାଗି ନୃଶଂସ କାର୍ଯ୍ୟରେ ନମ୍ରରତା ବୈଡ଼ାଳ ବ୍ରତର ପ୍ରଚ୍ଛନ୍ନ ପାପ ପରି ଅନୁଚିତ ବୋଲି ବଡ଼ାଳ ବ୍ରତର ଇତିହାସ ପ୍ରକାଶ କରିଥିବାର ଅପିଚ ଉଲୂକଙ୍କୁ ଦୁର୍ଯ୍ୟୋଧନଙ୍କ ସକାଶେ ଯୁଦ୍ଧବିଷାଦର ଶୌର୍ଯ୍ୟସମ୍ପଦ୍‌ବୃଦ୍ଧ-ଚନ୍ଦ୍ରରୁଦ୍ରାଦିକ୍ରିତଣଶର ଶ୍ରୀମତ୍ପ୍ରମୁଖ ବୀରବୃନ୍ଦ ନିଜ ନିଜ ଦୃଢ଼କର୍ତ୍ତବ୍ୟତା ବୁଝାଇ ଦେଇଥିବାର ଉକ୍ତ ଅଛି । ବୋଧହୁଏ ସାରଳାଦାସ ମହାଶୟ ଏହି ଔଲୂକ-ଦୌତ୍ୟକୃତ୍ୟର ବିବରଣ ଠିକ୍ ମନସ୍ଥ କରି ନ ପାରି ଇତଃପୂର୍ବେ ସୂଚିତ ଶାକୁନିକ ଦୌତ୍ୟସନ୍ଦର୍ଭର କଳ୍ପନା କରି ଅଛନ୍ତି ।

ସମରକ୍ଷେତ୍ରରେ ଶିବିରସନ୍ନିବେଶ ପ୍ରଭୃତି ସମାଧାନ ପରେ ସହାୟଭୂତ ଭୂଜଦର୍ପକଣ୍ଡୂ-କବଳ କ୍ଷିତିପାଳ-ମାଳଙ୍କର ନିମନ୍ତ୍ରଣପ୍ରକ୍ରିୟା ଅଯଥା ସ୍ଥାନରେ ଅତିଶୟୋକ୍ତିକ୍ରମେ ଉଲ୍ଲେଖ କରି ଅଛନ୍ତି । [୨] ସେଠାରେ ମାଳବାଧିପତି କୃତବର୍ମାଙ୍କ ଅଶ୍ୱତ୍ଥାମା ନାମକ ହସ୍ତିର ପରିମାଣ ପ୍ରମାଣରେ ଶ୍ରୋତୃବର୍ଗଙ୍କର ବିସ୍ମୟାତିଶଯ୍ୟ ଜନ୍ମାଇ ତତ୍‌କ୍ଷଣାତ୍ ତାହା ବୁଝିପାରି ମାନସାସ୍ୟ, ସୌର ଓ ବ୍ରାହ୍ମ୍ୟ ପରିମାଣର ତାରତମ୍ୟାନୁମତ ଉପାୟଦ୍ୱାରା ତାହାର ଅପନୋଦନ ସାଧନର ଚେଷ୍ଟା କରି ସୁଦ୍ଧା ଅଯଥାବାଦିତ୍ୱରୁ ସମ୍ପୂର୍ଣ୍ଣ ମୁକ୍ତ ପାଇପାରି ନାହାନ୍ତି । [୩]

---

[୧] ୯୫—୧୦୦ ପୃଷ୍ଠା ଦେଖନ୍ତୁ ।

[୨] ୧୦୨ ପୃଷ୍ଠା ଆରମ୍ଭରୁ ୧୦୭ ପୃଷ୍ଠାଯାଏ ଦେଖନ୍ତୁ ।

[୩] ହସ୍ତି ବାରଯୁଣ ତାର ଘଣ୍ଟା ବାରଯୁଣ ।
ଏମନ୍ତ ଶୁଣି ଯୁଧିଷ୍ଠି ଆଶ୍ଚର୍ଯ୍ୟ ହୋଇଣ ॥
ସହଦେବଙ୍କର ଶ୍ରୀମୁଖକୁ ଅନାଇଲେ ।
ମୋ ଆଗରେ ମିଥ୍ୟା ତୁ ଯେ କହିଲୁ ବୋଇଲେ ॥

ତଦନନ୍ତର ଦୌର୍ଯ୍ୟୋଧନଙ୍କ ବାହିନୀର ଅପରିମିତତ୍ୱ ଓ ଅଜେୟତ୍ୱ ଚିନ୍ତାରେ ସନ୍ଦାନତାନ୍ତଃକରଣ ଯୁଧିଷ୍ଠିରଙ୍କର ଚିନ୍ତାପନୋଦନାର୍ଥ ଭୀମଙ୍କ ଔରସରେ ନାଗକନ୍ୟା କେଲ୍ଲାବଳୀଙ୍କ ଗର୍ଭଜାତ ମହାବୀର ବେଲ୍ଲାଳସେନଙ୍କର ଆଗମନାଦି ବୃତ୍ତାନ୍ତର ବିବୃତିକରଣ, ଅନେକଧା ବୀର-ପରୀକ୍ଷାରେ ଶ୍ରୀକୃଷ୍ଣ ବେଲ୍ଲାଳସେନଙ୍କୁ ସର୍ବଥା ଅଜେୟ ଓ ସର୍ବସଂହାର ଶକ୍ତିସମ୍ପନ୍ନ ଜାଣି ପାରି [୧]

---

ସମର ଭୂମିରେ ଯେବେ ଥିବ ସେହି ହସ୍ତୀ ।
କେଉଁଠାରେ ରହିବେ ଯେ ସଇନ ପଦାତି ॥
ଅଛି ହସ୍ତି-କଣ୍ଠେ ପୁଣ ଘଣ୍ଟା ବାର ଯୁଣ ।
ଏ କଥାମାନ ମୋତେ ଲାଗଇ ଅଘଟଣ ॥
ଯୁଧିଷ୍ଠିଙ୍କ ବଚନେ କହନ୍ତି ସହଦେବ ।
ଅସମ୍ଭବ ମଣିଲ ଯେ ହସ୍ତିର ପ୍ରସ୍ତାବ ॥
ଏକମନେ ଏବେ ଶୁଣିବା ଦେବରାୟେ ।
ମାନବରେ ଦେବ ଯୁଣ ସାତ ଯୁଣ ହୁଏ ॥
ଦେବତାଙ୍କୁ ବ୍ରହ୍ମଯୁଣ ଅଟେ ଯୁଣ ସାତେ ।
ଏକମନେ ବୁଝ ଏହା ହୋଇଲାକ କେତେ ॥
ମାନବ ଯୁଣରେ ଘଣ୍ଟା ଅଛି ହସ୍ତିଗଳା ।
ଦେବତା ଯୁଣରେ ପୁଣ ହସ୍ତୀ ଯେ ହୋଇଲା ॥
ବ୍ରହ୍ମଯୁଣେ ହୋଇଅଛି ଯେ ସମରଭୂମି ।
ସହଦେବ ବଚନେ ସନ୍ତୋଷ ହେବ ସ୍ୱାମୀ ॥

ଛାପାରେ ୧୦୭ ପୃଷ୍ଠା ।

ଅଯଥୋକ୍ତି ହେଲେ ସୁଦ୍ଧା "ହସ୍ତୀ ବାତ ଯୁଣ ତାର ଘଣ୍ଟା ବାର ଯୁଣ" ଏ କଥାଟି ପ୍ରବଚନରୂପେ ଭିନ୍ନାର୍ଥରେ ସମଗ୍ର ଉତ୍କଳରେ ପ୍ରଚଳିତ ଅଛି ।

[୧] ଅଠର ଦିବସ ଏଥେଁ ହୋଇବାକ ଯୁଦ୍ଧ ।
ଏ ତ ନିମିଷକେ ସବୁ କରିଦେବ ବଧ ॥
ଯୁଦ୍ଧ କଉତୁକମାନ ଦେଖି ତ ନୋହିବ ।
କ୍ଷଣକମାତ୍ରକେ ଏହୁ ସକଳ ନାଶିବ ॥

ବେଲ୍ଲାଳସେନାଙ୍କ ଏହି ଇତିବୃତ୍ତ ୧୦୮—୧୧୪ ପୃଷ୍ଠାମାନଙ୍କରେ ଦେଖନ୍ତୁ ।

କୈତବ କୌଶଳରେ ତାହାଙ୍କୁ ସତ୍ୟ ପାଶରେ ଆବଦ୍ଧ ରଖି ଚମ୍ପରେ ଛିନ୍ନମସ୍ତକ କରିବା, ତଥାଚ ତତ୍ପ୍ରାର୍ଥନାରେ ସମ୍ପ୍ରୀତ ହୋଇ ତତ୍ପ୍ରତି ପ୍ରଣତ ପ୍ରତି କୃପାଳୁଙ୍କ ଅପାଙ୍ଗ ବିକ୍ଷେପି ଦିବ୍ୟ ଚକ୍ଷୁ ପ୍ରଦାନପୂର୍ବକ ଯୁଦ୍ଧ ଶେଷଯାଏ ଶୁଭ୍ରସ୍ତମ୍ଭୋପରି ଦର୍ଶକରୂପେ ନିହିତ କରିବା, ତତ୍ଶ୍ରବଣରେ ଭୀମ କ୍ରୋଧବଶତଃ କୃଷ୍ଣଜଙ୍ଘାସାରେ ଗଦାହସ୍ତ ହେବା ପ୍ରଭୃତି କଥା ସାରଳାଦାସ ମହାଶୟ କେଉଁ ପୁରାଣରୁ ଅନୁକରଣ କରି ଲେଖି ଅଛନ୍ତି, କିଛି ଜଣାଯାଏ ନାହିଁ ।

ଅତଃପର ଶ୍ରୀମାନ ସାରଳାଦାସ ଗୋଟିଏ କଦର୍ଯ୍ୟ ଚରିତର ଅବତାରଣା କରି ଅଛନ୍ତି । ଚରିତଟା ଆଉ କିଛି ନୁହେ । କର୍ଣ୍ଣିକ ଦାର ବିଜିସ୍ତ୍ରୀ ଅପବିତ୍ର-ନାମା ଭାରଦାର ଅପବିତ୍ର ଚେଷ୍ଟାପୂର୍ଣ୍ଣ କଳଙ୍କିତ ଗାଥାର ଏକାଂଶ ମାତ୍ର । ଯୁଧିଷ୍ଠିର ଭବିଷ୍ୟମାଣ ଘଟଣା ସମ୍ବନ୍ଧରେ ସହଦେବଙ୍କୁ ପ୍ରଶ୍ନ କଲାରୁ ସହଦେବ କହିଲେ କି ମୁଁ ସେ ସବୁ ଜଣାଇବା ପାଇଁ ଉଚିତ ନୁହେଁ । କିନ୍ତୁ ବୈତରଣୀ ନଦୀ-ତୀରସ୍ଥ ଧବଳ ପର୍ବତର ପଶ୍ଚିମ-ଭାଗବର୍ତ୍ତୀ ଯାଜପୁର ନଗରରେ ଗୋଟିଏ ପୁରୁଷ ଅଛି । ତାହାକୁ ଏଠାକୁ ଆଣିଲେ ସେ ସମସ୍ତ କହି ପାରିବ । ସହସା ଭୀମସେନ ଯାଇ ତାହାକୁ ଆଣିଲେ । [୧] ସହଦେବଙ୍କ ଆଦେଶମତେ ନିଶାରେ ଯୁଦ୍ଧପ୍ରାଙ୍ଗଣ ସ୍ତମ୍ଭରେ ତାହାକୁ ବନ୍ଧ ରଖିଲେ । ନିଶୀଥରେ କାନ୍ତସ୍ୱର ଶୃଗାଳ ଓ ଶୃଗାଳୀର ଆଳାପରୁ ଭାରତାହବାପ୍ଲ ଯାବତୀୟ କଥା ଶୁଣି ପ୍ରୋକ୍ତ ଭାରଦା ପରଦିନ ଯୁଧିଷ୍ଠିରଙ୍କୁ ନିବେଦନ କଲା । ନିବେଦନର ଅବ୍ୟବହିତ ପରେ ଦ୍ୱିଧାବିଦୀର୍ଣ୍ଣ-ମସ୍ତକ ହୋଇ ମୃତ ହେଲା । ଇତ୍ୟାଦି । [୨] ତଦନନ୍ତର ବୈବସ୍ୱତମନୁଙ୍କ ପ୍ରଶ୍ନରେ ଭାରଦାର ପୂର୍ବଜନ୍ମ ବୃତ୍ତାନ୍ତରେ କୁବେରଶାପାଭିଶପ୍ତ ଜୟସେନ ଗନ୍ଧର୍ବ ଓ ମଦନିକାନାମ୍ନୀ ଅପ୍ସରା ଏହି ଜନ୍ତୁଦ୍ୱୟ-ଚରିତ୍ର କଳଙ୍କରୂପ ଜନ୍ମିଥିବାର ବିବରଣ ଲେଖା ଅଛି । ଶ୍ରୀମାନ୍ ସାରଳାଦାସ କବି ଅନାର୍ଯ୍ୟଙ୍କ ପାରଦାର୍ଯ୍ୟ

---

[୧] ଭାରଦାର ଅକରଣୀୟ ଦାରବିଷୟ କାର୍ଯ୍ୟମାନ ୧୧୫—୧୧୮ ପୃଷ୍ଠା ଯାଏ ଲେଖା ଅଛି ।

[୨] କହିଲା ଆଦ୍ୟନ୍ତ କରି ଶୁଣିଲେ ଯୁଧିଷ୍ଠି ।
ଏହା କହି ତାହାର ମୁଧିନା ଗଲା ଫାଟି ॥
ନିଜ ପ୍ରାଣ ବିସର୍ଜିଲା ଯୁଧିଷ୍ଠିଙ୍କ ଆଗେ ।
ଶ୍ରୀକୃଷ୍ଣ ମୁଖକୁ ଚାହିଁ ବସିଲା ସେ ସ୍ୱର୍ଗେ ॥ ୧୨୩ ପୃଷ୍ଠା ।

କଦର୍ଥ୍ୟ କାର୍ଯ୍ୟରେ ବିରକ୍ତ ହୋଇ ତଦାମୋଦନ ବେତେକ କୁଚରିତ ଲୋକଙ୍କ ଚରିତଚିତ୍ରଣାର୍ଥ ଇଚ୍ଛୁକ ହୋଇ କଳ୍ପନାବଳରେ ଏ ସବୁ ସନ୍ଦର୍ଭ ଲଗାଇ ଥିବେ।

ପୁନଶ୍ଚ ତାହାପରେ ଯେଉଁ ଶୃଗାଳ ଓ ଶୃଗାଳୀର ଆଳାପରୁ ଗରୁଡ଼ ଭାଗ୍ୟ ଭାରତ ଯୁଦ୍ଧର ସମ୍ଭବମାନ୍ୟ ସମସ୍ତ ବିବରଣ ଜାଣି ପାରିଥିଲା, ସେ ଦୁହିଁଙ୍କର ପୂର୍ବଜନ୍ମର ବୃତ୍ତାନ୍ତ ଦେଇ ଅଛନ୍ତି। ଏହା ମୂଳରେ ଅନୁକ୍ତ। ଏ କବି ମହୋଦୟ କାହିଁରୁ ଏହା ପାଇ ଅଛନ୍ତି, ଠିକ୍ ନିର୍ଦ୍ଧାରିତ ହୋଇ ନ ପାରେ। ତତଃପର ପ୍ରୋକ୍ତ ଶୃଗାଳାଧିଷ୍ଠିତ ପର୍ବତରେ ଲୁକ୍କାୟିତ ନିତାନ୍ତ ଚିନ୍ତାସନ୍ତପ୍ତ-ଦନ୍ତୁରିତାନ୍ତରଙ୍ଗ ଧୃତରାଷ୍ଟ୍ର ଭୂଭାରହାରହେତୁ ଭାଗ୍ୟ ଭାରତ ଯୁଦ୍ଧର ଯାବତୀୟ କଥା ଶୁଣି ଆତ୍ମୀୟପକ୍ଷୀଙ୍କ ବିପକ୍ଷରେ ସନ୍ଧିକରଣାର୍ଥ ଯତ୍ନ କରି ମୃଷାଭାଷଣ-ବୃତ୍ତିସାଧୁଗଣ ଶକୁନିଙ୍କ ଦୁର୍ମନ୍ତ୍ରଣା-ଯନ୍ତ୍ରଣାରେ ହତୋଦ୍ୟମ ହେବା, ତା ପରେ କୃଷ୍ଣାଦିଷ୍ଟ ଭୀମଙ୍କ ନିମନ୍ତ୍ରଣରେ ଅନାଗତ କିଷ୍କିନ୍ଧ୍ୟାରଣ୍ୟନିବାସୀ ହନୁମାନଙ୍କୁ ଦେବଦତ୍ତ ଶଙ୍ଖଧ୍ୱନିରେ ସମାହୂତ କରିଥିବା ପ୍ରଭୃତି କଥାର ସମ୍ବିଧାନମାନ ଲେଖି ଅଛନ୍ତି। [୧] ଏ ସବୁ ମୂଳରେ ଅନୁକ୍ତ ସତ୍ୟ, ତଥାପି କେବଳ ଅଳୀକ ନୁହେ। ବହୁ ଐତିହାସ-ଫିବିଧାନବେତ୍ତା ଶ୍ରୀ ସାରଳାଦାସ ମହୋଦୟ କୌଣସି ପୁରାଣ ବା ଇତିହାସ-ସମୁଚ୍ଚୟରୁ ମୌଳିକ ସାରାଂଶ ନେଇ କଳ୍ପନାନୁପ୍ରାଣିତ କରି ଅଛନ୍ତି।

ଅତଃପର ସ୍ୱୀୟ ଅପତ୍ୟ ବୈକର୍ତ୍ତନଙ୍କ ହେତୁରୁ ସମଧିକାଧିକା କୁନ୍ତୀଦେବୀ କର୍ଣ୍ଣଙ୍କୁ ସହୋଦର ପାଣ୍ଡବମାନଙ୍କ ପକ୍ଷପାତୀ ହେବାପାଇଁ ନାନା କଥାରେ ବୁଝାଇ କହିଲେ ସୁଦ୍ଧା ସେ ଅର୍ଜୁନ ପ୍ରତି ବଦ୍ଧାନୁବୈରିଭାବରୁ ସମ୍ମତ ନ ହେବାରୁ ଅର୍ଜୁନ ଛଡ଼ା ଅନ୍ୟ ପୁତ୍ରମାନଙ୍କ ନିଧନରେ ମୋର ପଞ୍ଚପୁତ୍ରତ୍ୱ ହାନ କରିନାହିଁ ବୋଲି କହିବା, କର୍ଣ୍ଣଙ୍କୁ ଅର୍ଜୁନ କିମ୍ବା ଅର୍ଜୁନଙ୍କୁ କର୍ଣ୍ଣ ନିହତ କଲେ ସୁଦ୍ଧା ନିଜେ ଅକ୍ଷୁର୍ଣ୍ଣ-ପଞ୍ଚପୁତ୍ରା ରହିବାର ସ୍ଥିରକରିବା [୨] ଏବଂ କର୍ଣ୍ଣଙ୍କ ଶରୀରାଭ୍ୟନ୍ତରସ୍ଥ

---

[୧] ୧୩୪ — ୧୩୯ ପୃଷ୍ଠା ଦେଖନ୍ତୁ।

ଶଙ୍ଖ ଶବଦ ଯେ ତାକୁ ଶୁଭିଲା ଗହନେ।
ହନୁ ଆସନ କମ୍ପିଲା କିଷ୍କିନ୍ଧା ନାମେ ବନେ॥ ୧୩୯ ପୃଷ୍ଠା।

[୨] କୁନ୍ତୀ ବୋଇଲେ ତୁ ତାକୁ ମାରିଲେ ସମରେ।
ଯେ ପାଞ୍ଚ କୁମାର ମୋର ହୋଇଲା ସେଠାରେ॥
ଅର୍ଜୁନ ଯେବେଟି ତୋତେ କରେ ପରମାଦେ।
ଯେ ମୋହର ପାଞ୍ଚ ପୁତ୍ର ହୋଇଲକି ହାଦେ॥ ୧୪୩ ପୃଷ୍ଠା।

[୧] ଶାଳବାଣ ଓ ଭୂଜବାଣ ନାମକ ଅମୋଘାସ୍ତ୍ରଦ୍ୱୟ ଆଣି କୁନ୍ତୀଦେବୀ ପାଣ୍ଡବଙ୍କୁ ସମର୍ପଣ କରିଥିବାର ଲେଖି ଅଛନ୍ତି । ଏ ସମସ୍ତ ଅମୂଳକ ବୃତ୍ତେ, କୁନ୍ତୀଦେବୀ ଓ କର୍ଣ୍ଣଙ୍କ ସମ୍ବାଦାତ୍ମକ ଚାବଣିୟ ବିଷୟ ମୂଳଗ୍ରନ୍ଥର ଭଗବଦ୍‌ଯାନ ପର୍ବ ଶେଷରେ [୨] ଉକ୍ତ ଅଛି । ସାରଳାଦାସ ତାହା ଠିକ୍ ଲେଖି ଅଧିକନ୍ତୁ ଶାଳବାଣ ଭୂଜବାଣର କଥା କେବଳ [୩] ପ୍ରକାଶ କରି ଅଛନ୍ତି । ଏହା ଏ କବିଙ୍କର ଅନ୍ୟ ଇତିହାସ-ଶୁଶ୍ରୂଷାବଳରେ ପ୍ରତିପାଦିତ ହୋଇଥିବ । ପରନ୍ତୁ ଏ ମହୋଦୟ ପ୍ରୋକ୍ତ ବାଣ-ଦ୍ୱୟର ଉତ୍ପତ୍ତି ସମ୍ବନ୍ଧରେ ସୁଦ୍ଧା ଚତୁସ୍ଥଳରେ କେବଳ କାରଣ ନିର୍ଦ୍ଦେଶପୂର୍ବକ ପୂର୍ବବୃତ୍ତ ଲେଖି ଅଛନ୍ତି । [୪]

ମୂଳ ଗ୍ରନ୍ଥର [୫] ରଥାତିରଥସଂଖ୍ୟାନନାମକ ଉପପର୍ବରେ ପ୍ରତିପାଦିତ ବିଷୟ ଅର୍ଥାତ୍ ବୀରମାନଙ୍କ ମଧ୍ୟରେ କିଏ ଅତିରଥ କିଏ ବା ଅର୍ଦ୍ଧରଥ କିଏ ବା ମହାରଥ—ଇତ୍ୟାକାରକ ପରାକ୍ରମନିର୍ଦ୍ଧାରଣକ୍ରମ ଆଉ ଭୀଷ୍ମ ଓ କର୍ଣ୍ଣଙ୍କର ଉଚାବଚ ଉକ୍ତିବାଦର କ୍ରମ ଏ ସ୍ଥଳରେ ଲେଖି ନ ଥିଲେ ସୁଦ୍ଧା ସାମୟିକ ପ୍ରସଙ୍ଗାନୁବଶତଃ ଅନ୍ୟାନ୍ୟ ସ୍ଥଳମାନଙ୍କରେ ପ୍ରକାଶ କରିଦେଇ ଅଛନ୍ତି । ଉଦ୍‌ଯୋଗ ପର୍ବର ସର୍ବଶେଷରେ ଉକ୍ତ ଅମ୍ବୋପାଖ୍ୟାନ ଅର୍ଥାତ୍ ଅମ୍ବା ଦେବୀଙ୍କର ଯାବତୀୟ ଚରିତମାନ ମହାମତି ସାରଳାଦାସ ମହୋଦୟ ପ୍ରସଙ୍ଗସାଙ୍ଗତ୍ୟରେ ଆଦିପର୍ବରେ ଯଥାଯୋଗ୍ୟ ସ୍ଥାନରେ ଲେଖିଦେଇ ଥିବାରୁ ପୁନରପି ଏଠାରେ ପ୍ରକାଶ କରିବା ଅନାବଶ୍ୟକ ବୋଧ କରି ଅଛନ୍ତି ।

---

ମୂଳଗ୍ରନ୍ଥରେ ସୁଦ୍ଧା ଏପରି ଉକ୍ତ ଅଛି । ଏଥିରେ କର୍ଣ୍ଣ କହିଥିବା କଥା ସାରଳାଦାସ ଭାରତରେ କୁନ୍ତୀ କହି ଅଛନ୍ତି ।

ନ ତେ ଜାତୁ ବିନଶ୍ୟନ୍ତି ପୁତ୍ରାଃ ପଞ୍ଚ ଯଶସ୍ୱିନି ।
ନିରର୍ଜୁନା ସକର୍ଣ୍ଣା ବା ସାର୍ଜୁନା ବା ହତେ ମୟି ॥
ଉ. ପ. ୧୪୫ ଅଧ୍ୟାୟ । ୨୩ ଶ୍ଳୋକ ।

[୧] କର୍ଣ୍ଣଙ୍କୁ ସତ୍ୟ କରାଇ ମାଗିଲେ ଯେ କୁନ୍ତୀ ।
ଶାଳବାଣ ଭୂଜବାଣ ଦେବୁ ତୁ ଦୁର୍ନ୍ନିନ୍ତି ॥ ଇତ୍ୟାଦି । ୧୪୦ ପୃଷ୍ଠା ।

[୨] ୧୪୩ ଅଧ୍ୟାୟ ପ୍ରାରମ୍ଭରୁ ୧୪୫ ଅଧ୍ୟାୟ ଶେଷଯାଏ ଦେଖନ୍ତୁ ।

[୩] ଏ ବିଷୟସଂସ୍ଥାନଟି ସ୍ୱକୀୟ ମଧ୍ୟପର୍ବରେ ମଧ୍ୟ ସୁବିସ୍ତର ବର୍ଣ୍ଣି ଅଛନ୍ତି ।

[୪] ଛପା ପୁସ୍ତକରେ ୧୪୨ – ୧୪୮ ପୃଷ୍ଠାମାନ ଦେଖନ୍ତୁ ।

[୫] ୧୬୪ ଅଧ୍ୟାୟ ପ୍ରାରମ୍ଭରୁ ୧୭୧ ଅଧ୍ୟାୟ ଶେଷଯାଏ ଦେଖନ୍ତୁ ।

# ମହାଭାରତ ଯୁଦ୍ଧର ସମୟ ନିର୍ଣ୍ଣୟ

ଖ୍ରୀଷ୍ଟାବ୍ଦ ପୂର୍ବପଞ୍ଚକ ଶତମାନଙ୍କର ପାଠର ବର୍ଷର ପୂର୍ବରୁ ମହାଭାରତ ଯୁଦ୍ଧର ସାମୟିକ ନିର୍ଦ୍ଦେଶ ପ୍ରମାଣିତ କରିବା ଆବଶ୍ୟକ ବୋଧ କରୁଅଛୁଁ । ତହ ପ୍ରଥମତଃ ସେହି ଆହବଙ୍କ ପ୍ରଳୟ ଆଜକୁ କେତେ ବର୍ଷ ପୂର୍ବେ ସମ୍ଭବଥିଲା, ଏହାର ପ୍ରମାଣ ନିର୍ଦ୍ଧାରିତ କରି ତା ପରେ ମାସାଦିର କଥା ଦେଖିବାକୁ ହେବ ।

ଏ ସମ୍ବନ୍ଧରେ ମୂଳ ମହାଭାରତରେ କିମ୍ବା ତଦନୁବାଦ କୌଣସି ଦେଶୀୟ ଭାରତରେ ମଧ୍ୟ ଠିକ୍ ନିର୍ଦ୍ଦିଷ୍ଟ ଅସନ୍ଦିଗ୍ଧ-ଗଣନାନୁସିଦ୍ଧ ପ୍ରମାଣ କିଛି ଦେଖାଯାଉ ନାହିଁ ।* ଶ୍ରୀମଦ୍ଭାଗବତ ଓ ଶ୍ରୀବିଷ୍ଣୁ ପୁରାଣାଦିରେ ଯେଉଁ କେତେଗୋଟି ପ୍ରମାଣ ମିଳୁଅଛି, ସେଗୁଡ଼ିକରେ ସ୍ପଷ୍ଟତଃ ଐକମତ୍ୟ ପ୍ରକାଶ ପାଉନାହିଁ । ଅଥବା ସେଗୁଡ଼ିକର ପ୍ରକୃତାର୍ଥତତ୍ତ୍ୱ ଆମ୍ଭମାନଙ୍କର ବୋଧଗମ୍ୟ ନୁହେ । ଏଥି ସକାଶେ

---

* (୧) ଆରଭ୍ୟ ଭବତୋଜନ୍ମ ଯାବତ୍ ନନ୍ଦାଭିଷେଚନଂ ।
ଏତଦ୍‌ବର୍ଷସହସ୍ରଂ ତୁ ଶତଂ ପଞ୍ଚଦଶୋତ୍ତରଂ—
ଭାଗବତ, ୧୨ ସ୍କନ୍ଧ, ୨ ଅଧ୍ୟାୟ ।

(୨) ତେ ତ୍ୱଦୀୟେ ଦ୍ୱିଜାଃ କାଳେ ତ୍ୱଧୁନା ଚାଶ୍ରିତା ମଘାଃ —
ଭାଗବତ, ୧୨ ସ୍କନ୍ଧ, ୨ ଅଧ୍ୟାୟ ।

(୩) ଯଦା ମଘାଭ୍ୟୋ ଯାସ୍ୟନ୍ତି ପୂର୍ବାଷାଢ଼ାଂ ମହର୍ଷୟଃ ।
ତଦାନନ୍ଦାତ୍ ପ୍ରଭୃତ୍ୟେଷ କଳିର୍ବୃଦ୍ଧିଂ ଗମିଷ୍ୟତି ॥
ଭାଗବତ, ୧୨ ସ୍କନ୍ଧ, ୨ ଅଧ୍ୟାୟ ।

(୪) ପ୍ରୟାସ୍ୟନ୍ତି ଯଦା ଚୈତେ ପୂର୍ବାଷାଢ଼ାଂ ମହର୍ଷୟଃ ।
ତଦାନନ୍ଦାତ୍ ପ୍ରଭୃତ୍ୟେଷ କଳିର୍ବୃଦ୍ଧିଂ ଗମିଷ୍ୟତି—
ବି. ପୁ. ୪ ଅଂଶ, ୨୪ ଅଧ୍ୟାୟ ।

(୫) ତେ ତୁ ପାରୀକ୍ଷିତେ କାଳେ ମଘାସ୍ୱାସନ୍ ଦ୍ୱିଜୋତ୍ତମ ।
ତଦା ପ୍ରବୃତ୍ତସ୍ତୁ କଳିର୍ଦ୍ୱାଦଶାବ୍ଦଶତାତ୍ମକଃ ॥
ବି. ପୁ. ୪ ଅଂଶ, ୨୪ ଅଧ୍ୟାୟ ।

(୬) ତେନ ସପ୍ତର୍ଷୟୋ ଯୁକ୍ତା ତିଷ୍ଠନ୍ତ୍ୟବ୍ଦଶତଂ ନୃଣାଂ ।
ବି. ପୁ. ୪ ଅଂଶ, ୨୪ ଅଧ୍ୟାୟ ।

ଅନେକେ ଏହି ବାକ୍ୟଗୁଡ଼ିକର ପଦପରିବର୍ତ୍ତନାଦି କରି ଅନେକ ପ୍ରକାର ମତ ପ୍ରକାଶ କରି ଥାଆନ୍ତି । ଏ ସ୍ଥଳରେ ସେ ସବୁର ସାମଞ୍ଜସ୍ୟ ବିସ୍ତାର ପୂର୍ବକ ସିଦ୍ଧାନ୍ତ କରି ବସିଲେ ପ୍ରବନ୍ଧ ସୁଗମ ହେବା ଦୂରେ ଥାଉ ପ୍ରତ୍ୟୁତ ଜଟିଳ ହୋଇ ପଡ଼ିବ । ଆମ୍ଭେମାନେ ସମ୍ୟକ୍ ଦେଖିଅଛୁଁ, ଅନେକେ ବୃଦ୍ଧ ଚନ୍ଦ୍ରଗୁପ୍ତାଦିଙ୍କ ସମସ୍ତ ସହ ଏ ସବୁର ବିସ୍ତାର କରିବାକୁ ଯାଇ ଅନେକ ଅସଙ୍ଗତ କଥା ଲେଖିଯାଇ ଅଛନ୍ତି । ଏକର ମତକୁ ଅନ୍ୟର ମତ ପ୍ରମାଣ ହୁଏନାହିଁ । ମୂଳର ପ୍ରମାଣମାନଙ୍କୁ କେହି ପ୍ରକ୍ଷିପ୍ତ, କେହି ପରିବର୍ତ୍ତିତ, କେହି ପରିକଳ୍ପିତ, କେହି ବା ଛିନ୍ନ, କେହି ବା ଭିନ୍ନ କରି ନିଜ ଅଭିମତାନୁସାରେ ଅନେକଧା ଆନୁମାନିକ ମତ ନିର୍ଦ୍ଦିଷ୍ଟ କରି ଅଛନ୍ତି । କାହାରି ମତରେ ଚତୁଃଶତ, କାହାରି ପଞ୍ଚଶତ, କାହାରି ମତରେ ପ୍ରାୟ ସହସ୍ର ବର୍ଷ ବ୍ୟବଧାନ ରହୁଅଛି । ଅତଏବ ପ୍ରତ୍ୟେକଙ୍କ ମତ ନେଇ ସୁବିସ୍ତର ସିଦ୍ଧାନ୍ତରେ ପ୍ରବନ୍ଧର କଳେବର ବୃଥା ବଢ଼ାଇବାର ଇଚ୍ଛା କରନ୍ତ ନାହିଁ । କିନ୍ତୁ ରାଜତରଙ୍ଗିଣୀକାର ଶ୍ରୀମାନ୍ କହ୍ଲଣ କବିଙ୍କ ପ୍ରଦର୍ଶିତ ବହୁବିସ୍ତାରସମ୍ମତ ମତକୁ ଅନୁସରି ଭାରତ ଯୁଦ୍ଧର କାଳପ୍ରମାଣ ସଂକ୍ଷେପତଃ ଦେଉଅଛୁଁ । ବିଶ୍ୱାସ କରୁଁ, ଅଭିଜ୍ଞ ପାଠକେ ଏଥିରେ ବିଶ୍ୱାସ କରିବେ ।

"ଆସନ ମଘାସୁ ମୁନୟଃ ଶାସତି ପୃଥ୍ୱୀଂ ଯୁଧିଷ୍ଠିରେ ନୃପତୌ ।
ଷଡ୍‌ଦ୍ୱିକପଞ୍ଚଦ୍ୱିଯୁତଃ ଶକକାଳସ୍ତସ୍ୟ ରାଜ୍ୟସ୍ୟ ।"

ଏ ମହୋଦୟ ବୃହତ୍ ସଂହିତାକାରଙ୍କର ଉଦ୍ଧୃତ ବୃଦ୍ଧ ଗର୍ଗଙ୍କ ଏହି ପ୍ରମାଣକୁ ଧରି ପ୍ରାଚୀନତମ ପ୍ରମାଣମାନଙ୍କର ବିସ୍ତାରପୂର୍ବକ ସିଦ୍ଧାନ୍ତ କରି ଅଛନ୍ତି କି କଳିଯୁଗର ୬୫୩ ବର୍ଷ ଗତ ହେଲା ପରେ କୁରୁପାଣ୍ଡବ ଯୁଦ୍ଧ ସଂଭୂତ ହୋଇଥିଲା । [୧] ଅଥଚ ଯେଉଁମାନେ ଭାରତ ଯୁଦ୍ଧ କଳିରେ ହୋଇନାହିଁ,

(୨) ଯାବତ୍ ପରୀକ୍ଷିତୋ ଜନ୍ମ ଯାବତ୍ ନନ୍ଦାଭିଷେଚନଂ ।
ଏତଦ୍ ବର୍ଷସହସ୍ରଂ ତୁ ଜ୍ଞେୟଂ ପଞ୍ଚାଶଦୁତ୍ତରଂ ॥
ବି. ପୁ. ୪ ଅଂଶ, ୨୪ ଅଧ୍ୟାୟ ।

( ଜ୍ଞେୟଂ ପଞ୍ଚଦଶୋତ୍ତରଂ )

( ଜ୍ଞେୟଂ ପଞ୍ଚଶତୋତ୍ତରଂ ) ଇତ୍ୟାଦି ।

[୧] ଶତେଷୁ ଷଟ୍‌ସୁ ସାର୍ଦ୍ଧେଷୁ ତ୍ର୍ୟଧିକେଷୁ ଚ ଭୂତଳେ ।
କଳେର୍ଗତେଷୁ ବର୍ଷାଣାଂ ଅଭୂବନ୍ କୁରୁପାଣ୍ଡବାଃ ॥
ଇତି । ରା. ତ. ପ୍ର. ତ. ୫୧ ଶ୍ଳୋକ ।

ଦ୍ୱାପରାନ୍ତରେ [୧] କେବଳ ସମ୍ଭବଥିଲେ ବୋଲି କହନ୍ତି, ସେମାନଙ୍କର ବର୍ଷ-ସଂଖ୍ୟାନ ମୃଷା ଅଟେ ବୋଲି ପ୍ରବନ୍ଧକର୍ତ୍ତା ବର୍ଷକୁ ବହୁ ପ୍ରମାଣରେ ପ୍ରମାଣିତ କରି ଅଛନ୍ତି । [୨] ବର୍ଷ ନିର୍ଦ୍ଧାରଣରେ ସେ ମହାଶୟ କହନ୍ତି କି ବର୍ତ୍ତମାନ ଏ ରାଜତରଙ୍ଗିଣୀର ରଚନା ସମୟରୁ ଶାଳିବାହନ ଶକର ୧୦୭୦ ବର୍ଷ ଗତ ହୋଇଅଛି ଏବଂ ଏତତ୍ ସମୟକୁ ଅର୍ଥାତ୍ ଶାଳିବାହନଙ୍କ ୧୦୭୦ ଶକାବ୍ଦକୁ କାଶ୍ମୀରାଧିପତି ତୃତୀୟ ଗୋନର୍ଦ୍ଧଙ୍କ (କମ୍ବା ଗୋନନ୍ଦ) ସମୟଠାରୁ ୨୩୩୦ ବର୍ଷ ଗତ ହୋଇଥିଲା; ଅଥଚ ପାଣ୍ଡବଙ୍କ ସମସାମୟିକ ପ୍ରଥମ ଗୋନର୍ଦ୍ଧନଙ୍କଠାରୁ ତୃତୀୟ ଗୋନର୍ଦ୍ଧଙ୍କ ପର୍ଯ୍ୟନ୍ତ ୫୨ ଜଣ ରାଜାମାନଙ୍କର କାଳ ୧୨୬୬ ବର୍ଷ ଗତ ହୋଇଥିଲା ତାହାହେଲେ ଦେଖନ୍ତୁ—

ପ୍ରଥମ ଗୋନର୍ଦ୍ଧନଙ୍କଠାରୁ ତୃତୀୟ ଗୋନର୍ଦ୍ଧଙ୍କ ପର୍ଯ୍ୟନ୍ତ— ୧୨୬୬
ତୃତୀୟ ଗୋନର୍ଦ୍ଧଙ୍କଠାରୁ ରାଜତରଙ୍ଗିଣୀର ରଚନା ସମୟ ପର୍ଯ୍ୟନ୍ତ— ୨୩୩୦

ଏହେଲା ରାଜତରଙ୍ଗିଣୀର ରଚନା ସମୟକୁ ଭାରତଯୁଦ୍ଧର ଗତକାଳ { ୩୫୯୬

ବର୍ତ୍ତମାନ ଖ୍ରୀଷ୍ଟାବ୍ଦ ୧୯୧୨ ବର୍ଷର ଅନୁପାତ ଶାଳିବାହନ ଶକର ୧୮୩୪ ବର୍ଷରୁ ପୂର୍ବୋକ୍ତ ରାଜତରଙ୍ଗିଣୀର ରଚନାସମୟକୁ ପରିଭୁକ୍ତ କାଳ ୧୦୭୦ ବର୍ଷ ବିଯୁକ୍ତ କଲେ ରାଜତରଙ୍ଗିଣୀର ରଚନା କାଳ ହେଲା ୭୬୪ ବର୍ଷ ।

ରାଜତରଙ୍ଗିଣୀର ରଚନା କାଳକୁ ଭାରତ ଯୁଦ୍ଧର ଗତକାଳ ୩୫୯୬ ବର୍ଷରେ ବର୍ତ୍ତମାନ ସମୟକୁ ରାଜତରଙ୍ଗିଣୀର ରଚନାର ଗତକାଳ ୭୬୪ ବର୍ଷ ଯୁକ୍ତକଲେ ଭାରତ ଯୁଦ୍ଧର ଭୁକ୍ତକାଳ ହେଲା ୪୩୬୦ ବର୍ଷ ।

ବର୍ତ୍ତମାନ କଳ୍ୟବ୍ଦ ୫୦୧୩ ବର୍ଷରୁ ଭାରତ ଯୁଦ୍ଧର ପ୍ରୋକ୍ତ ଭୁକ୍ତକାଳ ୪୩୬୦ ବିଯୋଗିଲେ ଭାରତ ଯୁଦ୍ଧ ସମୟକୁ କଳିଯୁଗର ଭୋଗ ସମୟ ସ୍ଥିରହେଲା ପୂର୍ବୋକ୍ତ ୬୫୩ ବର୍ଷ ।

---

[୧] ଭାରତଂ ଦ୍ୱାପରାନ୍ତେଽଭୂତ୍ ବାର୍ତ୍ତୟେତି ବିମୋହିତାଃ ।
କେଚିଦେତାଂ ମୃଷା ତେଷାଂ କାଳସଂଖ୍ୟା ପ୍ରବର୍ତ୍ତିତେ । ଇତି ।
ରା. ତ. ପ୍ର. ତ. ୪୯ ଶ୍ଳୋକ ।

[୨] ରା. ତ. ପ୍ର. ତ. ୫୦ ଶ୍ଳୋକ ପ୍ରାରମ୍ଭରୁ ଦେଖିପାରୁ ।

ଅତଏବ ଏହି ସିଦ୍ଧାନ୍ତ ଅନୁସାରେ ସ୍ଥିରତଃ କହିବାକୁ ହେବ ଯେ ମହାଭାରତ ଯୁଦ୍ଧ ଆଜକୁ ଅର୍ଥାତ୍ ୧୯୧୨ ଖ୍ରୀଷ୍ଟାବ୍ଦକୁ ୪୩୭୦ ବର୍ଷ ପୂର୍ବେ ଅର୍ଥାତ୍ ଖ୍ରୀଷ୍ଟପୂର୍ବାବ୍ଦ ୨୪୫୮ ବର୍ଷରେ ସମ୍ଭବ ଥିଲା ।

ଅତଃପର ମହାଭାରତ ଯୁଦ୍ଧର ମାସାଦି ନିର୍ଦ୍ଧାରଣର ସତ୍ୟତା ଉପଲବ୍ଧି କରିବା ବଡ଼ କଠିନତର ହୋଇ ପଡ଼ିଅଛି । ଏ ସମ୍ବନ୍ଧରେ ଠିକ୍ ସୁଗମ ପ୍ରମାଣ ମୂଳ ଗ୍ରନ୍ଥରେ ଦେଖାଯାଉ ନାହିଁ । ପୁଣି ତଦନୁକୂଳ ଅନ୍ୟାନ୍ୟ ଭାଷା ଭାରତମାନଙ୍କରେ ପ୍ରତିପାଦିତ ପ୍ରମାଣମାନ ନିତାନ୍ତ ଅସଙ୍ଗତ ହୋଇ ପଡ଼ିଅଛି । ଅତଏବ ମୂଳ ଭାରତ ଓ ଅନ୍ୟାନ୍ୟ ଶାସ୍ତ୍ରମାନଙ୍କର ନାନା ଆଡ଼ୁ ନାନା ପ୍ରକାର ପ୍ରମାଣ ବାକ୍ୟମାନ ନେଇ ସିଦ୍ଧାନ୍ତରେ ଉପନୀତ ହେବାକୁ ହେବ ।

ସାରଳାଦାସ ମହାଶୟ ଇତଃପୂର୍ବେ ବିରାଟଦେଶସ୍ଥ ପାଣ୍ଡବମାନଙ୍କର ବୈବାହିକ ରାଜସିଂହାସନରେ ଅଭିଷେକର ସମୟ ମକର ଶୁକ୍ଳ ଚତୁର୍ଥୀ ବୋଲି ଭ୍ରମବଶତଃ ନିର୍ଦ୍ଧାରିତ କରି ପୁଣି ମହାଭାରତ ଯୁଦ୍ଧର ଆରମ୍ଭ ମଧ୍ୟ ସେହି ତିଥିରେ ହୋଇଥିବାର ଲେଖି ଅଛନ୍ତି କିମ୍ବା ଅନୁଲେଖକମାନେ ଏପରି ଚିତ୍ରଣ କରିଦେଇ ଅଛନ୍ତି । (୧) ଯାହାହେଉ ସାରଳା ମହାଭାରତରେ ଯୁଦ୍ଧାରମ୍ଭ ସମୟ ମକର ଶୁକ୍ଳ ଚତୁର୍ଥୀ ବୋଲି ଯାହା ପ୍ରତିପାଦିତ, ତାହା ସମ୍ପୂର୍ଣ୍ଣ ଭ୍ରାନ୍ତ ଓ ନିତାନ୍ତ ବିଚାରଶୂନ୍ୟ । ଏ ସବୁ ବିଚାର କରିନେଲେ ପାଣ୍ଡବମାନଙ୍କର ଯାବତୀୟ ଘଟନାମୂଳକ ସାମୟିକ ବିବରଣରେ ସାରଳାଦାସଙ୍କ ଅଭିଜ୍ଞତା ଥିଲି, ଏହା ଆମ୍ଭେ ବିଶ୍ୱାସ କରି ନ ପାରୁଁ । ତାହା ନ ହେଲେ କି ଭୀଷ୍ମଙ୍କ ଶରଶଯ୍ୟାରେ ମାସାଧିକ କାଳ ଅବସ୍ଥାନ, ଉତ୍ତରାୟଣରେ ତନୁତ୍ୟାଗ ପ୍ରଭୃତି ବିଷୟମାନ ବିଚାର କରି ନ ଥାନ୍ତେ ?

ବଙ୍ଗ ଭାରତକର୍ତ୍ତା କାଶୀରାମଦାସ ଉଦ୍‌ଯୋଗପର୍ବରେ କହନ୍ତି କି ପାଣ୍ଡବମାନେ ପଞ୍ଚମୀ ତିଥିରେ (ଏ ସ୍ଥଳରେ ମାସ ଉକ୍ତ ନାହିଁ) କୁରୁକ୍ଷେତ୍ର ଯାତ୍ରାର୍ଥ ସମଗ୍ର ସୈନ୍ୟସହ ଉପପ୍ଳବ୍ୟରୁ ବାହାରି ହିରଣ୍ୟପୂରରେ ଆସି ଯୁଦ୍ଧକ୍ଷେତ୍ରରେ

---

(୧) ମକର ଶୁକ୍ଳପକ୍ଷ ଚତୁର୍ଥୀ ବୁଧବାର ।
ରେବତୀ ନକ୍ଷତ୍ର ଯୋଗ ଥିଲା ସେ ଦିନର ॥
ଭୀ. ପ. ୪ ପୃଷ୍ଠା ।

ଉପଗତ ହେଲେ । (୧) ଅପିତ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କର ସମରାଙ୍ଗଣରେ ଉପସ୍ଥିତିବାର୍ତ୍ତା ଚରମୁଖରୁ ଶୁଣି (୨) ଯାତ୍ରାର୍ଥ ସନ୍ନାହ କରିଥିଲେ ବୋଲି ମଧ୍ୟ କହି ଅଛନ୍ତି । କିନ୍ତୁ ପୁଣି ଭୀଷ୍ମ ପର୍ବରେ ପ୍ରୋକ୍ତ ମାର୍ଗଶୀର୍ଷ କୃଷ୍ଣ ପଞ୍ଚମୀରେ କେବଳ କୌରବମାନ ଯାତ୍ରା କରିଥିବାର ନିର୍ଦ୍ଦେଶ କରି ଅଛନ୍ତି (୩) ଯଦି କୁରୁକ୍ଷେତ୍ରରେ ପାଣ୍ଡବମାନଙ୍କର ସମୁପସ୍ଥିତି ବାର୍ତ୍ତା ଶ୍ରବଣ ପରେ ଦୁର୍ଯ୍ୟୋଧନ ଯାତ୍ରା କରିଥାନ୍ତି, ତାହାହେଲେ ନବମୀ ବା ଦଶମୀ ବୋଲି କହିବାର ଉଚିତ

---

(୧) ସହଦେବ ବୋଇଲେକ ଆଜ ଶୁଭକ୍ଷଣ ।
ପଞ୍ଚମୀ ଦିବସ ଆଜ ନକ୍ଷତ୍ର ଉତ୍ତମ ॥
ଆଦି ଯାତ୍ରା କରିବାରେ ହସ୍ତ ତ ଉଚିତ ।
ଆଜ୍ଞା କୈଲେ କର ଯତ ସୈନ୍ୟ ସମାହିତ ॥
ଏତ ଶୁଣି ଆଜ୍ଞା ଦେଇ ଧର୍ମର ନନ୍ଦନ ।
ସୈନ୍ୟ ସେନାପତି ଶୀଘ୍ର କରିହ ସାଜନ ॥
ତିନି ଦିନେ ଆସି ପଥ ଶତେକ ଯୋଜନ ।
କୁରୁକ୍ଷେତ୍ରେ ଉତ୍ତରିଲ ପାଣ୍ଡୁ ପୁତ୍ରଗଣ ॥ ଉଦ୍‌ଯୋଗପର୍ବ ॥

(୨) ଚର ଆସି ଦୁର୍ଯ୍ୟୋଧନେ କରି ନିବେଦନ ।
କୁରୁକ୍ଷେତ୍ରେ ସାଜ ଆଇଲେ ପାଣ୍ଡୁ ପୁତ୍ରଗଣ ॥
ଶୁଣିଣ ନୃପତି ଆଜ୍ଞା ଦିଲେ ଦୁଃଶାସନେ ।
ଶୀଘ୍ରଗତି ଡାକ ଆନ ସର୍ବ ପରିଜନେ ॥

× × ×

ରଜାରେ କହିଲ ତବେ ବୀର ଦୁଃଶାସନ ।
ଚତୁର୍ଥ ପ୍ରହରେ ଯାତ୍ରା ଦିନ ଶୁଭକ୍ଷଣ ॥
ସାଜିବାରେ ଆଜ୍ଞା ଦିଲ ଯତ ସୈନ୍ୟଗଣ ।
ଜୟ ଧ୍ୱନି କରିଲେକ ସୈନ୍ୟ ହୃଷ୍ଟମନ ॥ ଉଦ୍‌ଯୋଗପର୍ବ ॥

(୩) ମାର୍ଗଶୀର୍ଷ ମାସେ କୃଷ୍ଣା ପଞ୍ଚମୀ ଯେ ତିଥି ।
ମଘା ନାମେ ନକ୍ଷତ୍ରେ ସାଜିଲ ନରପତି ॥
ସାଜିଲ ସକଳ ସୈନ୍ୟ କୌରବ ପ୍ରଚଣ୍ଡ ।
କୁରୁକ୍ଷେତ୍ରେ ରହିଲ ଯୁଝିଆ ପୂର୍ବଦାଣ୍ଡ ॥ ଭୀଷ୍ମପର୍ବ ॥

ଥିଲା । କାରଣ ପାଣ୍ଡବମାନେ ପ୍ରଥମତଃ ପ୍ରୋକ୍ତ ପଞ୍ଚମୀଠାରେ ବାହାର ତିନ ଦିନ ପରେ କୁରୁକ୍ଷେତ୍ରରେ ସମୁପସ୍ଥିତ ହେବା ଇତଃପୂର୍ବେ ପ୍ରତିପାଦିତ ହୋଇଅଛି । ତଥାପି ସେ ସବୁ ଯାହାହେଉ ପ୍ରୋକ୍ତ ମାର୍ଗଶୀର୍ଷ କୃଷ୍ଣ ପଞ୍ଚମୀକୁ ଯୁଦ୍ଧର ପ୍ରାରମ୍ଭ ଦିବସ ବୋଲି ଗ୍ରହଣ କରଯାଇ ନ ପାରେ । ପରନ୍ତୁ କାଶୀରାମଦାସ ମହାଶୟ ଏହି ତିଥିଟିକୁ କେବଳ ଯୁଦ୍ଧାରମ୍ଭର ଦିବସ ବୋଲି ଗ୍ରାହ୍ୟ କରି ଅଛନ୍ତି ଏବଂ ଭୀଷ୍ମଦେବଙ୍କର ଶରଶଯ୍ୟାକରଣ ଓ ଶରୀରତ୍ୟାଗାଦିର ବ୍ୟବହିତ ସମୟମାନଙ୍କର ସୂକ୍ଷ୍ମ ବିଚାରପୂର୍ବକ ସିଦ୍ଧାନ୍ତ ନ କରି ଶାନ୍ତିପର୍ବ ପାଠ ଶେଷରେ ମାଘ ଶୁକ୍ଳ ଅଷ୍ଟମୀ ଦିବସରେ ଭୀଷ୍ମ ଶରୀର ତ୍ୟାଗ କରିଥିବାର ଲେଖି ଅଛନ୍ତି । (୧)

ଯଦି କାଶୀରାମଦାସଙ୍କ ମତରେ ମାର୍ଗଶୀର୍ଷ କୃଷ୍ଣ ପଞ୍ଚମୀ ଯୁଦ୍ଧର ପ୍ରଥମ ଦିବସ ହୁଏ, ତେବେ ଭୀଷ୍ମଙ୍କ ଯୁଦ୍ଧର ଅନ୍ତିମ ଦିବସ ସେହି ଚତୁର୍ଦ୍ଦଶୀ ଏବଂ ଦ୍ରୋଣଙ୍କ ଅନ୍ତିମ ଦିବସ ମାର୍ଗଶୀର୍ଷ ଶୁକ୍ଳ ପଞ୍ଚମୀ ହେବ, ମାତ୍ର ଏହା ଯଥାର୍ଥ ନୁହେ । ଦ୍ରୋଣଙ୍କ ନିଧନ ସମୟକୁ ସତ୍ୟତଃ କୃଷ୍ଣ ଦ୍ୱାଦଶୀ ବା ତଦ୍‌ଗତ ତ୍ରୟୋଦଶୀ ହୋଇଥିଲା । ଅତଏବ ଦ୍ରୋଣପର୍ବର ୧୮୫ ଅଧ୍ୟାୟରେ ଉକ୍ତ ଅଛି କି, ଉଭୟ ସେନା ପ୍ରଗାଢ଼ତର ଅନ୍ଧକାର ମଧ୍ୟରେ ଯେ କୌଣସି ପ୍ରକାରେ ବହୁ ସମୟ ଯୁଦ୍ଧ କରି ଶ୍ରାନ୍ତ ହେବାରୁ ଯୁଦ୍ଧାଙ୍ଗଣରେ କେବଳ ନିଦ୍ରାଦେବୀଙ୍କ କୋଳରେ ଆଶ୍ରୟ ନେଇଥିଲେ; ସମୟରେ ପୂର୍ବାଶାରେ ଚନ୍ଦ୍ର ଉଦିତ ହୋଇ ଆଲୋକ ପ୍ରଦାନ କଲାରୁ (୨) ତପୀୟ ଅମୃତକରଣରେ ଆଶ୍ୱସ୍ତ ବୀରଗଣ ପୁନଶ୍ଚ କ୍ଷଣକାଳ

(୧) ମାଘ ମାସ ଶୁକ୍ଳାଷ୍ଟମୀ ତିଥି ଶୁଭଦିନେ ।
ତ୍ୟଜିଲେନ ଭୀଷ୍ମ ତନୁ ଚିନ୍ତି ନାରାୟଣେ ॥ ଇତ୍ୟାଦି । ଶାନ୍ତିପର୍ବ ।

(୨) [କ] ଜଘ୍ନୁଃ ଶୂରା ରଣେ ଶୂରଂ ପ୍ରସୁପ୍ତାନ୍ ତମସି ବାହୁଣେ —
ଦ୍ରୋଣପର୍ବ ୧୮୫ ଅଧ୍ୟାୟ ୨୩ ଶ୍ଳୋକ ।

[ଖ] ତେ କ୍ଷତ୍ରିୟା କୁଣ୍ଡଳିନୋ ଯୁବାନଃ ପରସ୍ପରଂ ଶାୟକବିକ୍ଷତାଙ୍ଗଃ ।
କୁମ୍ଭେଷୁ ଲୀନାଃ ସୁଷୁପୁର୍ଗଜାନାଂ କୁଚେଷୁ ଲଗ୍ନାଇବ କାମିନୀନାଂ ॥
ତତଃ କୁମୁଦନାଥେନ କାମିନୀଗଣ୍ଡପାଣ୍ଡୁନା ।
ନେତ୍ରାନନ୍ଦେନ ଚନ୍ଦ୍ରେଣ ମାହେନ୍ଦ୍ରୀଦିଗଲଂକୃତା ॥
ଦ୍ରୋଣପର୍ବ ୧୮୫ ଅ: ୪୫ । ୪୭ ଶ୍ଳୋକ ।

ତତୋ ମୁହୂର୍ତ୍ତାଦ୍ ଭଗବାନ୍ ପୁରସ୍ତାଦ୍ ଶଶଲକ୍ଷଣଃ ।
ଅରୁଣାଂ ମହତ୍ତ୍ୱ ତଦ୍ଧ୍ୱା ମନ୍ଦଂମନ୍ଦମିବାଯୁଜଜୁ ॥ ଇତ୍ୟାଦି ॥

ଯୁଦ୍ଧଖେଳା କରୁଥିଲେ । କିନ୍ତୁ ଚନ୍ଦ୍ରୋଦୟର ଅତ୍ୟଳ୍ପ କାଳ ପରେ ଅରୁଣ ଉଦିତ ହେବାରୁ ଉଭୟ ପକ୍ଷ ସ୍ୱ ସ୍ୱ ଶିବିରାଭିମୁଖରେ ପ୍ରସ୍ଥାନ କରୁଥିଲେ । ଅତଏବ ସ୍ଥିର କରିବାକୁ ହେବ ଯେ, ଦ୍ରୋଣଙ୍କର ପ୍ରୋକ୍ତ ରାତ୍ର ଯୁଦ୍ଧରେ ଶୁକ୍ଳ ପଞ୍ଚମୀ କିମ୍ବା ଶୁକ୍ଳ ପକ୍ଷର ଅନ୍ୟ ତିଥି ସର୍ବଥା ଅସମ୍ଭବ ।

ଏ ସମ୍ବନ୍ଧରେ ଆଉ କେତେଗୋଟି ଆନୁଷଙ୍ଗିକ ପ୍ରମାଣ ମଧ୍ୟ ମୂଳ ଗ୍ରନ୍ଥରୁ ମିଳୁଅଛି । ଭୀଷ୍ମଦେବ ଭାରତ ଯୁଦ୍ଧର ଏକାଦଶ ଦିବସରେ ଶରଶଯ୍ୟାଶାୟୀ ହୋଇ ଉତ୍ତରାୟଣ ପ୍ରାପ୍ତ୍ୟର୍ଥ ଅଷ୍ଟପଞ୍ଚାଶତ୍ ଦିବସ ଶରତଳ୍ପରେ ଅବସ୍ଥାନ କରୁଥିଲେ । (୧) କାଶୀରାମଦାସଙ୍କ ପ୍ରଦର୍ଶିତ ମତେ ମାର୍ଗଶୀର୍ଷ କୃଷ୍ଣ ପଞ୍ଚମୀରେ ଯୁଦ୍ଧାରମ୍ଭ ଏବଂ ମାଘ ଶୁକ୍ଳ ଅଷ୍ଟମୀରେ ଭୀଷ୍ମ ନିର୍ବାଣ ସ୍ଥିର କରନେଲେ ତାହାଙ୍କ ଶରତଳ୍ପାବସ୍ଥାନ ଦିବସ ପରିମାଣ ଅନ୍ତରେକତଃ ଏକୋନସପ୍ତତି କିମ୍ବା ସପ୍ତତି ହୋଇପାରୁ ଅଛି । ବ୍ୟାସଦେବଙ୍କ ନିର୍ଦ୍ଦିଷ୍ଟ ପ୍ରୋକ୍ତ ଅଷ୍ଟପଞ୍ଚାଶତ୍ ରାତ୍ରିର ପ୍ରମାଣରେ ଦୃଷ୍ଟି ଦେଲେ ଏଥିରେ ପ୍ରକୃତ ଭିନ୍ନ ନାହିଁ । ଅପିଚ ପ୍ରୋକ୍ତ ଅଷ୍ଟପଞ୍ଚାଶତ୍ ଦିବସର ଦୃଢ଼ୀକରଣାର୍ଥ ଆଉ ଗୋଟିଏ ପ୍ରମାଣ ମଧ୍ୟ ମିଳୁଅଛି କି, ଅଷ୍ଟାଦଶ-ଦିବସାବସାନ ଯୁଦ୍ଧ ନିଃଶେଷ ହେଲା ପରେ ଯୁଧିଷ୍ଠିର ପଞ୍ଚାଶତ୍ ଦିବସ ମାତ୍ର ଗୃହରେ ରହି ଭୀଷ୍ମଙ୍କ ନିର୍ଯ୍ୟାଣ କାର୍ଯ୍ୟ ନିର୍ବାହାର୍ଥ ଆସିଥିଲେ । (୨) ଅର୍ଥାତ୍ ଭୀଷ୍ମଙ୍କ ଯୁଦ୍ଧ ଶେଷ ପରେ ଯୁଦ୍ଧର ଅବଶିଷ୍ଟ କାଳ ଅଷ୍ଟଦିବସ ମାତ୍ର ଯୁଧିଷ୍ଠିର ଯୁଦ୍ଧକ୍ଷେତ୍ରରେ ଥିଲେ । ଅତଏବ ଭୀଷ୍ମଙ୍କ ଶରଶୟନ ଓ ନିର୍ଯ୍ୟାଣର ବ୍ୟବହିତ ସମୟ ଯେପରି ଅଷ୍ଟପଞ୍ଚାଶତ୍ ଦିବସ, ସେପରି ଯୁଧିଷ୍ଠିରଙ୍କ ଯୁଦ୍ଧକ୍ଷେତ୍ରରୁ ନିବୃତ୍ତି ଓ ଭୀଷ୍ମଙ୍କ ନିର୍ଯ୍ୟାଣ ଦର୍ଶନାର୍ଥ ଆଗମନର ବ୍ୟବହିତ ସମୟ ପଞ୍ଚାଶତ୍ ଦିବସ

---

(୧) ଅଷ୍ଟପଞ୍ଚାଶତଂ ରାତ୍ର୍ୟଃ ଶୟାନସ୍ୟାଦ୍ୟମେ ଗତାଃ ।
ଶରେଷୁ ନିଶିତାଗ୍ରେଷୁ ଯଥା ବର୍ଷଶତଂ ତଥା ॥
ଆ. ପର୍ବ ୧୬୨ ଅଧ୍ୟାୟ ୨୭ ଶ୍ଳୋକ ।

(୨) ଉଷିତ୍ୱା ଶର୍ବରୀଃ ଶ୍ରୀମାନ୍ ପଞ୍ଚାଶନ୍ନଗରୋତ୍ତମେ ।
ସମୟଂ କୌରବାଗ୍ରସ୍ୟ ସସ୍ମାର ପୁରୁଷର୍ଷଭ ॥
ସ ନିର୍ଯଯୌ ଗଜପୁରାତ୍ ଯାଜକୈଃ ପରିବାରିତଃ ।
ଦୃଷ୍ଟ୍ୱା ନିବୃତ୍ତମାଦିତ୍ୟଂ ପ୍ରବୃତ୍ତଂ ଚୋତ୍ତରାୟଣଂ ॥
ଆ. ପର୍ବ ୧୬୭ ଅଧ୍ୟାୟ, ୫ । ୬ ଶ୍ଳୋକ ।

କେବଳ । ତଥାପି ଏ ସ୍ଥଳରେ ଆଉ ଗୋଟିଏ ପ୍ରମାଣର କଥା ସୁଦ୍ଧା ବିଚାର୍ଯ୍ୟ । ଭୀଷ୍ମଦେବ ଶରତଳ୍ପଗତ ହେଲା ପରେ ଶ୍ରୀକୃଷ୍ଣ ପ୍ରସଙ୍ଗତଃ ଭୀଷ୍ମଙ୍କୁ କହିଥିଲେ ଯେ ଆପଣଙ୍କର ଆଉ ଷଟ୍‌ପଞ୍ଚାଶତ୍ ଦିବସ ମାତ୍ର ଆୟୁଃ ସମୟର ଅବଶିଷ୍ଟ ଅଛି । ତା ପରେ ଆପଣ ଦିବ୍ୟସ୍ଥାନ ପ୍ରାପ୍ତ ହେବେ । (୧) ତେବେ ଏ ସ୍ଥଳରେ କେହି ଆଶଙ୍କା କରି ପାରନ୍ତି ଯେ ଇତଃପୂର୍ବେ ଶରତଳ୍ପଶୟନାବଧି ନିର୍ଯ୍ୟାଣଯାଏ ଅତିବାହିତ ସମସ୍ତ ଅଷ୍ଟପଞ୍ଚାଶତ୍ ଦିନ ସମ୍ପ୍ରତି ଷଟ୍‌ପଞ୍ଚାଶତ ଦିବସ ବୋଲି କିପରି ଉକ୍ତ ହେଲା ? କିନ୍ତୁ ଏପରି ଆଶଙ୍କା ଅଭ୍ରାନ୍ତ ନୁହେ । କାରଣ ଏ ସ୍ଥଳରେ ଭୀଷ୍ମଙ୍କ ଶରତଳ୍ପପତନର ପ୍ରଥମ ଦିବସ ଓ ଅନ୍ତିମ ଦିବସ ଅର୍ଥାତ୍ ନିର୍ଯ୍ୟାଣୋଦ୍ଭବ ଦିବସ ଧାର୍ଯ୍ୟ ହୋଇ ନ ଥିବାରୁ ଆପଣଙ୍କର ସ୍ୱର୍ଗମନୋଦ୍ଭବ ହେବାପାଇଁ ମଧ୍ୟରେ ଛପନ ଦିନ ମାତ୍ର ବ୍ୟବଧାନ ଅଛି ବୋଲି ଶ୍ରୀକୃଷ୍ଣ ଜଣାଇଥିଲେ । ନଚେତ୍ ତଦୀୟ ଶରଶୟନର ଦ୍ୱିତୀୟ ବା ତୃତୀୟ ଦିବସରେ ଏପରି ପ୍ରକାଶ କରିଥିଲେ ବୋଲି କହିବାକୁ ହେବ । ଯେ କୌଣସି ପ୍ରକାରେ ହେଉ, ଭୀଷ୍ମଦେବଙ୍କର ଶରଶୟନ ଓ ନିର୍ଯ୍ୟାଣର ମଧ୍ୟଗତ ସମୟ ଅଠାବନ ଦିନରୁ ଅଧିକ ହୋଇ ନ ପାରେ । ଅତଏବ ମାର୍ଗଶିର କୃଷ୍ଣ ପଞ୍ଚମୀରେ ଯୁଦ୍ଧାରମ୍ଭ ବୋଲି କହିବା ଅସଙ୍ଗତ ।

ତେବେ ଆଉ କେଉଁ ତିଥିକି ଧରିଲେ ପ୍ରୋକ୍ତ ପ୍ରମାଣମାନଙ୍କ ସହ ମିଳନ ସଙ୍ଗତ ହେବ, ତାହା ବିଚାର କରିବା ଆବଶ୍ୟକ । ଭାରତସାବିତ୍ରୀ ନାମକ ଗୋଟିଏ ସଂଗ୍ରହ ପୁସ୍ତକରେ ଉକ୍ତ ଅଛି କି (୨) ହେମନ୍ତର ପ୍ରଥମ ମାସ ଅର୍ଥାତ୍ ମାର୍ଗଶୀର୍ଷ ଶୁକ୍ଳ ତ୍ରୟୋଦଶୀ ଦିନ ମହାଭାରତ ଯୁଦ୍ଧ ଆରବ୍ଧ ହୋଇଥିଲା । ଯଦି ଏଥିରେ ବିଶ୍ୱାସ ରଖିବାକୁ ହୁଏ, ତେବେ ପୂର୍ବୋକ୍ତ ବ୍ୟାସନିର୍ଦ୍ଦିଷ୍ଟ ଅଷ୍ଟପଞ୍ଚାଶତ୍ ଦିବସର ମିଳନ କିପରି ସଙ୍ଗତ ହେଉଅଛି, ଦେଖାଯାଉ । ମାର୍ଗଶୀର୍ଷ ଶୁକ୍ଳ ତ୍ରୟୋଦଶୀରେ

(୧) ପଞ୍ଚାଶତଂଷଟ୍ ଚ କୁରୁପ୍ରବୀର ଶେଷଂ ଦିନାନାଂ ତବଜୀବିତସ୍ୟ ।
ତତଃ ଶୁଭୈଃ କର୍ମଫଳୋଦୟୈସ୍ତ୍ୱଂ ସମେଷ୍ୟସେ ଭୀଷ୍ମ ବିମୁଚ୍ୟ ଦେହଂ ॥
ଶା. ପ. ୫୧ ଅ: ୧୪ ଶ୍ଳୋକ ।

(୨) ହେମନ୍ତେ ପ୍ରଥମେ ମାସି ଶୁକ୍ଳପକ୍ଷ ତ୍ରୟୋଦଶୀ ।
ପ୍ରବୃତ୍ତଂ ଭାରତଂ ଯୁଦ୍ଧଂ ନକ୍ଷତ୍ରେ ଯମଦୈବତେ ॥
ଇତି ଭାରତସାବିତ୍ରୀ ।

ଯୁଦ୍ଧ ଆରମ୍ଭ ହୋଇଥିବାରୁ ଭୀଷ୍ମ ଦଶମ ଦିବସ ଅର୍ଥାତ୍ ପୌଷ କୃଷ୍ଣ ସପ୍ତମୀ ଦିନ ଶରତଳ୍ପଗତ ହେଲେ । (୧) ଏହାଙ୍କ ଶରତଳ୍ପାବସ୍ଥାନର ଦିନସଂଖ୍ୟା ଅଷ୍ଟପଞ୍ଚାଶତ୍ ଦିବସ ଯୋଗକଲେ ତତ୍‌ପରୁ ନିର୍ଯ୍ୟାଣ ଦିବସ ଫାଲ୍‌ଗୁନ କୃଷ୍ଣ ଚତୁର୍ଥୀ ଧାର୍ଯ୍ୟ ହେଉଅଛି । ଅପିଚ ମାର୍ଗଶୀର୍ଷ ଶୁକ୍ଳ ତ୍ରୟୋଦଶୀରେ ଯୁଦ୍ଧ ଆରମ୍ଭ ହୋଇ ପୌଷ ଅମାବାସ୍ୟା ଦିନ ଅବସନ୍ନ ହୋଇଥିବାରୁ ତତ୍ପରେ ଭୀଷ୍ମନିର୍ଯ୍ୟାଣ ପର୍ଯ୍ୟନ୍ତ ଯୁଧିଷ୍ଠିରଙ୍କ ନଗରାବସ୍ଥାନର ପଞ୍ଚାଶତ୍ ଦିବସ ଗଣନା ପୌଷ ଅମାବାସ୍ୟା ଠାରୁ ଫାଲଗୁନ କୃଷ୍ଣ ଚତୁର୍ଥୀ ପର୍ଯ୍ୟନ୍ତ ଠିକ୍ ଧାର୍ଯ୍ୟ ହେଉଅଛି ଏବଂ ଶ୍ରୀକୃଷ୍ଣଙ୍କ ପ୍ରକାଶିତ ଭୀଷ୍ମଙ୍କ ଅବଶିଷ୍ଟ ଆୟୁଃ ପରିମାଣ ଷଟ୍‌ପଞ୍ଚାଶତ୍ ଦିବସ ମଧ୍ୟ ଏଥିରେ ପ୍ରମାଣିତ ହେଉଅଛି ।

କିନ୍ତୁ ସୂକ୍ଷ୍ମତଃ ବିଚାର ନ କରି ସ୍ଥୂଳ ବିଷୟରେ କେବଳ ଆଶ୍ରୟ ହୋଇଗଲେ ଏଥିରେ ଦୁଇଗୋଟି ମହତ୍ତ୍ୱ ଆଶଙ୍କା ଜନ୍ମେ । ପ୍ରଥମଟି— ସର୍ବସାଧାରଣରେ ପ୍ରଚଳିତ ମାଘ ଶୁକ୍ଳ ଭୀଷ୍ମାଷ୍ଟମୀରେ ତାଙ୍କର ନିର୍ଯ୍ୟାଣ ବିଶ୍ୱାସର ଉଲ୍ଲଙ୍ଘନ କିପରି ? ଦ୍ୱିତୀୟଟି— ଉତ୍ତରାୟଣ ସଂକ୍ରାନ୍ତି ବା ମକର ସଂକ୍ରାନ୍ତିର ପ୍ରାରମ୍ଭ ଫାଲଗୁନ ଶୁକ୍ଳ ଚତୁର୍ଥୀ ପର୍ଯ୍ୟନ୍ତ କିପରି ବୃଦ୍ଧିଗଲା ?

[୧] ମାଘେ ମାସି ସିତାଷ୍ଟମ୍ୟାଂ ସତିଳଂ ଭୀଷ୍ମତର୍ପଣେ ।
ଶ୍ରାଦ୍ଧଂ ଚ ଯେ ନରା କୁର୍ଯ୍ୟୁଃ ତେ ସ୍ୟୁଃ ସନ୍ତତିଭାଗିନଃ ॥

[୨] ମାଘସ୍ୟ ଚାଷ୍ଟମୀଂ ଶୁକ୍ଳାଂ ଆରଭ୍ୟ ଦିନପଞ୍ଚକଂ ।
ତର୍ପୟେଦ୍‌ଥବାଷ୍ଟମ୍ୟାଂ ଭୀଷ୍ମଂ ଭାଗବତୋତ୍ତମଂ ॥

ଇତ୍ୟାଦି ସ୍ମୃତିସିଦ୍ଧ ବାକ୍ୟମାନଙ୍କଦ୍ୱାରା ମାଘ ଶୁକ୍ଳ ଅଷ୍ଟମୀ ପ୍ରାରମ୍ଭରୁ ଭୀଷ୍ମପଞ୍ଚକ ଓ ତନ୍ମଧ୍ୟରେ ତଦୁଦ୍ଦେଶ୍ୟରେ ତର୍ପଣ ଶ୍ରାଦ୍ଧାଦିର ଅବଶ୍ୟ କର୍ତ୍ତବ୍ୟତା ପ୍ରତିପାଦିତ ହେଉଅଛି ସତ୍ୟ, କିନ୍ତୁ ଏଥିଦ୍ୱାରା ସେହି ଦିନ କେବଳ ଭୀଷ୍ମଙ୍କ ନିର୍ଯ୍ୟାଣ ହୋଇଥିଲା, ଏହା ପ୍ରମାଣିତ ନୁହେଁ । କାରଣ ମାଘ ଶୁକ୍ଳରେ ଯେପରି ଭୀଷ୍ମପଞ୍ଚକ ଧାର୍ଯ୍ୟ ହୋଇଅଛି, କାର୍ତ୍ତିକରେ ସୁଦ୍ଧା ସେହିପରି । (୨) କାର୍ତ୍ତିକର ଭୀଷ୍ମପଞ୍ଚକରେ

---

(୧) ଫାଲଗୁନ୍ୟାଂ ନିହତୋ ଭୀଷ୍ମଃ କୃଷ୍ଣପକ୍ଷେ ତୁ ସପ୍ତମୀ — ଭା. ସା.
ଫାଲଗୁନ୍ୟାଂ — ଫାଲଗୁନୀ ନକ୍ଷତ୍ରରେ ।

(୨) କାର୍ତ୍ତିକରେ ଭୀଷ୍ମପଞ୍ଚକ — ଯଥା — କର୍ତ୍ତବ୍ୟଂ କାର୍ତ୍ତିକେ ମାସି ଭକ୍ତ୍ୟା ଭୀଷ୍ମପଞ୍ଚକଂ ।

ତଦାପ୍ତ ତର୍ପଣପୂଜାଦିର ଅବଶ୍ୟ କର୍ତ୍ତବ୍ୟତ୍ୱ ପ୍ରତିପାଦିତ ହୋଇଅଛି । ତେବେ ଏହି ଦିନ ମଧ୍ୟ ତାହାଙ୍କ ନିର୍ଯ୍ୟାଣର ସମୟ ବୋଲି କେହି କେହି କହି ପାରନ୍ତି ? ତାହା କଦାଚ ସଙ୍ଗତ ନୁହେଁ । ଅତଏବ ଆମ୍ଭମାନଙ୍କର ବିଶ୍ୱାସ, ଶ୍ରୀକୃଷ୍ଣ ଭୀଷ୍ମଙ୍କ ସ୍ନେହ ବା ଭକ୍ତିର ଆତିଶଯ୍ୟରୁ ଏହି ସମୟମାନ ଉଦ୍ଦେଶ୍ୟରେ କାର୍ଯ୍ୟ କରି ତାହାଙ୍କ ସମ୍ପ୍ରୀତି ବଢ଼ାଇବା ପାଇଁ ଧାର୍ଯ୍ୟ କରି ଅଛନ୍ତି । ମାତ୍ର ଏହା ତାହାଙ୍କର ନିର୍ଯ୍ୟାଣର ଦିବସ ନୁହେ ।

ପ୍ରଥମ ଆଶଙ୍କାର ସମାଧାନ ସମ୍ୟକ୍ ବିସ୍ତର କହିନେଲେ ଅବଶ୍ୟ ବିଶ୍ୱାସମାପ୍ତ ବୋଧହୁଏ । ତେବେ ଦ୍ୱିତୀୟ ଆଶଙ୍କାର ସମାଧାନ କଣ ? ଏହାର ଶୁଶ୍ରୂଷା ତାହାର ସଙ୍ଗେ ସଙ୍ଗେ ଜନ୍ମେ ।

ଆଗନ୍ତବ୍ୟଂ ତ ଭବତା ସମୟେ ମମ ପାର୍ଥିବ ।
ବିନିବୃତ୍ତେ ଦିନକରେ ପ୍ରବୃତ୍ତେ ଚୋତ୍ତରାୟଣେ—

ଆନୁ-ପ. ୧୬୭ ଅ: ୧୪ ଶ୍ଳୋକ ।

ନିବୃତ୍ତମାତ୍ରେତ୍ୱୟନେ ଉତ୍ତରେ ବୈ ଦିବାକରେ ।
ସମାବେଶୟଦାତ୍ମାନମାତ୍ମନ୍ୟେବ ସମାହିତଃ—

ଶା. ପ. ୪୭ ଅ: ୩ ଶ୍ଳୋକ ।

ଇତ୍ୟାଦି ବାକ୍ୟମାନଙ୍କରୁ ସ୍ପଷ୍ଟତଃ ଜଣାଯାଏ ଯେ, ଭୀଷ୍ମଦେବ ଉତ୍ତରାୟଣର ପ୍ରବେଶ ମାତ୍ରେ ଦେହତ୍ୟାଗ କରିଥିଲେ । ତେବେ ଉତ୍ତରାୟଣ ସଂକ୍ରାନ୍ତିର ପ୍ରବେଶ ସମଗ୍ର ମାଘ ଅତିକ୍ରମି ଫାଲଗୁନ କୃଷ୍ଣ ଚତୁର୍ଥୀ ପର୍ଯ୍ୟନ୍ତ କିପରି ଚାଲି ଯାଇଥିଲା ? ମେଷାଦି ସମସ୍ତ ସଂକ୍ରାନ୍ତିନିଚୟ ଜ୍ୟୋତିଃସିଦ୍ଧାନ୍ତ ଶାସ୍ତ୍ର ଅନୁସାରେ ସାୟନ ଓ ନିରୟନ (ସଂକ୍ରାନ୍ତି) ନାମରେ ଦ୍ୱିବିଧ ହୁଅନ୍ତି । ସର୍ବସାଧାରଣରେ ନିରୟନ ସଂକ୍ରାନ୍ତି ପ୍ରଚଳିତ । କିନ୍ତୁ ସିଦ୍ଧାନ୍ତବିତ୍‌ମାନଙ୍କ ପକ୍ଷରେ ସାୟନ ସଂକ୍ରାନ୍ତି କେବଳ ପ୍ରତ୍ୟକ୍ଷଭୂତ । ଏହାକୁ କେବଳ ସେମାନେ ଠିକ୍ ମନେ କରନ୍ତି । ଅତଏବ କୌଣସି କୌଣସି ସିଦ୍ଧାନ୍ତ ଶାସ୍ତ୍ରମାନଙ୍କରେ ନିରୟନ ମକର ସଂକ୍ରାନ୍ତି ଅପେକ୍ଷା

---

ପ୍ରବକ୍ଷ୍ୟାମି ମହାପୁଣ୍ୟଂ ବ୍ରତଂ ବିଧିମତାଂବର ।
ଭୀଷ୍ମେଣୈତତ୍ ଯତଃ ପ୍ରାପ୍ତଂ ବ୍ରତଂ ପଞ୍ଚଦିନାତ୍ମକଂ ।
ସକାଶାତ୍ ବାସୁଦେବସ୍ୟ ତେନୋକ୍ତଂ ଭୀଷ୍ମପଞ୍ଚକଂ । ଇତ୍ୟାଦି ।

ପଦ୍ମପୁରାଣ, ଉତ୍ତରଖଣ୍ଡ, ୧୨୪ ଅଧ୍ୟାୟ ଦେଖିବେ ।

ସାୟନ ମକର ସଂକ୍ରାନ୍ତି ପର୍ବଦିନ ବୋଲି ଲେଖି ଅଛନ୍ତି । ଏଣୁ ବୋଧହୁଏ ପ୍ରଧାନ ଶ୍ରୁତିବୃନ୍ଦ ସକଳଶାସ୍ତ୍ରମର୍ମୀଙ୍କ ଖ୍ରୀଷ୍ଟଦେବ ଅୟନାଂଶରେ ସଂସ୍କୃତ ନ ହେଲେ ସଂକ୍ରାନ୍ତି ପର୍ବଶୁଦ୍ଧ ନୁହେ ବୋଲି ଏହି ସାୟନ ମକର ସଂକ୍ରାନ୍ତିର ଅପେକ୍ଷାରେ ଫାଲ୍‌ଗୁନ ଯାଏ ରହିଥିଲେ । (୧)

ତଥାପି ଆଶଙ୍କା ହୋଇପାରେ ଯେ ସାୟନ ମକର ସଂକ୍ରାନ୍ତି ଗ୍ରାହ୍ୟ ହେଲେ ସୁଦ୍ଧା ଫାଲ୍‌ଗୁନ ମାସଯାଏ ତାହାର ପ୍ରାରମ୍ଭ ହୋଇ ନ ଥିଲା କି? ତେବେ କହୁଁ, ଏଥିରେ ସେପରି ସନ୍ଦେହ ନାହିଁ । ସାୟନ ସଂକ୍ରାନ୍ତିମାନେ ଅୟନାଂଶର ହ୍ରାସ ଓ ବୃଦ୍ଧିର ପରିମାଣାନୁସାରେ ନିରୟନ ସଂକ୍ରାନ୍ତିର ସମୟ ଅପେକ୍ଷା ଢେର ପୂର୍ବେ ଓ ପରେ ହୋଇଥାନ୍ତି । ଏହା ସିଦ୍ଧାନ୍ତଶାସ୍ତ୍ରରେ ପ୍ରମାଣିତ । (୨) ତେତେବେଳେ ଭଚକ୍ରର ପଶ୍ଚିମାବଲମ୍ବନ ହୋଇ ଥିବାରୁ ନିରୟନ ସଂକ୍ରାନ୍ତିର ପଶ୍ଚାତ୍ ବହୁକାଳରେ ସାୟନ ମତେ ଉତ୍ତରାୟଣ ପ୍ରାରମ୍ଭ ହୋଇଥିଲା । ଦେଖନ୍ତୁ, ବର୍ତ୍ତମାନ କାଳରେ ଭଚକ୍ରର ପୂର୍ବାବଲମ୍ବନଯୋଗୁଁ ସାୟନ ସଂକ୍ରାନ୍ତି ନିରୟନ ସଂକ୍ରାନ୍ତି ପୂର୍ବରେ ହେଉଅଛି ।

ଏ ସବୁ ଦେଖିନେଲେ ଜଣାଯାଏ ଖ୍ରୀଷ୍ଟଦେବ ଅୟନାଂଶସଂସ୍କୃତ ରବିଙ୍କର ଉତ୍ତରାୟଣ ପ୍ରବେଶକାଳପ୍ରାପ୍ତି ସକାଶେ ଫାଲଗୁନ ଯାଏ ଶରତଳ୍ପରେ ଅବସ୍ଥିତ ଥିଲେ । ଠିକ୍ କହି ନ ପାରୁଁ, ଏପରି ବିଶ୍ୱାସରେ କିମ୍ବା ଅନ୍ୟାନ୍ୟ କୌଣସି ପ୍ରମାଣମାନ ପାଇ ହିନ୍ଦୀ ଭାରତକର୍ତ୍ତା ଚୌହାନ ସବଳ ସିଂହ ମହାଶୟ ଖ୍ରୀଷ୍ଟଙ୍କ ଦେହତ୍ୟାଗର ସମୟ ଫାଲ୍‌ଗୁନରେ ନିର୍ଦ୍ଧାରିତ ସମୟ ଅପେକ୍ଷା ଆହୁରି ଦୂରବର୍ତ୍ତୀ କରିଦେଇ ଅଛନ୍ତି । (୩)

---

(୧) ସାୟନ ମକର ସଂକ୍ରାନ୍ତିର ପର୍ବତ୍ୱ — ଯଥା—

ସଂସ୍କୃତୋଽର୍କୋଽୟନାଂଶୈର୍ଯତ୍ ସଂସ୍କୃତୋଽର୍କସ୍ତୁ ତଦ୍‌ଭବେତ୍ ।
ସଂସ୍କୃତାତ୍ ମୃଗରାଦର୍କାତ୍ ଷଡ୍ ମାସା ଉତ୍ତରାୟଣଂ ।
ସ୍ୟାତ୍ ତଦ୍‌ଗତ କର୍କଗାଦର୍କାତ୍ ଷଡ୍ ମାସା ଦକ୍ଷିଣାୟନଂ ।

ଇତ୍ୟାଦି । ସିଦ୍ଧାନ୍ତଶାସ୍ତ୍ର ।

(୨) ଏହାର ଗଣନା କରି ଦେଖାଇବାକୁ ଗଲେ ପ୍ରବନ୍ଧ ଦୀର୍ଘ ହେବ ବୋଲି କ୍ଷାନ୍ତ ହେଲୁଁ ।

(୩) ଏହାଙ୍କ ଭାରତର ଶାନ୍ତିପର୍ବ ଅଷ୍ଟମାଧ୍ୟାୟ ପ୍ରାରମ୍ଭରୁ ଦେଖନ୍ତୁ, ଜାଣି ପାରିବେ ।

ଭୀଷ୍ମଙ୍କ ନିର୍ଯ୍ୟାଣ ସମ୍ବନ୍ଧରେ ନିର୍ଦ୍ଧାରିତ ପୌର୍ଣ୍ଣିମାନ୍ତ ମାସ ଗଣନାରେ ନିର୍ଣ୍ଣୀତ ଫାଲ୍‌ଗୁନ କୃଷ୍ଣ ଚତୁର୍ଥୀର ସପ୍ରତ୍ୟୟାର୍ଥ ଆଜ ଗୋଟିଏ ସରଳ ପ୍ରମାଣ ମିଳୁଅଛି । ଏହି ପ୍ରମାଣ ବାକ୍ୟଟିକୁ ସମ୍ୟକ୍ ବିଚାର କରିନେଲେ ପୂର୍ବୋକ୍ତ ସମସ୍ତ ଅସଙ୍ଗତ ବୋଧହୁଏ ନାହିଁ, ପ୍ରତ୍ୟୁତ ସମ୍ପୂର୍ଣ୍ଣ ବିଶ୍ୱାସ ଜନ୍ମେ । ଭୀଷ୍ମଦେବ ଅଷ୍ଟପଞ୍ଚାଶତ୍ ଦିବସ ଶରତଳ୍ପରେ ଶୟାନ ରହି ସାୟନକ୍ରମେ ଉତ୍ତରାୟଣ ପ୍ରବେଶ ମାନେ କହି ଅଛନ୍ତି, ହେ ଯୁଧିଷ୍ଠିର, ବର୍ତ୍ତମାନ ସମୟାନୁକ୍ରମେ ମାଘମାସ । ଅତ୍ୟଳ୍ପ ଭୁକ୍ତ କୃଷ୍ଣ ପକ୍ଷର ତିନିଭାଗ ବା ତୃତୀୟ ଭାଗ ଅବଶିଷ୍ଟ ଥିବାରୁ ଏହାଟି ଶୁକ୍ଳପକ୍ଷ ପ୍ରାପ୍ତ ଧାର୍ଯ୍ୟ । ଇତ୍ୟାଦି ।

ମାଘୋଽୟଂ ସମନୁପ୍ରାପ୍ତୋ ମାସଃ ସୌମ୍ୟୋ ଯୁଧିଷ୍ଠିର ।
ତ୍ରିଭାଗଶେଷଃ ପକ୍ଷୋଽୟଂ ଶୁକ୍ଳୋ ଭବିତୁ ମର୍ହତି ॥

ଅନୁ. ପ. ୧୬୭ ଅ. ୨୮ ଶ୍ଳୋ: ।

ପୌର୍ଣ୍ଣିମାନ୍ତ ମାସଗଣନାରେ ନିର୍ଣ୍ଣୀତ ଫାଲ୍‌ଗୁନ କୃଷ୍ଣ ଚତୁର୍ଥୀ ଅମାବାସ୍ୟାନ୍ତ ମାସଗଣନାରେ ମାଘ କୃଷ୍ଣ ଚତୁର୍ଥୀ କେବଳ ହୁଏ । ଶୁକ୍ଳାଦିମାସ ଓ କୃଷ୍ଣାଦି-ମାସରେ ଶୁକ୍ଳପକ୍ଷଟି ମାତ୍ର ଉଭୟ ମତରେ ମାସ ଗଣନାରେ ସମାନ ଧାର୍ଯ୍ୟ ହୋଇ କୃଷ୍ଣ ପକ୍ଷର ପ୍ରଭେଦ ରଖିଥାଏ । ଅତଏବ ଉକ୍ତ ଚତୁର୍ଥୀ ପୌର୍ଣ୍ଣିମାନ୍ତ ମାସଗଣନାନୁସାରେ ଫାଲ୍‌ଗୁନରେ ଅନ୍ତର୍ଭୁକ୍ତ ହେଲେ ସୁଦ୍ଧା ଚୈତ୍ର ଶୁକ୍ଳ ପ୍ରତିପତ୍ ପ୍ରାରମ୍ଭରୁ ବର୍ଷାରମ୍ଭ ହେଉଥିବାରୁ ସେହି ଗଣନାନୁସାରେ ଶୁକ୍ଳାଦିମାସ-କ୍ରମରେ ସେହି ତିଥିଟି ମାଘମାସରେ ଅନ୍ତର୍ଭୁକ୍ତ ବୋଲି 'ମାଘୋଽୟଂସମନୁପ୍ରାପ୍ତୋ' ଏହା କହି ଅଛନ୍ତି ଏବଂ ସେହି ଚତୁର୍ଥୀରେ ଚନ୍ଦ୍ର ବଳୀୟାନ୍ ଥିବାରୁ ତାହାର ଶୁକ୍ଳତ୍ୱସତ୍ତ୍ୱ "ଶୁକ୍ଳୋ ଭବିତୁ ମର୍ହତି" ଏହିପରି ପ୍ରତିପାଦନ କରି ଅଛନ୍ତି ।

କିନ୍ତୁ ପାଠକେ, ସମାହିତ ମନରେ ବୁଝିନେବେ, ଇତଃପୂର୍ବେ ବିରାଟପର୍ବ ପାଠାବସାନରେ ଭାରତ ଯୁଦ୍ଧର ସମୟ ନିର୍ଦ୍ଧାରଣ ସୂଚନାକ୍ରମେ "ବ୍ରୂୟାଃ କର୍ଣ୍ଣ ଇତୋ ଗତ୍ୱା" ଇତ୍ୟାକାରକ ଭାରତୋକ୍ତ ପ୍ରମାଣରେ ପ୍ରମାଣିତ କରି ଶୀତକାଳର ସାମୁଦାୟିକ ବିବୃତିରେ କହିଦେଇ ଅଛୁ କି ଭାରତ ଯୁଦ୍ଧ ହେମାନ୍ତ୍ୟ ଓ ଶିଶିରାରମ୍ଭରେ ହୋଇଥିଲା । ମାତ୍ର ସେ ସ୍ଥଳରେ ସେପରି ନ କହି କେବଳ ଶୀତାରମ୍ଭରେ ହୋଇଥିଲା ବୋଲି କହିବାର ଥିଲା । [୧] ଟିପ୍ପଣୀରେ ଉଦ୍ଧୃତ

---

[୧] ବ୍ରୂୟାଃ କର୍ଣ୍ଣ ଇତୋ ଗତ୍ୱା ଦ୍ରୋଣଂ ଶାନ୍ତନବଂ କୃପଂ ।
ସୌମ୍ୟୋଽୟଂ ବର୍ତ୍ତତେ ମାସଃ ସୁପ୍ରାପ ଯବସେନ୍ଧନଃ ॥

ବାକ୍ୟରେ ଦେଖିନେବେ, ଅଶଙ୍କା ଶିଶିର ଶବ୍ଦର ଅର୍ଥ ମାଘ ଫାଲ୍ଗୁନ ନେଲେ ଉତ୍ତରୋତ୍ତର ପ୍ରାକରଣିକ ସନ୍ଦର୍ଭରେ ଅସାମଞ୍ଜସ୍ୟ ଘଟୁଅଛି । ଅତଏବ ଶୀତକାଳ ଉଦ୍ଦେଶ୍ୟରେ କେବଳ ଏ ସ୍ଥଳରେ ଶିଶିର ଶବ୍ଦ ବ୍ୟବହୃତ ବୋଲିବାକୁ ହେବ । ଅପିଚ ପୂର୍ବଶଂସିତ ବାକ୍ୟାବଳୀ ମଧ୍ୟରେ ଯାହା କି ଶ୍ରୀକୃଷ୍ଣ "ସପ୍ତମାଚାପି ଦିବସାତ୍" ଇତ୍ୟାକାରକ ବାକ୍ୟରେ ଅଦ୍ୟାରଭ୍ୟ ସପ୍ତମ ଦିବସରେ ଅମାବାସ୍ୟା ହେବ, ସେଥିରେ ଯୁଦ୍ଧାରମ୍ଭ କରାଯାଉ ବୋଲି ଆଦେଶ କରି ଅଛନ୍ତି । ତଦନୁସାରେ ଯୁଦ୍ଧ ପ୍ରୟାଣର ଆୟୋଜନ ମାତ୍ର ହୋଇଥିଲା । କୌରବମାନଙ୍କର ଯୁଦ୍ଧକ୍ଷେତ୍ର ପ୍ରତି ଅନାଗମନ କିମ୍ବା ଅନ୍ୟ କୌଣସି କାରଣରୁ ସେହି ଦିନ ଯୁଦ୍ଧସମ୍ମର୍ଦ୍ଦ ଘଟିଲା ନାହିଁ, ଏହା ବିଶ୍ୱାସ କରିବାକୁ ହେବ । ଅଥଚ ଏହାର ଆନୁକୂଲ୍ୟରେ ଏତାଦୃଶ ଆଉ ଗୋଟିଏ ପ୍ରମାଣ ମଧ୍ୟ ଦେଖନ୍ତୁ । କୌରବ ଓ ପାଣ୍ଡବମାନଙ୍କଦ୍ୱାରା ଯୁଦ୍ଧାର୍ଥ ରାମ କୃଷ୍ଣ ଦୁହେଁ ନିମନ୍ତ୍ରିତ ହୋଇଥିଲେ । ଯୁଦ୍ଧରେ ଉପସ୍ଥିତ ରହିବା ଅନୁଚିତ ମନେ କରି ବଳରାମ ତୀର୍ଥଯାତ୍ରାର୍ଥ ପ୍ରସ୍ଥାନ କରିଥିଲେ । ଶ୍ରୀକୃଷ୍ଣ ମାତ୍ର ଏଣେ ଯୁଦ୍ଧସନ୍ନାହରେ ବ୍ୟାପୃତ ହେଲେ । ତେତେବେଳେ ସେ କହି ଅଛନ୍ତି କି ବର୍ତ୍ତମାନ ପୁଷ୍ୟା ନକ୍ଷତ୍ର ଅର୍ଥାତ୍ ମାର୍ଗଶୀର କୃଷ୍ଣ ପଞ୍ଚମୀ, ଅଦ୍ୟ ଦିବସରେ ଯୁଦ୍ଧାର୍ଥ ପ୍ରୟାଣ କର । କିନ୍ତୁ ଏଥିରେ ଯୁଦ୍ଧର ପ୍ରୟାଣ ଘଟି ନ ଥିଲା । ଶ୍ରୀକୃଷ୍ଣଙ୍କ ଉତ୍ତେଜନାପୂର୍ଣ୍ଣ କଥା ଶୁଣି ଶାନ୍ତପ୍ରକୃତି ଯୁଧିଷ୍ଠିର ଶାନ୍ତି ସକାଶେ ତାହାଙ୍କୁ ଦୂତସ୍ୱରୂପରେ ହସ୍ତିନା ପ୍ରେରଣ କରିଥିଲେ । ବୋଧହୁଏ ଶ୍ରୀକୃଷ୍ଣ ଏହି ଦିନ କେବଳ ଉପପ୍ଳବ୍ୟରୁ ହସ୍ତିନା ପ୍ରୟାଣ କରିଥିଲେ । ଶ୍ରୀକୃଷ୍ଣଙ୍କ ହସ୍ତିନା ଯାତ୍ରାରେ ପ୍ରାୟ ଦୁଇ ଦିବସ ଅତୀତ ହୋଇଥିଲା । ସମ୍ଭବତଃ ଅଷ୍ଟମୀ ଦିନ ହସ୍ତିନାରୁ ପ୍ରତ୍ୟାବୃତ୍ତ ହେବା ସମୟରେ କର୍ଣ୍ଣଙ୍କୁ ସେ ପୂର୍ବୋକ୍ତ "ବ୍ରୂୟାଃ କର୍ଣ୍ଣ ଇତୋ ଗତ୍ୱା" ଇତ୍ୟାଦି ବାକ୍ୟରେ ଯୁଦ୍ଧସମ୍ପାଦନାର୍ଥ ଆଦେଶ ଦେଇଥିଲେ । ଆହୁରି ଦେଖନ୍ତୁ ଯେ,

ସର୍ବୌଷଧିବନସ୍ଫୀତଃ ଫଳବାନଳ୍ପମକ୍ଷିକଃ ।
ନିଷ୍ପଙ୍କୋ ରସବତ୍ତୋୟୋ ନାତ୍ୟୁଷ୍ଣଃ ଶିଶିରଃ ସୁଖଃ ॥
ସପ୍ତମାଚାପି ଦିବସାତ୍ ଅମାବାସ୍ୟା ଭବିଷ୍ୟତି ।
ସଂଗ୍ରାମୋ ଯୁଜ୍ୟତାଂ ତସ୍ୟାଂ ତାମାହୁଃ ଶକ୍ରଦେବତାଂ ॥

ଉ. ପ. ୧୪୧ ଅ: ୧୭—୧୯ ଶ୍ଳୋ:

ନିଖିଳ-ଭୂଷିତସ୍ୟ ସ୍ୱର-ପଥା-ନିଖିଳଗଣେଷାସୁନିଶାସୁ—
ଇତିକୁମାରସମ୍ଭବେ କାଳିଦାସଃ । ଏହାର ଟୀକା ଦେଖନ୍ତୁ ।

ବଳରାମ ତୀର୍ଥଯାତ୍ରାରେ ଦ୍ୱିଚତ୍ୱାରିଂଶତ୍ ଦିବସ ଅତିବାହିତ କରି ଯୁଦ୍ଧର ସର୍ବାବସାନ ଦୁର୍ଯ୍ୟୋଧନଙ୍କ ଜାନୁଭଙ୍ଗ ଦିବସରେ ଆସି କୁରୁକ୍ଷେତ୍ରରେ ଉପସ୍ଥିତ ହୋଇଥିଲେ । ସେ ମହୋଦୟ ପୁଷ୍ୟା ନକ୍ଷତ୍ରରେ ଅର୍ଥାତ୍ ମାର୍ଗଶୀର୍ଷ କୃଷ୍ଣ ପଞ୍ଚମୀରେ ଯାତ୍ରା କରି ଇତଃପୂର୍ବେ ସିଦ୍ଧାନ୍ତିତ ସର୍ବଶେଷ ଦିବସରେ ଶ୍ରବଣା ନକ୍ଷତ୍ର ଅର୍ଥାତ୍ ପୌଷ ଶୁକ୍ଳ ପ୍ରତିପଦା (ଯଦିଚ ତିଥିକ୍ଷୟ ହୋଇଥାଏ, ତେବେ ଦ୍ୱିତୀୟା) ଦିନ ପ୍ରତ୍ୟାବୃତ୍ତ ହୋଇଥିଲେ ।

ଅଭିଜ୍ଞ ପାଠକେ ! ବିଶ୍ୱାସ କରି, ଏ ସବୁ ସମ୍ୟକ୍ ବିଚାରପୂର୍ବକ ଦେଖିଲେ ଆପଣମାନଙ୍କର ସନ୍ଦେହ ତିରୋହିତ ହେବ । ମାର୍ଗଶୀର୍ଷ ଶୁକ୍ଳ ତ୍ରୟୋଦଶୀରେ ମହାଭାରତ ଯୁଦ୍ଧର ପ୍ରାରମ୍ଭ ଓ ପୌଷ ଅମାବାସ୍ୟାରେ ଅବସାନ ହୋଇଥିଲା ଏବଂ ଫାଲ୍‌ଗୁନ କୃଷ୍ଣ ଚତୁର୍ଥୀରେ ଭୀଷ୍ମଦେବଙ୍କ ନିର୍ଯ୍ୟାଣ ଘଟିଥିଲା ବୋଲି ଆପଣମାନେ ଅବଶ୍ୟ ବିଶ୍ୱସ୍ତ ହୃଦୟରେ ଗ୍ରହଣ କରିବେ । କିନ୍ତୁ ପରିଶେଷରେ ଅବଶିଷ୍ଟ ଆଉ ଗୋଟିଏ ସନ୍ଦେହାସ୍ପଦ କଥାର ସଂକ୍ଷିପ୍ତ ସମାଧାନ କରିଦେବା ଆବଶ୍ୟକ । ଇତଃପୂର୍ବେ ବିରାଟ ପର୍ବର ପାଠାବସାନରେ ପ୍ରମାଣ ପ୍ରଦର୍ଶନପୂର୍ବକ ପ୍ରକାଶ କରିଅଛୁଁ କି, ପାଣ୍ଡବମାନେ ଆଷାଢ଼ ପୂର୍ଣ୍ଣିମା ଦିନ ବିରାଟ ରାଜସିଂହାସନରେ ଅଭିଷିକ୍ତ ହେଲା ପରେ ବୈରାଟୀ ଉତ୍ତରା ଓ ଅଭିମନ୍ୟୁଙ୍କ ବିବାହ ସମ୍ପନ୍ନ ହୋଇଥିଲା । ଉତ୍ତରାଙ୍କ ପାଣିଗ୍ରହଣର ସପ୍ତମ ମାସରେ ଅଭିମନ୍ୟୁ ନିହତ ହୋଇଥିଲେ । ତେବେ ଯଦିଚ ଆଷାଢ଼ ପୂର୍ଣ୍ଣିମାର ଅବ୍ୟବହିତ ପରେ ଉତ୍ତରାଙ୍କ ବିବାହ ଏବଂ ପୌଷ କୃଷ୍ଣ ଏକାଦଶୀ ବା ଦ୍ୱାଦଶୀରେ ଅଭିମନ୍ୟୁଙ୍କ ନିଧନ ହୁଏ, ତେବେ ପୂର୍ବୋକ୍ତ ସେ ଉଭୟଙ୍କ ସହାବସ୍ଥାନର ସପ୍ରମାଣ ଷଟ୍‌ମାସ କିପରି ସାଧିତ ହେବ, ଏହି ଆଶଙ୍କା ଆସି ଉପସ୍ଥିତ ହୁଏ । ଏହାର ସମାଧାନ ଅନ୍ୟ ପ୍ରକାର ହୋଇ ନ ପାରେ । ଶ୍ରାବଣାଦି ମାସ ଚତୁଷ୍ଟୟ ମଧ୍ୟରେ ଯେ କୌଣସି ଏକ ମାସରେ ଶାସ୍ତ୍ରସମ୍ମତ ଅଧିମାସ ତେବେ ହୋଇଥିଲା ବୋଲି କହିବାକୁ ହେବ । ତାହା ନ ହେଲେ ସର୍ବଜ୍ଞ ବ୍ୟାସଦେବଙ୍କ ମୁଖନିଃସୃତ ମହାଭାରତମଧ୍ୟଗତ ଅମୋଘ ବାକ୍ୟଗୁଡ଼ିକର ଅର୍ଥ ପ୍ରତିପତ୍ତି ଓ ଅନ୍ୟୋନ୍ୟ-ସମନ୍ୱୟରେ ବାଧା ଘଟିବ । ଅତଏବ ସମ୍ପୂର୍ଣ୍ଣ ବିଶ୍ୱାସ ହୁଏ ତଦା ବୈରାଟୀଙ୍କ ବିବାହ ଓ ଭାରତଯୁଦ୍ଧୋଦ୍‌ଯୋଗର ସମୟ ମଧ୍ୟରେ ଗୋଟିଏ ଅଧିମାସ ପଡ଼ିଥିଲା ।

ମହାଭାରତର କୁରୁକ୍ଷେତ୍ରରେ ସଂଘଟିତ ଭୁଜଦର୍ପ-କଣ୍ଡୂ-କବଳ ମହାବୀର-ମାନଙ୍କର ଅଭିମୁଖୀନ ମହାଯୁଦ୍ଧ ବିଶେଷତଃ ସ୍ୱର୍ଣ୍ଣଗୋଟି ପର୍ବରେ ବର୍ଣ୍ଣିତ । ଏହି

ପର୍ବଚତୁଷ୍ଟୟର ନାମକରଣ ଦୌର୍ଯ୍ୟୋଧନିକ ସେନାପତିମାନଙ୍କ ନାମାନୁସାରେ ହୋଇଅଛି କିନ୍ତୁ ଅନ୍ତିମ କୈତବଯୁଦ୍ଧର ପ୍ରତିଦ୍ୱାରେ ସଂଯୁକ୍ତ ସୌପ୍ତିକ ପର୍ବର ନାମକରଣ ପାଣ୍ଡବୀୟ ବୀରମାନଙ୍କ ସୁପ୍ତାବସ୍ଥାସୂଚକ । ନିରପେକ୍ଷଭାବରେ ପରି-ଦୃଷ୍ଟ ବିଚାର କରିନେଲେ ଏହି ଆହବିକ ପର୍ବମାନଙ୍କରେ ପୁନରୁକ୍ତି, ଅତେତୁ ବର୍ଣ୍ଣନାବାହୁଲ୍ୟ, ଅନୈସର୍ଗିକତା ବା ଅପ୍ରାକୃତିକତା, ଅତ୍ୟୁକ୍ତି ଓ ସ୍ଥାନେ ସ୍ଥାନେ ଅସଙ୍ଗତ ଦୋଷ ମଧ୍ୟ ଦେଖାଯାଏ ।

ମୂଳ ମହାଭାରତରେ ଭୀଷ୍ମପର୍ବର ପ୍ରାରମ୍ଭରୁ ସମାଗତ ବ୍ୟାସ ଦେବଙ୍କର ଅଯାଚିତ ଦିବ୍ୟଚକ୍ଷୁ ପ୍ରଦାନରେ ଧୃତରାଷ୍ଟ୍ର ଅନିଚ୍ଛୁକ ହୋଇ ତାହା ସଞ୍ଜୟଙ୍କୁ ଦେବାପାଇଁ ଜଣାଇବା, ତଦନନ୍ତର ବହୁବିଧ ଉତ୍ପାତ ଦର୍ଶନ ଏବଂ ଦୁଃଶକୁନ-ବର୍ଣ୍ଣନାରେ ଶକୁନୋପାଖ୍ୟାନ କଥିତ ହେଲା ପରେ ଚତୁର୍ଥାଧ୍ୟାୟଠାରୁ ଦଶମାଧ୍ୟାୟ ଶେଷ ପର୍ଯ୍ୟନ୍ତ ଜମ୍ବୁଖଣ୍ଡ ବିନିର୍ମାଣ ନାମକ ଉପପର୍ବରେ ଭୌମଗୁଣକଥନ, ସୁଦର୍ଶନଦ୍ୱୀପବିବରଣ, ଭୂମ୍ୟାଦିର ପରିମାଣ, ମାଲ୍ୟବତ୍ପର୍ବତବର୍ଣ୍ଣନ ଏବଂ ରମଣକ ହିରଣ୍ମୟ ଓ ଭାରତ-ବର୍ଷାଦିର ଯାବତୀୟ ବିବରଣ ଉକ୍ତ ଅଛି । ଅତଃପର ଭୂମିପର୍ବରେ ଶାକଦ୍ୱୀପ ଉତ୍ତରକୁରୁ ପ୍ରଭୃତିର ବର୍ଣ୍ଣନା ସଞ୍ଜୟ ଧୃତରାଷ୍ଟ୍ରଙ୍କୁ ସାଂଗ୍ରାମିକ ବ୍ୟୂହ ବିବରଣ ପ୍ରଭୃତି ଜଣାଇବା ଏବଂ ଯୁଧିଷ୍ଠିର ଓ ଅର୍ଜୁନ, ଦୁର୍ଯ୍ୟୋଧନ ଓ ଦୁଃଶାସନାଦିଙ୍କର ଯୁଦ୍ଧସଂକ୍ରାନ୍ତ ସମ୍ବାଦ ଉକ୍ତ ଅଛି ।

ସାରଳାଦାସ ମହୋଦୟ ମୂଳାନୁପାତରେ ଏ ସବୁ ଏ ସ୍ଥଳରେ ଲେଖି ନାହାନ୍ତି ସତ୍ୟ, କିନ୍ତୁ ଏଥିରୁ ଅନେକ କଥା ଯାହା ଯାହା ଭାରତୀୟ ସ୍ଥୂଳ ଚରିତ ସଙ୍ଗେ ମିଶି ରହିଅଛି, ସେ ସବୁ ଅନ୍ୟ ସ୍ଥାନମାନଙ୍କରେ ପ୍ରାସଙ୍ଗିକ କ୍ରମରେ ପ୍ରକାଶ କରିଦେଇ ଅଛନ୍ତି । ପରନ୍ତୁ ଜମ୍ବୁଖଣ୍ଡ ବିନିର୍ମାଣାଦିର କଥା ଏବଂ ଶାକ-ଦ୍ୱୀପାଦିର ବିବରଣ ସେ ଏକାବେଳକେ ତ୍ୟାଗ କରିଦେଇ ଅଛନ୍ତି । ଭୀଷ୍ମ ପର୍ବର ସର୍ବପ୍ରଥମ ଜମ୍ବୁଖଣ୍ଡର ବିନିର୍ମାଣାଦି କଥା ଅନ୍ୟାନ୍ୟ ଯାବତୀୟ ଚରିତରୁ ପୃଥଗ୍ଭୂତ ପରି ରହିଅଛି । ଏହା ସହିତ ପୂର୍ବାନ୍ତର୍ଗତ ଯୁଦ୍ଧବିବରଣର ତାଦୃଶ ସମ୍ବନ୍ଧ ଥିବାର ମଧ୍ୟ ଜଣାଯାଉ ନାହିଁ । ଅନୁମାନ ହୁଏ, ଏହି ହେତୁରୁ କେବଳ ସାରଳାଦାସ ମହାଶୟ ଏହାର କୌଣସି ପ୍ରକାର ବିବରଣ ଆବଶ୍ୟକତଃ ସୁଦ୍ଧା ନିଜ ଭାରତରେ ଦେଇ ନାହାନ୍ତି । କେବଳ ସାରଳାଦାସ କାହିଁକି, ବଙ୍ଗାଦି ଦେଶୀୟ ଭାରତକର୍ତ୍ତା କାଶୀରାମଦାସ ପ୍ରଭୃତି ସୁଦ୍ଧା ନିଜ ନିଜ ଭାରତରେ ଏ ସବୁ ଲେଖି ନାହାନ୍ତି । ସୁତରାଂ ସାରଳାଦାସ ମହାଶୟ ଶ୍ରୀକୃଷ୍ଣସମାଦେଶରେ ଯୁଦ୍ଧାର୍ଥ ସନ୍ନଦ୍ଧ ଅର୍ଜୁନ

ସ୍ତୁତିପାଠରେ ଦୁର୍ଗାଙ୍କଠାରୁ ବରପ୍ରାପ୍ତ ହୋଇଥିବାର ସୁଦ୍ଧା ଯଥାସ୍ଥାନରେ ଯଥାଯଥ ଲେଖି ନାହାନ୍ତି । [୧]

ବିସ୍ମୃତିପ୍ରିୟ କାଳୁନିକ କଥାପ୍ରୟାଣ ସେହି ଦାସ କବି ମହୋଦୟ ଏ ସବୁ ପରିତ୍ୟାଗ କରି ଇତସ୍ତତଃ ସମାମାଚ, ସ୍ୱକଳ୍ପନାପ୍ରସୂତ, ସ୍ଥାନେ ସ୍ଥାନେ ଅସଙ୍ଗତି-ଯୁକ୍ତ ବହୁବିଧ ଅତିରିକ୍ତ ଚରିତ ଲେଖି ପର୍ବର କଳେବର ବଢ଼ାଇ ଅଛନ୍ତି । ସେ ଆମୂଳାନ୍ତ ବିବରଣ ଦେବା ଅନାବଶ୍ୟକ ମନେକରି କେବଳ ବିଷୟ-ମାନଙ୍କର ଅବତରଣିକା ମାତ୍ର ପ୍ରକାଶ କରୁଅଛୁଁ । ଯଥା—

(୧) ଦୁର୍ଯୋଧନଙ୍କ କର୍ତ୍ତୃକ ଭୀଷ୍ମାଦିଙ୍କର ଖଡ଼୍ଗୋତ୍ତୋଳନରୂପକ ପରୀକ୍ଷା ।

(୨) ସୈନାପତ୍ୟାର୍ଥ ଭୀଷ୍ମଙ୍କ ସହ ଅଶ୍ୱତ୍ଥାମାଙ୍କ ବିବାଦ ।

(୩) ଭୂରିଶ୍ରବା ନାନା ତର୍କ ବିତର୍କପୂର୍ବକ ଶ୍ରୀକୃଷ୍ଣଙ୍କ ମହିମା ପ୍ରକଥନରେ ନୃସିଂହାବତାରର ଯାବତୀୟ କଥା କହିବା । [୨]

(୪) ଭୂରିଶ୍ରବା ପ୍ରଭୃତିଙ୍କ ମୁଖରେ ଅର୍ଜୁନଙ୍କର ପ୍ରାକ୍ତନ ପରାକ୍ରମ କୀର୍ତ୍ତନ ।

(୫) ସେନାବିଭାଗତଃ ଦ୍ରୋଣ କର୍ଣ୍ଣାଦିଙ୍କୁ ସେନା ପ୍ରଦାନ କରିବା ପ୍ରଭୃତି କଥା । [୩]

(୬) ଯୁଦ୍ଧର ଅନୁକୂଳ ସମୟରେ ଅସାମଞ୍ଜସ୍ୟ ସହ ଜ୍ୟୋତିଃଶାସ୍ତ୍ରୀୟ ନାନା ପ୍ରକାର କଥା ଏବଂ ପ୍ରଳୟ ଓ ସୃଷ୍ଟି ସର୍ଜନା ବିବରଣରେ ରାମ-କୃଷ୍ଣାବତାର ପ୍ରଭୃତି ନାନା ପ୍ରକାର କଥା । [୪]

---

[୧] ମାତ୍ର ଅନ୍ୟ ସ୍ଥାନରେ ଅନ୍ୟ ମୁଖରେ ଦୁର୍ଗାଙ୍କର ଏହି ସ୍ତୁତିର ଭାବ ପ୍ରକାଶ କରି ଅଛନ୍ତି ।

[୨] ଭୀଷ୍ମପର୍ବ ୬ ପୃଷ୍ଠା ଠାରୁ ୧୩ ଯାଏ ଦେଖନ୍ତୁ ।

[୩] ଏ ସବୁ ଉଦ୍‌ଯୋଗ ପର୍ବରେ ସୁସମ୍ପନ୍ନ ହୋଇଅଛି । ଏ ସ୍ଥଳରେ ପୁନଃ ପ୍ରକଥନ ଅନାବଶ୍ୟକ ।

[୪] ଭୀ· ପ. ୧୬ ପୃଷ୍ଠା ଠାରୁ ୨୧ ପୃଷ୍ଠା ଯାଏ ଦେଖନ୍ତୁ ।

(୭) ପାଣ୍ଡବମାନେ ବାରୁଣାବନ୍ତରୁ ପ୍ରସ୍ଥାନ କରି ସେନାପତି ଆଦି ନିର୍ଦ୍ଧାରଣ କରିବା ପ୍ରଭୃତିର ବିବରଣ । [୧]

(୮) ହନୁମାନଙ୍କର ଭାବ ସହନାର୍ଥ ପାଣ୍ଡବୀୟ ରଥର ପ୍ରତ୍ୟଙ୍ଗରେ ଦେବତା-ମାନେ ଅବସ୍ଥାନ କରିବା, ତଥାପି ରଥ ଭୂଗର୍ଭସ୍ଥ ହେବାରୁ ଭୀମସେନ ଉତ୍ତୋଳିବା । [୨]

---

[୧] ଏ ସବୁ ମଧ୍ୟ ଇତଃପୂର୍ବେ ଉଦ୍‌ଯୋଗ ପର୍ବରେ ସୁସମ୍ପନ୍ନ ହୋଇଅଛି । ସୁତରାଂ ଉପପ୍ଲବ୍ୟରୁ କେବଳ ପାଣ୍ଡବମାନେ ଏହି କାର୍ଯ୍ୟ ସାଧିତ କରିଥିଲେ । ଉପପ୍ଲବ୍ୟ କଥା କୁତ୍ରାପି ସାରଳାଦାସଙ୍କ ହୃଦୟକୁ ସ୍ପର୍ଶ କରି ନାହିଁ । ଉପପ୍ଲବ୍ୟରୁ ପାଣ୍ଡବମାନେ ଯୁଦ୍ଧାର୍ଥ ପ୍ରୟାଣ କରିଥିବାର ପ୍ରମାଣ – ଯଥା—

ଉପପ୍ଲବ୍ୟେ ତୁ ପାଞ୍ଚାଳୀ ଦ୍ରୌପଦୀ ସତ୍ୟବାଦିନୀ ।
ସହ ସ୍ତ୍ରୀଭିର୍ନିବବୃତେ ଦାସୀଦାସସମାବୃତା ।
କୃତ୍ୱା ମୂଳପ୍ରତୀକାରଂ ଗୁଲ୍ମୈଃ ସ୍ଥାବରଜଙ୍ଗମୈଃ ।
ସ୍କନ୍ଧାବାରେଣ ମହତା ପ୍ରୟଯୁଃ ପାଣ୍ଡୁନନ୍ଦନାଃ ।

ଉଦ୍‌ଯୋଗପର୍ବ ୧୫୦ ଅଃ

ଏ ମହାଶୟ ଉଭୟ ପକ୍ଷର ହିତାବସ୍ଥାନ ମଧ୍ୟ ବିପରୀତ କରି ଅଛନ୍ତି । ଯଥା—

ପୂର୍ବେ ପାଣ୍ଡବେ ପଶ୍ଚିମେ ମାନତମବର୍ତ୍ତୀ ।
ପାଣ୍ଡବେ ଜୟନ୍ତା କୌରବେ ହସ୍ତିନା ସ୍ଥିତି ॥ ଭୀ. ପ. ୩୧ ପୃଃ

ମାତ୍ର ଏହା ଯଥାର୍ଥ ନୁହେ । ଯଥା—

ପଶ୍ଚାନ୍ମୁଖାଃ କୁରବୋ ଧାର୍ତ୍ତରାଷ୍ଟ୍ରାଃ,
ସ୍ଥିତାଃ ପାର୍ଥାଃ ପ୍ରାଙ୍ମୁଖା ଯୋଧମାନାଃ ।
ଦୈତ୍ୟେନ୍ଦ୍ରସେନେବ ଚ କୌରବାଣାଂ,
ଦେବେନ୍ଦ୍ରସେନେବ ଚ ପାଣ୍ଡବାନାଂ । ଭୀ. ପ. ୨୦ ଅଃ

[୨] ବିଶ୍ୱମୂର୍ତ୍ତି ନରସିଂହ ରୂପ ସେ ଧଇଲା ।
ଜାନୁ ପରେ ରଥ ଚକ ଟେକି ସେ ରଖିଲା ॥ ଇତ୍ୟାଦି ।

ଭୀ. ପ. ୨୫ ପୃଃ

(୯) ପାଣ୍ଡବମାନଙ୍କର ଯୁଦ୍ଧ ପ୍ରୟାଣର ମଙ୍ଗଳାନ୍ୱେଷଣାଦିର କଥା । [୧]

(୧୦) ମହାକାୟ ଆଞ୍ଜନେୟଙ୍କ ଭାରଯୁକ୍ତ ରଥର ବହନାର୍ଥ ଶ୍ରୀକୃଷ୍ଣ ଜଳବୈକୁଣ୍ଠରୁ ଶଙ୍ଖ, ଗୋକ୍ଷୀରାଦି ଅଶ୍ୱଚତୁଷ୍ଟୟ ଅଣାଇବା ଏବଂ ସେମାନଙ୍କ ସୃଷ୍ଟି କ୍ରମ । [୨]

(୧୧) ସାହାଯ୍ୟ ଦାନାର୍ଥ ସମାଗତ କଳିଙ୍ଗସେନ ନୃପତି ପ୍ରତି ଭୀମସେନଙ୍କ ଅତ୍ୟାଚାର କ୍ରମ ।

(୧୨) ଦୁର୍ଯ୍ୟୋଧନଙ୍କ ପ୍ରଶ୍ନରେ ଭୀଷ୍ମଦେବ ଦ୍ରୋଣାଦିଙ୍କର ମହାବୀରତ୍ୱ ପ୍ରକାଶ କରି କହିବା ।

(୧୩) ସହାଯ୍ୟ ଦାନାର୍ଥ ଚଳି ଆଗତ କପିତ ନୃପତିଙ୍କୁ ଶ୍ରୀକୃଷ୍ଣ କପଟରେ ନିହତ କରିବା ପ୍ରଭୃତି କଥା । [୩]

ଅତଃପର ଭଗବଦ୍‌ଗୀତାବଧି ଭୀଷ୍ମପର୍ବର ଚତୁର୍ବିଂଶ ଅଧ୍ୟାୟ ହେଲା ପରେ ଭଗବଦ୍‌ଗୀତାର ପ୍ରାରମ୍ଭ । ଏଥିରେ ଯେ କୌଣସି ଗୁରୁତର କାର୍ଯ୍ୟର ସମାରମ୍ଭ ସମୟରେ ନିଜର ଈଶ୍ୱର ଦେବତାଙ୍କର ଆରାଧନା ପୂର୍ବକ କାର୍ଯ୍ୟରେ ପ୍ରବୃତ୍ତ ହେବା ଉଚିତ ବୋଲି ଶ୍ରୀକୃଷ୍ଣ-ସମାଦିଷ୍ଟ ଜିଜଗୀଷୁ ଅର୍ଜୁନ ସ୍ତୁତିପାଠରେ ଦୁର୍ଗାଙ୍କର ବରପ୍ରାପ୍ତ ହୋଇଥିଲେ । ଦାସ କବି ମହୋଦୟ ଏ ବିଷୟ ଏ ସ୍ଥଳରେ ନ ଲେଖି କିଞ୍ଚିତ ବ୍ୟବଧାନରେ ଯୁଧିଷ୍ଠିରଙ୍କ ମୁଖରେ ଏହି ସ୍ତୋତ୍ରପାଠ ପ୍ରକାଶ

---

[୧] ଏହା ମଧ୍ୟ ଉଦ୍‌ଯୋଗ ପର୍ବର ନିଷ୍ପନ୍ନ କଥା ।

[୨] ଶଙ୍ଖ ଗୋକ୍ଷୀର ଶ୍ୱେତ ଆବର କାମପାଳ ।
ଚାରି ଅଶ୍ୱ ମିଳିଲେ ଯେ ଆସି ତତକାଳ ॥ ଭୀ. ପ. ୨୯ ପୃ:

କିନ୍ତୁ ଯଥାର୍ଥତଃ ଶ୍ରୀକୃଷ୍ଣଙ୍କର ଅଶ୍ୱଗୁଡ଼ିକର ନାମ ଏହା ନୁହେ ।

ଯଥା—ବଳାହକ ପ୍ରଭୃତି ସେମାନଙ୍କର ନାମ—

ବଳାହକଂ ମେଘପୁଷ୍ପଂ ଶୈବ୍ୟଂ ସୁଗ୍ରୀବମେବ ଚ ।
ଯୁକ୍ତାନ ବାଜିବରାନ୍ ଯନ୍ତା କବଚୀ ସ୍ଥିତ ଦାରୁକ ॥
ଦ୍ରୋ. ପ. ୭୯ ଅ:

[୩] ନାରାୟଣ ଆଜ୍ଞାରେ କପିତ ମୁଣ୍ଡଗଲା ।
ରାହୁ ତେଜ ପରାୟେ ଯେ ରଥରେ ଲାଗିଲା ॥ ଭୀ. ପ. ୩୫ ପୃ:

କରି ଅଛନ୍ତି, ତଥାପି ମୂଳ ସ୍ତୋତ୍ରଗତ ଭାବ ଓ କେତେକ ନାମ ମଧ୍ୟ ସାରଳା-ଦାସଙ୍କ କୃତ ସ୍ତୋତ୍ରରେ ବିଦ୍ୟମାନ ରହିଅଛି । ଏହା ପରେ ସମ୍ପ୍ରାପ୍ତବର ଅର୍ଜୁନ ଯୁଦ୍ଧାର୍ଥ ରଥସ୍ଥ ହୋଇ ବନ୍ଧୁନାଶାର୍ଥ ବିଷଣ୍ଣ ହେବାରୁ ଶ୍ରୀକୃଷ୍ଣ ଭଗବଦ୍‌ଗୀତା ଯୋଗ କହିଥିଲେ । ତେଣେ ଯୁଧିଷ୍ଠିର ପାଦଚାରରେ ଭୀଷ୍ମ ପ୍ରମୁଖ ମହାରଥୀ ଗୁରୁଜନମାନଙ୍କଠାକୁ ଯାଇ ଯୁଦ୍ଧାର୍ଥ ଆଦେଶ ଗ୍ରହଣ କଲେ । କିନ୍ତୁ ସାରଳାଦାସ ମହାଶୟ ସାଧାରଣଙ୍କର ଅବୋଧ ଆଧ୍ୟାତ୍ମିକାଦିଜ୍ଞାନବହୁଳ ଭଗବଦ୍‌ଗୀତାକୁ ତ୍ୟାଗ କରି ଅଛନ୍ତି । "ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଭଗବଦ୍‌ଗୀତା କହିଲେ" ଏତିକମାତ୍ର ସୂଚନା କରି ଅଛନ୍ତି । ତାଳପତ୍ର ପୁସ୍ତକରେ ଦେଖିବେ— ଦୁଇଗୋଟି ପଦ୍ୟରେ କେବଳ ପ୍ରସଙ୍ଗଟି ସୂଚିତ କରି କୌରବବାହିନୀ ପ୍ରତି ଯୁଧିଷ୍ଠିରଙ୍କର ପ୍ରୟାଣର କଥା ଲେଖି ଅଛନ୍ତି । କିନ୍ତୁ ଛପା ପୁସ୍ତକରେ ଭଗବଦ୍‌ଗୀତାର ସୂଚନା ଓ ଯୁଧିଷ୍ଠିରଙ୍କର ଶତ୍ରୁଚମୂ ପ୍ରତି ଗମନର ମଧ୍ୟରେ ରାଜା କୃଷ୍ଣସିଂହଙ୍କ କୃତ ଅବିକଳାନୁବାଦ ଗୀତା କିଞ୍ଚିତ୍ ପରିବର୍ତ୍ତନ ସହ ପ୍ରକ୍ଷିପ୍ତ ରହିଅଛି । ଗ୍ରନ୍ଥ-ମଧ୍ୟରେ ଅନ୍ୟକୃତ ପାଠର ଏପରି ସାବଳୀଳ ପ୍ରକ୍ଷେପ ସମାଲୋଚକମାନଙ୍କ ପକ୍ଷେ ବଡ଼ କଷ୍ଟକର ହୋଇପଡ଼େ । ଏହାର ସତ୍ୟାସତ୍ୟତା ଜାଣିବାପାଇଁ ସେମାନଙ୍କର ବହୁ ବିଚାର, ସତର୍କତା ଓ ଗବେଷଣା ଆବଶ୍ୟକ ହୁଏ; ନଚେତ୍ ଭ୍ରାନ୍ତ ଧାରଣାରେ ପଡ଼ି ଭ୍ରାନ୍ତ ମତ ପ୍ରକାଶ କରିବାକୁ ହୁଏ । ଅତଏବ ମୋର ପରମବନ୍ଧୁ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ମହାଶୟ ସମ୍ୟକ୍ ବିଚାର କରି ନ ନେଇ ଶ୍ରୀଭଗବଦ୍‌ଗୀତା ସାରଳାଦାସଙ୍କର ଅନୁବାଦ ବୋଲି ଅନେକ କଥା କହି ପକାଇ ଅଛନ୍ତି । ଏ ସମ୍ବନ୍ଧେ ରଥ ମହୋଦୟଙ୍କ ମତ ବିରଥ ହୋଇ ପଡ଼ିଅଛି ।

ସାରଳାଦାସଙ୍କ ପରି ବଙ୍ଗ ଭାରତକର୍ତ୍ତା କାଶୀରାମ ଦାସ, ହିନ୍ଦୀ ଭାରତ-କର୍ତ୍ତା ସବଳ ସିଂହ ଓ ତେଲଙ୍ଗ ଭାରତକର୍ତ୍ତା ତିକ୍କନା ସୋମଯାଜୀ ପ୍ରଭୃତି ମହୋଦୟମାନେ ମଧ୍ୟ ଭଗବଦ୍‌ଗୀତାର ଅନୁବାଦ ଲେଖି ନାହାନ୍ତି । କେହି ବା ଏକ ପୃଷ୍ଠାରେ, କେହି ବା ଦୁଇ ଚାରି ପଦ୍ୟରେ ବିଷୟଟିକୁ ସୂଚନାକ୍ରମରେ ବୁଝାଇ ଦେଇ ଅଛନ୍ତି । ତଥାପି ଏ ସମ୍ବନ୍ଧରେ ସାରଳାଦାସଙ୍କ ଲେଖା ନିତାନ୍ତ ଅଳ୍ପ । ଏ ମହାଶୟ ମୂଳଗ୍ରନ୍ଥ ପରି ଧର୍ମପ୍ରାଣ ଯୁଧିଷ୍ଠିରଙ୍କର ଶତ୍ରୁସେନା ପ୍ରତି ପ୍ରସ୍ଥାନ କହି ଅଛନ୍ତି ସତ୍ୟ, କିନ୍ତୁ ଭୀଷ୍ମାଦିଙ୍କ ସହ ଯୁଧିଷ୍ଠିରଙ୍କର କଥୋପକଥନାଦି-କ୍ରମ ଓ ଅଭିପ୍ରାୟ ଭିନ୍ନ ପ୍ରକାର କରି କେତେକ ଅବାନ୍ତର କଥାରେ ବିସ୍ତୃତ କରି ଅଛନ୍ତି ।

ଅତଃପର ଭୀଷ୍ମବଧ ଉପପର୍ବ । ଏଥିରେ ଯୁଦ୍ଧ ଆରବ୍ଧ ହୋଇଅଛି । ମୂଳଗ୍ରନ୍ଥସଦୃଶ୍ୟ ସାରଳାଦାସଙ୍କ ଭାରତରେ ମଧ୍ୟ ଦ୍ୱୈରଥ୍ୟ ଯୁଦ୍ଧ ବା ଦ୍ୱନ୍ଦ୍ୱ ଯୁଦ୍ଧ ସଙ୍କୁଳ ଯୁଦ୍ଧ ପ୍ରଭୃତିର ବର୍ଣ୍ଣନା ଯଥେଷ୍ଟ । ଅଥଚ ତାହାଙ୍କର ବର୍ଣ୍ଣନା ମୂଳ ଅପେକ୍ଷା ସ୍ୱତନ୍ତ୍ର କହିଲେ ଚଳେ । ଏହାର କିଛି ବିଶେଷ ପରିଚୟ ଅନ୍ୟ ପ୍ରକରଣରେ ଦେଖିବେ । ସାରଳାଦାସ ମହାଶୟ ନିଜର ଶ୍ରୀଷ୍ମପର୍ବଟି କିପରି ଟିକିଏ ବୃହତ୍କାୟ ହେବ, ଏହି ବିଗୃହ କରି ଏ ସ୍ଥଳରେ ଯୁଦ୍ଧବିବୃଷ୍ଟ ତାରାକ୍ଷି ପକ୍ଷୀ ସମ୍ବନ୍ଧରେ କଳ୍ପିତ ବିସ୍ମୟଜନକ ଚର୍ଯ୍ୟା ସହ ଶୁକଦେବଙ୍କର ବହୁ ଶାଖା-ପ୍ରଶାଖାଯୁକ୍ତ କଥାଗୁଡ଼ିଏ ଲେଖି ଅଛନ୍ତି ।

ପ୍ରଥମ ଦିବସର ଯୁଦ୍ଧରେ ଶଲ୍ୟଙ୍କଦ୍ୱାରା ବୈରାଟି ଉତ୍ତର ଏବଂ ଭୀଷ୍ମଙ୍କ ବ୍ରହ୍ମାସ୍ତ୍ରରେ ଉତ୍ତରାନୁଜ ଶ୍ୱେତ ନିହତ ହେବାରୁ ତତ୍ସହୋଦର ଶଙ୍ଖ ଯୁଦ୍ଧାର୍ଥ ସନ୍ନଦ୍ଧ ହୋଇଥିଲେ । ମାତ୍ର ସାରଳାଦାସେ ପ୍ରଥମ ଦିନର ଯୁଦ୍ଧରେ କୌଣସି ମହାବୀର ନିହତ ହୋଇଥିବାର ପ୍ରକାଶ କରି ନାହାନ୍ତି । କିନ୍ତୁ ମୂଳରେ ଅନୁକ୍ତ ଶିଖଣ୍ଡିଙ୍କର ଅତି ଆଶ୍ଚର୍ଯ୍ୟଜନକ ଚର୍ଯ୍ୟା ପ୍ରକାଶ କରି ଅଛନ୍ତି କି ଶିଖଣ୍ଡି ମହାବୀର ଶଲ୍ୟଙ୍କ ରଥକୁ କୁନ୍ତ-କୋଟୀରେ ଧରି ଚକ୍ରାକାରରେ ବୁଲାଇ ଉଦ୍ଧୃତ କରିଥିଲେ । (୧)

ଦ୍ୱିତୀୟ ଦିବସର ଯୁଦ୍ଧର ସଂକ୍ଷିପ୍ତ ସାରଭୂତ କଥା ଏହି ଯେ ପ୍ରଥମ ଦିନ କୌରବମାନେ ଜୟଲାଭରେ ଉନ୍ମତ୍ତ ହେବାରୁ ଭୀଷ୍ମଙ୍କ ଅଲୌକିକ ପରାକ୍ରମରେ ଭୀତ ଯୁଧିଷ୍ଠିର ଯୁଦ୍ଧରୁ କ୍ଷାନ୍ତ ହେବାପାଇଁ ଶ୍ରୀକୃଷ୍ଣଙ୍କୁ ନିଜର ଅଭିପ୍ରାୟ ନିବେଦନ କରିଥିଲେ । ଶ୍ରୀକୃଷ୍ଣ ତାହାଙ୍କୁ ସାନ୍ତ୍ୱନା ଦେଇ ଭୀଷ୍ମଙ୍କ ଔଦ୍ଧତ୍ୟ ପ୍ରଶମନାର୍ଥ ଶିଖଣ୍ଡିକୁ ସେନାପତି କଲେ । ଅର୍ଜ୍ଜୁନ କ୍ରୌଞ୍ଚାରୁଣବ୍ୟୂହ ନିର୍ମାଣ କଲେ । (୨) ସୂର୍ଯ୍ୟୋଦୟ ସମୟରୁ ଭୀଷ୍ମ ଓ ଅର୍ଜ୍ଜୁନ ଦ୍ରୋଣ ଓ ଧୃଷ୍ଟଦ୍ୟୁମ୍ନ ପ୍ରଭୃତିଙ୍କ ଯୁଦ୍ଧ

---

(୧) କୁନ୍ତମୁନେ ବୀର ଧଇଲା ରଥ ତୋଳି ।
ଚକ୍ରାକୃତି କରି ଯେ ବୁଲାଏ ମହାବଳୀ ॥
ଦେଖିଣ ବିରସ ଯେ ଗାଲବର ସୁତ ।
ଶଙ୍ଖ ଓହରନ୍ତେ ଧାମଇ ସୋମଦତ୍ତ ॥ ଭୀ. ପ. ୧୦୧ ପୃଷ୍ଠା ।

(୨) ବ୍ୟୂହଃକ୍ରୌଞ୍ଚାରୁଣୋନାମ ସର୍ବଶତ୍ରୁ ନିବର୍ହଣଃ—
ଇତ୍ୟାଦି — ଭୀ. ପ. ୫୦ ଅ: ୪୦ ଶ୍ଳୋକ ।

ବଳରାମଙ୍କ ଦେହତ୍ୟାଗ ଏହାର ପ୍ରଧାନ ଘଟନା । ଯେତେବେଳେ ଗାନ୍ଧାରୀଙ୍କ ଶାପର ଷଟ୍‌ତ୍ରିଂଶ ବର୍ଷ ଅତୀତ ହେଲା, ତେବେ ଯାଦବମାନେ ନିତାନ୍ତ ଔଦ୍ଧତ୍ୟପୂର୍ଣ୍ଣ ଓ ଅନ୍ୟାୟପରାୟଣ ହେଲେ । ଏକଦା ବିଶ୍ୱାମିତ୍ର, କଣ୍ୱ ଓ ନାରଦ ଏହି ଋଷିତ୍ରୟ ଦ୍ୱାରକାରେ ଉପଗତ ହୁଅନ୍ତେ, ଅବିନୀତ ଯାଦବମାନେ ଶାମ୍ବଙ୍କୁ ଗର୍ଭବତୀ ସ୍ତ୍ରୀ ବେଶ କରି, "ଏହାଙ୍କର କି ସନ୍ତାନ ହେବ" ବୋଲି ଋଷିମାନଙ୍କୁ ପଚାରିଲେ । ସେମାନେ ଏମାନଙ୍କର ପରିହାସ ବଚନ ଜାଣିପାରି ଶାପ ଦେଲେ । ଋଷିମାନେ କହିଲେ, ଏଥିରୁ ମୂଷଳର ଉତ୍ପତ୍ତି ହେବ । ତଦ୍ଦ୍ୱାରା କୃଷ୍ଣ ଓ ବଳରାମ ଭିନ୍ନ ସମସ୍ତ ଯାଦବ ଧ୍ୱଂସପ୍ରାପ୍ତ ହେବେ । ଶ୍ରୀକୃଷ୍ଣ ମଧ୍ୟ ଏହା ଶୁଣି ଶାପନିବାରଣର କୌଣସି ଉପାୟ କରି ନ ଥିଲେ । ଶାମ୍ବ ସ୍ତ୍ରୀ ହୁଅନ୍ତୁ ବା ନ ହୁଅନ୍ତୁ, ସମୟରେ ଲୌହ ମୂଷଳ ପ୍ରସବ କଲେ । ତେତେବେଳେ ଯାଦବ ନୃପତି ଉଗ୍ରସେନଙ୍କ ଆଦେଶରେ ପ୍ରୋକ୍ତ ମୂଷଳ ଚୂର୍ଣ୍ଣୀକୃତ ଏବଂ ସମୁଦ୍ରରେ ନିକ୍ଷିପ୍ତ କରାଗଲା । ତଦବଧି କାଳ କରାଳରୂପରେ ପ୍ରତ୍ୟେକଙ୍କ ଗୃହରେ ଦେଖା ଦେଲା । ବୀରମାନେ ଅସ୍ତ୍ରଶସ୍ତ୍ର ପ୍ରୟୋଗରେ ତାକୁ ନିବୃତ୍ତ କରି ପାରିଲେ ନାହିଁ । ବହୁ ଦୁର୍ନିମିତ୍ତମାନ ଘଟିଲା । ଶ୍ରୀକୃଷ୍ଣ ଏ ସବୁ ଦେଖି ବିଚାର କଲେ, ପୁତ୍ରଶୋକାର୍ତ୍ତା ଗାନ୍ଧାରୀଙ୍କ ଶାପ ଅବଶ୍ୟ ନିକଟରେ ଘଟିବ । ତୀର୍ଥଯାତ୍ରା ବ୍ୟପଦେଶରେ ସମସ୍ତ ଯାଦବ ପ୍ରଭାସ ତୀର୍ଥକୁ ଯିବାର ସେ ଆଦେଶ ଦେଲେ । ସମସ୍ତେ ତହିଁ ଉତ୍ସବାରମ୍ଭରେ ସୁରାପାନ କରି ଉନ୍ମତ୍ତ ହୋଇ ଉଠିଲେ । ପରସ୍ପର କଳହ ଆରବ୍ଧ ହେଲା । ପ୍ରଥମତଃ ସାତ୍ୟକି କୃତବର୍ମାଙ୍କ ଶିରଚ୍ଛେଦ କଲାରୁ ତାହାଙ୍କ ପ୍ରତି ବୃଷ୍ଣି ଭୋଜ ଅନ୍ଧକ ପ୍ରଭୃତି ନାନା ଶାଖାର ଯାଦବମାନେ ଉତ୍ତେଜିତ ହେଲେ । ଘୋରତମ ସମର୍ଦ୍ଦ ଘଟିଲା । ଇତଃପୂର୍ବେ ଚୂର୍ଣ୍ଣୀକୃତ ସମୁଦ୍ରନିକ୍ଷିପ୍ତ ମୂଷଳଚୂର୍ଣ୍ଣରୁ ସଞ୍ଜାତ ଏରକା ବା ଶରଗଚ୍ଛ ସବୁ ମୂଷଳରେ ପରିଣତ ହେଲା । ତଦ୍ଦ୍ୱାରା ଯାଦବମାନେ ଅନ୍ୟୋନ୍ୟ ଆଘାତ କରି ବିନଷ୍ଟ ହେଲେ । ସାରଳାଦାସେ ଏତାବନ୍ମାତ୍ର ପର୍ଯ୍ୟନ୍ତ ଚରିତ ସନ୍ନିଧାନକୁ କଳ୍ପିତମାତ୍ର ବୈଷମ୍ୟରେ ଅନୁପ୍ରାଣିତ କରି ଇତଃପୂର୍ବେ ଶାନ୍ତିପର୍ବାବସାନରେ କମ୍ବା ଆଶ୍ରମବାସିକର ପ୍ରାରମ୍ଭରେ ଏକାନ୍ତ ଅଯଥା ସ୍ଥାନ ଓ ସମୟରେ ବର୍ଣ୍ଣନ କରିଦେଇ ଅଛନ୍ତି ।

ଶ୍ରୀକୃଷ୍ଣ ଯାଦବପ୍ରଳୟ ଦେଖି ନିଜ ସାରଥି ଦାରୁକଙ୍କୁ ଆଦେଶ ଦେଲେ, ତୁମ୍ଭେ ଶୀଘ୍ର ହସ୍ତିନାକୁ ଯାଅ, ଅର୍ଜୁନଙ୍କୁ ଡାକି ଆଣ, ସେ ଯାଦବମାନଙ୍କ କୁଳସ୍ତ୍ରୀମାନଙ୍କୁ ଦ୍ୱାରକାରୁ ହସ୍ତିନାକୁ ନିଅନ୍ତୁ, ତା ପରେ ଶ୍ରୀକୃଷ୍ଣ ଦ୍ୱାରକା ଯାଇ

ଅର୍ଜୁନାଗମନ ପର୍ଯ୍ୟନ୍ତ ସ୍ତ୍ରୀଗଣରକ୍ଷାର୍ଥ ବସୁଦେବଙ୍କୁ ନିଯୁକ୍ତ କରି ଆସି ଦେଖିଲେ ଯେ, ବଳରାମ ସମୁଦ୍ର ତୀରରେ ଯୋଗାସନରେ ଆସୀନ ରହି ଅଛନ୍ତି, ତାହାଙ୍କ ମୁଖରୁ ସହସ୍ର-ମସ୍ତକ ଶେଷନାଗ ବାହାରି ସମୁଦ୍ର ଭିତରେ ପ୍ରବେଶ କଲେ। ବଳରାମଙ୍କ ଶରୀର ପ୍ରାଣଶୂନ୍ୟ ହେଲା। ତେତେବେଳେ ଶ୍ରୀକୃଷ୍ଣ ମର୍ତ୍ତ୍ୟତ୍ୟାଗ ବାସନାରେ ଯୋଗରେ ଆସୀନ ହୋଇ ଭୂପୃଷ୍ଠରେ ଶୟନ କଲେ। ଜରା ନାମକ ଶବର ମୃଗ ଭ୍ରାନ୍ତିରେ ତାହାଙ୍କ ପାଦକୁ ଶରବିଦ୍ଧ କଲା। ପରେ ସେ ଜାଣିପାରି ଦୁଃଖିତ ହେବାରୁ ଶ୍ରୀକୃଷ୍ଣ ତାହାଙ୍କୁ ସାନ୍ତ୍ୱନା ଦେଇ ଜଗଦୁଦ୍ଭାସକ ତେଜଃପଟଳ-ରୂପେ ସ୍ୱର୍ଗାରୋହଣ କଲେ। ଅର୍ଜୁନ ଆସି ଦ୍ୱାରକାରେ ଶ୍ରୀକୃଷ୍ଣାଦି ଓ ବସୁଦେବାଦିଙ୍କ ଔର୍ଦ୍ଧ୍ୱଦେହିକ କ୍ରିୟା ପ୍ରଭୃତି ସାଧନାର୍ଥ ଷଡ୍‌ଦିବସ ଅବସ୍ଥାନ କରିଥିଲେ। ସପ୍ତମ ଦିବସରେ ଯାଦବକୁଳସ୍ତ୍ରୀମାନଙ୍କୁ ଧରି ହସ୍ତିନାପ୍ରସ୍ଥାଣ କରୁଅଛନ୍ତି, ମାର୍ଗ ମଧ୍ୟରେ ଦସ୍ୟୁଗଣ (୧) ଯଷ୍ଟିହସ୍ତରେ ତାହାଙ୍କୁ ଆକ୍ରମଣ କଲେ। ଯେ କି ଭୀଷ୍ମ ପ୍ରଭୃତିଙ୍କୁ ନିହତ କରି ପାରିଥିଲେ, ସମସ୍ତ ପୃଥ୍ୱୀ ଜୟ କରି ସ୍ୱର୍ଲୋକରେ ସୁଦ୍ଧା ନିଜର ପ୍ରତାପ ପ୍ରକାଶ କରି ପାରିଥିଲେ, ସେ ବର୍ତ୍ତମାନ ବର୍ବରମାନଙ୍କ ଲଗୁଡ଼ ପ୍ରହାରରେ ପରାସ୍ତ ହୋଇ ପଡ଼ିଲେ। ଗାଣ୍ଡୀବରେ ଆଉ ଶର ସନ୍ଧାନ କରି ପାରିଲେ ନାହିଁ। ହାୟ ହାୟ! କାଳର ସର୍ବଂକଷ ବିପରିଣାମ! ହାୟ ହାୟ! ନିୟତିର ଦୁର୍ନିବାର ମହିମା! ଶ୍ରୀକୃଷ୍ଣଙ୍କ ମହିଷୀ ରୁକ୍ମିଣୀ, ସତ୍ୟଭାମା, ହୈମବତୀ, ଜାମ୍ବବତୀ ପ୍ରଭୃତିଙ୍କ ରକ୍ଷାରେ ଅର୍ଜୁନ କଥଞ୍ଚିତ୍ ସମର୍ଥ ହୋଇ ପାରିଥିଲେ, ମାତ୍ର ଅନ୍ୟାନ୍ୟ ସ୍ତ୍ରୀମାନଙ୍କୁ ଦସ୍ୟୁମାନେ ହରଣ କରି ନେଲେ। ଅର୍ଜୁନ ବ୍ୟାସଙ୍କ ଆଶ୍ରମରେ ପ୍ରବେଶି ସମସ୍ତ ଘଟଣା ନିବେଦନ କଲେ। ବିପରୀତ ସମୟରେ ତେଜ ବିପରୀତ ହୋଇପଡ଼େ, ଇତ୍ୟାଦି ଉପଦେଶରେ ବ୍ୟାସ ଅର୍ଜୁନଙ୍କୁ ସାନ୍ତ୍ୱନା ଦେଇ ପ୍ରକୃତିସ୍ଥ କଲେ। ଅର୍ଜୁନ ହସ୍ତିନାରେ ପ୍ରବିଷ୍ଟ ହୋଇ ଯୁଧିଷ୍ଠିରଙ୍କୁ ଯାବତୀୟ ଦୁର୍ଘଟନା ଜଣାଇଲେ।

ଅତଃପର ସାରଳାଦାସଙ୍କ ଭାରତରେ ମୂଷଳୀ ପର୍ବ ବା ହରିବଂଶ ପର୍ବ। କିନ୍ତୁ ତାଳପତ୍ର ପୁସ୍ତକରେ ଅତି ମୂଷଳୀ ପର୍ବ ବା ହରିବଂଶ ପର୍ବର ନାମ ଲେଖା

(୧) ଏ ଦସ୍ୟୁମାନେ ଏକ ପ୍ରକାର ମ୍ଲେଚ୍ଛଜାତି।

ଏମାନଙ୍କ ବାରତ୍ୱାଦି ଦ୍ରୋଣ ପର୍ବରେ ଉକ୍ତ ଅଛି। ଯଥା—

ଦସ୍ୟୂନାଂ ସଶିରସ୍ତ୍ରାଣୈଃ ଶିରୋଭିଃ ଲୂନମୂର୍ଦ୍ଧଜୈଃ।

ଦୀର୍ଘକୂର୍ଚ୍ଚୈଃ ମହୀକୀର୍ଣ୍ଣା ବିବର୍ହୈରଣ୍ଡଜୈରିବ। ୧୧୯ ଅ:

ନାହିଁ । ଏ ସବୁ ସ୍ୱର୍ଗାରୋହଣ ପର୍ବରେ ଅନ୍ତର୍ଭୁକ୍ତ ହୋଇଅଛି । ସୁତରାଂ ଏହାର ପ୍ରାରମ୍ଭରେ ଅର୍ଥାତ୍ ଅଶ୍ୱମେଧ ପର୍ବର ଅବସାନରେ ମନୁଙ୍କ ପ୍ରଶ୍ନରେ ଉକ୍ତ ଅଛି କି, କୃଷ୍ଣ ଓ ଅର୍ଜୁନ (ବ୍ରାହ୍ମଣଙ୍କ ଅପହୃତ ପୁତ୍ରମାନଙ୍କୁ ଆଣିବା ପ୍ରସ୍ତାବରେ) ପାତାଳ ବୈକୁଣ୍ଠରୁ ମହାବିଷ୍ଣୁଙ୍କର ଆଦେଶ ପାଇ ଆସିଲା ପରେ କଣ କଲେ ? ଏହାର ଉତ୍ତରରେ ପୁରାଣବକ୍ତା ମୁନି କହିଲେ କି, ତା ପରେ ଶ୍ରୀକୃଷ୍ଣ "କପଟେ ଯାଦବ ବଂଶ ନାଶରେ ଶୀଘ୍ର ମୁଁ ସମସ୍ତଙ୍କୁ ତ୍ୟାଗ କରି ନିଜ ସ୍ଥାନକୁ ବାହାରିଯିବି" ଏହି ଚିନ୍ତା କଲେ । ଏଥିରୁ ସ୍ପଷ୍ଟ ବୋଧହୁଏ, ଏହାଙ୍କ ଭାରତରେ ଅଶ୍ୱମେଧ ପର୍ବ ଯେପରି ଆଶ୍ରମିକ ପର୍ବ ପରେ ଲେଖାଅଛି, ତାହା ଅନୁଲେଖକମାନଙ୍କର କମ୍ବା ପ୍ରକାଶକମାନଙ୍କର ବ୍ୟତ୍ୟସ୍ତୀକରଣ ନୁହେ । ଗ୍ରନ୍ଥକର୍ତ୍ତା କେବଳ ଏପରି ଉଲ୍ଲେଖ କରି ଦେଇ ଅଛନ୍ତି । ଚରିତ୍ର ପ୍ରବାହର ଏକାନ୍ତ ଗହନତାରୁ ପୂର୍ବାପର ସମସ୍ତ ନିର୍ଦ୍ଧାରଣ ବିସ୍ମରଣତ୍ୱ କେବଳ ଏହାର କାରଣ । ମୁଷଳୀ ପର୍ବର ଆଦିମଭୂତ ମୁଷଳୋତ୍ପତ୍ତିର କେତେକ ପାଠ ଯାହା କି ଶାନ୍ତିପର୍ବାବସାନରେ କମ୍ବା ଆଶ୍ରମ-ବାସିକ ପର୍ବାରମ୍ଭରେ ଦେଖାଯାଏ, ତାହା ସୁଦ୍ଧା ଭବିଷ୍ୟତ୍ ସୂଚନା କ୍ରମରେ ନିଜେ ଆସ୍ଥାନରେ ଲେଖିଦେଇ ଅଛନ୍ତି ବୋଲି ମଧ୍ୟ ବିଶ୍ୱାସ ହୁଏ । ଏହି ମୁଷଳୀ ପର୍ବ ବା ହରିବଂଶ ପର୍ବରେ ଏ ମହାଶୟ ଅନେକଗୁଡ଼ିଏ ମୂଳରେ ଅନୁକ୍ତ କଥାମାନଙ୍କର ଅବତାରଣା କରି ଅଛନ୍ତି । ଉଦ୍ଧବଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ଜ୍ଞାନୋପଦେଶରେ ଗାଲମାଧବ ରାଜା ଶ୍ରୀକୃଷ୍ଣଙ୍କ ମୃତ କଳେବର ନେଇ ଯମନିକ ତୀର୍ଥସ୍ଥ ନୀଳଭୂଧର କନ୍ଦରରେ ରଖିଥିବାର ଲେଖାଅଛି । ମୂଳଗ୍ରନ୍ଥରେ ଏ ସମସ୍ତରେ ପ୍ରତ୍ୟେକ ଗୃହରେ ଯାହା କାଳର କରାଳ ରୂପ ଦର୍ଶନ ଉକ୍ତ ଅଛି, ତଦନୁକରଣରେ ଏ କବି ମହାଶୟ ଦ୍ୱାରକାରେ ବିଚିତ୍ର କୋଳୁଅ ଭୂତର ଆବିର୍ଭାବ କରାଇ ଅଛନ୍ତି । ପ୍ରଭାସ ତୀର୍ଥଯାତ୍ରାର କଥା ଉଲ୍ଲେଖ ନ କରି ଯମୁନା ତୀରରେ ସମସ୍ତ ଯାଦବ କାଦମ୍ବରୀରେ ମତ୍ତ ହୋଇ ଶସ୍ତାସ୍ତ୍ର ଓ ନିକ୍ଷିପ୍ତ ମୁଷଳୀ ଚୂର୍ଣ୍ଣରୁ ଜାତ ଏରକାର ଆଘାତ ପ୍ରତିଘାତରେ ନିପାତ ହେବାର କହନ୍ତି । କୃତନିର୍ଯ୍ୟାଣ-ସନ୍ନାହ ରାମଙ୍କର ସମୁଦ୍ର ପ୍ରବେଶକୁ ସୁଦ୍ଧା କିଞ୍ଚିତ ଭିନ୍ନ ପ୍ରକାର କରି ଅଛନ୍ତି । ଯମୁନା ତୀରରେ ଦୋଳାସ୍ଥିତ ଶିଆଳି-ଲତାରେ ପ୍ରସୁପ୍ତ ଶ୍ରୀକୃଷ୍ଣ ଜରାଶବର ଶରରେ ଆହତ ହୋଇ ତାହାଙ୍କୁ ଅର୍ଜୁନାନୟନାର୍ଥ ହସ୍ତିନା ପଠାଇ ଥିଲେ ବୋଲି ଲେଖି ଅଛନ୍ତି । ଏପରି ଅବସ୍ଥାରେ "ଶ୍ରୀକୃଷ୍ଣଙ୍କୁ ଆଜ ସ୍ପର୍ଶ କର ନାହିଁ" ବୋଲି ଯୁଧିଷ୍ଠିର ଅର୍ଜୁନଙ୍କୁ କେତେକ ଉପଦେଶ ଦେବା ଏବଂ ଶ୍ରୀକୃଷ୍ଣ "ମୋତେ ଏବେ ଥରେ ମାତ୍ର ସ୍ପର୍ଶ କର" ବୋଲି ଅର୍ଜୁନଙ୍କୁ ବହୁ ଉପରୋଧ

କରିଥିବା ସନ୍ଦର୍ଭର ଉଦ୍ଭାବନା କରି ଅଛନ୍ତି । କୃଷ୍ଣଙ୍କ ନିର୍ଯ୍ୟାଣ ପରେ ଜରାଶବର ଓ ଅର୍ଜ୍ଜୁନଙ୍କର ଶରପ୍ରହାର ବିବାଦ, କୃଷ୍ଣକଳେବର ଦହନାର୍ଥ କାଷ୍ଠାନୟନ ପ୍ରସଙ୍ଗରେ ଜରାଶବରଙ୍କ ଦ୍ୱାରା ପୂଜିତ ଅଗରବୃକ୍ଷ ମୂଳସ୍ଥ ଶବରନାରାୟଣ ବା ଶବରମାଧବଙ୍କର ବହୁଶାଖା ଚରିତ ଏବଂ ନୀଳଗିରିରେ କୃଷ୍ଣକଳେବରର ଭବିଷ୍ୟମାଣ ପୂଜା ସମ୍ବନ୍ଧରେ ଆକାଶବାଣୀ ଶୁଣି ଅର୍ଜ୍ଜୁନ ତାହା ସମୁଦ୍ରରେ ନିକ୍ଷେପିବା କଥିତ ଅଛି । (୧)

ଅତଃପର ଦ୍ୱାରକାରେ ଅର୍ଜ୍ଜୁନଙ୍କ କୃତ୍ୟ ବିବରଣରେ ମୂଳଗ୍ରନ୍ଥ ଅପେକ୍ଷା ଏଥିରେ ଅନେକ ପ୍ରଭେଦ ଦେଖାଯାଏ । ସୁତରାଂ ତାଳପତ୍ର ଓ ଛାପା ପୁସ୍ତକରେ ଅନ୍ତ୍ୟ କେତେକ ଚରିତ ବିସଦୃଶ ହୋଇ ପଡ଼ିଅଛି । (୨) ମୂଳଗ୍ରନ୍ଥରେ ଉକ୍ତ ଅଛି କି ଅର୍ଜ୍ଜୁନ ସ୍ତ୍ରୀମାନଙ୍କୁ ଏବଂ ଏକମାତ୍ର ଅବଶିଷ୍ଟ ଯାଦବାଙ୍କୁର ବଜ୍ରଙ୍କୁ ସଙ୍ଗେ ଧରି ହସ୍ତିନାକୁ ଗଲେ, ବଜ୍ରଙ୍କୁ ଇନ୍ଦ୍ରପ୍ରସ୍ଥରେ ରାଜା କଲେ । କିନ୍ତୁ ଏହି ଭାରତରେ ସମସ୍ତ ସ୍ତ୍ରୀଗଣ ଦ୍ୱାରକାରେ କେବଳ ଅଗ୍ନି ପ୍ରବେଶ କରିଥିବା, ବଜ୍ରଙ୍କୁ ଦ୍ୱାରକା ନିକଟସ୍ଥ ବାଲୁକା ନଦୀ ତୀର ଦେଶରେ ରାଜା କରି ଏକାକୀ ଅର୍ଜ୍ଜୁନ ହସ୍ତିନାକୁ ପ୍ରତ୍ୟାବୃତ୍ତ ହୋଇଥିବା ଉକ୍ତ ଅଛି । ଏହି ପର୍ବର ଚରମ ଭାଗରେ ଜରାଶବର ଶ୍ରୀକୃଷ୍ଣଙ୍କ ଆଦେଶରେ ତଦସ୍ଥି ଶବମୂର୍ତ୍ତି ଆଣି ପୂଜା କରୁଥିବାର କଥା, ପରେ ଗାଲମାଧବ ରାଜା ଜରାଶବରଙ୍କଠାରୁ ସେହି ମୂର୍ତ୍ତି ପାଇବାର କଥା, ଇନ୍ଦ୍ରଦ୍ୟୁମ୍ନ ନୀଳାଚଳରେ ପ୍ରାସାଦାଦି ନିର୍ମାଣ କରାଇଥିବାର ବିବରଣ, ମାର୍କଣ୍ଡେୟ ଋଷିଙ୍କ ସମ୍ବନ୍ଧରେ ନାନା କଥାର ପ୍ରସ୍ତାବ ଏବଂ ଜରାଶବର ଓ ଇନ୍ଦ୍ରଦ୍ୟୁମ୍ନଙ୍କ ସମ୍ବାଦରେ ଦାରୁବ୍ରହ୍ମମୂର୍ତ୍ତି ନିର୍ମାଣ ପ୍ରଭୃତି ନାନା ପ୍ରକାର କଥାମାନଙ୍କର ବିବୃତିକରଣ ହୋଇଅଛି । ଏ ସବୁ ଚରିତଗୁଡ଼ିକୁ ଉତ୍କଳର

---

(୧) ତୁ କିପାଁ ବିମୁଖ ହେଉଅଛୁ ସବ୍ୟସାଚି ।
ଅଗ୍ନି ଦେବତା ନ ପାରଇ ଭକ୍ଷି ॥
ଏ ପିଣ୍ଡ ବିଜେ କରିବେ ନୀଳଗିରି ପର୍ବତେ ।
ପୂଜା ପାଇବେ ବଡ଼ ଦିନ ପର୍ଯ୍ୟନ୍ତେ ॥
ମୁଷ. ପ. ୨୧ ପୃ:

(୨) ମୁ. ପ. ୨୨ ପୃ: ଦେଖି ବିଚାର କରନ୍ତୁ ।

ଆଦିମହାକବି ମହୋଦୟ ଅନ୍ୟାନ୍ୟ ପୁରାଣେତିହାସମାନଙ୍କରୁ ଉଦ୍ଧୃତ କରି ପ୍ରାସଙ୍ଗିକକ୍ରମରେ ଅତି ନିହିତ କରିଦେଇ ଅଛନ୍ତି । (୧)

ଅତଃପର ମହାଭାରତ ଗ୍ରନ୍ଥର ସର୍ବାବସାନ ମହାପ୍ରାସ୍ଥାନିକ ଓ ସ୍ୱର୍ଗାରୋହଣ ପର୍ବର କଥା ମୂଳଗ୍ରନ୍ଥରେ ମହାପ୍ରାସ୍ଥାନିକ ତିନି ଗୋଟି ଏବଂ ସ୍ୱର୍ଗାରୋହଣ ପର୍ବ ଛଅ ଗୋଟି ଅଧ୍ୟାୟରେ ବର୍ଣ୍ଣିତ । କିନ୍ତୁ ଉତ୍କଳ ଭାରତର ଆଦିମକବିଙ୍କ ପ୍ରୋକ୍ତ ଉଭୟ ପର୍ବର ଏକ ଧାରାବାହିକ ଚରିତଗୁଡ଼ିକୁ ଏକାଧାରରେ ନିହିତ କରି ଏକମାତ୍ର ସ୍ୱର୍ଗାରୋହଣ ପର୍ବ ନାମରେ ସମାଖ୍ୟାତ କରି ଅଛନ୍ତି । ହିନ୍ଦୀ ବଙ୍ଗାଦି ଭାରତରେ ସୁଦ୍ଧା ଏହି କ୍ରମ ଦେଖାଯାଏ । ମୂଳ ମହାପ୍ରାସ୍ଥାନିକର ପ୍ରାରମ୍ଭରେ ଉକ୍ତ ଅଛି, ଯୁଧିଷ୍ଠିର ବୃଷ୍ଣିବଂଶର ମୌଷଳାଦିବରେ ସର୍ବନାଶ ସମ୍ବାଦ ଶୁଣି ଭ୍ରାତୃମାନଙ୍କ ସହ ଏକ ବିରୁଦ୍ଧନିଷ୍ଠସ୍ପ ହୋଇ ମହାପ୍ରସ୍ଥାନରେ ମତି କଲାଇଲେ । ଯୁଯୁତ୍ସୁଙ୍କ ତତ୍ତ୍ୱାବଧାନରେ ପରୀକ୍ଷିତଙ୍କୁ ରାଜ୍ୟରେ ଅଭିଷିକ୍ତ କଲେ । ଶ୍ରାଦ୍ଧାଦି ବିଧାନ ଓ ବ୍ୟାସ କୃପାଦିଙ୍କ ପୂଜା ସାଧନ ପରେ ଦ୍ରୌପଦୀସହ ପାଣ୍ଡବପଞ୍ଚକ ବଲ୍‌କଲ ଧାରଣପୂର୍ବକ ଗଜପୁରରୁ ବହିର୍ଗତ ହେଲେ । ଅନୁଗତ ସାଧୁଭାବ ଗୋଟିଏ କୁକ୍‌କୁର ସୁଦ୍ଧା ତାହାଙ୍କର ଅନୁଗମନ କଲା । (୨) ତେତେବେଳେ ପରିତ୍ୟାଗବଧୂର ଅର୍ଜୁନଙ୍କ ଅନ୍ୟଦାର ଭୁଜଗାତ୍ମଜା ଉଲୂପୀ ଗଙ୍ଗାରେ ପ୍ରବେଶ କଲେ ଏବଂ ଚିତ୍ରାଙ୍ଗଦା କଥଞ୍ଚିତ୍ ଶୋକ ସମ୍ବରଣ କରି ମଣିପୁରକୁ ପ୍ରସ୍ଥାନ କଲେ । ପାଣ୍ଡବମାନେ କ୍ରମଶଃ ପୃଥିବୀ ପ୍ରଦକ୍ଷିଣ କରି ହିମାଳୟରେ ଉପଗତ ହେଲେ । ଏଥି ମଧ୍ୟରେ ଅଗ୍ନିଙ୍କ ଆଦେଶମତେ ଅର୍ଜୁନ ଦିବ୍ୟ ଧନୁ ଗାଣ୍ଡୀବକୁ ସମୁଦ୍ରରେ ନିକ୍ଷେପ କରିଥିଲେ । ଅଭ୍ରଂକଷ ହିମାଚଳର ଆରୋହଣରେ ଦ୍ରୌପଦୀ, ସହଦେବ, ନକୁଳ ଅର୍ଜୁନ ଓ ଭୀମସେନ ପର୍ଯ୍ୟାୟକ୍ରମେ ଧନଞ୍ଜୟପକ୍ଷପାତିତା, ଅନନ୍ୟସଦୃଶ ପ୍ରଜ୍ଞାଭିମାନିତା, ଅନନ୍ୟସଦୃଶ ରୂପାଭିମାନିତା, ଅନନ୍ୟସଦୃଶ୍ୟ ଶୂରାଭିମାନିତା ଓ ବିକତ୍ଥନ ଦୋଷରୁ ଅର୍ଦ୍ଧମାର୍ଗରେ ନିପତିତ ହେବାରୁ ଯୁଧିଷ୍ଠିର ମାତ୍ର ଊର୍ଦ୍ଧ୍ୱକୁ ଉଠିଗଲେ । ପଶ୍ଚାତ୍ ବିପର୍ଯ୍ୟସ୍ତ

(୧) ଏ ସ୍ଥଳରେ ଶ୍ରୀ ଜଗନ୍ନାଥଙ୍କ ପୂଜକ ପଣ୍ଡା ଓ ଦଇତାମାନଙ୍କର ପୂର୍ବ ବଂଶର କଥାମାନ ଲେଖି ଅଛନ୍ତି । ଏଥିରୁ ଏମାନଙ୍କ ପ୍ରତି କବିଙ୍କର ପ୍ରଗାଢ଼ ଭକ୍ତି ସୂଚିତ ହୁଏ ।

(୨) ଭ୍ରାତରଃ ପଞ୍ଚ କୃଷ୍ଣା ଚ ଷଷ୍ଠୀ ଶ୍ୱା ଚୈବ ସପ୍ତମଃ ।
ଆତ୍ମନା ସପ୍ତମୋ ରାଜା ନିର୍ଯୟୌ ଗଜସାହ୍ୱୟାତ୍ ॥ ପ୍ରା. ପ. ୧ ଅ.

ଉକ୍ତ ଶ୍ଳୋକଟି ମଧ୍ୟ ଗୃହୀତ ଅଛି । ତଦା ତତ୍ରାଗତ ଇନ୍ଦ୍ର ଯୁଧିଷ୍ଠିରଙ୍କୁ ସ୍ୱର୍ଗଗମନାର୍ଥ ଆହ୍ୱାନ କଲେ । ଏ ସ୍ଥଳରେ ନିପତିତ ଭୀମାଦି ଭ୍ରାତୃଗଣ ଓ ଦ୍ରୌପଦୀ ଏବଂ ଅନୁଗତ ଶ୍ୱାନ ସମ୍ବନ୍ଧରେ ଯୁଧିଷ୍ଠିର ଇନ୍ଦ୍ରଙ୍କସହ ମତାମତ ପ୍ରକାଶପୂର୍ବକ ଇନ୍ଦ୍ରପୁରୀକୁ ପ୍ରସ୍ଥାନ କରିଥିବାର ବିଷୟ ବର୍ଣ୍ଣିତ ଅଛି । ଅନନ୍ତର ସ୍ୱର୍ଗାରୋହଣରେ ଯୁଧିଷ୍ଠିର ତତ୍ରତ୍ୟ ଦୁର୍ଯ୍ୟୋଧନଙ୍କର ସୁଶ୍ରୀକ ଅବସ୍ଥାନ ଦେଖି ଅନ୍ୟାନ୍ୟ ଭ୍ରାତୃ ପ୍ରଭୃତିଙ୍କର ଅବସ୍ଥାନ ସ୍ଥାନ ଦିଦୃକ୍ଷା କରିବା, ଦେବଦୂତସହ ପ୍ରସ୍ଥାନରତ ଯୁଧିଷ୍ଠିରଙ୍କର ପଥ ମଧ୍ୟରେ ନରକ ଦର୍ଶନାଦିର ବିବରଣୀ, ପରିଶେଷରେ ଇନ୍ଦ୍ରାଦି ଦେବଗଣ ପରଦୁଃଖୀସହିଷ୍ଣୁ, ନାରକୀସୁବ୍ୟସନ-ବିନାଶନ-ପ୍ରଭବିଷ୍ଣୁ ଓ ସ୍ୱାର୍ଥମୂଳକ ସୁଖେଚ୍ଛାନିବାରୟିଷ୍ଣୁ ଯୁଧିଷ୍ଠିରଙ୍କ ନିକଟକୁ ଆସି ତାହାଙ୍କୁ ସମାଧାନ ପ୍ରଦାନପୂର୍ବକ ଦିବ୍ୟସ୍ଥାନକୁ ନେଇଯିବା ପ୍ରଭୃତି କଥାମାନ ବର୍ଣ୍ଣିତ ହୋଇଅଛି ।

ସାରଳାଦାସ ମହାଶୟଙ୍କ ଭାରତରେ ଏ ସ୍ଥଳରେ "ଶ୍ରୀକୃଷ୍ଣଙ୍କ ଅପ୍ରକଟ ବା ନିର୍ଯ୍ୟାଣ ପରେ କଣ ହେଲା" ବୋଲି ମନୁ ପ୍ରଶ୍ନ କଲାରୁ "ଅଗସ୍ତ୍ୟ ବୋଇଲେ ସାବଧାନେ ଶୁଣ । ଯୁଧିଷ୍ଠିରଙ୍କର ତୋତେ କହିବା ସ୍ୱର୍ଗାରୋହଣ ।" ଏହା ଲେଖା ଅଛି । ତାଳପତ୍ର ପୁସ୍ତକରେ ଏହିଠାରେ ପର୍ବାବସାନ ଓ ପର୍ବାରମ୍ଭ ହୋଇନାହିଁ । ଏକାଧାରରେ ପୂର୍ବୋକ୍ତ ପାଠସହ ଏହି ପାଠ ଗୃହୀତ ଅଛି । ମାତ୍ର ଛାପା ପୁସ୍ତକରେ ଏହିଠାରୁ କେବଳ ସ୍ୱର୍ଗାରୋହଣ ପର୍ବର ଆରମ୍ଭ ହୋଇଅଛି । ଏଥିରେ ପୁଣି ଅନେକଗୁଡ଼ିଏ ଅସମ୍ଭବ ଅସଙ୍ଗତ କଳ୍ପିତ କଥାମାନ ଲେଖା ଯାଇଅଛି । ଏଗୁଡ଼ିକର ଅବସ୍ଥିତିର ସ୍ଥାନ ମଧ୍ୟ ଉଭୟତ୍ର (ତାଳପତ୍ର ଓ ଛାପାରେ) ସମାନ ନୁହେ । ଅତଏବ ପ୍ରଥମତଃ ବିଶ୍ୱାସ ହୁଏ, ଏ ସବୁ ଗ୍ରନ୍ଥକର୍ତ୍ତା ଲେଖି ନ ଥିବେ, ଅନ୍ୟାନ୍ୟ ଅସଙ୍ଗତପ୍ରଳାପୀ କେତେକ କାଳ ପରେ ଏହି ପ୍ରଳାପ ପ୍ରକ୍ଷିପ୍ତ କରିଥିବେ । କିନ୍ତୁ କ୍ରମଶଃ ଯୁଧିଷ୍ଠିରଙ୍କ ସ୍ୱର୍ଗାରୋହଣ ପର୍ଯ୍ୟନ୍ତ ପାଠକୁ ଦେଖି ନେଲେ ଅନେକତ୍ର ସେହି ଅସଙ୍ଗତ କାହାଣୀର ଏକଦେଶିକ ବିବରଣ ପ୍ରମାଣସ୍ୱରୂପ ଦେଖା ଯାଇଥାଏ । ତେତେବେଳେ ବିଶ୍ୱାସ ହୁଏ, ଗ୍ରନ୍ଥକର୍ତ୍ତା କେବଳ ଏହି ବିଚିତ୍ର ଚିତ୍ରଣର ଚିତ୍ରକାର । ଏହି ପର୍ବର ପ୍ରାରମ୍ଭରେ ଗୋଟିଏ ଅଳୀକ ଓ ଅସଙ୍ଗତ କଥା ଏହି— ଧର୍ମପୁର ବା ଯାଜନ ନଗରୀର ନିବାସୀ ହରି ସାହୁଙ୍କର ପଞ୍ଚଦଶ ବର୍ଷ ବୟସ୍କା ରତ୍ନୋତ୍କଣ୍ଠା ସିଂହାଣୀନାମ୍ନୀ କନ୍ୟାର ଅପମୃତ୍ୟୁ ହରଣାର୍ଥ ଯୁଧିଷ୍ଠିର ବ୍ୟାସାଦିଙ୍କ ସମକ୍ଷରେ ତାହାକୁ ପାଣିଗ୍ରହଣ କରି ତହିଁ ପଞ୍ଚସପ୍ତତି ବର୍ଷ ନିବାସ କରିଥିଲେ । ଏହାପରେ ଯୁଧିଷ୍ଠିର-ବିବାହିତା ପ୍ରୋକ୍ତ

ବୈଶ୍ୟକନ୍ୟାଙ୍କ ଯୋଗୁଁ ଅର୍ଜୁନ ଯମଙ୍କୁ ପରାସ୍ତ କରିଥିବା ପ୍ରଭୃତି କେତେକ ସାଙ୍ଗତ୍ୟବିହୀନ କଥା ଲେଖାଅଛି । ପରୀକ୍ଷିତଙ୍କୁ ରାଜ୍ୟ ଦେବା ପ୍ରସ୍ତାବରେ ବେଦପୁର ଗ୍ରାମନିବାସୀ ଭୂକର୍ଷଣରେ ସମ୍ପ୍ରାପ୍ତନିଧି କୃଷକ ଏବଂ ଭୂସ୍ୱାମୀ ବ୍ରାହ୍ମଣଙ୍କର ପରବିତ୍ତବିମୁଖତାର କଥାନକଟି କଳ୍ପିତ ହେଲେ ସୁଦ୍ଧା ବଡ଼ ସୁନ୍ଦର ଉପଦେଶମୂଳକ ଓ କଳିମାହାତ୍ମ୍ୟବ୍ୟଞ୍ଜକ ହୋଇଅଛି । ଏହା ପରେ ଗୃହରୁ ବହିର୍ଗତ ମହାପ୍ରାସ୍ଥାନିକ ଯୁଧିଷ୍ଠିରାଦିଙ୍କର ପ୍ରସ୍ଥାନମାର୍ଗରେ ଚଣ୍ଡୁଳାହରଣାର୍ଥ ଭୀମସେନ ସାତ ଗୋଟି ବ୍ୟାଘ୍ର ବାନ୍ଧି ଧାନ୍ୟ ମର୍ଦ୍ଦିବା, ପ୍ରାଚୀ ତୀର୍ଥରେ ଆଭୀରୀବେଶଧାରିଣୀ ପାର୍ବତୀଙ୍କ ହସ୍ତରେ କୃତ୍ତିବାସ ଓ କାର୍ତ୍ତିବାସ ନାମକ ଦୈତ୍ୟଦ୍ୱୟ ବିନଷ୍ଟ ହେବା, ଭୀମସେନ ତଦ ଆରକ୍ତକ ଦୈତ୍ୟକୁ ବିନାଶ କରିବା ପ୍ରଭୃତି କଳ୍ପିତ କଥାମାନ ଲେଖି ଅଛନ୍ତି । ମୂଳଗ୍ରନ୍ଥର ଯୁଧିଷ୍ଠିରାଦିଙ୍କର ତୀର୍ଥଭ୍ରମଣ ବା ପୃଥିବୀ ପରିକ୍ରମଣର କ୍ରମ ଏବଂ ଗାଣ୍ଡୀବାଦି ଅସ୍ତ୍ରବିସର୍ଜନକ୍ରମକୁ ଏ ମହାଶୟ କିଞ୍ଚିତ୍ ଅନ୍ୟଥା କରି ପ୍ରକାଶ କରି ଅଛନ୍ତି । ହିମାଳୟ ଆରୋହଣରେ ମୂଳରେ ଯେପରି କ୍ରମଶଃ ଦ୍ରୌପଦୀ ପ୍ରଭୃତିଙ୍କ ପତନ, ଏ ମହାଶୟ ମଧ୍ୟ ଠିକ୍ ସେହିପରି କରି ଅଛନ୍ତି । କିନ୍ତୁ ପ୍ରୋକ୍ତ ପତନର କାରଣଭୂତଦୋଷର ଉଦ୍‌ଘାଟନକ୍ରମକୁ ମୂଳ ଅପେକ୍ଷା କିଞ୍ଚିତ୍ ଭିନ୍ନ ପ୍ରକାର କରି ଅଛନ୍ତି । ପରନ୍ତୁ ଭୀମଙ୍କ ପତନରେ ଯୁଧିଷ୍ଠିରଙ୍କର ସ୍ୱର୍ଗମନରେ ନରକ ଦର୍ଶନକ୍ରମ କିଞ୍ଚିତ୍ ଅନ୍ୟଥା ହୋଇ ସୁଦ୍ଧା ମୂଳାନୁକୃତ ହୋଇଅଛି । ଏକାକୀ ଯୁଧିଷ୍ଠିରଙ୍କୁ ବ୍ରହ୍ମାଙ୍କ ଆଦେଶରେ ଇନ୍ଦ୍ରାଦି ଦେବତାମାନେ ଦେବସଭାରେ ଉପସ୍ଥିତ ହେବାକୁ ଆମନ୍ତ୍ରଣ କରିବା ସ୍ଥଳରେ ଧର୍ମଦେବତା କୁକ୍କୁର ସ୍ୱରୂପରେ ତାହାଙ୍କ ଅନୁଗତ ହୋଇ ଥିବାର ଲେଖି ଅଛନ୍ତି । ଯଥାର୍ଥତଃ ଶଂସିତ ଶ୍ୱାନଟି ଧର୍ମଦେବତାଙ୍କର ପ୍ରଚ୍ଛନ୍ନ ରୂପ କେବଳ । କିନ୍ତୁ ଏହି ଶ୍ୱାନ ଓ ଯୁଧିଷ୍ଠିରଙ୍କର ମିଳନର ସମୟ ମାତ୍ର ଏଥିରେ ଅନ୍ୟଥା ହୋଇଅଛି । ପରିଶେଷରେ ଯୁଧିଷ୍ଠିର ଦେବସଭାରେ ଉପବିଷ୍ଟ ହୋଇ ନିଜ ପ୍ରିୟଜନମାନଙ୍କୁ ଦୃଷ୍ଟିଗୋଚର କରିବାକ୍ରମ ପ୍ରାୟଶଃ ମୂଳାନୁମତ । ମୂଳଗ୍ରନ୍ଥରେ ଯେପରି ସ୍ୱର୍ଗରେ ପ୍ରଥମତଃ ଏକମାତ୍ର ଦୁର୍ଯ୍ୟୋଧନଙ୍କର ସୁ-ଶ୍ରୀକସ୍ଥାନାବସ୍ଥାନ ଦେଖି ସକୃତ୍ ଯୁଧିଷ୍ଠିରଙ୍କ ମନରେ ଅଶାନ୍ତିର ସଞ୍ଚାର ଉକ୍ତ ଅଛି, ଏଥିରେ ସେପରି ଭାବ ଉକ୍ତ ହୋଇନାହିଁ । ଯାହାହେଉ ସାରଳାଦାସେ ମହାପ୍ରାସ୍ଥାନିକ ପାଠରେ ନାନା ପ୍ରକାର ଅସଙ୍ଗତ ଘଟନା ମିଳାଇ ସୁଦ୍ଧା ସ୍ୱର୍ଗାରୋହଣ ପାଠକୁ ପ୍ରାୟଶଃ ମୂଳାନୁରୂପ କରି ଅଛନ୍ତି ।



## ଭାଷା ଓ ସାହିତ୍ୟ

ମହାଭାରତର ବିଷୟବୈଷମ୍ୟର ବିଚାରସନ୍ଦର୍ଭ ଶେଷ ହୋଇଅଛି । ପ୍ରୋକ୍ତ ମହାଗ୍ରନ୍ଥର ପ୍ରସାର ଅସୀମ ଥିବାରୁ ବିଚାରର ସିଦ୍ଧାନ୍ତ ସମାସତଃ ଲେଖି ଯାଉଁ ଯାଉଁ ସୁଦ୍ଧା ତାହାର କଳେବର ଟିକିଏ ବଢ଼ିଯାଇ ଅଛି । ଏପରି ହେବା ମଧ୍ୟ କଥଞ୍ଚିତ ଅସମ୍ଭବ ନୁହେ । ତଥାପି କେତେକ ପାଠକଙ୍କ ମନରେ ପଠନ-ଶ୍ରମରେ ଅସହିଷ୍ଣୁତା ଜନ୍ମି ହୃତ୍କମ୍ପ ପର୍ଯ୍ୟନ୍ତ ଘଟାଇ ଦେଇଅଛି । ଏ ବଡ଼ ଆଶ୍ଚର୍ଯ୍ୟର କଥା । ସେମାନେ ଯତ୍କିଞ୍ଚିତ୍ ଦୂରଦର୍ଶିତା ସହ ସମ୍ୟକ୍ ବିଚାର କଲେ ପ୍ରୋକ୍ତ ସନ୍ଦର୍ଭର ଅବୟବମାନ ଅପେକ୍ଷାକୃତ ଆହୁରି କିଞ୍ଚିତ୍ ବଢ଼ିବାର ଥିଲା, ଏହା ଅବଶ୍ୟ ବିଶ୍ୱାସ ସହିତ ସ୍ୱୀକାର କରିବେ । ସେ ଯାହାହେଉ, ବର୍ତ୍ତମାନ ସମାଲୋଚ୍ୟ ଗ୍ରନ୍ଥର ଭାଷା ଓ ସାହିତ୍ୟ ପ୍ରଭୃତିର ବିଚାର ଯଥାସମ୍ଭବ ସଂକ୍ଷିପ୍ତଭାବରେ ଲେଖିବାକୁ ପ୍ରବୃତ୍ତ ହେଉଅଛୁଁ । ଅଭିଜ୍ଞ ପାଠକେ ତଦୀୟ ଗୁଣଦୋଷାହରଣରେ ତତ୍ପର ହେବେ ।

ସାରଳା ମହାଭାରତ ଗ୍ରନ୍ଥର ଭାଷା ସର୍ବତ୍ର ଅତି ସରଳତା ଓ ପ୍ରାଞ୍ଜଳତାରେ ଏକପ୍ରକାର ଅଟେ । ଯେ କୌଣସି ଅଂଶ ଦେଖିବେ, ନିସର୍ଗ-ସୌନ୍ଦର୍ଯ୍ୟରେ ମନୋହର । ତତ୍କାଳୀନ ଓଡ଼ିଆ ଭାଷାର ଶୈଶବାବସ୍ଥାରେ ଏତାଦୃଶ ରମଣୀୟତା ଓ ସୌଷ୍ଠବର ଆବିର୍ଭାବ କେବଳ ସାରଳାଦାସ ମହାଶୟଙ୍କର ଅସାଧାରଣ ବୁଦ୍ଧିମତ୍ତା ଓ ସୁହୃଦୟତାର ଫଳ, ଏହା କହିବା ବାହୁଲ୍ୟ ମାତ୍ର । ଏହାଙ୍କ ସମୟର ଖୋଦିତ ଲିପି ଓ ଶାସନପତ୍ର ପ୍ରଭୃତିର ଭାଷା ସହ ଏହି ଭାରତୀୟ ଭାଷାର ତୁଳନା କରିନେଲେ ଏହା ଯେ କବିଙ୍କ ମତିମତ୍ତମତାରୁ ବହୁ ଗୁଣରେ ପରିମାର୍ଜିତ ଓ ପରିବର୍ଦ୍ଧିତ ହୋଇଅଛି, ଏହା ସମସ୍ତେ ଅବଶ୍ୟ ଅକୁଣ୍ଠିତାରେ ବିଶ୍ୱାସ କରିବେ । ଏହି ପ୍ରକାଣ୍ଡ ମହାଭାରତ ଗ୍ରନ୍ଥରେ କବି ମହୋଦୟ ନିଜର ପରମାରାଧ୍ୟ ଦେବତାସ୍ୱରୂପ ଅର୍ଦ୍ଧକଳ୍ପାପନ୍ନ ମାତୃଭାଷାକୁ ପରିପୁଷ୍ଟାଙ୍ଗ ଓ ସମାପ୍ତ-ସୌନ୍ଦର୍ଯ୍ୟ କରିବା ପାଇଁ ତାଦୃଶ କୌଣସି ଓଡ଼ିଆ ପୁସ୍ତକାଦିର ଆଶ୍ରୟ କିମ୍ବା ସାହାଯ୍ୟ ମଧ୍ୟ ପାଇପାରି ନ ଥିଲେ । କେବଳ ସ୍ୱକୀୟ ମତିମତ୍ତା ଓ ସୌହୃଦ୍ୟବଳକୁ ଆଶ୍ରୟ ଓ ସହାୟ କରି ଭାଷାକୁ ଏତେଦୂର ପରିପୁଷ୍ଟ କରି ଅଛନ୍ତି ଯେ, ପଞ୍ଚଶତାଧିକ ବର୍ଷ ବ୍ୟାପୀ ସଂସ୍କାର ଓ ସଂବର୍ଦ୍ଧନହେତୁ ଆଧୁନିକ ସାହିତ୍ୟର ଭାଷା ଯାଦୃଶ ସୌନ୍ଦର୍ଯ୍ୟ ସହ ମସ୍ତକୋତ୍ତୋଳନ କରି ସ୍ୱୀୟ ରୂପବତୀ ଭଗିନୀମାନଙ୍କୁ ଚମତ୍କୃତ କରୁଅଛି, ତଦପେକ୍ଷା ଏହାର ସୌନ୍ଦର୍ଯ୍ୟ

ଅଧିକ ନ୍ୟୂନ ନୁହେ । କେତେକ ଅଂଶ ମାତ୍ର ଛାଡ଼ିଦେଲେ ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ଭାଷାର ଇଦାନୀନ୍ତନ ରୂପ ଅପେକ୍ଷା ତଦାନୀନ୍ତନ ସହଜ ସୁନ୍ଦର ମୌଳିକ ରୂପରେ ଜାତୀୟତାର ଅଳଙ୍କାରମାନ ସମଧିକତଃ ଜାଜ୍ୱଲ୍ୟମାନ ରହିଅଛି । ଓଡ଼ିଆ ଭାଷାର ଏହି ଜାତୀୟ ଅଳଙ୍କାର ନିଚୟର ପ୍ରଧାନ ସୃଷ୍ଟିକର୍ତ୍ତା ସାରଳାଦାସ କବି କେବଳ, ଏହା କହିବା ଅତ୍ୟୁକ୍ତି ନୁହେ । କାରଣ ଏହାଙ୍କ ପୂର୍ବରୁ ଓଡ଼ିଆ ଭାଷାର ପ୍ରକୃତ ଗ୍ରନ୍ଥରୂପରେ ନ ଥିଲି, ଏହା କହିଲେ ଚଳେ । ଯାହା କିଛି ଥିବ, ତାହା ଅତି ସାମାନ୍ୟ ଓ ଅତିପ୍ରମିତ । ଏହାଙ୍କ ପୂର୍ବେ 'କେଶବ କୋଇଲି' 'ଗୋପୀଭାଷା' ପ୍ରଭୃତି କେତେକ ଅତି କ୍ଷୁଦ୍ର ପୁସ୍ତକ ଛଡ଼ା ଆଉ କିଛି ଥିବାର କେହି ଜାଣନ୍ତି ନାହିଁ । ଅତଏବ କହୁଁ, ସାରଳାଦାସେ କେବଳ ଓଡ଼ିଆ ଗ୍ରନ୍ଥର ପ୍ରାଥମିକ ପ୍ରବର୍ତ୍ତକ ଏବଂ ଓଡ଼ିଆ ଭାଷାର ପ୍ରଧାନ ପରିପୋଷକ ।

ପାଠକେ ! ବିଚାର କରନ୍ତୁ, ବର୍ତ୍ତମାନ ଯେ କୌଣସି ଭାଷା ବା ସାହିତ୍ୟରେ ଲେଖକଙ୍କର ଅଭିଜ୍ଞତାର ଉନ୍ନତି ସକାଶେ କେତେ ପ୍ରକାର ସୁଗମ ଉପାୟ ଓ ଉପକରଣମାନ ବୁଦ୍ଧି ସମକ୍ଷରେ ଉପସ୍ଥାପିତ ହେଲଣି; ଏହାର ଶତାଂଶରୁ ଏକ ଅଂଶ ସୌନ୍ଦର୍ଯ୍ୟ ସୁଦ୍ଧା ସାରଳାଦାସଙ୍କ ସମୟରେ ସୁପ୍ରାପ୍ୟ ନ ଥିଲା । ଯେ କୌଣସି ପ୍ରକାର ପ୍ରୟୋଗରେ ହୃଦୟ ସନ୍ଦିହାନ ହେଲେ, ତାହା ଅର୍ଦ୍ଧ କି ଗର୍ହ, ଏହା ଭାବିବାକୁ ଆଦର୍ଶରୂପେ ଖଣ୍ଡିଏ ସୁଦ୍ଧା ଓଡ଼ିଆ ପୁସ୍ତକ ନ ଥିଲା, କେବଳ ସ୍ୱକୀୟ ଅସାମାନ୍ୟ ବୁଦ୍ଧିକୁ ସମ୍ବଳ କରି ସାରଳାଙ୍କ ବରପୁତ୍ର ଭାଷାକୁ ଏପରି ସୁନ୍ଦର କରିପାରି ଅଛନ୍ତି, ଏଥିରେ କି କାହାର ଅବିଶ୍ୱାସ ହୋଇପାରେ ? ଆଜକାଲି ଯେତେ ଲେଖକ ବା କବି ଅଛନ୍ତି, ସେମାନଙ୍କ ମଧ୍ୟରୁ କେତେ ଜଣ ଏତାଦୃଶ ଅନନ୍ୟାଶ୍ରୟ ରହି ପ୍ରଗାଢ଼ କର୍ମଠବ୍ରତରେ ବ୍ରତୀ ହୋଇ ସିଦ୍ଧି ଲାଭ କରି ପାରିବେ ? ଆମ୍ଭମାନଙ୍କ ମଧ୍ୟରୁ କେତେ ଜଣ ଗୋଟିଏ କଷ୍ଟିତ ଅସାଧାରଣ ଶବ୍ଦ ମାତ୍ରର ନିଃସନ୍ଦିଗ୍ଧ ଅର୍ଥ ପ୍ରତିପତ୍ତି ପାଇଁ ଶବ୍ଦକୋଷ ଆଲୋଡ଼ନ କରୁ ନାହାନ୍ତି ? ଗୋଟିଏ ପ୍ରୟୋଗ ଦୋଷଶୂନ୍ୟ କି ନା, ଜାଣିବା ପାଇଁ ବ୍ୟାକରଣର ପୃଷ୍ଠାମାନ ଲେଉଟାଇ ସୁଦ୍ଧା ସନ୍ଦିଗ୍ଧମନା ହେଉ ନାହାନ୍ତି ? ଅଥଚ ପ୍ରୟୋଗଟି ସାଧୁମତ ରଖି ଜାଣିବା ପାଇଁ ପୂର୍ବ କବିମାନଙ୍କ କାବ୍ୟ ନାଟକାଦିର ଆଶ୍ରୟ ନେଉ ନାହାନ୍ତି କିମ୍ବା ତଦେକଶରଣ ହେଉ ନାହାନ୍ତି ? ଏ ସବୁ ଉପାୟ ଓ ଉପକରଣ ସାରଳାଦାସଙ୍କ ସମୟରେ ଥିଲା ? ଏତାଦୃଶ ଆଶ୍ରୟ ସହାୟ ଉପାୟାଦିର ଅଭାବ ସତ୍ତ୍ୱେ ଏ ମହୋଦୟ ନିଜର ନିରଳସ ବୁଦ୍ଧିମତ୍ତା, ପ୍ରତ୍ୟୁତ୍ପନ୍ନମତିମତ୍ତା ଓ ସୂକ୍ଷ୍ମଦର୍ଶିତାର

ବଳରୁ ଏକାଂଧାରରେ ପ୍ରାପ୍ତ ଷାଠିଏ ସହସ୍ର ପଦ ଏକରୂପ କରି ଲେଖି ଯାଇ ଅଛନ୍ତି । ଆପଣମାନେ ଏହି ଭାରତର ଯେ କୌଣସି ଅଂଶ (ଯାହା କି ଅନୁଲେଖକଙ୍କ କର୍ତ୍ତୃକ କଳୁଷିତ ହୋଇନାହିଁ) ମିଳାଇ ଦେଖନ୍ତୁ, ସର୍ବତ୍ର ଭାଷା ପରିପାଟୀର ଅନ୍ୟୋନ୍ୟାନୁରୂପତା ଏବଂ କବିଙ୍କର ବୁଦ୍ଧି ଓ ଶକ୍ତିର ନିରଳସତା ପରିସ୍ଫୁଟ ପ୍ରଣୀତମାନ ହେଉଅଛି, ଜାଣି ପାରିବେ ।

ସାରଳାଦାସ କବିଙ୍କ ସମୟରେ ଓଡ଼ିଆ ଭାଷାର ଶାରୀରିକ ଅବସ୍ଥା ଅତି ଶୈଶବଭାବାପନ୍ନ ଥିଲା । ସେତେବେଳେ ସଂସ୍କୃତ ଭାଷା ରାଜ୍ୟରେ ସଂସ୍କୃତ ଓ ପ୍ରାକୃତ ଭାଷା ସମ୍ପୂର୍ଣ୍ଣତଃ ଆଧିପତ୍ୟ ସ୍ଥାପନ କରିଥିଲା । ଅତଏବ ସେ ଉଭୟର ଶାସନାନୁସାରେ ଅଥଚ ତଦୀୟ ଦତ୍ତଦ୍ରବ୍ୟ ବା ସମ୍ପତ୍ତିରେ ଅପରିପୁଷ୍ଟାଙ୍ଗ ଓଡ଼ିଆ ଭାଷାଟିକୁ ପରିପୋଷଣ କରିବାକୁ ହୋଇଥିଲା । ମାତ୍ର ଏହାର ଶାରୀରିକ (୧) ଯୋଗଜ ବଳ ଓ ବାହ୍ୟ ଗୃହୀତବାକ୍ୟ ସଂସ୍କୃତ ଭାଷା ଅପେକ୍ଷା ବିଶେଷତଃ ପ୍ରାକୃତର ଅନୁରୂପ ହୋଇ ଉଠିଲା । ଏହା ଏହି ଭାଷାର ନୈସର୍ଗିକ ଗୁଣ । ସେତେବେଳେ ସମୟରେ ଓଡ଼ିଆ ଭାଷାରେ ପ୍ରାକୃତ ସତ୍ତ୍ୱ ସମଧିକ ଥିବାରୁ ଏହାର ଆଦିମ ଗ୍ରନ୍ଥ ଏହି ମହାଭାରତରେ ବହୁ ସ୍ଥଳରେ ସଂସ୍କୃତ ଭାଷା ଅପେକ୍ଷା ପ୍ରାକୃତର ସ୍ୱୀକୃତମତେ ଅନେକଧା ଶବ୍ଦ ବିଭକ୍ତି କ୍ରିୟା ପ୍ରଭୃତିର ପ୍ରୟୋଗମାନ ନିହିତ କରାଯାଇ ଅଛି । ବୋଧହୁଏ, ସେହି ସମୟରେ (ପ୍ରାକୃତ ଭାଷାର ଆଘାତପ୍ରାପ୍ତ ଓଡ଼ିଆ ଭାଷାର ଶୈଶବାବସ୍ଥାରେ) ବ୍ୟାବହାରିକ ଭାଷାରେ ଯାହା ଯାହା ଚଳୁଥିଲା, ସେ ସବୁ ସାରଳାଦାସ କବି ଅବଶ୍ୟ ପ୍ରୟୋଜନାନୁସାରେ କିଛି ସଂସ୍କାର କରି ଲିଖିତ ଭାଷାରେ ଚଳାଇ ଅଛନ୍ତି । ତାହା ନ ହେଲେ ସାମ୍ପ୍ରତିକ ଶବ୍ଦ ବିଭକ୍ତି ଓ କ୍ରିୟା ପ୍ରଭୃତିରେ ଏତେ ସାଦୃଶ୍ୟ ଲକ୍ଷିତ ହୁଅନ୍ତା ନାହିଁ । ଏହି ମହାଭାରତରେ ଯେଉଁ ଯେଉଁ ବିଭକ୍ତି ପ୍ରତ୍ୟୟାଦିର ପ୍ରୟୋଗ ନିହିତ କରାଯାଇ ଅଛି, ଅଥଚ ସେଥି ମଧ୍ୟରୁ ଆଧୁନିକ ଭାଷା ବା ସାହିତ୍ୟରେ ଯାହା ଯାହା ପ୍ରଚଳିତ ନୁହେ, ସେ ସବୁ ତତ୍ପରବର୍ତ୍ତୀ ଶ୍ରୀ ବଳରାମଦାସ ପ୍ରଭୃତି କବିମାନେ ମଧ୍ୟ ପୂର୍ବପ୍ରଦର୍ଶିତ ପନ୍ଥାନୁକରଣରେ ବ୍ୟବହାର କରି ଅଛନ୍ତି । ଶ୍ରୀମାନ୍ ସାରଳାଦାସଙ୍କ ପ୍ରବର୍ତ୍ତିତ ଓଡ଼ିଆ ପ୍ରୟୋଗ ପ୍ରଣାଳୀର ବିଶେଷତ୍ୱ ଶ୍ରୀମଦ୍‌ଭାଗବତ ରଚୟିତା ଶ୍ରୀ ଜଗନ୍ନାଥଦାସଙ୍କ ସମୟ ପର୍ଯ୍ୟନ୍ତ ପ୍ରାୟଶଃ ଅକ୍ଷୁର୍ଣ୍ଣ ଥିଲା । କାବ୍ୟ ପ୍ରବନ୍ଧ ପ୍ରଣେତା ଶ୍ରୀ ଉପେନ୍ଦ୍ର ଭଞ୍ଜ

(୧) ବଳ ତ୍ରିବିଧ । ସହଜ, କାଳଜ, ଯୁକ୍ତିଜାତ ବା ଯୋଗଜ – ଇତି ଆୟୁର୍ବେଦ ।

ପ୍ରଭୃତିଙ୍କ ସମୟରୁ ସେଥିରୁ କେତେକ ଅଂଶ ପରିବର୍ତ୍ତିତ ଓ ପରିତ୍ୟକ୍ତ ହୋଇ ଯାଇଅଛି ।

ଏ ସ୍ଥଳରେ ପ୍ରଥମତଃ ସାରଳା-ମହାଭାରତୀୟ ଭାଷାରେ ସଂସ୍କୃତ ଓ ପ୍ରାକୃତର ଅନୁକରଣରେ ଯେଉଁ ଯେଉଁ କାରକ ବା ଶବ୍ଦ ବିଭକ୍ତିମାନଙ୍କର ପ୍ରୟୋଗ ପ୍ରଣାଳୀ ଏବଂ ବହୁଧା କ୍ରିୟାମାନଙ୍କର ଯୋଗ-ପରିପାଟୀର ବିଶେଷତ୍ୱ ନିହିତ ଅଛି, ତାହାର ଦିଗ୍‌ଦର୍ଶନ କ୍ରମରେ କ୍ରମଶଃ ବିଚାର କରାଯାଉ । ଅଭିଜ୍ଞ ପାଠକଗଣ ସର୍ବଦା ନିମ୍ନରେ ଉଦ୍ଧୃତ ପ୍ରମାଣ ବାକ୍ୟଗୁଡିକୁ ଧରି ବିଚାରରେ ପ୍ରବୃତ୍ତ ହୁଅନ୍ତୁ । ସଂସ୍କୃତରେ କେତେକ କୃତ୍ ପ୍ରତ୍ୟୟ ଯୋଗେ ମାତ୍ର କର୍ତ୍ତାର ଷଷ୍ଠୀ ବିଭକ୍ତି (ପ୍ରଥମାର୍ଥରେ ଷଷ୍ଠୀ) ହେଉଥିବାରୁ ଏ କବି ମହାଶୟ ତାଦୃଶ ପ୍ରୟୋଗାନୁ-କରଣରେ ଅନେକ ସ୍ଥଳରେ ଅନ୍ୟାନ୍ୟ କ୍ରିୟାଯୋଗେ ମଧ୍ୟ ତାହାହିଁ କରିଦେଇ ଅଛନ୍ତି । (୧) ତତ୍‌ପରବର୍ତ୍ତୀ ବଳରାମଦାସ ପ୍ରଭୃତି ସୁଦ୍ଧା ତନ୍ନିର୍ଦ୍ଦିଷ୍ଟ ପଥରେ ପଥିକ ହୋଇ ବହୁ ଦୂର ଚାଲିଯାଇ ଅଛନ୍ତି । ତାତ୍କାଳିକ ଦୈଶିକ ଭାଷାର ବ୍ୟବହାରରେ ପ୍ରାକୃତାନୁସରଣରେ ‘ନ୍ତି’ ଓ ‘ନ୍ତ’ ଏବଂ ‘ତହିଁକ’ ପ୍ରତ୍ୟୟାନ୍ତ ପଦମାନ ଦ୍ୱିତୀୟାର୍ଥ ବ୍ୟଞ୍ଜକରୂପେ ବ୍ୟବହୃତ ହେଉଥିବାରୁ ଏ ମହାଶୟ ସେ ସବୁ ମଧ୍ୟ ଲିଖିତ ଭାଷାରୂପରେ ସମ୍ୟକ୍ ଚଳାଇ ନେଇ ଅଛନ୍ତି ଏବଂ ‘ତୁ’ ଓ ‘ମୁ’ ପଦରେ ଦ୍ୱିତୀୟାର ‘କୁ’ ଯୋଗପୂର୍ବକ ‘ତୁକୁ’ ‘ମୁକୁ’ କରି ଯୁଷ୍ମଦ୍ ଓ ଅସ୍ମଦ୍

---

(୧) ୧— ଦୁର୍ଲଭ କଥା କହିଲୁ ମାଗୋ ଏମନ୍ତ ପ୍ରକାର ।
ଆମ୍ଭର ଲଙ୍ଘିଲେ ଗୋ ନାଶ ଯିବ ସଂସାର ॥ ଆ· ପ·
ଆମ୍ଭର ଲଙ୍ଘିଲେ = ଆମ୍ଭେ ଲଙ୍ଘିଲେ ।

୨— ଆମ୍ଭର ବୋଇଲି ବୋଲ ହକାରି ବ୍ୟଗ୍ରେ ଆଣି । ବ· ପ·
ଆମ୍ଭର ବୋଇଲି ବୋଲ = ଆମ୍ଭେ ବୋଇଲୁଁ ବୋଲ ।

୩— ତୋହର ଧନୁ ଧରନ୍ତେ ହାସ କରନ୍ତି ଦେବ ହରି । ଖି· ପ·
ତୋହର ଧନୁ ଧରନ୍ତେ = ତୁ ଧନୁ ଧରନ୍ତେ ବା ଧଇଲେ ।

୪— ଇନ୍ଦ୍ର ଶଙ୍କା କରଇ ତୋହର ଧନୁ ଧରୁଁ । ଖି· ପ·
ତୋହର ଧନୁ ଧରୁଁ = ତୁ ଧନୁ ଧରନ୍ତେ ।

୫— ତୋହର ଥାନ୍ତେ ପାଣ୍ଡବେ ନାଶ ଗଲେ କେମନ୍ତେ । ଆ· ପ·
ତୋହର ଥାନ୍ତେ = ତୁ ଥାଉଁ ଥାଉଁ । ଇତ୍ୟାଦି ।

ଶବ୍ଦର ଦ୍ୱିତୀୟାବୋଧକ ପଦ ନିଷ୍ପନ୍ନ କରିଦେଇ ଅଛନ୍ତି । (୧) କିନ୍ତୁ ଏ ସବୁ ବହୁ କାଳରୁ ଅନ୍ତର୍ହିତ ହୋଇ ଯାଇଲାଣି ।

ଇତଃପୂର୍ବେ ଏହି ପତ୍ରିକାର ସପ୍ତମ ଭାଗ ଚତୁର୍ଥ ସଂଖ୍ୟାରେ ଏବଂ ନବମ ଭାଗ ପ୍ରଥମ ସଂଖ୍ୟାରେ ମୋର ଶ୍ରଦ୍ଧାସ୍ପଦ ବନ୍ଧୁଦ୍ୱୟ ପ୍ରସ୍ତାବତଃ ସୂଚନା କରି ଅଛନ୍ତି କି, ଏ କବି ମହାଶୟ ନିଜ ଭାଷାରେ ଦ୍ୱିତୀୟା ଓ ଚତୁର୍ଥ ଅର୍ଥବ୍ୟଞ୍ଜକ-ରୂପେ "କଇ" ପ୍ରତ୍ୟୟାନ୍ତ ପଦମାନ ପ୍ରୟୋଗ କରି ଅଛନ୍ତି । କିନ୍ତୁ ଉଭୟ ସୂଚିତ ପ୍ରତ୍ୟୟର ପ୍ରମାଣ ଉଦ୍ଧୃତ କରିପାରି ନାହାନ୍ତି । 'ପୁତ୍ରକଇ' = 'ପୁତ୍ରକୁ' ଏତିକି ମାତ୍ର ପ୍ରମାଣରୂପେ ଦେଇ ଅଛନ୍ତି । ଆମ୍ଭେ ଆମୂଳାନ୍ତ ସାରଳା ଭାରତ ଯତ୍କିଞ୍ଚିତ୍ ସାବଧାନତାପୂର୍ବକ ପାଠ କରିଅଛୁଁ । ପ୍ରମାଣ ଉଲ୍ଲେଖ କରିବାକୁ କୁତ୍ରାପି 'କଇ' ପ୍ରତ୍ୟୟାନ୍ତ ପଦ ପାଇପାରୁ ନାହୁଁ । କେଜାଣି ଆମ୍ଭର ଅସାବଧାନ ପାଠ ସମୟରେ ତାଦୃଶ ପଦମାନ ଦୃଷ୍ଟିର କମ୍ବା ମନର ଅନ୍ତରାଳରେ କୁତ୍ରାପି ଯାବନ୍ତ୍ରି ରହିଯାଇ ଥାଇ ପାରେ । (୨) ଯାହାହେଉ ବିଶ୍ୱାସ କରି ନ ପାରୁଁ ଯେ,

(୧) ୧— ମହାଭାରି ଉଦ୍ଧାରିବେ ସେ ପାଣ୍ଡବନ୍ତ ଘେନ । ଉ. ପ.
ପାଣ୍ଡବନ୍ତ = ପାଣ୍ଡବମାନଙ୍କୁ ।

୨— ଅଭେଦ କବଚ ବଜ୍ରଛତ୍ରହିଁ ଅମୃତକୁଣ୍ଡଳ ।
ତିନନ୍ତ ଘେନ ରଥେ ବିଜେ ଆଖଣ୍ଡଳ ॥ ଉ. ପ.

୩— ପୁରୋହିତ ବୋଇଲେ ଜୟଦ୍ରଥ ଭୂହିଟିକି ।
ଆମ୍ଭେ ଯେ ଅଇଲୁ ତୋହର ତର୍ହିଁକି ॥ ବ. ପ.

୪— ବିଜେ କର୍ଣ୍ଣକୁଣ୍ଡଳ ଯେ ମେରୁ ଶୂଳ ହେଲା ମୁକୁ । ଉ. ପ.
ତୁମ୍ଭଙ୍କୁ ଜିଣିଲେ ରାଜ୍ୟ ପ୍ରାପତ ହୁଏ ମୁକୁ । ଭୀ. ପ.
କୋପ କରି ଶାପ ଦେଲି ମୁଁ ଅର୍ଜୁନକୁ ।
ରାଗେ ବୋଇଲି ପୁଂସତ୍ୱ ନୋହୁ ତୁକୁ ॥ ବ. ପ.

ଇତ୍ୟାଦି ।

(୨) ଏହି 'କଇ' ପ୍ରତ୍ୟୟର ବ୍ୟବହାର ଶ୍ରୀ ବଳରାମଦାସେ ନିଜ ରାମାୟଣରେ ସମଧିକ ଚଳାଇ ଅଛନ୍ତି । ବୋଧହୁଏ ଏ ମହାଶୟ କେବଳ ଏହି ପ୍ରତ୍ୟୟର ସୃଷ୍ଟିକର୍ତ୍ତା । ଯଦିତ ଏହି ଭାରତରେ ସେହି ପ୍ରତ୍ୟୟର

ସାରଳାଦାସ ମହୋଦୟ ସାପ୍ରତକ ସ୍ୱାକୃତ୍ୟରେ ଅପ୍ରଚୁର ଅନ୍ୟାନ୍ୟ ପ୍ରାଚୀନ ପ୍ରତ୍ୟୟାନ୍ତ ପଦମାନଙ୍କ ପରି 'କଇ' ପ୍ରତ୍ୟୟାନ୍ତ ପଦମାନ ଅସକୃତ୍ ପ୍ରୟୋଗ କରି ଅଛନ୍ତି । ପରନ୍ତୁ ପ୍ରୋକ୍ତ 'କଇ' ପ୍ରତ୍ୟୟର ମୂଳ ପ୍ରକୃତ ସଂସ୍କୃତ 'କୃତେ' ପଦକୁ ଚତୁର୍ଥୀ ଅର୍ଥରେ ଅନେକସ ବ୍ୟବହାର କରି ଅଛନ୍ତି । ଯଥା—

ରଜନୀ ଶେଷେ ଭୀମଙ୍କୁ ପୁଛିଲେ ଯୁଧିଷ୍ଠି ।
ନତ୍ୟକର୍ମକୃତେ ବାବୁ ଦେଖ ଜଳଧାଟୀ ॥ ଆ. ପ.

ପ୍ରାକୃତରେ ଷଷ୍ଠୀ ଓ ଚତୁର୍ଥୀ ବିଭକ୍ତିର ପ୍ରଭେଦ ରହେନାହିଁ । ତଦନୁସରଣରେ ତଦନ୍ୱିତ ପ୍ରାଚୀନ ଓଡ଼ିଆ ଭାଷାରେ ସାରଳାଦାସଙ୍କ ସମୟରୁ ଷଷ୍ଠୀ ପରିବର୍ତ୍ତେ ଚତୁର୍ଥୀ ବିଭକ୍ତିର ପ୍ରୟୋଗ ଚଳି ଆସୁଅଛି । (୧) ତଥାଚ ଏହି ମହାଶୟ ଏହାଛଡ଼ା ଆଉ କେତେକ ପ୍ରକାର ସଂସ୍କୃତରୁ ଅବିକଳାନୁକୃତ ଚତୁର୍ଥୀର ରୂପକୁ ସୁଦ୍ଧା (୨) ବହୁ ସ୍ଥଳରେ ବ୍ୟବହାର କରି ଅଛନ୍ତି । ଅଦ୍ୟାପି ସୁଦ୍ଧା ସେହି ସଂସ୍କୃତାନୁକୃତ ଚତୁର୍ଥୀ ପ୍ରୟୋଗ ପରିପାଟୀ ଭାଷାରେ ପ୍ରଚଳିତ

---

ବ୍ୟବହାର ଥାଏ, ତେବେ ତାଳପତ୍ର ପୁସ୍ତକରୁ ମାନ କେହିହେଲେ ଦୟାପୂର୍ବକ ପ୍ରଦର୍ଶନ କରାଇ ଦେଇ ଚିରବାଧିତ କରନ୍ତୁ, ଏହାହିଁ ପ୍ରାର୍ଥନା ।

(୧) ତୋତେ ନ କହି ମୁଁ ଯିବି କେମନ୍ତେ ।
ତୋହର ଆଜ୍ଞା ଶିରୋଧାର୍ଯ୍ୟ ମୋତେ ॥ ଜ. ପ.

କୌରବ ବଂଶେ ତୁହି ମୋତେ ଯେ ସୁହୃଦ ।
ତୋହର ଥାନ୍ତେ କେହି ନ କଲେ ପ୍ରମାଦ ॥ ଆ. ପ.

ଇତ୍ୟାଦି ।

(୨) ପୁତ୍ର କୋଳେ ଧରି ଗଙ୍ଗେ ହୋଇଲେ ବାହାର ।
ଗଙ୍ଗାଙ୍କୁ ଲୁଚିଇ ଦେଲେ ସତ୍ୟବତୀ କୋଳ ॥ ଆ. ପ.

ଈଶ୍ୱର ବୋଇଲେ ତୁହି କାହାକୁ ତପ କରୁ । ସ. ପ.

ଇତ୍ୟାଦି ।

ଏତାଦୃଶ ଚତୁର୍ଥୀର ତତ୍ତ୍ୱବିଷୟର ମତ୍କର୍ତ୍ତୃକ ରଚିତ ଓଡ଼ିଆ ଭାଷାତତ୍ତ୍ୱର ଓଡ଼ିଆ ବିଭକ୍ତି ପ୍ରକରଣରେ ଦେଖନ୍ତୁ, ପାଇ ପାରିବେ ।

ଅଛୁ । ଏହାଙ୍କ ରଚିତ ଗ୍ରନ୍ଥ ମଧ୍ୟରେ ଯାହାରେ, ତାହାରେ, କାହାରେ, ଆମ୍ଭରେ, ତୋହରେ ଇତ୍ୟାକାରକ ତୃତୀୟାର୍ଥ ବୋଧକ ପଦମାନ ଏବଂ ବିଶେଷ୍ୟ ଆଉ ସର୍ବନାମରୁ ଉତ୍ତର ପଞ୍ଚମୀ ଓ ସପ୍ତମୀ ବୋଧନାର୍ଥ ଉପବିଭକ୍ତିକ ପ୍ରତ୍ୟୟସ୍ୱରୂପ 'ତହୁଁ' ଓ 'ତହିଁକ' ଓ 'ତହିଁ' ଏହି ପଦମାନ ବହୁ ସ୍ଥଳରେ ବ୍ୟବହୃତ ହୋଇ ଆସିଅଛି । (୧) ବର୍ତ୍ତମାନ ଏତାଦୃଶ ପ୍ରୟୋଗ ଖୁବ୍ ସଂଯତ ହୋଇ ଆସିଲାଣି ସତ୍ୟ, ମାତ୍ର ଏହାଙ୍କ ପରବର୍ତ୍ତୀ ପ୍ରାଚୀନ କବିମାନେ ଏଭଳି ପ୍ରୟୋଗର ସମ୍ପୂର୍ଣ୍ଣତଃ ପକ୍ଷପାତୀ ଥିଲେ । ସାରଳା ମହାଭାରତର ରଚନା ସମୟକୁ ଓଡ଼ିଆ ଭାଷାର ପ୍ରାକୃତାନୁଗାମିତା ସମଧିକ ଥିବାରୁ ତତ୍ପ୍ରିୟ ଶାନ୍ତମତେ ଆକାରାନ୍ତ ଶବ୍ଦରୁ ଉତ୍ତର 'ଏ' ବିଭକ୍ତି ପ୍ରତ୍ୟୟ ଯୋଗ, ସପ୍ତମୀ ବିଭକ୍ତି ବ୍ୟଞ୍ଜକରୂପେ 'ଇ' ପ୍ରତ୍ୟୟ ଯୋଗ, ବ୍ୟକ୍ତିବାଚକ ବୋଧନାର୍ଥ ସ୍ଥଳରେ ସୁଦ୍ଧା ଯାହା, କାହା ପ୍ରଭୃତି ସର୍ବନାମର ବ୍ୟବହାର ଏବଂ ବିଶେଷଣକୁ ପଶ୍ଚାତ୍ ବିଭିନ୍ନ ରଖି ବିଶେଷ୍ୟକୁ ବିଶିଷ୍ଟାଦି ବିଭକ୍ତିରେ ଯୁକ୍ତ କରିବା କିମ୍ବା ସେହି ସେହି ବିଭକ୍ତିର ଅର୍ଥରେ ଯୁକ୍ତ ରଖିବାର

---

(୧) ୧— ଭ୍ରମର ପ୍ରତିଜ୍ଞା କହିତ କି ପାର ।
ଯାହାରେ ପାତାଳେ ପଶିଲା ଶତଶୃଙ୍ଗ ଗିରି । ୪. ମ.
ବିପତ୍ତି କାଳେ ଆମ୍ଭରେ ପାଇଲୁ ଗୋ ଦୁଃଖ । ଆ. ପ.
ଆମ୍ଭରେ=ଆମ୍ଭଦ୍ୱାରା ।

୨— ଯୋଗପୁରୁଷ ତହୁଁ ଜନ୍ମିଲେ ଗାୟତ୍ରୀ ।
ଯାଙ୍କ ତହୁଁ ଜାତହେଲେ ମହାମନ୍ତ୍ର ସ୍ୱର ॥ ଆ. ପ.

୩— ମୀଳ ଯେହ୍ନେ ପଦ୍ମରେ ପଡ଼ନ୍ତେ ତ୍ରଳହଳ ।
ତହିଁକ ଶୋଭାବନ କଞ୍ଚନ ରୋମାବଳୀ ॥ ମ. ପ.
ତହିଁକ=ତାହାଠାରୁ ବା ତଦପେକ୍ଷା ।

୪— ତାତହିଁ ଅଛି ଅଭେଦକବଚ ବଜ୍ରକୁଣ୍ଡଳ ଅମୃତକୁଣ୍ଡଳ । ବ. ପ.
ସେମାନଙ୍କ ତହିଁ କୃପଣ ନୋହିବୁ ତୁ ରାଜା । ଶା. ପ.
ଇତ୍ୟାଦି ।

କ୍ରମ ଏଥିରେ ଅନେକତ୍ର ବ୍ୟବହୃତ ହୋଇଅଛି । (୧) ଏ ସବୁ ବର୍ତ୍ତମାନ ତାଦୃଶ ପ୍ରୟୋଗାର୍ହ ନୁହେ ସତ୍ୟ ମାତ୍ର ପ୍ରାୟଶଃ ସମସ୍ତ ପ୍ରାଚୀନ ପୌରାଣିକ କବିମାନେ ଆଦିକବିଙ୍କ ପ୍ରଥାନୁଗତ ହୋଇ ଅଛନ୍ତି ।

ପ୍ରାଚୀନ ଓଡ଼ିଆ ଭାଷାରେ ଶାବ୍ଦ ବିଭକ୍ତି ପ୍ରତ୍ୟୟାନ୍ତ ପଦମାନଙ୍କ ପରି କ୍ରିୟା ବିଭକ୍ତି-ଯୁକ୍ତ ପଦମାନ ମଧ୍ୟ ତାତ୍କାଳିକ ବ୍ୟାବହାରିକ ଭାଷାର ଅନୁଗୁଣ ଓ ପ୍ରାକୃତାନୁଗତ । ସେହି ସମୟରେ ଓଡ଼ିଆ ଭାଷାସହ ପ୍ରାକୃତର ସମ୍ବନ୍ଧ ଅଧିକ ଥିବାରୁ ସେ କାଳେ ସାହିତ୍ୟିକ ବଳସତ୍ତ୍ୱରେ ପ୍ରବଳ ଓ ପରିପକ୍ୱ ନ ଥିବାରୁ ତଥାତ ତଦାନୀନ୍ତନ ବ୍ୟାବହାରିକ ଭାଷାର କ୍ରିୟା ପ୍ରଭୃତି ପଦମାନ ନିୟମତଃ ନିର୍ଦ୍ଦିଷ୍ଟ କରାଯାଇ ନ ଥିବାରୁ (ଏପରି ଅବସ୍ଥାରେ ପ୍ରାୟ ସମସ୍ତ ଭାଷାରେ ବିଶେଷତଃ କ୍ରିୟାପଦଗୁଡ଼ିକ ନିୟମ ରହିତ ଥାଏ ।) ତଦାଶ୍ରୟୀଭୂତ ସଂସ୍କୃତ ଏବଂ ତଜ୍ଜନିତ ପ୍ରାକୃତର ଅନୁସରଣରେ ଏହାର କେତେକ କ୍ରିୟାପଦମାନଙ୍କର ବ୍ୟବହାର ଓ ତାହାର (ସଂସ୍କୃତ ଓ ପ୍ରାକୃତର) ଅବିକଳ ଭାବମତେ ଚାଲିଅଛି । ଏହା ଯେ କେବଳ ସାରଳାଦାସଙ୍କ ରଚନାରେ, ଏହା ନୁହେ; ଜଗନ୍ନାଥଦାସଙ୍କ ପର୍ଯ୍ୟନ୍ତ କାଳର ନ୍ୟୂନାଧିକତଃ ଚାଲି ଆସି ତତ୍ପରସ୍ତାତ୍ ଶିଥିଳତାକୁ ଭଜିଅଛି । ମାଗଧୀ ପ୍ରଭୃତି ପ୍ରାକୃତ ଭାଷାରେ ଖାଦନ୍ତି, ଗାୟନ୍ତି, ପିବନ୍ତି, ପ୍ରାପ୍ନାବନ୍ତି ପ୍ରଭୃତି ସ୍ଥଳରେ ଖାବନ୍ତି, ଗାବନ୍ତି, ପିବନ୍ତି, ପାବନ୍ତି ଇତ୍ୟାଦି ହୋଇଥାଏ । ତଦନୁଗତ ଏହି

---

(୧) ୧— ବହୁତ ବୁଝାଇ ଦେବ କହିବୁ ସଭାଏ । ଉ. ଗ.
ଦୁର୍ବାଶା ପ୍ରବେଶ ହେଲେ ଦ୍ୱାରକାଏ । ଶା. ପ.

୨— ପ୍ରବେଶ ହେଲେ ମତ୍ସ୍ୟରାଜ ଦେଶଇ । ଉ. ପ.
ବଣା ହୋଇ ପଡ଼ିଲି ମୁଁ ତୁମ୍ଭର ହସ୍ତଇ । ବ. ପ.

୩— ଦ୍ୱାରରକ୍ଷାପାଳ କରିବାକ କାହା ।
ହେ ଯୁଧିଷ୍ଠିର ଏକା ତୁମ୍ଭେ ହୋଇବାକ ସାହା । ଅଶ୍ୱ. ପ.

୪— ଅନେକ ବ୍ୟାକୁଳ ହୋଇଲା ମେଦିନୀ ।
ଅନେକ ଉତ୍ପାତ ହୋଇଲା ଭୁବନ ତିନି । ବ. ପ.

ଭୁବନ ତିନି = ତିନି ଭୁବନରେ ।

ମହାଭାରତୀୟ ଭାଷାରେ ଅନେକସ୍ଥ ତାହାଙ୍କ ଅବିକଳ ବ୍ୟବହୃତ ହୋଇଅଛି । (୧) ସଂସ୍କୃତରେ ଗଚ୍ଛସି, ବଦସି ପ୍ରଭୃତି ମଧ୍ୟମପୁରୁଷୀୟ କ୍ରିୟାପଦମାନଙ୍କ ଅନ୍ତରେ 'ସି' ବା 'ଅସି' ଥାଏ । ତଦନୁସମ୍ଭୂତ ପ୍ରାକୃତରେ ମଧ୍ୟ ହୋସି, ଦେସି ପ୍ରଭୃତି ସ୍ଥଳରେ ପ୍ରୋକ୍ତ 'ସି' ଯୁକ୍ତ ହୋଇଥାଏ । ଅତଏବ ସଂସ୍କୃତ ଓ ପ୍ରାକୃତର ସମ୍ବନ୍ଧରେ ଘନିଷ୍ଠତମ ପ୍ରାଚୀନ ଓଡ଼ିଆ ଭାଷାରେ ଶୈଶବ ଲୀଳାସ୍ଥଳୀ ଏହି ମହାଭାରତରେ ତାଦୃଶ କ୍ରିୟାପଦମାନଙ୍କର ବ୍ୟବହାର ମଧ୍ୟ ଏକାନ୍ତ ବିରଳ ନୁହେ । (୨) ମୂଳ ସଂସ୍କୃତର ଅନୁକରଣରେ ହେଉ କିମ୍ବା ତଦ୍ଭବ ପ୍ରାକୃତାନୁକରଣରେ ହେଉ, ମଧ୍ୟମପୁରୁଷରେ ତାଦୃଶ କ୍ରିୟାନୁଯୋଗ ସାମୟିକ ଭାବ ଅନୁସାରେ ସାଧୁ; ପରନ୍ତୁ ପ୍ରଥମ ପୁରୁଷ କିମ୍ବା (ଓଡ଼ିଆରେ ଭୃତୀୟ ପୁରୁଷ) ତତ୍‌ଶବ୍ଦର ପଦସହ ଅନ୍ୱିତ କରିବା ଉଚ୍ଛୃଙ୍ଖଳତାସୂଚକ ନୁହେ ବୋଲି କହି ନ ପାରୁଁ । (୩) ଇଦାନୀନ୍ତନ ମୌଖିକ ଓ ଲିଖିତ ଭାଷାରେ 'ଜାଣିବ' କିମ୍ବା 'ଜାଣିବେ' 'ଲେଖିବ' କିମ୍ବା 'ଲେଖିବେ', ଇତ୍ୟାଦି ଅର୍ଥରେ 'ଜାଣିବାହେବେ', 'ଜାଣିବାହେଉ', 'ଲେଖିବାହେବେ', 'ଲେଖିବାହେଉ' ଇତ୍ୟାଦି କ୍ରିୟାରୂପମାନଙ୍କର ବ୍ୟବହାର ଚଳୁଅଛି ! ଏତାଦୃଶ ଭାବଦ୍ୟୋତନାର୍ଥ ଆମ୍ଭମାନଙ୍କର ଆଦ୍ୟ କବି ମହୋଦୟ ଶଂସିତ କ୍ରମାନୁଗତ ପଦମାନଙ୍କର ଚରମଭାଗ 'ହେବେ' ଓ 'ହେଉ' ବିନା କେବଳ 'ଇବା' ପ୍ରତ୍ୟୟାନ୍ତରେ ସମାପିକା କ୍ରିୟାମାନ ଅନଳ୍ପ

---

(୧) ତା ପିତୃଲୋକେ ତାହାର ଶୋଣିତ ପିବନ୍ତି । ଆ. ପ.

ଅମରଭୁବନେ ଯେତେ ସିଦ୍ଧବିଦ୍ୟା ।

ଅର୍ଜୁନକୁ ଶିଖାବନ୍ତି ଗନ୍ଧର୍ବ ସର୍ବସିଦ୍ଧା ॥ ବ. ପ.

ଦେବ ଅର୍ପିତ ଅନ୍ନ ନ ପାବନ୍ତି ଅତିଥି ନ ତର୍ପିଲେ । ବ. ପ. ଇତ୍ୟାଦି ।

(୨) ଶୁଣସି ମହାରାଜା ହୋଇ ପରମ ଶାନ୍ତ । ଆ. ପ.

ତୁ ହୋ ଧନଞ୍ଜୟ ସତ୍ୟ ବଚନ କହସି । ବ. ପ.

ସେ ରମ୍ଭାକୁ ଛାଡ଼ି ଆନ ମାଗସିରେ ବଳା । ଉ. ପ.

ଦେସି ପିତା ତୋହର ବଜ୍ର ଯେ ଶକତା । ଉ. ପ. । ଇତ୍ୟାଦି ।

(୩) ଏ ଯୁଗେ ପରଜା ଅରଜଇ କୃଷି ।

କାହାକୁ କଷ୍ଟ ନ ଦେଇ ସବୁ ସେ ଜୀଏସି । ଆ. ପ. । ଇତ୍ୟାଦି ।

ସ୍ଥଳରେ ବ୍ୟବହାର କରି ଅଛନ୍ତି । (୧) ବର୍ତ୍ତମାନ ସେ ସବୁ ବିକୃତ ବୋଧହୁଏ । ପ୍ରାକୃତରେ ସ୍ଥାନେ ସ୍ଥାନେ ନିୟମର ବ୍ୟତିକ୍ରମର ଯୋଗୁଁ 'ଇ' ପ୍ରତ୍ୟୟାନ୍ତ କ୍ରିୟାପଦଗୁଡ଼ିକ ଅନର୍ଦ୍ଧିଷ୍ଟରୂପେ ପୁରୁଷ-ବଚନ-ନିର୍ବିଶେଷରେ ଭୂତାଦି କାଳତ୍ରୟରେ ବ୍ୟବହୃତ ହୋଇଥାଏ । ତନ୍ନିୟମର ନେଦିଷ୍ଟତମ ପ୍ରାଚୀନ ଓଡ଼ିଆ ଭାଷାର ସମୁଦ୍ଭବକ୍ଷେତ୍ର ସାରଳା ମହାଭାରତରେ ଏ କବି ମହୋଦୟ ତାଦୃଶ କ୍ରିୟାପଦଗୁଡ଼ିଏ ତଦନୁକରଣରେ ପ୍ରୟୋଗ କରିଦେଇ ଅଛନ୍ତି । (୨) ଏହା ଯେ

---

(୧) ଶ୍ରୀ ଅମୃତାକ୍ଷନାଥ ଚରଣେ ମୋର ସେବା ।
ମହାଭାରତ କହିବି ପ୍ରସନ୍ନ ହୋଇବା ॥ ଆ. ପ.
ଭୋ ଦିଗପାଳମାନେ ବିଚାର କରିବା ।
ମୋର ଦୋଷନାହିଁ ମୋତେ ଅପଖ୍ୟାତି ନ ଦେବା ॥ ବି. ପ.
ପଣ୍ଡିତଜନେ ମୋର ଦୋଷ ନ ଘେନିମା । ମୁ. ପ. ଇତ୍ୟାଦି ।

ସ୍ଥାନେ ସ୍ଥାନେ ଏଭଳି ପଦରେ କ କାରକୁ ମଧ୍ୟ ଆନୁଷଙ୍ଗିକ କରି ରଖି ଅଛନ୍ତି ।

ସଂସାର ସାଗରୁ ତରିବାକ ପ୍ରାଣି । ଆଶ୍ର. ପ.
ଭୋ ଯୁଧିଷ୍ଠିର ତୁମ୍ଭେ ହୋଇବାକ ସାହା । ଅଶ୍ୱ. ପ. ଇତ୍ୟାଦ ।

(୨) [କ] ଯେତେ ବସ୍ତ୍ରେ ଛୁଇଁ ତେତେ ବସ୍ତ୍ରେ ସ୍ନାନ କରି ।
ସେ ଦିନ ଉପବାସେ ବସିଣ ଦିନ ହରି ॥ ଆଦି ପର୍ବ ॥
କରି = କରିବ, ହରି = ହରିବ ।
ଅନବର୍ତ୍ତେ ଦୁଷ୍ଟପଣ ଅଟଇ ଯାହାର ।
କେମନ୍ତେ ତାହାକୁ ଘେନି ଅଜ୍ଞାତବାସ ତରି ॥ ବି. ପ.
ତରି = ତରିବି ।
ଦଶ ଦିବସ ଅନ୍ତରେ ଯେବେ ଶିଖଣ୍ଡିକି ଆଗ କରି ।
ତେବେ ସେ ଶସ୍ତ୍ର ଗ୍ରୁଡ଼ିବ ସତ୍ୟ ଯେ ମୋହର ॥ ଭୀ. ପ.
ଆଗ କରି = ତୁମ୍ଭେ ଆଗ କରିବ ।
[ଖ] ଏକାନ୍ତେ ବସାଇଣ ପଦ୍ମନାଭ କୁମାରୀ ।
ପ୍ରସ୍ତାବନା ବାକ୍ୟେ ସତ୍ୟବତୀ ତିଆରି ॥ ଆ. ପ.
ତିଆରି = ତିଆରିଲେ ।
ସମସ୍ତ ବାଡ଼ିଣ ଦେବ ବସିଲି ମୁଁ ଭୁଞ୍ଜି ।
ଏସନ ବେଳେ ଦେବ ଡମ୍ବରୁ ଶବ୍ଦ ବାଜି ॥ ଆ. ପ.
ବାଜି = ବାଜିଲା । ଇତ୍ୟାଦି ।

କେବଳ ସାରଳାଦାସେ କରି ଅଛନ୍ତି ତାହା ନୁହେ, ତାହାଙ୍କ ପଶ୍ଚାଦ୍‌ବର୍ତ୍ତୀ ବିପଣ୍ଡିନ୍ତ କବିମାନେ ମୁଦ୍ଧା ଅନେକ ସ୍ଥଳରେ ଚଳାଇ ଦେଇ ଅଛନ୍ତି । ବର୍ତ୍ତମାନ ଏପରି ପ୍ରୟୋଗ ସର୍ବଥା କବିଯାଏ ନାହିଁ ସତ୍ୟ, ମାତ୍ର ଯୋଗ୍ୟାର୍ଥ ବା ବିଧ୍ୟର୍ଥ ଓ ନିତ୍ୟପ୍ରବୃତ୍ତ ବର୍ତ୍ତମାନ ଅର୍ଥରେ ସ୍ଥଳେ ସ୍ଥାନେ ସ୍ୱଯତଭାବରେ ପ୍ରୟୋଜନାନୁସାରେ ଏତାଦୃଶ 'ଇ' ପ୍ରତ୍ୟୟାନ୍ତ କ୍ରିୟାର ବ୍ୟବହାର ହେଉଅଛି ।(୧)

ପ୍ରୟୋଗକୁଶଳ ଶ୍ରୀମାନ୍ ସାରଳାଦାସ ମହାଶୟ କୃତସଂସ୍କାର ଆଧୁନିକ ସାହିତ୍ୟର ପ୍ରୟୋଗପ୍ରଣାଳୀକ୍ରମରେ ବାକ୍ୟର ଅକୃତ୍ରିମ ଅଳଙ୍କାରସ୍ୱରୂପ ସମୁପଯୁକ୍ତ ନାମଧାତୁ କ୍ରିୟାଗୁଡ଼ିଏ ମଧ୍ୟ ବହୁ ସ୍ଥଳରେ ଅତି ସୁନ୍ଦରରୂପେ ବ୍ୟବହାର କରି ଅଛନ୍ତି । (୨) ସେଥିରେ ତାହାଙ୍କର ଭାଷା-ସୌନ୍ଦର୍ଯ୍ୟ-ପିପାସା ଥିବାର ପ୍ରମାଣିତ ହୁଏ । ଅଥଚ ଏତାଦୃଶ ସମୁନ୍ନତ ଲେଖାର କ୍ରିୟାମାନଙ୍କ ସଙ୍ଗେ ବିଶୁଦ୍ଧ ଓଡ଼ିଆ ବା ଦେଶୀକ ଅର୍ଥାତ୍ ଗ୍ରାମ୍ୟକ୍ରିୟା ପଦଗୁଡ଼ିଏ ମୁଦ୍ଧା (୩) ଅବିରଳ ଭାବରେ

---

(୧) [କ] ପଦାଙ୍କ ତାଙ୍କର ପୂରି ଦେଇଥାଇ ଚୂତମୁକୁଳର ଧୂଳି । } ଯଯାତି
[ଖ] ଅଛି କି ଭାଗ୍ୟେ ନା ଜାଣି । ଇତ୍ୟାଦି । } କେଶଶ୍ରୀ

(୨) ବିବାହ ଯୋଗରେ ରାଜା ଆସଇ ସଂଭାରି । ଆ. ପ.
ସଂଭାରି = ସମ୍ଭାର କରି ।
ଯଦ୍ୟପି ଈଶ୍ୱର ଧାରା ଆସିବେ ପରିଧାଇ । ବ. ପ.
ପରିଧାଇ = ପରିଧ ପ୍ରହାରି ।
କସ୍ତୁରୀ ଗନ୍ଧ ଆମୋଦଲା ଏକ ଯୋଜନ । ଆ. ପ.
ଆମୋଦଲା = ଆମୋଦଯୁକ୍ତ କଲା । ଇତ୍ୟାଦି ।

(୩) ଦକ୍ଷିଣାବର୍ତ୍ତ ଶଙ୍ଖେ ଜଳ ତଳ ଲଇ । ଆ. ପ.
ସପ୍ତମ ଗୋପ୍ୟସ୍ଥାନ ଲେଉଡ଼ନ୍ତି ଉପଲେପି । ଆ. ପ.
ଉପଲେପି = ଉପଲକ୍ଷ କରି ।
ମାତାର ମୁଣ୍ଡ ତାର ହୃଦସ୍ଥରେ ଲଥି । ବ. ପ.
ଉଲ୍ଲରନ୍ତେ ଖଣ୍ଡା ଯଦ ହୋଇଲା ବିରୋଧୀ । ଉ. ପ.
ଉଲ୍ଲରନ୍ତେ = ଉନ୍ମୋଷ କରନ୍ତେ ।
ପାଦେ ଜଗନ୍ନାଥ ସୁତଲେ ଘଡ଼ଘାଲି । ବ. ପ.
ଘଡ଼ଘାଲି = ଦଣ୍ଡବତ୍ ପଡ଼ି ।

ପଞ୍ଚ ଛଅ ସାଧିତ୍ ଶବ୍ଦମାନଙ୍କ ସହ ମିଶାଇ ଦେଇ ଅଛନ୍ତି । ଆଉ କେତେକ ସ୍ଥଳରେ ଧର୍ମିପଦ ବା ବିଶେଷ୍ୟପଦମାନଙ୍କ ସହ 'କର୍' ଧାତୁ ପରିବର୍ତ୍ତିରେ 'ହୋ' ଧାତୁଯୋଗେ କେତେଗୁଡ଼ାଏ ବିଲକ୍ଷଣ କ୍ରିୟା କଳ୍ପନା କରି ସାଦୃଶ କ୍ରମରେ ପ୍ରୟୋଗ କରି ଅଛନ୍ତି, (୧) ତାହା ବର୍ତ୍ତମାନ ବିଚାରରେ ଅସମୀଚୀନ ବୋଧହୁଏ । ଏ ସବୁ ଛଡ଼ା ଯାହା କି ସଂସ୍କୃତ ଓ ପ୍ରାକୃତାନୁକରଣରୁ ପ୍ରାଚୀନ ଭାଷାରେ ପ୍ରଚଳିତ ଥିଲେହେଁ ଆଧୁନିକ ଭାଷାରେ ତାଦୃଶ ସୁସାଧ୍ୟ ହୋଇ ନ ପାରେ, ସେଭଳି ଭବିଷ୍ୟଦର୍ଥବୋଧକ 'ଇ' ପ୍ରତ୍ୟୟାନ୍ତ କେତେକ କ୍ରିୟାର ବ୍ୟବହାର ମଧ୍ୟ କରି ଅଛନ୍ତି । (୨) ମାତ୍ର ନିର୍ମାଣାର୍ଥବୋଧକ 'ଇ' ଓ 'ତ' ପ୍ରତ୍ୟୟାନ୍ତ

---

ଦାନ ଭାବରେ ରଥ ଆକାଶକୁ ନ ଖେଦ । ଜ. ପ.
ନ ଖେଦ=ବ୍ୟାପୁ ନାହିଁ ବା ଉଠୁଁ ନାହିଁ ।

କୃଷ୍ଣଦାର୍କ ମେଳକୁ ନୂଆରିଲ ଯାଇ । ଜ. ପ.
ନୂଆରିଲ=ନ ପାରିଲ ।

ଉଗ୍ରସେନ ମୁନେ ସାତ ବଂଶ ପଲ୍ଲଣି । ଅଶ୍ୱ. ପ.
ପଲ୍ଲଣି = ସୁସଜ୍ଜ କରି ଇତ୍ୟାଦି ।

(୧) [କ] ଦେବତା ବ୍ରାହ୍ମଣେ ହୋଇଛୁଟିକ ଭଗତ । ଅ. ପ.

[ଖ] ପ୍ରଦାନ ହେଲେ ତହୁଁ ସିଦ୍ଧ ଧବଳାଙ୍ଗି । ଆ. ପ.

[ଗ] ମାନବକୁଳରୁ କନ୍ୟାଏ ହେଲା ପ୍ରଦାନ ।

[ଘ] ହେ ମାଧବ ମୋର ଆନ ପାତକ ଯେ ନାହିଁ ।
ପରେ ହିଂସା ଅପବାଦ ନୁହଇ ନା ମୁହିଁ ॥ ଆ. ପ.
ନୁହଇ=ନ କରଇ ।

[ଙ] ଧର୍ମନନ୍ଦନ ଶୁଣି ହେଲେ ଅନେକ ଭକ୍ତ । ବ. ପ.
ଭକ୍ତ ହେଲେ = ଭକ୍ତି କଲେ । ଇତ୍ୟାଦି ।

(୨) [କ] ଏତେ କହି ଧର୍ମ ପିଇ ଲୋଡ଼ିଲେ ପାଣି ।
ବକ ବୋଲେ ପାଣି ପିଇ ସିନା ଏହିକ୍ଷଣି । ବ. ପ.
ଏ ସ୍ଥଳରେ ମଧ୍ୟମ ପୁରୁଷରେ ଅନ୍ୱିତ ।

ଅସମାପିକା କ୍ରିୟାମାନ ଗ୍ରନ୍ଥ ମଧ୍ୟରେ ସର୍ବତ୍ର ଯେଉଁ ନିୟମରେ ପ୍ରୟୋଗ କରି ଅଛନ୍ତି, ତାହା ସର୍ବଥା ଅନୁକରଣୀୟ । (୩)

ବର୍ତ୍ତମାନ ଓଡ଼ିଆ ସାହିତ୍ୟର କୃତ୍ତଦ୍ଧିତ-ସମାସ-ପ୍ରକରଣୀୟ ପ୍ରୟୋଗ ପ୍ରଣାଳୀ ଯାଦୃଶ, ତାହାର ସଂକ୍ଷିପ୍ତ ବିବୃତି କ୍ରମାନୁସାରେ କରଯାଉ ଅଛୁ । ପ୍ରତ୍ୟେକ ଭାଷାରେ କୃତ୍ତଦ୍ଧିତ ଓ ସମାସର ପ୍ରୟୋଜନୀୟତା ବିଶେଷତଃ ବକ୍ତବ୍ୟ ଭାବର ସଂକ୍ଷିପ୍ତୀକରଣ ଆଉ ବାକ୍ୟର ବାହ୍ୟ ରମଣୀୟତାର ଉପପାଦକ ହୋଇଥାଏ ବୋଲି ଅନେକେ କହିଥାନ୍ତି; ତାହା କେତେଦୂର ଯଥାର୍ଥ ହୋଇପାରେ, ମାତ୍ର ବହୁ ସ୍ଥଳରେ ଭାଷାସୌନ୍ଦର୍ଯ୍ୟର ସାଧନୀଭୂତ ଏହି ପ୍ରକରଣଦ୍ୱୟର୍ ଏକାନ୍ତ

---

[ଖ] ଦୁଃସହ ସମର କରୁଥିଲେ ଦ୍ରୋଣଗୁରୁ ।
ଅଗ୍ନିର ସ୍ତମ୍ଭରେ କିଏ ଅବା ରହି ପାରୁ । ଦ୍ରୋ· ପ:
ଏ ସ୍ଥଳରେ ଭୃତୀୟ ପୁରୁଷରେ ଅନ୍ୱିତ ।

(୩) [କ] ଆସ୍ଥାନକୁ ଯମ ଯିଣି ନ ଦେଲି ମୋତେ । ବ· ପ·
ପୁଣି ସାନ୍ତନୁକୁ ସେ ଯାଇ·ନ ଦେଲି କତ । ଆ. ପ.
ଅମ୍ଭର ଶିର ଯେ ନେଉଥିଲୁ ହାଣି । ବ· ପ.
ମୋହର ବଳେ ଚଢ଼ୁଁ ନେଇ ନୁହଇ ଛନାଏ । ସ୍ୱ· ପ·
ନିଜ ଭୁବନକୁ କି ଯାଇ ନେଉ ଭୁହି । ମୁ· ପ.
କର୍ଣ୍ଣ ହୋଇଲେ ତୋର କିଛୁ ଦେଇ ନାହିଁ ଇଚ୍ଛା । ଉ· ପ.
ଦେଇ ନାହିଁ ଇଚ୍ଛା = ଦେବାକୁ ଇଚ୍ଛା ନାହିଁ ।

[ଖ] ଖ୍ରାମର ପ୍ରତିଜ୍ଞା କରି ତ କ ପାରି । ବି· ପ.
ରଣରଙ୍ଗ ଧନ୍ଦୋଳ ଯେ କରି ତ ନ ପାରି । ଦ୍ରୋ· ପ.
ଇନ୍ଦ୍ର ଦେବତା ତାକୁ ବସିତ ନ ଦେଲେ । ବ· ପ·
ନରପତି ସ୍ୱୟମ୍ବର କରି ତ ବିଦ୍ୟମାନେ । ଆ. ପ· । ଇତ୍ୟାଦି ।

ଅନାଶ୍ରୟରୁ ବକ୍ତବ୍ୟ ଭାବକୁ ଇତଃସ୍ତତଃ ଦ୍ରାବିଡ଼ ପ୍ରାଣାୟାମ ପ୍ରାୟ * ଅଯଥା ବିସ୍ତୃତ କରି କିମ୍ବା ଏଣେ ତେଣେ ସଂକ୍ଷିପ୍ତ କରି ପ୍ରକାଶ କରିବାକୁ ହୋଇଥାଏ । ଅଥଚ ତେତେବେଳେ ଭାଷା ଓ ଭାବ ସ୍ଫୂର୍ତ୍ତିର ତାଦୃଶ୍ୟ ଲକ୍ଷ୍ୟ ମୁଦ୍ଧା ରହେ ନାହିଁ ଏବଂ ଅଲ୍ପାକ୍ଷର-ପରିଷ୍କୃତ ଅନାବିଳ ବଚନମାନଙ୍କର ଆବିର୍ଭାବ ଦେଖାଯାଏ ନାହିଁ । ଅତଏବ ଭାଷା ଯେତେ ପ୍ରାଞ୍ଜଳ ଓ ସରଳ ହେଲେ ମୁଦ୍ଧା ପ୍ରୟୋଜନାନୁସାରେ ଶୃଙ୍ଖଳିତ ସମାସାନ୍ତ ପଦମାନ ପ୍ରୟୋଗ କରି ତହିଁର ଶୋଭାର ସମ୍ପାଦନ କରିବା ନିତାନ୍ତ ଆବଶ୍ୟକ । ଏହି କବି ମହୋଦୟ ମଧ୍ୟ ଏହି ସୁପ୍ରକାଣ୍ଡ ଗ୍ରନ୍ଥରେ ସର୍ବତ୍ର ଏକ ପ୍ରକାର ଅନନ୍ୱିତ ସରଳ ପ୍ରାଞ୍ଜଳ ନିରାଡ଼ମ୍ବର ଭାଷାର ସମୁପଯୁକ୍ତ ତାତ୍କାଳିକ ଶିକ୍ଷିତ-ସମାଜର ଭାଷାରେ ପ୍ରଚଳିତ ଅନତିକ୍ଳିଷ୍ଟ ଇନ୍ ପ୍ରତ୍ୟୟାନ୍ତ ପ୍ରଭୃତି ସଂସ୍କୃତୀୟ ପଦମାନଙ୍କର † ଏବଂ ଭାବାଦି ବାଚ୍ୟର ଅଣି, ଅଣା, ଆଣ, ଉଣି ଓ ଅନ୍ତା ପ୍ରତ୍ୟୟାନ୍ତ ଓଡ଼ିଆ କୃଦନ୍ତ ପଦମାନଙ୍କର ବ୍ୟବହାର କରି ଅଛନ୍ତି । (୧) ଆପଣମାନେ ଯେ କୌଣସି ପର୍ବରେ ବହୁ ସାବଧାନତା-

---

* ଦ୍ରାବିଡ଼ ପ୍ରାଣାୟାମ— ଲୋକରେ ପ୍ରବଚନସ୍ୱରୂପ ପ୍ରଖ୍ୟାତ ଅଛି— କେତେକ ଅଶିକ୍ଷିତ ଦ୍ରାବିଡ଼ ପ୍ରାଣାୟାମକରଣରେ ହସ୍ତକୁ ଋଜୁ ଭାବରେ ଠିକ୍ ନାସିକାର ସମ୍ମୁଖୀନ ନ କରି ପଶ୍ଚାତ୍ତୁ ପରିବର୍ତ୍ତିତ କରି ଆଣୁଥିଲେ ।

[୧] ଉତ୍ତାନଶାୟୀ ହୋଇ ପଡ଼ିଲେ ମହାସତୀ । ବ. ପ.

[୨] କୁନ୍ତୀଦେବୀ ବୋଇଲେ ଗୋ ଭିକ୍ଷାଣୀ ମୋର ସୋଏ । ଆ. ପ.

[୩] ଦର୍ଶନେ ଦୁର୍ବଚତା ପ୍ରସନ୍ନେ କାର୍ଯ୍ୟ ସିଦ୍ଧି । ଆ. ପ. । ଇତ୍ୟାଦି ।

† ବିଷ୍ଣୁଙ୍କର ମାୟା ଏହୁ କହଣ ନ ଯାଇ । ବ. ପ. କହ୍+ଅଣ ।

(୧) ପାର୍ବତୀଙ୍କ ରୂପ ଦେଖି ନ ଯାଇ କହଣା । ବ. ପ. କହ+ଅଣା ।

[୧] ଅର୍ଜୁନ ମାଇଲେ ଯେ ଭଇରବ ବାଣ ।
ତ୍ର୍ୟମ୍ବକଶରେ କବଚ କଲା ଯେ ଭଙ୍ଗାଣ । ମୂ. ପ. ଭଙ୍ଗ୍+ଆଣ ।

[୨] ଅଶ୍ୱ ଗଜ ଚରଣି ପିଉଣି ଖାସ କରି । ମ. ପ.

ଆଜିକାଲି ଖାଉଣା, ପିଉଣା, ଗାଉଣା ପ୍ରଭୃତି ପଦର ବ୍ୟବହାର ହୁଏ, ମାତ୍ର ପିଉଣି ପଦର ବ୍ୟବହାର ଦେଖାଯାଏ ନାହିଁ ।

ଓଡ଼ିଆ କୃଦନ୍ତ ପଦମାନ ଏଥି ଭାରତରୁ ଯାଇ ପାରିବେ ନାହିଁ । ବୋଧହୁଏ ଅନ୍ୟାଦୃଶ କୃଦନ୍ତ ପଦମାନ ଏଣ୍ଡ ପରିମେୟ-ପ୍ରସାଧନ-ଭାଷାର ସୌନ୍ଦର୍ଯ୍ୟ-ସମ୍ପାଦକ ନୁହେ ବୋଲି କବି ମହୋଦୟ ତ୍ୟାଗ କରିଦେଇ ଅଛନ୍ତି । ଉପରି ସୂଚିତ ପ୍ରତ୍ୟୟାନ୍ତ ପଦମାନ ସବୁଠି ପ୍ରୟୋଗ କରି ଅଛନ୍ତି ସତ୍ୟ, ମାତ୍ର 'ଅନ୍ତା' ପ୍ରତ୍ୟୟାନ୍ତ ପଦ ଅପେକ୍ଷା ଏ ସବୁର ବ୍ୟବହାର ବିରଳ ଅନତିପ୍ରଚୁର । ଏ କବି ମହୋଦୟ ଅନ୍ତା ପ୍ରତ୍ୟୟାନ୍ତ ପଦଗୁଡ଼ିକର ଲିଙ୍ଗାଦି ନିର୍ବିଶେଷରେ ଟିକିଏ ଅଭିମାତ୍ର ବ୍ୟବହାର କରି ଅଛନ୍ତି । * ଆଧୁନିକ ସାହିତ୍ୟରେ ଅନ୍ତା ପ୍ରତ୍ୟୟାନ୍ତ କୃଦନ୍ତ ପଦ କୌଣସି ବିଶେଷ୍ୟ ପଦର ବିଶେଷଣରୂପେ ପ୍ରୟୋଜନମତେ ବ୍ୟବହୃତ ହେଉଅଛି; କିନ୍ତୁ ବ୍ୟକ୍ତିବାଚକରୂପେ ସ୍ୱତନ୍ତ୍ର ଭବେ ନାହିଁ । ଏ କବି ମହାଶୟ ବିଶେଷ୍ୟ ପଦର ନିରପେକ୍ଷତାରେ ମଧ୍ୟ ଅନ୍ତା ପ୍ରତ୍ୟୟାନ୍ତ ପଦକୁ ବ୍ୟକ୍ତ୍ୟର୍ଥ-ବୋଧକ ସ୍ୱାତନ୍ତ୍ର୍ୟ ଦେଇ ବ୍ୟବହାର କରି ଅଛନ୍ତି । †

ସାଧାରଣତଃ ଲିଖିତ କିମ୍ବା ବ୍ୟାବହାରିକ ଭାଷା ମଧ୍ୟରେ ଅକ୍ଲିଷ୍ଟ କୃଦନ୍ତପଦ ଓ ସମାସାନ୍ତ ପଦମାନଙ୍କର ବ୍ୟବହାର ଯେପରି ସହଜରେ ହୋଇପାରେ, ତଦ୍ଧିତାନ୍ତ ପଦ ସେପରି ନୁହେ । ଏହାର ବ୍ୟବହାର ଅପେକ୍ଷାକୃତ ଟିକିଏ ଅଧିକ ବିବକ୍ଷାଧୀନ ଓ ଯତ୍ନସାପେକ୍ଷ । ବକ୍ତା ଟିକିଏ ସମଧିକ ଯତ୍ନ ଓ ଅପେକ୍ଷା ନ କଲେ ତଦ୍ଧିତାନ୍ତ ପଦର ବ୍ୟବହାର କରି

---

[୩] ଲିଖିବନ୍ତା ବ୍ରାହ୍ମଣ ଛଡ଼ାଇଲି କଷ୍ଟରେ । ଆ. ପ.

[୪] କେଶ ମୋହର ଅବନ୍ତା ଦେଖ ଜନାର୍ଦ୍ଦନ । ଉ. ପ. । ଇତ୍ୟାଦି ।

* ତୁ ହେ ଚରାଚର ପାଳନ୍ତା ଉଦ୍ଧାରନ୍ତା ।
ଦୁର୍ଜ୍ଜନ ନିବାରଣ ସୁଜନ ରଖନ୍ତା ।
ଗୀବ ଚକ୍ରେ ଷଣ୍ଢାସୁର ଦର୍ପହନ୍ତା ।
ବକାସୁରକୁ ନାଥ ତୁହି ସେ ନିବାରନ୍ତା । ସ୍ୱର୍ଗ. ପ.
ବସ୍ତ୍ରା ହରି ନେଲେ ବିହନ୍ତା ମହାତ୍ମା । ମୂ. ପ. । ଇତ୍ୟାଦି ।

† ଶୁକମୁନିଙ୍କ ବଚନେ ହସିଲେ ସହସ୍ରାକ୍ଷ ।
ଏ ନୃତ୍ୟ କରନ୍ତା ମୁନି ହେ ଅଟଇ ବିଭିନ୍ନ । ବ. ପ.

ପାରନ୍ତି ନାହିଁ । ସୁତରାଂ ତାହାର ତାଦୃଶ ଆବଶ୍ୟକତା ରହେ ନାହିଁ । ପୂର୍ବକ ଅନ୍ୱେଷଣ କରନ୍ତୁ, ଏତଦ୍‌ଭିନ୍ନ ଅନ୍ୟ ପ୍ରକାର କ୍ଲିଷ୍ଟ ସଂସ୍କୃତ କମ୍ବା ଆଧୁନିକ ବ୍ୟାବହାରିକ ଭାଷାରେ ମୁଦ୍ଧା ତାଦୃଶ ତଦ୍ଧିତାନ୍ତ ପଦମାନଙ୍କର ବ୍ୟବହାର ଚଳେ, ତଦପେକ୍ଷା ପ୍ରାଚୀନ ଓଡ଼ିଆର ଲିଖିତ ଭାଷାରେ ମଧ୍ୟ ବହୁ ନ୍ୟୂନ । ଅନ୍ୟାନ୍ୟ ପ୍ରାଚୀନ ସାହିତ୍ୟକ ଓଡ଼ିଆ ଗ୍ରନ୍ଥମାନଙ୍କରେ ଯେପରି ଅତି ବିରଳଭାବରେ ସ୍ଥାନେ ସ୍ଥାନେ ମାତ୍ର ଅତ୍ୟଳ୍ପମିତ ତଦ୍ଧିତାନ୍ତ ପଦର ବ୍ୟବହାର, ଏହି ମହାଭାରତରେ ମଧ୍ୟ ସେହିପରି ଦେଖାଯାଏ । ଅପତ୍ୟାର୍ଥକ 'ଇ' ପ୍ରତ୍ୟୟାନ୍ତ ବାସବି, ପାବକି, ପାର୍ଥି, ଦ୍ରୋଣି, ଧୃତରାଷ୍ଟ୍ରି ଓ 'ଅ' ପ୍ରତ୍ୟୟାନ୍ତ ବୈନତ ପଦ ଏବଂ ବୈମାତୃକ ଷୋଡ଼ଶମା ସ୍ତମ୍ଭୀଭୂତ ପ୍ରଭୃତି ପଦମାନ ଅଥଚ ତାଦୃଶ ଆଉ କେତେକର ବ୍ୟବହାର ମାତ୍ର ଏହି ପ୍ରକାଣ୍ଡ ଗ୍ରନ୍ଥ ମଧ୍ୟରେ ଦେଖାଯାଏ । ଅନ୍ୟାନ୍ୟ ତଦ୍ଧିତ ପ୍ରତ୍ୟୟାନ୍ତ ପଦମାନ କୁତ୍ରାପି ଦେଖିବାକୁ ମିଳେ ନାହିଁ । ଏ କବି ମହାଶୟ ବାସବଙ୍କ ପୁତ୍ର ବାସବି ହେଲେ ପରି ପାର୍ଥଙ୍କ ପାର୍ଥି (ଅଭିମନ୍ୟୁ) କରି ଅଛନ୍ତି; ଦ୍ରୋଣଙ୍କ ପୁତ୍ର ଦ୍ରୋଣି କରି ଅଛନ୍ତି । କିନ୍ତୁ ଦ୍ରୌଣି ହେବାର ଥିଲା । ଏହି ଭାରତରେ ସର୍ବତ୍ର (ଯେଉଁ ଯେଉଁଠାରେ ଏହାର ପ୍ରୟୋଗ ହୋଇଅଛି) ଦ୍ରୋଣି ପଦ କେବଳ ଲେଖା ଥିବାର ଦେଖାଯାଏ । ବୋଧହୁଏ ଏହା ଅନୁଲେଖକଙ୍କର ତ୍ରୁଟି ନୁହେ । ନିଜେ କବି କେବଳ ଏପରି କରି ଅଛନ୍ତି ବୋଲିବାକୁ

---

ହେ ମୁନି ! ଏ ନୃତ୍ୟ କରନ୍ତା ଅର୍ଥାତ୍ ନୃତ୍ୟକାରୀ ବାଉଷ୍ଟ ଅଟଇ ।
ଏମନ୍ତ ଅର୍ଥ ।

[୧] ବୋଇଲେ ବାସବି ମୋର ପ୍ରତିଜ୍ଞା ଶୁଣ । ବ. ପ.
[୨] ମଲ୍ଲର ମୂର୍ତ୍ତି ଯେ ଦେଖିଣ ପାବକି । ବ. ପ.
[୩] ସମ୍ଭାଳି ନ ପାରେ ଏକା ପାର୍ଥି ରଣ କରୁଁ । ଦ୍ରୋ. ପ.
[୪] ପୁଣ ଏକ ବାଣ ଘେନି ବନ୍ଧିଲେ ସେ ଦ୍ରୋଣି । ଭେ. ପ.
[୫] ଥାଟ ଘେନି ବେଢ଼ିଛନ୍ତି ତାକୁ ଧୃତରାଷ୍ଟ୍ରି । ଭୀ. ପ.
[୬] ପବନ୍ତୁ ବେଗ ହୋଇ ଗମଇ ବଇନତ । ଉ. ପ.
[୭] ଆମ୍ଭେ ଯେ ବୈମାତୃକ ଭାଇ ବେନିଗୋଟି । ଉ. ପ.
[୮] ଷୋଡ଼ଶମା ଗୁଣଟି ନ ପାଇଲି କର୍ଣ୍ଣି । ଭୀ. ପ.
[୯] ଶ୍ରୀକୃଷ୍ଣ ମୁଖୁଁ ଯେ ଶୁଣି ଏମନ୍ତ କଥା ।
ପୁଣି ସ୍ତମ୍ଭୀଭୂତ ଅର୍ଜୁନ ବଳବନ୍ତା । ଉ. ପ. ଇତ୍ୟାଦି ।

ହେବ । କାରଣ ଧୃତରାଷ୍ଟ୍ରଙ୍କ ପୁତ୍ର ଧୃତରାଷ୍ଟ୍ରି ବୋଲି ତାଳପତ୍ର ପୁସ୍ତକମାନଙ୍କରେ ସର୍ବତ୍ର ଲେଖାଅଛି । ସକୃଦପି ଧାର୍ତ୍ତରାଷ୍ଟ୍ରି ଲେଖାଯାଇ ନାହିଁ । ଛପା ପୁସ୍ତକରେ ସ୍ଥାନେ ସ୍ଥାନେ ମାତ୍ର ଧାର୍ତ୍ତରାଷ୍ଟ୍ରି ଲେଖାଅଛି । ବିଶ୍ବାସ କରୁଁ, ଛପାକାର ମହାଶୟ ସ୍ଥାନେ ସ୍ଥାନେ ସୁବିଧା ପାଇ ଏପରି ପରିଶୋଧିତ କରିଦେଇ ଅଛନ୍ତି । କିନ୍ତୁ କବି ନିଜେ ପୂର୍ବ ସ୍ବରର ବୃଦ୍ଧି ନ କରି କେବଳ 'ଇ' ପ୍ରତ୍ୟୟ ଯୋଗେ ଧୃତରାଷ୍ଟ୍ରି, ଦ୍ରୋଣି ଇତ୍ୟାଦି ପଦ ଲେଖିଯାଇ ଅଛନ୍ତି । 'ଅ' ପ୍ରତ୍ୟୟ ଯୋଗେ ପୃଥାଙ୍କ ପୁତ୍ର ପାର୍ଥ ହୋଇଥିବାର ଜାଣି ତଦନୁକରଣରେ ବୋଧହୁଏ ଏ ମହାଶୟ କୁନ୍ତୀଙ୍କ ପୁତ୍ରଙ୍କୁ କୌନ୍ତ କରିଦେଇ ଅଛନ୍ତି । (୧) ପରନ୍ତୁ ଛପା ଏବଂ ତାଳପତ୍ର ପୁସ୍ତକରେ ମଧ୍ୟ ସ୍ଥାନେ ସ୍ଥାନେ 'ବଇନେଦ' ଗରୁଡ଼ାର୍ଥକ ପଦ ଲେଖାଅଛି । ସମ୍ପୂର୍ଣ୍ଣ ବିଶ୍ବାସ କରୁଁ, ଏହା ଅନୁଲେଖକମାନଙ୍କର ଅଜ୍ଞାନମହିମାର ଫଳ । କବି ସେପରି ଲେଖି ନାହାନ୍ତି । କାରଣ ବହୁ ସ୍ଥଳରେ ସ୍ପଷ୍ଟତଃ ବୈନତ ବା ବଇନତ କରି ଅନ୍ୟତ୍ର କାହିଁକି ବୃଥା ବଇନେଦ କରନ୍ତେ ? ତଥାପି ପୃଥାଙ୍କ ପୁତ୍ର ପାର୍ଥ ପରି ବିନତାଙ୍କ ପୁତ୍ର ବୈନତ ପଦଟି ସଂସ୍କୃତର ଶିଷ୍ଟପ୍ରୟୋଗରେ ପ୍ରଚଳିତ ନ ଥିବାରୁ ସୁସାଧୁ ବୋଲିଯାଇ ନ ପାରେ ।

କୃଦନ୍ତ ଓ ତଦ୍ଧିତାନ୍ତ ପଦମାନ ବାକ୍ୟର ଯାଦୃଶ ସୌନ୍ଦର୍ଯ୍ୟସାଧକ ସମାସାନ୍ତ ପଦମାନ ମଧ୍ୟ ତେତିକପ୍ରକ । ଭାଷା ଯେତେ ସରଳ ହେଉ ପଛକେ ସ୍ଥାନେ ସ୍ଥାନେ ଅକ୍ଲିଷ୍ଟ ଅପାର୍ଥ ଓ ଅନେକତଦ୍ଧିତ କୃତ-ତଦ୍ଧିତ-ସମାସାନ୍ତ ପଦମାନ ଯୋଗ କରି ଅଳ୍ପାକ୍ଷରରେ ବହୁ ବିସ୍ତୃତ ଭାବ ବିଦ୍ୟୋତନ କରିବା ସମ୍ପୂର୍ଣ୍ଣ ଆବଶ୍ୟକ । ଅତଏବ ଆମ୍ଭମାନଙ୍କର ଆଦିମ ମହାକବି ମହୋଦୟ ତାଦୃଶ ପଥର ପ୍ରଦର୍ଶକ ଓ ପଥିକ ହୋଇଅଛନ୍ତି । ଆପଣମାନେ ଓଡ଼ିଆର ପ୍ରାଚୀନ କାବ୍ୟ-ଯୁଗ ସାହିତ୍ୟରେ ଯାଦୃଶ ଅପାର୍ଥ ସମାସାନ୍ତ ପଦମାନଙ୍କର ଅସ୍ତିତ୍ୱ ଦେଖିବାକୁ ପାଇବେ, ଏହି ପୁରାଣ ସାହିତ୍ୟରେ ମଧ୍ୟ ବିରଳଭାବରେ ତାଦୃଶ ସମାସମାନ ଦୃଷ୍ଟିଗୋଚର କରି ପାରିବେ । ପ୍ରାୟଶଃ ସମସ୍ତେ ଅବଗତ ଥିବେ ଯେ, ସମାସମାନଙ୍କ ମଧ୍ୟରୁ ବହୁବ୍ରୀହି ସମାସର ପ୍ରୟୋଗସମାବଗମନ ଅଧିକ ଜ୍ଞାନସାପେକ୍ଷ । କାରଣ ଏହାର ଅଧିକାର ବହୁତୋମୁଖ । ହୃଦୟରେ ଜ୍ଞାନସତ୍ତ୍ୱ ସମଧିକ ନ ହେଲେ ଲେଖକ ନାନାବିଧ ବହୁବ୍ରୀହି ସମାସକୁ ପ୍ରୟୋଗ କରି

---

(୧) କିନ୍ତୁ ପାର୍ଥ ଶବ୍ଦର ବ୍ୟୁତ୍ପତ୍ତି ସ୍ଥାନରେ ଅନ୍ୟଥା କରି ଅଛନ୍ତି । ଅତଏବ ପାର୍ଥ ଶବ୍ଦର ଅନୁକୃତ କୌନ୍ତ ବୋଲି ତାଦୃଶ ବିଶ୍ବାସ ହୁଏନାହିଁ ।

ପାରିବେ ନାହିଁ, ପୁଣି ପାଠକେ ବୁଝି ପାରିବେ ନାହିଁ । ଏହି ମହାଭାରତ ଗ୍ରନ୍ଥରେ ଅନ୍ୟାନ୍ୟ ସମାସମାନଙ୍କ ପରି ସଂସ୍କୃତକ ଓ ଓଡ଼ିଆର ମିଶ୍ର ଅତି ବିଶୁଦ୍ଧ ବହୁବ୍ରୀହିସମାସାନ୍ତ ପଦମାନ ମଧ୍ୟ ବହୁସ୍ଥଳରେ ସାଧାରଣତଃ ପ୍ରଯୁକ୍ତ ହୋଇଅଛି । ତନ୍ମଧ୍ୟରୁ ନିମ୍ନରେ କେତେକ ବହୁବ୍ରୀହିର ପ୍ରମାଣ ପଦ୍ୟମାନ ମାତ୍ର ପ୍ରଦର୍ଶନ କଲୁଁ । ଏତତ୍ପରିଶୀଳନରେ ସାରଳାଦାସ କବିଙ୍କର ସମାସାନ୍ତ ପଦପ୍ରୟୋଗପଟୁତା କିପ୍ରକାର ଥିଲା, ବୁଝି ପାରିବେ । (୧)

ଏହି ଭାରତରେ ପ୍ରଯୁକ୍ତ କୃତ୍ତଦ୍ଧିତ-ସମାସାନ୍ତ ପଦମାନଙ୍କର ବିସ୍ତୃତ ଦିଗ୍‌ଦର୍ଶନ ସ୍ଥାନରେ କରାଗଲା । ବର୍ତ୍ତମାନ କେବଳ ଶବ୍ଦସମ୍ବନ୍ଧୀୟ ବିଚାର କରାଯାଉ ଅଛି । ଯତିମାନ୍ ଶ୍ରୀ ଶାରଳାଦାସ କବି ନିଜର ଭାରତ ଗ୍ରନ୍ଥକୁ ସର୍ବସାଧାରଣଙ୍କର ଅର୍ଥାତ୍ ଅଳ୍ପ ମାତ୍ର ଶିକ୍ଷିତ ଆବାଳ-ଗୋପାଳ ତଥାତ ସ୍ତ୍ରୀ ଓ ଦ୍ୱିଜବନ୍ଧୁମାନଙ୍କର

---

(୧) [କ] କୋପେଣ ଶୂଳ ଧରି ଧାଇଁଲେ ପଶୁପାଣି । ଆ. ପ.

[ଖ] ହତଭାଗ୍ୟ ହୋଇ ଦ୍ରୁପଦ ପଳାଇଲା । ଆ. ପ.

[ଗ] ମାରି ତାରି ପାରଇ ସେ ଅମୂଲ୍ୟ-ରତ୍ନ-କାନ୍ତି । ମ. ପ.

[ଘ] ସପ୍ତଦ୍ୱୀପା ପୃଥିବୀ ସୋମବଂଶ ନରପତି । ଆ. ପ.

[ଙ] ନିର୍ଧୂମ-ଅଗ୍ନି ଜାଣି ବ୍ରାହ୍ମଣର ତେଜ କାନ୍ତି । ଉ. ପ.

[ଚ] ଶ୍ରୀକୃଷ୍ଣ ଅଜିବାର ସେହି ସହସ୍ରଧାର-ଶକ୍ତି । ଉ. ପ.

[ଛ] ମୋହେ ପଡ଼ିଲେ ସର୍ବେ ଗତପ୍ରାଣ ଜାଣି । ଉ. ପ.

[ଜ] ଲକ୍ଷେକ ବଳ ଗାଣ୍ଡୀବ ଧନୁ ପଶୁପାସ୍ତ୍ର-ହସ୍ତ । ଅଶ୍ୱ. ପ.

[ଝ] ବଡ଼େ ମହାତେଜେ ଅଯୋନିସମ୍ଭୂତ-ମୂର୍ତ୍ତି । ଆ. ପ.

[ଞ] କରୁଣାମୟ-ବାନା ଯେ ଶରଣ ଭାରଧୂ । ଆ. ପ.

[ଟ] ବୃଷ-ବାହନ ମାଗୋ ତୋହର ପ୍ରସାଦେ । ସ୍ୱ. ପ.

[ଠ] ଅର୍ଜୁନଙ୍କ ବଚନେ ଯେ ଦେବ ଚକ୍ରହସ୍ତ । ସ୍ୱ. ପ.

[ଡ] ସେ ଅପାଳଟ ଶର ଦେବୁ ତୁ କାହାକୁ । ଉ. ପ.

ପାଲଟ କି ପ୍ରତ୍ୟାବୃତ୍ତି ନାହିଁ ଯାହାର ସେ ଅପାଳଟ । ଇତ୍ୟାଦି ।

ମଧ୍ଯ ସୁବୋଧ୍ଯ ହେଲ ପରି ସୁନ୍ଦର ଛନ୍ଦମୟ ସରଳ ପ୍ରାଞ୍ଜଳ ଭାଷାରେ ମଧ୍ୟେ ମଧ୍ୟେ ଏଭଳ ପାଠକମାନଙ୍କର ଅର୍ଥାବଗମନରେ ଟିକଏ କ୍ଲିଷ୍ଟ ସଂସ୍କୃତ ଶବ୍ଦମାନ ମଧ୍ୟ ବ୍ୟବହାର କରି ଅଛନ୍ତି । ଓଡ଼ିଆ ଭାଷାର ବ୍ୟାବହାରିକ ଶବ୍ଦମାନଙ୍କରେ ପ୍ରାୟ ଅର୍ଦ୍ଧଭାଗ ସଂସ୍କୃତ ବିଦ୍ୟମାନ ଥିବାରୁ, ସୁତରାଂ ଓଡ଼ିଆ ଭାଷା ସଂସ୍କୃତ ପ୍ରାୟ ଥିବାରୁ ଲିଖିତ ଭାଷାକୁ ଯେତେ ସରଳ କରିବାକୁ ଗଲେହେଁ ସାଧାରଣ ସଂସ୍କୃତ ଶବ୍ଦଗୁଡ଼ିକ ଅଯତ୍ନତଃ ସହଜରେ ଆସି ଓଡ଼ିଆରେ ମିଳିମିଶି ଏକାତ୍ମା ହୋଇ ରହିଯାନ୍ତି । ତେଣୁ ଏ କବି ମହାଶୟ ଆଶୁ ଲେଖନ ଧୋରଣୀର ଆବେଗରେ ଟିକଏ କ୍ଲିଷ୍ଟ ସଂସ୍କୃତ ଶବ୍ଦମାନଙ୍କୁ ମଧ୍ୟ ବହୁସ୍ଥଳରେ ଏପରି ମିଶାଇ ଦେଇ ବ୍ୟବହାର କରି ଅଛନ୍ତି ଯେ, ସାଧାରଣ ପାଠକଙ୍କୁ ସେଗୁଡ଼ିକ ପାଇଁ କ୍ଲେଶ ଭୋଗ କରିବାକୁ ହୁଏନାହିଁ, କିମ୍ବା ବାକ୍ୟାର୍ଥ ବଗିଚରେ ଅନ୍ତରାୟରେ ପଡ଼ିବାକୁ ହୁଏନାହିଁ । ଯେ କୌଣସି ପ୍ରକାରେ ସ୍ଥୂଳଚରିତ ଓ ଘଟଣା ଜଣା ପଡ଼ିଯାଏ । ସେହି କ୍ଲିଷ୍ଟ ଶବ୍ଦଗୁଡ଼ିକ ଚରିତପ୍ରବାହ ମଧ୍ୟରେ କେଉଁଠି କିପରି ଭାବରେ ରହିଯାଇ ଥାଏ, ସର୍ବସାଧାରଣଙ୍କୁ ଜଣାଯାଏ ନାହିଁ । ସେଥି ମଧ୍ୟରୁ ନାନା ସ୍ଥାନରେ ପ୍ରଯୋଜିତ କେତେକ କ୍ଲିଷ୍ଟ ଶବ୍ଦ ନିମ୍ନସ୍ଥ ଟିପ୍ପଣୀରେ ଉଦ୍ଧୃତ କରାଗଲା । ପାଠକଗଣ ତଦନୁକ୍ରମରେ ଅନ୍ୟାନ୍ୟ କ୍ଲିଷ୍ଟ ଶବ୍ଦ ଥିବାର ଊହା କରି ପାରିବେ । (୧) ଏ ସ୍ଥଳରେ ଆଉ ଗୋଟିଏ ବିଷୟ ପ୍ରକାଶ କରିବା ଉଚିତ । ଏ କବି ମହାଶୟ ଏପରି ଅତିଗୂଢ଼ାର୍ଥ ବା ଅଜ୍ଞାତାର୍ଥ ସଂସ୍କୃତ ଶବ୍ଦକୁ କେଉଁଠାଣି କୁଆଡ଼ୁ ଆଣି ସ୍ଥାନେ ସ୍ଥାନେ ଯୋଗ କରିଦେଇ ଅଛନ୍ତି ଯେ, ତାହାର ଅର୍ଥାବଗତିରେ ଆର୍ଥିକଶକ୍ତି-ସମ୍ପନ୍ନ ସମ୍ପୂର୍ଣ୍ଣ ବ୍ୟୁତ୍ପନ୍ନ ବ୍ୟକ୍ତିଙ୍କୁ ମଧ୍ୟ ସମୟରେ ନିରସ୍ତ ହେବାକୁ ହୁଏ । ଯଥା—

ଶଙ୍ଖଚିଲ ଡାକ ଦେଇ ପଶ୍ଚିମ ମୁରଚ୍ଛ,
ଉଦ୍ଦାଳୁକ ପକ୍ଷୀ ଯେ ରମ୍ଭା ବୃକ୍ଷେ ସ୍ଥିତ । ଦ୍ରୌ. ପ.

---

(୧) ଅମରାଧିନାଥ, ଉତ୍କର୍ମ, ଜାତ୍ୟନ୍ଧ, ମନୀଷା, ବରପ୍ରଭା, ଅପତ୍ୟ, ଋକ୍ଷ, ଦର୍ଦ୍ଦୁର, ମଘବା, ବାରାଙ୍ଗନା, ଅପସାର, କଂଶୁକ, ପଟଳ, ମଞ୍ଜୁଷ, ସମାସ୍ୟା, ଆଳ, କୌଣପ, ପୁରୁହୂତ, ଯାତୁଧାନ, ସୁନାଶୀର, ଆଖଣ୍ଡଳ, କରପଟ, ଭବନ, ବଜ୍ରୌଜା, ଶୋଣିତ, ଉତ୍ପନଶାୟୀ, ଜମ୍ଭଭେଦୀ, ଉଷାଶୀ, ସର୍ବଂଚର । ଇତ୍ୟାଦି ।

ସାରଳାଦାସଙ୍କ ସମୟରେ ଓଡ଼ିଆ ଭାଷା ଏକାନ୍ତ ଅସମ୍ପୂର୍ଣ୍ଣ ଥିଲା, ଏହା ସମସ୍ତେ ବିଶ୍ୱାସ କରିବେ । ତଥାପି ଏ ମହାଶୟ ପ୍ରାୟଶଃ ଷଷ୍ଟି ସହସ୍ର ପରିମିତ ପାଠ ମଧ୍ୟରେ କୁତ୍ରାପି ବିଜାତୀୟ ଶବ୍ଦର ଯୋଗ କରି ନାହାନ୍ତି । ସେ ସୁପ୍ରାସାଦ-ପୂର୍ଣ୍ଣ ଆକ୍ଷରିକ କାନ୍ତିପ୍ରାସାଦ ରଚନାର୍ଥ ତାତ୍କାଳିକ ପ୍ରଚଳିତ ସମଧିକ ଖାଣ୍ଟି ଓଡ଼ିଆ ଶବ୍ଦ ଓ ଅନତିକ୍ଲିଷ୍ଟ ସଂସ୍କୃତ ଶବ୍ଦମାନଙ୍କର ସାହାଯ୍ୟ ନେଇ ଅଛନ୍ତି । ତଥାଚ ଆପଭ୍ରଂଶିକ ତଦ୍ଭବ ଶବ୍ଦସୃଷ୍ଟି ବିଷୟରେ ନିଜ ବୁଦ୍ଧିମତ୍ତାକୁ ଅଗ୍ରସର କରି ବର୍ଣ୍ଣଲୋପ, ବର୍ଣ୍ଣାଗମ, ବର୍ଣ୍ଣବିପର୍ଯ୍ୟୟ, ବର୍ଣ୍ଣସ୍ଥିତିପରିବୃତ୍ତି, ବର୍ଣ୍ଣପ୍ଳୁତ ପ୍ରଭୃତି ନିୟମରେ ମୂଳଶବ୍ଦମାନଙ୍କରୁ ପର୍ଯ୍ୟାପ୍ତରୂପେ ତଦ୍ଭବ ଶବ୍ଦସହୋଦର ସୃଷ୍ଟି କରି ଅଛନ୍ତି । ଏହାଙ୍କର ଏହି ଶବ୍ଦସୃଷ୍ଟି ବଡ଼ ଚମତ୍କାରଜନକ । ଏହାଙ୍କ ପ୍ରୟୋଜିତ ତଦ୍ଭବ ଶବ୍ଦମାନଙ୍କୁ ମୂଳଶବ୍ଦ ସହ ମିଳାଇ ଦେଖିଲେ ଏ ମହାତ୍ମାଙ୍କ ପ୍ରତିଭାର ବଳ କୀଦୃଶ ଥିଲା, ପାଠକେ ତାହା ଅବଶ୍ୟ ବୁଝି ପାରିବେ । ଅଥଚ ଓଡ଼ିଆ ଗ୍ରନ୍ଥର ରଚକ ଶ୍ରେଣୀରେ ଏହାଙ୍କର ଆଦିମତ୍ୱ ଥିବାରୁ ଏହାଙ୍କୁ ଓଡ଼ିଆ ତଦ୍ଭବ ଶବ୍ଦ ସୃଷ୍ଟିର ଆଦିବିଧାତା ବୋଲି ଆଦର କରିବେ । ଅତଏବ ଏ ସ୍ଥଳରେ ତତ୍କୃତ କେତେଗୋଟି ତଦ୍ଭବ ଶବ୍ଦର ମାତ୍ର କମ ଉଦାହରଣସ୍ୱରୂପ ନିମ୍ନରେ ପ୍ରଦର୍ଶନ କରୁଅଛୁଁ । (୧)

ଏ ସବୁ ଛଡ଼ା ଆମ୍ଭମାନଙ୍କର ଆଦିମ ମହାକବି ମହୋଦୟ ଏଥି ମଧ୍ୟରେ ଭୂରି ଭୂରି ବିଶୁଦ୍ଧ ସ୍ୱତନ୍ତ୍ର ଓଡ଼ିଆ ଶବ୍ଦମାନ ପ୍ରୟୋଜିତ କରି ଅଛନ୍ତି । ତତ୍ପରବର୍ତ୍ତୀ ପୌରାଣିକ କବିମାନେ ମଧ୍ୟ ପ୍ରାୟଶଃ ସେ ସମସ୍ତ ଖାଣ୍ଟି ଓଡ଼ିଆ ଶବ୍ଦଗୁଡ଼ିକୁ ନିଜ ନିଜ ପୁରାଣମାନଙ୍କରେ ବ୍ୟବହାର କରି ଅଛନ୍ତି । ବିଶେଷତଃ ଏ ସବୁ ପୁରାଣମାନଙ୍କରେ ପ୍ରଚଳିତ ଥିବାରୁ ଏପରିଗୁଡ଼ିକୁ ପୌରାଣିକ ଶବ୍ଦ କୁହାଯାଇ ପାରେ । କିନ୍ତୁ ଦୁଃଖର ବିଷୟ, ଏଥି ମଧ୍ୟରୁ ଅନେକ ଶବ୍ଦର ଅର୍ଥାବଗତି ସନ୍ଦେହାସ୍ପଦ ହୋଇ ପଡ଼ୁଅଛି । ଅନେକେ ଏପରି ଶବ୍ଦମାନଙ୍କରେ

---

(୧) ଅମର୍ଷ = ଅମରଷ, କାତ୍ୟାୟନୀ = କାତ୍ୟାନୀ, ପଞ୍ଚାନନ = ପଞ୍ଚାଣ, ଦ୍ୱିତୀୟ = ଦ୍ୱିତ, ଦୁତ, ମୋହପାଶ = ମୁହାଁସ, ଦ୍ରୋହୀ = ଦୋରିହା, ମଦନ = ମୟାଣ, ଉରଗ = ଉଡ଼ଙ୍ଗ, ଧିକ୍ଶ୍ୱାସ = ଧିଙ୍ଗାସ, ରଜନୀ = ରୟଣୀ, ଉଭୟ = ଓହ, ପତାକା = ପତାଙ୍ଗ, ସାଗର = ସାହେର, ଉରଃସ୍ଥଳୀ = ଉରସଳ, ପକ୍ଷ = ପକ୍ଷୁ, ସଦୃଶ = ସାରିଷ, କନକ = କଣୟ, ଭଗିନୀ = ବହିଣୀ । ଇତ୍ୟାଦି ।

ଅର୍ଥର ଆଭାସ ସୁଦ୍ଧା ଜାଣିପାରୁ ନାହାନ୍ତି। ଏହାର ପ୍ରଧାନ କାରଣ ଆମ୍ଭମାନଙ୍କର ନିଜ ପୁରାଣ ସାହିତ୍ୟ ପ୍ରତି ଅନାସକ୍ତି ମାତ୍ର । ବର୍ତ୍ତମାନ ଆମ୍ଭମାନଙ୍କର ଶିକ୍ଷିତମ୍ମନ୍ୟମାନ ଅଭିମାନ ଏପରି ଏକାନ୍ତ ନିଃସ୍ବାର ହୋଇ ପଡ଼ିଅଛୁ ଯେ, ନିଜର ପୂର୍ବସଞ୍ଚିତ ଅଖିଳ ସମ୍ପତ୍ତି ହରାଇ କିମ୍ବା ତାହାର ପ୍ରୟୋଜନମହତ୍ତ୍ୱ ଜାଣି ନ ପାରି ପରଠାରୁ ଭିକ୍ଷାମାର୍ଗଣବୃତ୍ତିରେ ବ୍ରତୀ ହୋଇ ସମ୍ପତ୍ତିଶାଳିତା ଗର୍ବରେ ସ୍ଫୀତ ହେଉଅଛୁଁ — ଗୃହଦେବତାର ପୂଜାର ବ୍ୟତିକ୍ରମ କରୁଅଛୁଁ । ଏହାଠାରୁ ବଳି ଲଜ୍ଜାର କଥା କଣ ହୋଇପାରେ ! (୧)

ସଂସ୍କୃତ ପୁରାଣ ରଚୟିତାମାନେ ନିଜ ନିଜ ପୁରାଣମାନଙ୍କର ଚରିତପ୍ରବାହ ମଧ୍ୟରେ ସମାଗତ କେତେକ ଆଖ୍ୟାନପୁରୁଷ ଓ ପ୍ରସିଦ୍ଧ ନଦୀ, ନଗରୀ, କାନନ ପ୍ରଭୃତିର ଅଭିଧା ବ୍ୟୁତ୍ପତ୍ତିର ବ୍ୟାଖ୍ୟାନ କରିଥାନ୍ତି । ତଦ୍ଦ୍ୱାରା ସେହି ନାମକରଣର ଐତିହାସିକ ବିବରଣ ସୁସ୍ପଷ୍ଟତଃ ପ୍ରତିପନ୍ନ ହେଉଥାଏ । ଆମ୍ଭମାନଙ୍କର ଆଦିମ ପୁରାଣପ୍ରଣେତା ମଧ୍ୟ ତଦନୁକରଣରେ ଏହି ମହାଭାରତ ବହୁ ସ୍ଥଳରେ ପ୍ରସ୍ତାବାନୁଗତ ଅନେକଗୁଡ଼ିଏ ପଦମାନଙ୍କର ବ୍ୟୁତ୍ପତ୍ତିକ୍ରମ ଦେଇ ଅଛନ୍ତି ।

---

(୧) ଅଧାଣ୍ଟି, ଅଗୁଳ, ଅଧାମ, ଅଲଣ୍ଠା, ଉବୁରା, ଆଗବଳ, ଉଚପାତ, ଉଡ଼ାଉଳ, ଉଦଣ୍ଡ, ହିପଣ୍ଡ, ପହଜ, ତଡ଼କ, ଥିହୁତ, ବାଘସ, ବିଖଣ୍ଡ, ମେଦ, ଲଣ୍ଠ, (ଖେଳବିଶେଷ), ଶପୁଳ, ହାଳହୋଳ, ବୃନ୍ଦାହୋଳ, ଖୁରାଣି, ଖୁରୁଷାଣି, ଖୁରଣାସି, ଖଡ଼ିଆଳି, କରାଣ୍ଡି, କଳଣ୍ଡ, କନ୍ଦୁରା, କରୁଣି, କେରଣ୍ଡ, କଳାଟି, ଗୁଆଣି, କାକୁଆଳୀ, ଗୁଗୁଚିଆ, ଗୁଣ୍ଡୁରି, ନଡ଼ପ, ପଙ୍ଘ୍ରଫଳ, ଭରଡ଼, ମୁରଣ୍ଠ, ସୋହଡ଼, ସିଂହଡ଼ା, ସଙ୍କୋଡ଼, ସୋଉଡ଼ା, ପୋଏଲ, ପାଳଣ୍ଡ, ପରିମୁଣ୍ଡା, ସୁଆଦ ଇତ୍ୟାଦି । ଏତାଦୃଶ ଅଶେଷ କ୍ଲିଷ୍ଟ ବିଶୁଦ୍ଧ ଓଡ଼ିଆ ଶବ୍ଦମାନ ଏହି ଭାରତରେ ବ୍ୟବହୃତ ଅଛି । ପରନ୍ତୁ କାଇଁପିକା ପର୍ବରେ ଉକ୍ତ ଅଛି କି, ଶ୍ରୀକୃଷ୍ଣ ଅଶ୍ୱତ୍ଥାମାକୁ ଭଣ୍ଡି ଦେଇ ତାହାର ଶସ୍ତ୍ରମାନ ଘେନି ଆସି ଗୋଟିଏ ତୀର୍ଥଜଳରେ ନିକ୍ଷିପ୍ତ କରିଦେଲେ । ଏ କବି ମହାଶୟ ଏହି ତୀର୍ଥର ନାମ ଓଡ଼ପା ବୋଲି ଦୁଇ ତିନି ସ୍ଥଳରେ ଲେଖି ଅଛନ୍ତି, ଏହାର ଅର୍ଥ କିଛିହିଁ ଜଣାଯାଏ ନାହିଁ ।

ଓଡ଼ପା ତୀର୍ଥକୁ ଆସି ପୁଣ ସେ ଲୋଡ଼ନ୍ତି ।
ଦେଖିଲେ ପାଦ ପଡ଼ନ୍ତି କେ ପଶିଲ ଏଥି ॥ କାଇଁ. ପ.

ତାହାଙ୍କର ଅଧୀତ-ଜନିତ ପାଣ୍ଡିତ୍ୟ ବା ବ୍ୟୁତ୍ପତ୍ତି-ଶକ୍ତିର ସଦ୍ଭାବ କିମ୍ବା ଅସଦ୍ଭାବ କାହୁଣ, ସେଥିରୁ ସ୍ପଷ୍ଟ ଜଣା ଯାଉଅଛି । ପ୍ରଦତ୍ତ ବ୍ୟୁତ୍ପତ୍ତି ସ୍ଥାନମାନ ସମ୍ୟକ୍ ପରିଶୀଳନପୂର୍ବକ ଦେଖିଗଲେ ସୁବିଦିତ ହୁଏ ଯେ ଏହି ମହାକବି ମହାଶୟ ସଂସ୍କୃତ ଶାସ୍ତ୍ରରେ ସମ୍ପୂର୍ଣ୍ଣ ବ୍ୟୁତ୍ପନ୍ନ ନ ଥିଲେ ସୁଦ୍ଧା ତାହାଙ୍କର ଯେ ସଂସ୍କୃତଜ୍ଞାନ ନିତାନ୍ତ ଊଣାଥିଲା, ତାହା ନୁହେଁ । କେତେକ ବ୍ୟୁତ୍ପତ୍ତି ଓ ଯାବତୀୟ ରୂପାଦିବର୍ଣ୍ଣନାର ସ୍ଥାନମାନ ଦେଖିଲେ ଏବଂ ତତ୍ପ୍ରଯୋଜିତ ସଂସ୍କୃତ ଗୂଢ଼ ଶବ୍ଦ ଓ ସମାସାନ୍ତ ପ୍ରଭୃତି ପଦମାନଙ୍କୁ ଦେଖିଲେ ଏବଂ ଓଡ଼ିଆ ଭାଷାର ଶୈଶବାବସ୍ଥାରେ ଏତାଦୃଶ ମହାଗ୍ରନ୍ଥ ରଚନାରେ ତଦୀୟ ମହୀୟସୀ ସଫଳ ପ୍ରତିଭାର ସମୁଜ୍ଜ୍ୱଳ ଆଲୋକ ପ୍ରତି ଦୃଷ୍ଟି ଦେଲେ ସ୍ପଷ୍ଟ ବୋଧହୁଏ, କବି ମହାଶୟ ସଂସ୍କୃତରେ ଅବଶ୍ୟ କେତେକ ଦୂର ସୁବ୍ୟୁତ୍ପନ୍ନ ଥିଲେ, ଅଥଚ ତାହାଙ୍କର ସୁପ୍ରଗାଢ଼ ଶାସ୍ତ୍ର ଶୁଶ୍ରୂଷା ସମ୍ୟକ୍ ବଳବତୀ ଥିଲା, ଏଥିରେ କଥଞ୍ଚିତ ସନ୍ଦେହ ହୋଇ ନ ପାରେ । ବର୍ଣ୍ଣନା ସ୍ଥଳମାନଙ୍କରେ ଦେଖିବାକୁ ପାଇବେ, ସାରଳାଦାସ କବି ରୂପବର୍ଣ୍ଣନାଦିର ସୌନ୍ଦର୍ଯ୍ୟ ସମ୍ପାଦନ ବିଷୟରେ କାବ୍ୟଯୁଗର କେତେକ କବିମାନଙ୍କ ଅପେକ୍ଷା ସୁଦ୍ଧା ଅତିରେକ ଶକ୍ତିସମ୍ପନ୍ନତା ପ୍ରକାଶ କରି ଅଛନ୍ତି । ଏହା ତାହାଙ୍କର ପ୍ରତିଭାର ପ୍ରଧାନ ପରିଚାୟକ । ପରନ୍ତୁ ଏ ମହାଶୟ ନିଜର ପ୍ରକୃତିସିଦ୍ଧ କାଳ୍ପନିକ ବୈଷମ୍ୟ-ପ୍ରିୟତାବଶରୁ କେତେକ ସ୍ଥଳରେ କାଳ୍ପନିକ ବିଲକ୍ଷଣ ବ୍ୟୁତ୍ପତ୍ତିଦ୍ୱାରା ପଦମାନଙ୍କର ବ୍ୟୁତ୍ପତ୍ତିକ୍ରମ ବୁଝାଇ ଅଛନ୍ତି । ଏହା ବୋଲି ଯେ ସର୍ବତ୍ର ସେ ସବୁ ଅସଙ୍ଗତ ହୋଇଅଛି, ତାହା ନୁହେ । ବହୁ ସ୍ଥଳରେ ମୂଳଗ୍ରନ୍ଥରେ ପ୍ରତିପାଦିତ ବ୍ୟୁତ୍ପତ୍ତିକ୍ରମ ସହିତ ନିଜର ପ୍ରଦତ୍ତ ବ୍ୟୁତ୍ପତ୍ତି-କ୍ରମକୁ ଅବିକଳ ମିଳାଇ ଅଛନ୍ତି । ଏହାଙ୍କ ପ୍ରଦତ୍ତ ସମଗ୍ର ବ୍ୟୁତ୍ପତ୍ତି ପ୍ରକାଶକକ୍ରମକୁ ସମ୍ୟକ୍ ବିଚାର କଲେ ଜଣାଯାଏ, କବି ମୂଳଗ୍ରନ୍ଥ ଓ ତଦିତର ଗ୍ରନ୍ଥମାନଙ୍କର ଶୁଶ୍ରୂଷାରେ ଯାହା ଯାହା ହୃଦୟଙ୍ଗମପୂର୍ବକ ସ୍ମୃତିଗର୍ଭରେ ସଯତ୍ନ ରଖି ପାରିଥିଲେ ଅଥଚ ନିଜ ବୁଦ୍ଧିବଳରେ ସୁସମ୍ପନ୍ନ କରି ପାରିଥିଲେ, ସେ ସବୁ ସଙ୍ଗତରୂପେ ପ୍ରଦର୍ଶନ କରି ଅଛନ୍ତି । ଯାହା ଯାହା ସ୍ମୃତିକୋଷରୁ ବିଚ୍ୟୁତ କିମ୍ବା ବୁଦ୍ଧି ସମକ୍ଷରୁ ଅନ୍ତର୍ହିତ ହୋଇ ଯାଇଥିଲା, ସେ ସବୁ କାଳ୍ପନିକ ଜାଲରେ ପଡ଼ିବାରୁ ସ୍ଥାନେ ସ୍ଥାନେ ଅସଙ୍ଗତ ହୋଇଯାଇ ଅଛି । ସୁତରାଂ ବିଶ୍ୱାସ ହୁଏ, ଏଥି ମଧ୍ୟରେ କେତେକ ଅନଭିଜ୍ଞ ପ୍ରକ୍ଷେପକଙ୍କ ଅତ୍ୟାଚାର ସୁଦ୍ଧା ମିଶି ଯାଇଅଛି । ଅଭିଜ୍ଞ ପାଠକଗଣ ସାବହିତ ହୃଦୟରେ ବିଚାର କରି ନିଅନ୍ତୁ । ଏ ମହାଶୟ ଆଦି ପର୍ବର

ପ୍ରାରମ୍ଭରେ "ମହାଭାରତ" ଏହି ପଦର ବ୍ୟୁତ୍ପତ୍ତି ଲେଖି ଅଛନ୍ତି କି, ଦେବତାମାନେ ଶାସ୍ତ୍ରମହତ୍ତ୍ୱର ମୀମାଂସା ହୋଇ ତୁଳାଦଣ୍ଡର ଏକ ପାର୍ଶ୍ୱରେ ସମଗ୍ର ପୁରାଣ ଓ ବେଦ ଶାସ୍ତ୍ରାଦିମାନଙ୍କୁ, ଅପର ପାର୍ଶ୍ୱରେ ଏହି ସଂହିତାକୁ ରଖିଲେ। ଫଳତଃ ଏହି ସଂହିତାଟିର ଭାର ସମଧିକ ବା ମହାନ୍ ହେବାରୁ ଏହାକୁ ମହାଭାରତ ଆଖ୍ୟା ପ୍ରଦାନ କରିଥିଲେ। (୧) ମୂଳଗ୍ରନ୍ଥର ଅନୁକ୍ରମଣିକାଧ୍ୟାୟରେ ମଧ୍ୟ ଠିକ୍ ଏହିପରି ଉକ୍ତ ଅଛି। ବ୍ରହ୍ମ ମୁନି ଓ ଶୂଦ୍ର ମୁନିଙ୍କ ବ୍ୟୁତ୍ପତ୍ତିକରଣ ଠିକ୍ ଏକାଧାରରେ ବିଦ୍ୟମାନ ରହିଅଛି। ମୂଳ ମହାଭାରତରେ ଗଣ୍ଡକୀ (ନଦୀ) ପଦର ବ୍ୟୁତ୍ପତ୍ତି ନ ଥିଲେ ସୁଦ୍ଧା ଏ କବି ମହୋଦୟ ନାନା ପୁରାଣ ଶୁଶ୍ରୂଷକତା ବଳରୁ ତାହାର ବ୍ୟୁତ୍ପତ୍ତି ବିବରଣ ସୁସମୀଚୀନ କରି ଲେଖିପାରି ଅଛନ୍ତି। ପଦ୍ମପୁରାଣ ପାତାଳ ଖଣ୍ଡରେ ଉକ୍ତ ଅଛି, ପୂର୍ବ ପ୍ରଜାପତି ପ୍ରଜାବର୍ଗଙ୍କୁ ପାପରହିତ କରିବା ପାଇଁ ସ୍ୱକୀୟ ଗଣ୍ଡବିନ୍ଦୁମାନଙ୍କରେ ଗଣ୍ଡକୀ ନଦୀର ସୃଷ୍ଟି କରିଥିଲେ। ଏହି ମହାକବି ମହୋଦୟ ମଧ୍ୟ ତାହାହିଁ ଲେଖି ଅଛନ୍ତି। (୨) ଏହି ସମରେ ନିଜର ବୁଦ୍ଧି

---

(୧) ପୁରାକିଲ ସୁରୈଃ ସର୍ବୈଃ ସମେତ୍ୟ ତୁଲୟା ଧୃତଂ।
ଚତୁର୍ଭ୍ୟଃ ସରହସ୍ୟେଭ୍ୟୋ ବେଦେଭ୍ୟୋଽପ୍ୟଧିକଂ ଯଦା।
ତଦା ପ୍ରଭୃତି ଲୋକେଽସ୍ମିନ୍ ମହାଭାରତମୁଚ୍ୟତେ।
ମହତ୍ତ୍ୱେ ଚ ଗୁରୁତ୍ୱେ ଚ ଧ୍ରିୟମାଣଂ ଯତୋଽଧିକଂ।
ମହତ୍ତ୍ୱାଦ୍ ଭାରତତ୍ତ୍ୱାଚ ମହାଭାରତମୁଚ୍ୟତେ।

ଏ ସ୍କନ୍ଦ ପୁରାଣଆଦି ସମସ୍ତ ପୁରାଣ,
ଏମାନ ବସାଇ ତୁଳାଦଣ୍ଡ ବାଡ଼କେଣ।
ଆରକାଡ଼େ ଅଷ୍ଟାଦଶ ପର୍ବକୁ ଥୋଇଲେ,
ସମସ୍ତ ଗ୍ରନ୍ଥରୁ ମହାଭାର ଏ ହୋଇଲେ।
ଭାରତ ଗ୍ରନ୍ଥ ସହିଁ ହୋଇଲା ମହାଭାର,
ତେଣୁ ମହାଭାରତ ନାମ ଦେଲେ ଅଙ୍ଗିରା।
ତେଣୁ କରି ହୋଇଲା ମହାଭାରତ ନାମ,
ତୁଳନ୍ତେ ହୋଇଲା ସେହୁ ମହାଭାର ସମ।

(୨) ଗଣ୍ଡକୀଞ୍ଚ ନଦୀ ରାଜନ୍ ସର୍ବପୁରଜସେବିତା।
ପୁରାସୃଷ୍ଟ୍ୱା ପ୍ରଜାନାଥଃ ପ୍ରଜାଃ ସର୍ବା ବିପାପିନାଃ।
ସ୍ୱଗଣ୍ଡବିନ୍ଦୁଭାନେକପାପଘ୍ନୀ ସୃଷ୍ଟ୍ୱାବାନିମାଂ। ପଦ୍ମ. ପୁ. ପା. ଖ. ୨୦ ଅ:

ବସ୍ତୁରକୁ ଅଗ୍ରସର କର ଜମ୍ବୁଭେଦୀ, ପ୍ରମଦା, ଭରତଖଣ୍ଡ ବା ଭାରତବର୍ଷ, ନୀଳକଣ୍ଠ, କାମ୍ୟବନ, ମଧୁରପୁ, ନାଗପୁଣ, ଲକ୍ଷ୍ମଣ, ଚନ୍ଦ୍ରାବତୀ, ଖାଣ୍ଡବ, ସାଭଦ୍ର ପ୍ରଭୃତ ପଦମାନଙ୍କର ବ୍ୟୁତ୍ପତ୍ତିକମ ସୁଦ୍ଧା ପ୍ରାପ୍ତଃ ସୁସମୀଚୀନ କରିପାର ଅଛନ୍ତି, କନ୍ତୁ ଏଥି ମଧ୍ୟରେ ସମ୍ମିଳତ ବଣ୍ଟ ପଦର ବ୍ୟାଖ୍ୟା ପ୍ରକୃତମତେ ସମାଖ୍ୟାନ କରପାର ନାହାନ୍ତି । ପାଠକଗଣ ନମ୍ନରେ ଉଦ୍ଧୃତ ପଦମାନ ଦେଖିଲେ ତଦବନ୍ଧିତ ସିଦ୍ଧାନ୍ତ ସମ୍ୟକ୍ ଅବଗତ ହୋଇ ପାରବେ । (୧) ଆଦ ପଦରେ

---

× × ଉଦକ ଗଣ୍ଡୂଷ କରେ ଏ ନଦୀ ଭତର ।
ବ୍ରହ୍ମାର ଗଣ୍ଡୂଷ ଏଥି ଅଟଇ ଉଦେ କ ।
ତେଣୁ କର ଏହା ନାମ ଅଟଇ ଗଣ୍ଡକୀ । ସଭ. ପ.

(୧) ଜମ୍ବୁଭେଦୀ—ଜମ୍ବ ଦୈତ୍ୟଙ୍କୁ ନାଶି ମୋର ନାମ ଜମ୍ବୁଭେଦୀ । ଜ. ପ.

ପ୍ରମଦା—ପ୍ର=ଉତ୍କୃଷ୍ଟ, ମଦରୂପ ସୌଭାଗ୍ୟଜନତ ଗର୍ବ ଅଛି ଯାହାର—ଯଥା—

ମଦସ ଖାଇଲେ ଯେହ୍ନେ ହେଓ ଅସମ୍ଭାଳ ।
ପରପୁରୁଷ ଦେଖିଲେ ଆମ୍ଭେ ହେଉ ଭୋଳ ।
ତେଣୁ କଣ ପ୍ରମଦା ନାମ ଯେ ଆମ୍ଭର ।
ଅନୁବ୍ରତେ ଇଚ୍ଛା କରୁଁ ପୁରୁଷ ସୁନ୍ଦର । ଆ. ପ.

ଭାରତଖଣ୍ଡ — ଦୁଷ୍ମନ୍ତର ଭରତ ନାମେ ପୁତ୍ର ଜନ୍ମିଲା ।
ତେଣୁ ଭଇଁ ଭ୍ରତଖଣ୍ଡ ମେଦନୀର ନାମ ହେଲା । ଆ. ପ.

ନୀଳକଣ୍ଠ — ତୈଲୋକ୍ୟ ଉଦ୍ଧାରଣେ ଯାର ଗଣ୍ଡୂଷ କାଳକୂଟ ।
ତେଣୁ ବୋଲାଇଲୁ ତୁ ନାମ ନୀଳକଣ୍ଠ । ଅଶ୍ୱ. ପ.

କାମ୍ୟବନ — ପର୍ଶୁରାମ ପିତା ଯମଦଗ୍ନି ଦଣ୍ଡବତେ ।
କାମ୍ୟଶ୍ରାଦ୍ଧ କଲେ ଏଥି ପିତୃକାର୍ଯ୍ୟ ନମନ୍ତେ ।
ତହୁଁ ସେ କାମ୍ୟବନ ହୋଇଲା ପ୍ରସିଦ୍ଧ । ବ. ପ.

ମଧୁରପୁ } ମଧୁ ଦୈତ୍ୟ ସହାରଣେ ମଧୁରପୁ ନାମ ।
ନାଗପୁଣ } ନରର ଆଶ୍ରୟ ବୋଲ ନାମ ନାଗପୁଣ । ବ. ପ.

"ନରଣାମୟନାତାଧି ତତୋ ନାଗପୁଣଃ ସ୍ମୃତଃ"—ଜ. ପ. ୬୯ ଅଧ୍ୟାୟ ।

ପ୍ରଥମତଃ ସୋମବଂଶର ସମୋତ୍ପତ୍ତି ବିବରଣ କହି ସେଥି ମଧ୍ୟରେ ଲେଖି ଅଛନ୍ତି କ, ସୋମବଂଶଜାତ ପୁରୁନାମକ ନୃପତିଙ୍କ ଭାର୍ଯ୍ୟା ଓଡ଼ଣୀ (ଓଡ୍ରଦେଶ ସ୍ତ୍ରୀ) ଥିବାରୁ ଓଡ଼ଣାର ନାମ ଓଡ଼ବଂଶ ହେଲା । ଏହା ଅକୃତ୍ରିମ ଓ ସଂସ୍କୃତ ସମାନୁରୂପ ନ ହେଲେ ସୁଦ୍ଧା ବ୍ୟୁତ୍ପତ୍ତିସମର ସଙ୍ଘଟନା ତାଦୃଶ ଅସଙ୍ଗତ ବୋଧହୁଏ ନାହିଁ । ଏବେ ଯାହା ହେଉ ଓଡ଼ଶା ଆଦମ ଓଡ଼ଆମାନଙ୍କର ଦେଶ ଥିବାରୁ ଓଡ଼ବଂଶ

---

ଲକ୍ଷ୍ମଣ— ବାବୁ ଅତ୍ୟନ୍ତ ସୁଗୁଣ ତୋର ବତିଶ ଲକ୍ଷଣ ।
ତେଣୁ କରି ନାମ ତୋତେ ଦେଲେ ଯେ ଲକ୍ଷ୍ମଣ । ଗଦା. ପ.

ଚନ୍ଦ୍ରାବତୀ— ଚନ୍ଦ୍ର କିରଣକୁ ଜିଣି ଦିଶେ ତାର ଜ୍ୟୋତି ।
ତେଣୁ କରି ନାମ ତାର ଅଟେ ଚନ୍ଦ୍ରାବତୀ । ମ. ଭା.

ଖାଣ୍ଡବ— ଖଣ୍ଡନ କରଣ ଯେଣୁ ଲଗାଇଲେ ବୃଷ ।
ଖାଣ୍ଡବ ବନ ନାମ ଦେଲେଟି ପ୍ରତ୍ୟକ୍ଷ । ମ. ପ.

ଜନାର୍ଦ୍ଦନ— ଦୈତ୍ୟପାଳ ବିଦାରଣେ ନାମ ଜନାର୍ଦ୍ଦନ । ବି. ପ.
"ଦସ୍ୟୁତ୍ରାସାଜ୍ଜନାର୍ଦ୍ଦନଃ" ଉ. ପ. ୬୯ ଅ:

ବୀଭତ୍ସୁ— ବାବୁ ସଗ୍ରାମେ ନସତ ହୋଇ ଯେଉଁ ଷତି ।
କେଶ ମୁକୁଳା ଉଲଗ୍ନ ନିରସ୍ତ ଯେ ରଥୀ ।
ରଣେ ତାହାକୁ ମୁଁ ନ ପେଷଇ ଶରଗୋଟି ।
× ତେଣୁ ବୀଭତ୍ସୁ ନାମକୁ ଦେଲେ ସର୍ବଜନ । ବି. ପ.

ନ କୁର୍ଯ୍ୟାଂ କର୍ମବୀଭତ୍ସଂ ଯୁଧ୍ୟମାନଃ କଥଂଚନ ।
ତେନ ଦେବମନୁଷ୍ୟେଷୁ ବୀଭତ୍ସୁରିତିବିଶ୍ରୁତଃ । ବି. ପ.

ଏହି ପଦରେ ସୁଦ୍ଧା କିଛି ମୌଳିକ ସାଦୃଶ୍ୟ ଅଛି ।

ଇଚ୍ଛାମୃତ୍ୟୁ— ଜିଇଲେ ଜିଇ ମଲେ ମରୁ ଗଙ୍ଗା ବୋଇଲେ ।
ତେଣୁ କରି ଭୀଷ୍ମଦେବ ଇଚ୍ଛାମୃତ୍ୟୁ ହେଲେ । ଆ. ପ.

ବିରାଟ— ଦଇବ ଯୋଗେ ଶ୍ରେଣୀ ଗ୍ଭଡ଼ିଲା ଯହୁଁ ବସ୍ତ୍ର ।
ସେ ପୁତ୍ରର ନାମଗୋଟି ଦେଲକ ବିରାଟ । ସଭା. ପ.

ନାମରେ ଅଭିହିତ ହେଲା, ଏହାହିଁ ଜନକଙ୍କ ହୃଦଗତଭାବ ଜଣାଯାଏ । (୧) ପୁଣି କୋଣ ଓ ଅର୍କ ଏହି ଉଭୟ ଶବ୍ଦକୁ ଧରି ଐତିହାସିକ ପ୍ରଥାନୁସାରେ ଯାହାକି କୋଣାର୍କର ବ୍ୟୁତ୍ପତ୍ତି ସ୍ଥିର କରି ଅଛନ୍ତି, ତାହା ସୁଦ୍ଧା ସୁସଙ୍ଗତ ବୋଧହୁଏ । କାରଣ ସୂର୍ଯ୍ୟଦେବ ଚନ୍ଦ୍ରଭାଗା ନଦୀର ଏକ କୋଣରେ ଅର୍କ ଦୈତ୍ୟକୁ ନିହତ କରି ଥିବାରୁ ପ୍ରୋକ୍ତ ସ୍ଥାନର ନାମ କୋଣାର୍କ ହେଲା ବୋଲି (୨) ଅନେକେ ସିଦ୍ଧାନ୍ତ କରି ଅଛନ୍ତି । ଏହାର ଅନ୍ୟଥାକରଣରେ ଅନ୍ୟୋନ୍ୟ ଅନ୍ୟ ପ୍ରକାର ବ୍ୟୁତ୍ପତ୍ତି ପ୍ରଶସ୍ତି ଥିଲେହେଁ ଏହା କେବଳ ଅସଙ୍ଗତ ପରି ଧାର୍ଯ୍ୟ ହୋଇ ନ ପାରେ । କିନ୍ତୁ ଏ ତାଦୃଶଙ୍କମରେ ମଲ୍ଲିକାର୍ଜୁନ ଓ ପରକ୍ଷିତ ଶବ୍ଦର ଆକ୍ଷରିକ ଅର୍ଥ ଧରି ବ୍ୟୁତ୍ପତ୍ତି ସ୍ଥିର କରିବାକୁ ଯାଇ କେହିକେହି ପ୍ରମାଦ ଓ ଭ୍ରାନ୍ତ ଧାରଣାରେ ପଡ଼ିଯାଇ ଅଛନ୍ତି । ଦକ୍ଷିଣ ଭାରତର ଶ୍ରୀପର୍ବତରେ ମଲ୍ଲିକାର୍ଜୁନାଭିଧ ଶିବମୂର୍ତ୍ତି ସର୍ବତ୍ର ସୁବିଖ୍ୟାତ । (୩) ଏ ସମ୍ବନ୍ଧରେ ଏ କବି ମହାଶୟ ନକୁଳଙ୍କ ଦକ୍ଷିଣ

---

(୧) ଗୋପାଳ ନୃପତି ନାମ ମୟୂରଧ୍ୱଜ ବୀର ।
ଯୁଗାବର୍ତ୍ତ ବୋଲିଣ ଯେ ଦୁହିତା ତାହାର ।
ସସାଗରୀ ପୃଥିବୀ ନବଭାଗ କଲେ ।
ନବଖଣ୍ଡ ମେଦିନୀ ନବ ପୁତ୍ରଙ୍କୁ ଦେଲେ ।
ତାହାର ଜ୍ୟେଷ୍ଠପୁତ୍ର ନାମ ପୁରୁ ନୃପତି ।
ଓଡ଼ଣୀ ଭାର୍ଯ୍ୟା ତାର ଅଟଇ ସତୀ ।
ତାହାଙ୍କର ଭାଗ ଯେ ଓଡ଼ରାଷ୍ଟ୍ର ମଣ୍ଡଳେ ।
ତେଣୁ ଓଡ଼ିଶାକୁ ଓଡ଼ରାଷ୍ଟ୍ର ଯେ ବୋଇଲେ । ଆ. ପ.

(୨) ପୃଥିବୀର ଅଗ୍ନିକୋଣେ ଦୈତ୍ୟକୁ ସେ ମାରି ।
କୋଣାରକ ତୀର୍ଥ କଲେ ନାମ ଅନୁସରି । ଖି. ପ.
ଅର୍କ ଦୈତ୍ୟକୁ ମାଡ଼ି ବସିଲେ ତରଣି ।
ଏ ହେତୁ କୋଣାଅର୍କ ନାମ ଏବେ ଅଛି । ବ. ପ.

(୩) ଏ ସ୍ଥଳରେ ସୀତା ଲକ୍ଷ୍ମଣ ରାମଚନ୍ଦ୍ର ମଧ୍ୟ ପ୍ରତିଷ୍ଠିତ ଥିବା ପଦ୍ମପୁରାଣରେ ଉକ୍ତ ଅଛି ।
ତତଃ ଶ୍ରୀଶୈଳମାସାଦ୍ୟ ସିଦ୍ଧଗନ୍ଧର୍ବ ସେବିତଂ ।
ଗିରିଜାବଲ୍ଲଭୋ ଯତ୍ର ମଲ୍ଲିନାଥୋଽଭିଧାନତଃ × × ×
ରାମୋଽସ୍ତି ସାନୁଜଃ ସାର୍ଦ୍ଧଂ ଜାନକ୍ୟାପି ତତୋଗତଃ । ଇତ୍ୟାଦି ।
ପଦ୍ମ. ଉ. ଖ. ୧୮୦ ଅଧ୍ୟାୟ ।

ଭଗ୍‌ବଜସ୍ଥ ପ୍ରକରଣରେ କହି ଅଛନ୍ତି କି, ଚନ୍ଦ୍ରାଚ୍ୟ ଶ୍ରୀଗିରି ପର୍ବତରେ ଶ୍ରୀରାମଚନ୍ଦ୍ର ସୁଷେଣଙ୍କୁ ରାଜା କରିବାର ମନସ୍ଥ କରିଥିଲେ । ମାତ୍ର ଅସମୟରେ ସୁଷେଣ ପଞ୍ଚତ୍ୱ ପ୍ରାପ୍ତ ହେବାରୁ ହନୁମାନ୍ କେତେଗୁଡ଼ିଏ ମଲ୍ଲିକାପୁଷ୍ପ ଓ କୃଷ୍ଣାଜିନରେ ପ୍ରୋଥିତ ମୃତ କଳେବରକୁ ଆଚ୍ଛାଦିତ କରି ରଖିଲେ । ପରେ ରାମଚନ୍ଦ୍ର ଆସି ପ୍ରୋକ୍ତ ଆଚ୍ଛାଦନ ଉନ୍ମୋଚନ କରି ଦେଖିଲେ ଯେ, ମୃତ କଳେବରଟି ଗୋଟିଏ ସ୍ୱୟମ୍ଭୂ ଲିଙ୍ଗରେ ପରିଣତ ହୋଇଅଛି । ଅତଏବ ମଲ୍ଲିକା ଓ ଅଜିନ ନାମ ନେଇ ଆବିର୍ଭୂତ ଲିଙ୍ଗକୁ ମଲ୍ଲିକାର୍ଜୁନ ନାମରେ ନାମିତ କଲେ । (୧) ଏହା ତାଦୃଶ ସୁସଙ୍ଗତ ହୋଇନାହିଁ । କିଞ୍ଚିତ ଅସାବଧାନତାରୁ ଏପରି କହିଦେଇ ଅଛନ୍ତି । ଲିଙ୍ଗଟି ମଲ୍ଲିକା ପ୍ରାପ୍ୟ ଅର୍ଜୁନ ଅର୍ଥାତ୍ ଶୁକ୍ଳ ଥିବାରୁ ମଲ୍ଲିକାର୍ଜୁନ ନାମ ଦେଲେ ୭ ଏହା କହିଥିଲେ ସୁସଙ୍ଗତ ହୋଇଥାନ୍ତା । ପରୀକ୍ଷିତ୍ ନାମକୁ ପରୀକ୍ଷ କରି ପରୀକ୍ଷାଦ୍ୱାରା ଏ ରକ୍ଷିତ ହୋଇଥିବାରୁ ପ୍ରୋକ୍ତ ନାମ ପାଇଥିଲେ ବୋଲି କହି ଅଛନ୍ତି । କିନ୍ତୁ ତାହାର ଯଥାର୍ଥତାରେ ଏହା ନିର୍ଭର ହୋଇନାହିଁ । ମୂଳଗ୍ରନ୍ଥରେ ଏହାର ପ୍ରକୃତ ବ୍ୟୁତ୍ପତ୍ତି ଅନ୍ୟଥା ଅଭିହିତ ଅଛି ସତ୍ୟ, ମାତ୍ର ଏ ସ୍ଥଳରେ ଦାସ କବିଙ୍କ ହୃଦ୍‌ଗତ ଭାବ ଏହି ଯେ, ଶ୍ରୀକୃଷ୍ଣ ସର୍ବସମକ୍ଷରେ ନିଜ ମହିମାର ପରୀକ୍ଷା ପ୍ରଦର୍ଶନପୂର୍ବକ ଏହାଙ୍କୁ ପୁନରୁଜ୍ଜୀବିତ କରିଥିଲେ ବୋଲି ଏହାଙ୍କ ନାମ ପରୀକ୍ଷ ହେଲା । (୨) ପରୀକ୍ଷିତ୍ ଶବ୍ଦକୁ ପରୀକ୍ଷ କଲା ପରି ଅଙ୍ଗାରପର୍ଣ୍ଣ ଶବ୍ଦକୁ ଅଙ୍ଗାରପନ୍ନଗ କରି

---

(୧) ହନୁ ଘୋଡ଼ାଇଲେ ଯେଣୁ ମଲ୍ଲିକାଗୁଡ଼ିଏ ।
ଉପରେ ଦେଲା କୃଷ୍ଣାଜିନ ସ୍ଥଳ ଗୋଟିଏ ।
ମଲ୍ଲିକା ଅଜିନ ଲିଙ୍ଗ ହେଲା ଉତପତ୍ତି ।
ମଲ୍ଲିକାର୍ଜୁନ ନାମ ଦେଲେ ରଘୁପତି । ସଭା. ପ.

(୨) ମୃତ୍ୟୁପିଣ୍ଡ କିଆଇଁ ସୋମବଂଶ ରକ୍ଷାକଲେ ।
ପରୀକ୍ଷାରେ ତାହାର ପରୀକ୍ଷ ନାମ ଦେଲେ । କାଇଁ. ପ.

ପରୀକ୍ଷାରୁ କୁମର ଯେ ପାଇବାରୁ ଜୀବ ।
ତେଣୁ ଯେ ପରୀକ୍ଷ ନାମ ଦେଲେ ଦେବଦେବ । ନାରୀ. ପ.

"କ୍ଷୀଣବଦ୍ଧି ଭ୍ରାତୈନମୁବାଚ ।
ପରିକ୍ଷୀଣେ କୁଳେ ଜାତୋ ଭବତ୍ୱୟଂ ପରୀକ୍ଷିନ୍ନାମେତି ।"

ଆ. ପ. ୯୫ ଅଧ୍ୟାୟ ।

କାଲୁନିକ ବ୍ୟୁତ୍ପତ୍ତି ପ୍ରକାଶ କରି ଅଛନ୍ତି । ତଥାପି ଯୁକ୍ତିଯୁକ୍ତ ଓ ପୂର୍ବାପର ଅବରୁଦ୍ଧ ହୋଇନାହିଁ । ମୂଳ ଆଦିପର୍ବାନ୍ତର୍ଗତ ଚୈତ୍ରରଥ ଉପପର୍ବରେ ଅଙ୍ଗାରପର୍ଣ୍ଣ ଗନ୍ଧର୍ବଙ୍କ ବିଷୟ ଲେଖାଅଛି । ଏହି ନାମର ବ୍ୟୁତ୍ପତ୍ତି—ଦୀପ୍ତ ଅଙ୍ଗାର ପ୍ରାୟ ଅନ୍ୟର ଦୁଃସ୍ପର୍ଶ ନୀୟ ଅଟେ ପର୍ଣ୍ଣ ଅର୍ଥାତ୍ ରଥ ଯାହାର । ଏହି ଅଭିଧେୟକୁ ସାରଳାଦାସେ ହୃଦୟଙ୍ଗମ କରି ନ ପାରି ତାଙ୍କାଳିକ ମତମାନଙ୍କରୁ ବିକୃତ କରି କହନ୍ତି କି, ଗରୁଡ଼ଙ୍କ ଭୟରେ ସର୍ପମାନେ ତାହାଙ୍କୁ ଶରଣ କରିବାରୁ ନିଜେ ସେ ସର୍ପମାନଙ୍କୁ ଆପଣା ଅଙ୍ଗରେ ରଖିଲେ । ଅତଏବ ତାହାଙ୍କ ନାମ ଅଙ୍ଗାରପନ୍ନଗ ବା ଅଙ୍ଗାରପନଙ୍ଗ ହେଲା । (୧) କେତୁକା ପଦର ବ୍ୟୁତ୍ପତ୍ତିରେ 'କେ ତୁ' ଏପରି ବର୍ଣ୍ଣ ବିଶ୍ଳେଷଣରେ ଦେଶୀୟ ଭାଷାନୁଗତ ଅର୍ଥକୁ ଗ୍ରାହ୍ୟ କରି ପଦର ସାର୍ଥକତା ବୁଝାଇ ଅଛନ୍ତି (୨) ଏବଂ କର୍ଣ୍ଣବାଟେ ପ୍ରସୂତ ହୋଇଥିବାରୁ ରାଧେୟଙ୍କ ନାମ କର୍ଣ୍ଣ ହୋଇଥିବ ବୋଲି ପ୍ରକାଶ କରି ଅଛନ୍ତି, କିନ୍ତୁ ମୂଳ ମହାଭାରତରେ କର୍ଣ୍ଣଙ୍କ କର୍ଣ୍ଣପ୍ରସୂତତ୍ୱ ଉକ୍ତ ନାହିଁ । ସେ ସମ୍ଭୋଗ ମାତ୍ରେ ପ୍ରସୂତ ବୋଲି ଏବଂ ତାହାଙ୍କର ସହଜ କୁଣ୍ଡଳ ଥିବାରୁ ଏବଂ ସମୟରେ ତାହା କର୍ଣ୍ଣରୁ ଉତ୍କର୍ତ୍ତନ କରି ଇନ୍ଦ୍ରଙ୍କୁ ପ୍ରଦାନ କରି ଥିବାରୁ କର୍ଣ୍ଣ ନାମ ପାଇଥିଲେ ବୋଲି ଉକ୍ତ ଅଛି । (୩) ଏହା ପରେ ଏ ମହାଶୟ ଶିଖଣ୍ଡୀ ପଦର ବ୍ୟୁତ୍ପତ୍ତିରେ କହନ୍ତି

---

(୧) ସର୍ପମୟେ ସର୍ବ ହେଲା ମୋର ଅଙ୍ଗ ।
ତେଣୁ ସେ ମୋର ନାମ ଅଙ୍ଗାରପନ୍ନଗ । ଆ. ପ.

ପୁଣି ଅନ୍ୟତ୍ର ଲେଖା ଅଛି—

ଏହି ଅଙ୍ଗେ ଭୋଗ କରଇ ଉରଗଙ୍ଗ ।
ତେଣୁ ସେ ନାମ ମୋର ଅଙ୍ଗାରପନ୍ନଗ । ଆ. ପ.

ଏହି ବିତଥ ଭାଷଣ କବିଙ୍କର କି ପ୍ରକ୍ଷେପକଙ୍କର ସନ୍ଦେହ ହୁଏ ।

(୨) କେ ତୁ ? ବୋଲିଣ ବୋଇଲେ ତାଙ୍କୁ ଆଦି ନାଗ ।
ତେଣୁ କେତୁକା ନାମ ଯେ ହୋଇଲା ତାହାର । ଆ. ପ.

ମହାକବି ଉପେନ୍ଦ୍ର ଭଞ୍ଜ ମଧ୍ୟ ଏହି କ୍ରମରେ ଭୁବନ, ମାର ପ୍ରଭୃତି ପଦର ବ୍ୟୁତ୍ପତ୍ତି ବୁଝାଇ ଅଛନ୍ତି ।

(୩) କର୍ଣ୍ଣବାଟେ ସେ ପୁତ୍ର ହୋଇଲେ ମୋର ଜାତ ।
କର୍ଣ୍ଣ ନାମ ଦେଲେ ତାର ଦେବ ଯେ ଆଦିତ୍ୟ । ଆ. ପ.

କ, ଦ୍ରୁପଦରାଜ ଜନ୍ମ ମାତ୍ରେ ତାହାଙ୍କୁ ନପୁଂସକ ଦେଖି ଶିର ଖଣ୍ଡନ କରୁଥିଲେ। ଅତଏବ ସେହି ସନ୍ତାନର ନାମ ଶିଖଣ୍ଡୀ ହେଲା। (୧) ଇତ୍ୟାକାରକ କେତେକ ବ୍ୟୁତ୍ପତ୍ତି ପ୍ରକାଶ ସ୍ଥଳରେ ଯଥାର୍ଥତାର ଆଭାସ ମାତ୍ର ରହିଅଛି। କିନ୍ତୁ ବୈତରଣୀ, ପାଣ୍ଡବ, ଯୁଧିଷ୍ଠିର, ନକୁଳ, ହର, ଭୁଷଣ୍ଡ, ତ୍ର୍ୟମ୍ବକ, ଅଶ୍ବତ୍ଥାମା, ସହଦେବ, ଧୃଷ୍ଟଦ୍ୟୁମ୍ନ, ଶ୍ୱେତବାହନ, ଧନଞ୍ଜୟ, ପାର୍ଥ ଓ ସବ୍ୟସାଚୀ ପଦର ପ୍ରଦତ୍ତ ବ୍ୟୁତ୍ପତ୍ତି ନିତାନ୍ତ ଅଜ୍ଞାନମୂଳକ ବୋଧହୁଏ। ଏହି ପଦଗୁଡ଼ିକର ସାର୍ଥକତା ପ୍ରକାଶ କରଣରେ ସାରଳାଦାସେ ଏକାନ୍ତ ଅନୁଚିତ ସାହସରେ ଆରୂଢ଼ ହୋଇ ଅଛନ୍ତି। ଅଗ୍ରପଶ୍ଚାତ୍ କିଛି ବିଚାର ନ କରି ଯାହା ମନେହେଲା, ତାହାହିଁ ଆଶୁ ଲେଖନର ଧୋରଣୀରେ ପକାଇ ଲେଖିଯାଇ ଅଛନ୍ତି ବୋଲିବାକୁ ହେବ। ପ୍ରୋକ୍ତ ପଦମାନଙ୍କର ବ୍ୟୁତ୍ପତ୍ତିପର ପ୍ରମାଣ ବାକ୍ୟମାନ ନିମ୍ନରେ ଉଦ୍ଧୃତ କରୁଅଛୁଁ—

ବୈତରଣୀ—ବିତରଣ+ଅ+ଈ।
ବଇଲେଚନ ଆଣିଲାରୁ ନାମ ବୈତରଣୀ। ବ. ପ.

ପାଣ୍ଡବ—ପାଣ୍ଡୁ+ଅ।
ପାଣ୍ଡବାସୁରକୁ ଯହୁଁ ପାଣ୍ଡବେ ବଧିଲେ।
ତେଣୁ ସେ ପାଣ୍ଡବ ନାମ ପାଞ୍ଚହେଁ ବହିଲେ। ଆ. ପ.

---

ତତସ୍ତ୍ୱିତ୍ତ୍ୱା କବଚଂ ଦିବ୍ୟମଙ୍ଗାତ୍
ତଥୈବାଦ୍ରଂ ପ୍ରଦଦୌ ବାସବାୟ।
ତଥୋତ୍କୃତ୍ୟ ପ୍ରଦଦୌ କୁଣ୍ଡଳେ ତେ।
କର୍ଣ୍ଣୀତ୍ତ ତସ୍ମାତ୍ କର୍ମଣା ତେନ କର୍ଣ୍ଣଃ। ବ. ପ. ୩୦୯ ଅଃ

(୧) ଶିର ଏହାର କପାଳେ ଖଣ୍ଡୁ ଥିଲୁ ଏବେ।
ଶିଖଣ୍ଡୀ ନାମ ଦେବୁ ଏହାର ରାଜ ଦେବେ। ଆ. ପ.

ଏତାଦୃଶ ବ୍ୟୁତ୍ପତ୍ତି ବିଶିଷ୍ଟ ଅନେକଗୁଡ଼ିଏ ପଦ ସଂସ୍କୃତ ପୁରାଣମାନଙ୍କରେ ମଧ୍ୟ ଦେଖାଯାଏ। ଯଥା—

ଯଂ ଯଂ କରାଭ୍ୟାଂ ସ୍ପୃଶତି ଜୀର୍ଣ୍ଣଂ ସ ସୁଖମଣ୍ଡୁତେ।
ପୁନର୍ଯୌବନ ଭବତି ତସ୍ମାତ୍ ତଂ ଶାନ୍ତନୁଂ ବିଦୁଃ। ଆ. ପ. ୯୫ ଅ:

ଯୁଧିଷ୍ଠିର—ଯୁଧି = ଯୁଦ୍ଧରେ + ସ୍ଥିର । ସ୍ଥ = ଷ୍ଠ ।
ମହାବଜ୍ରବନ୍ତ ଅବୀକ୍ଷଣେ ଜ୍ଞାନ ଧର୍ମ ।
ଏ ନ୍ୟାୟରୁ ଦେଲେ ଯୁଧିଷ୍ଠିର ନାମ । ଆ. ପ.

ନକୁଳ—କୁଳେ ନାସ୍ତି ସମୋରୂପେ ଯସ୍ୟେତ ନକୁଳ ସ୍ମୃତଃ । ବ. ପ. ୫ ଅଃ
ବନ ନଦୀକୂଳରେ କୁମାର ଉପୁଜିଲ ।
ତେଣୁ କରି ମହାତ୍ମା ନକୁଳ ନାମ ଦେଲ । ଆ. ପ.

ହର—ବ୍ରହ୍ମାଣମିନ୍ଦ୍ରାବରୁଣୌ ଯମଃ ଧନଦମେବଚ ।
ନିଗୃହ୍ୟ ହରତେ ଯସ୍ମାତ୍ ତସ୍ମାତ୍ ହର ଇତିସ୍ମୃତଃ । ଦ୍ରୋ. ପ. ୨୦୩ ଅଃ
ଖୀରକୁଣ୍ଡେ ପଡ଼ଣ ରୁଦ୍ର ମୋହ ଯାନ୍ତି ।
ତେଣୁ ସେ ହର ନାମ ବହିଲେ ପଶୁପତି । ଆ. ପ.

ଅର୍ଥାତ୍ ଶ୍ୱେତଶ୍ରିଜାଙ୍କ ଯାଗାଗ୍ନି ଖୀରକୁଣ୍ଡରେ ପଡ଼ି ମୋହିତ ହେବାରୁ ମହାଦେବ ହର ନାମ ଧାରଣ କଲେ ।

ଭୂଷଣ୍ଡି— ଅଣ୍ଡ ଖସନ୍ତେ ଯେ ପୁତ୍ର ହୋଇଲାକ ଜନ୍ମ ।
ତେଣୁ କରି ଭୂଷଣ୍ଡି ଟି ଦେଲେ ତାର ନାମ । ବ. ପ.

ତ୍ର୍ୟମ୍ବକ— ତସ୍ତୋଦେବ୍ୟା ଯଦା ତୈନଂ ଭଜନ୍ତେ ଭୁବନେଶ୍ୱରଂ ।
ଦେବୀଗଣଃ ପୃଥିବୀ ଚୈବ ତ୍ର୍ୟମ୍ବକସ୍ତୁ ତତଃ ସ୍ମୃତଃ ।
ଦ୍ରୋ. ପ. ୨୦୩ ଅଃ

ଶର ପୋତ ଲକ୍ଷ୍ମଣ ଯେ କରାଇଲ ଶାନ୍ତ ।
ନାମ ଏଣୁ ଏହାର ଯେ ତ୍ର୍ୟମ୍ବକନାଥ । ବ. ପ.

ଅର୍ଥାତ୍ ଶର ବା କାଣ୍ଡ ପୋତ ଏହାଙ୍କୁ ପୂଜା କରି ଥିବାରୁ ଏହାଙ୍କ ନାମ ତ୍ର୍ୟମ୍ବକ ହେଲା ।

ଅଶ୍ୱତ୍ଥାମା— ଅଶ୍ୱତ୍ଥାମାଙ୍କ ପ୍ରସୂତି ବହୁ କଷ୍ଟକର ହେବାରୁ ଦ୍ରୋଣ ବଳାତ୍କାରରେ ଉପାୟ ପ୍ରୟୋଗପୂର୍ବକ ଗର୍ଭସ୍ଥ ସନ୍ତାନକୁ ଭୂମିଷ୍ଠ କରାଇବା ସମୟରେ ଶିଶୁର ମାତା ମୃତ ହେବାରୁ ତାହାଙ୍କ ନାମ ଅଶ୍ୱତ୍ଥାମା ହେଲା ।

ତୋ ମନ୍ଦ ବୁଦ୍ଧିରେ ପୁତ୍ର ମାତା ନାଶ ଗଲା ।
ତେଣୁ ସେ ପୁତ୍ରର ନାମ ଅଶ୍ୱତ୍ଥାମା ହେଲା । ଉ. ପ.

ସଜାତମାତ୍ରୋ ବ୍ୟନଦତ୍ ଯଥୈବୋଚ୍ଚୈଃଶ୍ରବା ହୟଃ ।
ତତ୍ସ୍ୟ ହ୍ରେଷିତଂ ଶ୍ରୁତ୍ବା ଭୂତମନ୍ତରୀକ୍ଷସ୍ଥମବ୍ରବୀତ୍ ।
ଅଶ୍ବସ୍ୟେବାସ୍ୟ ଯତ୍ ସ୍ଥାମନଦତଃ ପ୍ରଦିଶୋ ଗତଂ ।
ଅଶ୍ବତ୍ଥାମୈବ ବାଳୋଽୟଂ ତସ୍ମାତ୍ ନାମ୍ନା ଭବିଷ୍ୟତି ।

ଆ. ପ. ୧୩୧ ଅ:

ସହଦେବ— ପଣ୍ଡୁଙ୍କ ଔରସରେ ଜନ୍ମି କ୍ଷୀର ଅଭାବରୁ ମୃତ ହେଲେ । ସେତେବେଳେ ଅଶ୍ବିନୀକୁମାର ଆସି ନିଜ ଆତ୍ମାକୁ ତନ୍ତିରେ ସଂସ୍ଥାପନ କରି ଜୀବନ୍ୟାସ କରି ଥିବାରୁ ଏ ପ୍ରସୂତ ସନ୍ତାନଙ୍କ ନାମ ସହଦେବ ହେଲା ।

ଆପଣା ତନୁଁ ନେଇ ଭରିଲେ ସେ ଜୀବ ।
ତେଣୁ କରି ନାମ ତାର ହେଲା ସହଦେବ । ଆ. ପ.

ଧୃଷ୍ଟଦ୍ୟୁମ୍ନ—ଦୃଷ୍ଟିରେ ସୃଷ୍ଟିଲେ ଯେ ଅଗ୍ନିକି ବହନ ।
ଏ ପୁତ୍ରର ନାମ ହେଉ ତେଣୁ ଧୃଷ୍ଟଦ୍ୟୁମ୍ନ । ଆ. ପ.

ଧୃଷ୍ଟତ୍ବାଦତିଧୃଷ୍ଣୁତ୍ବାଦ୍ଧର୍ମ୍ମାଦ୍ଦ୍ୟୁମ୍ନସମ୍ଭବାଦପି ।
ଧୃଷ୍ଟଦ୍ୟୁମ୍ନଃ କୁମାରୋଽୟଂ ଦ୍ରୁପଦସ୍ୟ ଭବତ୍ବିତି ।

ଅର୍ଥାତ୍ ଶତ୍ରୁ ଉତ୍କର୍ଷର ଅସହନତ୍ବର ପ୍ରଗଲ୍‌ଭତ୍ବରୁ ଧୃଷ୍ଟ ଏବଂ କବଚ-କୁଣ୍ଡଳାଦି ସହ ଜନ୍ମିଥିବାରୁ ଦ୍ୟୁମ୍ନ ଏପରି ଉଭୟ ନାମର ଏକତାରେ ଧୃଷ୍ଟଦ୍ୟୁମ୍ନ ନାମ ଦିଆଯାଇ ଅଛି ।

ଶ୍ବେତବାହନ—ଚିତ୍ରାଙ୍ଗଦ ଗନ୍ଧର୍ବ ଭାର୍ଯ୍ୟା ରତ୍ନମତୀ,
ତାହାକୁ ହରନ୍ତେ ବଜ୍ରକବଚର ନାତି ।
ହିରଣ୍ୟକବଚ ମାରି ଆଣିଲି ତା ପ୍ରିୟା,
ଗନ୍ଧର୍ବ ହୋଇଲା ମୋତେ ବହୁତ ବିନୟା ।
ହିରଣ୍ୟ ଦୈତ୍ୟପୁରରେ ଥିଲା ରନ୍ଧ୍ରରାଜ,
ଶୁଦ୍ଧ ସ୍ଫଟିକକୁ ଜିଣି ଦିଶଇ ତା ତେଜ ।
ଚିତ୍ରାଙ୍ଗଦ ପୂଜା ମୋତେ କଲା ତାହା ଘେନି,
ତେଣୁ କରି ନାମ ଦେଲା ମୋ ଶ୍ବେତବାହନ । ବି. ପ.

"ଶ୍ବେତାଃ କାଞ୍ଚନସନ୍ନାହା ରଥେ ଯୁଜ୍ୟନ୍ତି ମେ ହୟାଃ
ସଂଗ୍ରାମେ ଯୁଧ୍ୟମାନସ୍ୟ ତେନାହଂ ଶ୍ବେତବାହନଃ ।" ବି. ପ.

ଧନଞ୍ଜୟ—ଶୁଣ ତୁ ଉତ୍ତର ହେ। ସୁଦେଷ୍ଣାନନ୍ଦନ,
ଯେତେବେଳେ ଖାଣ୍ଡବ ମୁଁ କରିଲି ଦହନ ।
ଅଗ୍ନି ଦେବତା ଅନେକ ତୃପତ ହୋଇଲେ,
ଶିବ ଗାଣ୍ଡୀବ ଧନୁକୁ ତହୁଁ ମୋତେ ଦେଲେ ।
ଏ ଧନୁ ହସ୍ତେ ଥିଲେ ସବୁ ହେବ ଜୟ,
ତେଣୁ କରି ନାମ ମୋର ଦେଲେ ଧନଞ୍ଜୟ । ବି. ପ.

"ସର୍ବାନ୍ ଜନପଦାନ୍ ଜିତ୍ୱା ବିତ୍ତମାଦାୟ କେବଳଂ ।
ଧର୍ମେ ଧନସ୍ୟ ତିଷ୍ଠାମି ତେନାହୁର୍ମାଂ ଧନଞ୍ଜୟଂ ।" ବି. ପ. ୪୪ ଅ:

ପାର୍ଥ—ପୃଥା + ଅ ।

ସୁଗନ୍ଧିକା ହରଣେ ହନୁ ହେଲା ବନ୍ଦୀ ।
ଶରେ ସାଗରରେ ମୁହିଁ ସେତୁ ବାନ୍ଧି ।
ଶତେ ଚୌବିଂଶ ଯୋଜନ ସମୁଦ୍ରର ମଧ୍ୟ ।
ଦକ୍ଷିଣାମୂର୍ତ୍ତିରେ ବାନ୍ଧିଲି ଏତେ ବନ୍ଧ ।
ଅନେକ ପ୍ରଶଂସା ମୋତେ କଲେ ହନୁମନ୍ତ ।
ତେଣୁ କରି ନାମ ମୋର ସେହୁ ଦେଲେ ପାର୍ଥ । ବି. ପ.

ସବ୍ୟସାଚୀ— ଗଙ୍ଗାରେ କୃତସ୍ନାନା ଶଚୀଦେବୀଙ୍କୁ ଜଣେ ରାକ୍ଷସ ହରି ନେଇଯାଉ ଥିଲା; ଅର୍ଜୁନ ସେହି ରାକ୍ଷସକୁ ନିହତ କରି ଶଚୀଙ୍କୁ ରକ୍ଷା କରିବାରୁ ସେ ତାଙ୍କୁ ସବ୍ୟସାଚୀ ନାମ ଦେଲେ ।

ଆପଦ ବେଳରେ ତୁମ୍ଭ ଉଦ୍ଧାର କରିଲୁ ।
ତେଣୁ ସବ୍ୟସାଚୀ ନାମ ଆମ୍ଭେ ତୋତେ ଦେଲୁଁ । ବି. ପ. ବି. ଇତ୍ୟାଦି ।
"ଉଭୌ ମେ ଦକ୍ଷିଣୌ ପାଣୀ ଗାଣ୍ଡୀବସ୍ୟ ବିକର୍ଷଣେ ।
ତେନ ଦେବମନୁଷ୍ୟେଷୁ ସବ୍ୟସାଚୀତି ମା ବିଦୁଃ ।" ବି. ପ. ୪୪ ଅ:

ପାଠକଗଣ ଏଗୁଡିକ ପରିଶୀଳନ କରନ୍ତୁ, କବି ମହାଶୟଙ୍କର ଅବିମୃଷ୍ୟ-କାରିତାକୁ କ୍ଷମା କରନ୍ତୁ । ତଥାପି ବିଶ୍ୱାସ କରନ୍ତୁ ଯେ, ନାନା ସ୍ଥାନରୁ ଉଦ୍ଧୃତ ଏ ଦୋଷଗୁଡ଼ିକ କେବଳ କବିଙ୍କର ନୁହେ । ଏଥି ମଧ୍ୟରେ ସମଧିକତଃ ଅନୁଲେଖକ ଓ ପ୍ରକ୍ଷେପକମାନଙ୍କର ନକୃତି ବିକୃତି ମିଶି ଯାଇଅଛି ।



ଅତଃପର ଶ୍ରୀମାନ୍ ସାରଳାଦାସଙ୍କର କବିତ୍ୱମୃଦୁଲ ବା ରୂପାଦି ବର୍ଣ୍ଣନାତ୍ମକ ସ୍ଥଳମାନଙ୍କର ସୌଷ୍ଠବର ବିଷୟ କହଯାଉ ଅଛୁ । ଏ ମହାକବିଙ୍କର କବିତ୍ୱ (ଅନୁଲେଖକ-ମତମାଦ୍ୟକାଳମାଦୁଷିତ ସ୍ଥାନ ଛଡ଼ା) ସର୍ବବ ମୃଦୁ ମଧୁର, ସୁଲଭାର୍ଥ ଚମତ୍କୃତ, ସଂଯତ ଭାବରେ ସମୁଚିତାଲଂକାର-ପରିଷ୍କୃତ ଓ ଲଳିତ, ରସସ୍ଫୂର୍ତ୍ତିବିଳସିତ ଏବଂ ଦ୍ରାକ୍ଷାପାକସୁଭଗ ଥିବାରୁ ସୁହୃଦୟ ପ୍ରାଚୀନ କବିତ୍ୱ-ଭାବୁକମାନଙ୍କର ହୃଦୟ ଓ କର୍ଣ୍ଣରସାୟନ ପ୍ରାୟ ପ୍ରତୀୟମାନ ହୁଏ । ଏହାଙ୍କ କବିତ୍ୱ ମଧ୍ୟରେ ଭୂରି ଭୂରି ଦୁର୍ଲ୍ଲଭ ବିଶୁଦ୍ଧ ଓଡ଼ିଆ ଶବ୍ଦମାନ ଦୃଷ୍ଟ ହୁଏ । ବିଭାଗତଃ କହିବାକୁ ହେଲେ ସଂସ୍କୃତ ଶବ୍ଦ ଅପେକ୍ଷା ଏହାହିଁ ସମଧିକ । ଏ ମହାଶୟ ବହୁ ସ୍ଥଳରେ ଏପରି ମନୋମୁଗ୍ଧକର ଭାଷାର କାନ୍ତିମୟ ପଦମାନ ପ୍ରୟୋଗ କରି ଅଛନ୍ତି ଯେ, ସେଗୁଡ଼ିକ ପଢ଼ିଲାବେଳେ ପରମ ଆହ୍ଲାଦଜନକ ହୋଇଥାଏ । ତତ୍କାଳୀନ ସୁପ୍ରଚୁର କବିଙ୍କ ପ୍ରୟୋଜିତ ଓଡ଼ିଆ ଶବ୍ଦମାନଙ୍କ ମଧ୍ୟରୁ ବର୍ତ୍ତମାନ ବହୁଭାଗ ସର୍ବସାଧାରଣଙ୍କର ଅଜ୍ଞାନତମିରରେ ଲୁକ୍‌କାୟିତ ହୋଇ ସାରିଲାଣି । ସେ ସବୁ ତତ୍ସାମୟିକ ବ୍ୟାବହାରିକ ଭାଷାରେ ସୁପ୍ରଚଳିତ ଥିଲେ ସୁଦ୍ଧା ସାମ୍ପ୍ରତିକ ପ୍ରାଚୀନ ସାହିତ୍ୟ ଔଦାସୀନ୍ୟରୁ ଲୋକଙ୍କ ଜ୍ଞାନ ଗୋଚର ହୋଇପାରେ ନାହିଁ । ସେ ଯାହାହେଉ ଏହି କବିଙ୍କ ବର୍ଣ୍ଣନାଗୁଡ଼ିକ ସର୍ବବ ସରଳ ପ୍ରାଞ୍ଜଳ ଓ ସ୍ୱଭାବ ରମଣୀୟ ହୋଇଅଛି । ସ୍ଥାନେ ସ୍ଥାନେ ସ୍ତ୍ରୀ ରୂପ ବର୍ଣ୍ଣନା ସ୍ତୁତ୍ତିଭିନ୍ନ ଅତ୍ୟନ୍ତ ମନୋହର ଓ ଉଚ୍ଚଭାବସମ୍ପନ୍ନ ତଥାଚ ତଦନ୍ତର୍ଗତ କଳ୍ପନାମାନ ଅତି ଚମତ୍କାର ଅଳଂକାରସମେତ ଓ ଭାବଦ୍ୟୋତକ ଅଟେ । ବର୍ଣ୍ଣନା ସ୍ଥଳମାନ ସଂଯତ ଓ ଅନାଡ଼ମ୍ବରଭାବରେ ରଚିତ ହୋଇଥିବାରୁ ରସ ଭାବୁକମାନଙ୍କର ଅତ୍ୟନ୍ତ ଚିତ୍ତରଞ୍ଜକରୂପେ ପ୍ରତିଭାତ ହୋଇଅଛି । ପ୍ରାୟଶଃ କବିମାନେ ସ୍ତ୍ରୀ ଅଶୃଙ୍ଖଳ ବା ନିରଙ୍କୁଶଭାବରେ ଅସମଞ୍ଜସରୂପେ ନାନା ପ୍ରକାର ଅଶ୍ଳୀଳ ଶବ୍ଦ ସହ ରୂପଶ୍ରୀ ପ୍ରକାଶ କରିଥାନ୍ତି । ଏହି କବି ମହାଶୟଙ୍କ ବର୍ଣ୍ଣନା ସ୍ଥଳମାନଙ୍କ ମଧ୍ୟରେ ତାଦୃଶ ଅସଭ୍ୟତା ଓ ଅସଂଯତତା ନାହିଁ କହିଲେ ଚଳେ । ସାଧାରଣ ଶବ୍ଦମାନଙ୍କରେ ରସସ୍ଫୂର୍ତ୍ତି ହେଲା ଭଳି ସୁହୃଦୟଙ୍କର କର୍ଣ୍ଣମଧୁର ହେଲାପରି ଏହାଙ୍କର ବର୍ଣ୍ଣନା ସ୍ଥଳମାନ ପ୍ରକାଶମାନ ହୋଇଥାଏ । ଯେଉଁ ସ୍ଥାନରେ ଅନାର୍ଯ୍ୟ ବା ଅନାଗରିକ ଭାବ କହିବା ଆବଶ୍ୟକ, ସେହି ଭାବ ବା ଅର୍ଥକୁ ଆର୍ଯ୍ୟବୃତ୍ତି ସହ କୌଶଳ ଭିନ୍ନ ପ୍ରକାର କରି କହି ଅଛନ୍ତି । ଯେପରି କି ପାଣ୍ଡୁରାଜା ଶତଶୃଙ୍ଗ ପର୍ବତରେ ନିଜର ପୁତ୍ରାଭାବ ହେତୁରୁ କୁନ୍ତୀଦେବୀଙ୍କୁ ଜପାୟ ବଳରେ ପୁତ୍ର ଉତ୍ପାଦନ କରି ବୋଲି

କହିଥିବା ସନ୍ଦର୍ଭରେ ବ୍ୟଭିଚାରବୃତ୍ତି ତ୍ୟାଗ କରି "ସନ୍ତାନ ପ୍ରାପ୍ତିର ବିଧାନ କର" ବୋଲି କହିବା ଅତି ଚମତ୍କାରଜନକ ଉକ୍ତି ଅଟେ । ଆଉ କେତେକ ସ୍ଥଳରେ ରସସ୍ଫୂର୍ତ୍ତି ସକାଶେ ଅପ୍ରସ୍ତୁତ ଅର୍ଥମାନ ଅଭିଧା-ଅର୍ଥବୋଧକ ଶବ୍ଦରେ ପ୍ରକାଶ ନ କରି ଗୌଣାର୍ଥ ପଦ ପ୍ରୟୋଗରେ ବିବକ୍ଷିତାର୍ଥ ପ୍ରତିପାଦନପୂର୍ବକ ଚାତୁର୍ଯ୍ୟ ପ୍ରକାଶ କରି ଅଛନ୍ତି । ଯେପରି କି "ଲୋକନିନ୍ଦ୍ୟ ବିଷୟ କହିବା ଉଚିତ କି ?" ଏହି ଅଭିପ୍ରାୟ ନିରୂପଣ କରିବା ସ୍ଥଳରେ ଅଭିଧାର୍ଥରେ "କହିବା" "ପ୍ରକାଶ କରିବା" ଇତ୍ୟାଦି ପଦ ପ୍ରୟୋଗ ନ କରି "ତୁଣ୍ଡରେ ଧରିବା" ଏହି ପଦ ପ୍ରୟୋଗ କରି ଅଛନ୍ତି । ଏହାଦ୍ୱାରା ସେହି ଦୂଷିତ ଅଭିପ୍ରାୟ ଅତି ନିନ୍ଦ୍ୟ ବୋଲି ସୁସ୍ପଷ୍ଟ ପ୍ରକାଶ ପାଏ । ଅଥଚ ବାକ୍ୟର ଗୌରବ ସାଧିତ ହୁଏ, ଶାସ୍ତ୍ରନିର୍ଦ୍ଦିଷ୍ଟନିୟମରେ ଦେବତାମାନଙ୍କର ପ୍ରଥମତଃ ପାଦରୁ ମସ୍ତକ ଯାଏ ଏବଂ ମାନବର ମସ୍ତକଠାରୁ ପାଦ ଯାଏ ବର୍ଣ୍ଣନୀୟ ଅବୟବର ବର୍ଣ୍ଣନାକ୍ରମ ନିୟମିତ ଥିବାରୁ (୧) ଏ ମହୋଦୟ ପ୍ରୋକ୍ତ ଆଦେଶକୁ ଏବଂ ଅଳଂକାର ଶାସ୍ତ୍ରୋକ୍ତ ଅନ୍ୟାନ୍ୟ କବି ସମୟଗୁଡ଼ିକୁ ଉଲ୍ଲଂଘନ ନ କରି ସମୁଚିତ ସରଣୀ ଅନୁସରଣରେ ଅତି ସରଳ ଭାଷାରେ ସୁବିସ୍ତରରୂପେ ଅନନ୍ୟ ସୁଲଭ ଭାବମାନ ନିବଦ୍ଧ କରି ଅଛନ୍ତି । ପାଠକେ! ନିମ୍ନରେ ଉଦାହୃତ ସ୍ତ୍ରୀରୂପବର୍ଣ୍ଣନାତ୍ମକ ସ୍ଥଳମାନଙ୍କରୁ ଏଥିର ସମ୍ପୂର୍ଣ୍ଣ ପରିଚୟ ପାଇ ପାରିବେ । ଅଥଚ କବି ଯେପରି ସ୍ଥାନେ ସ୍ଥାନେ ଏହି ମହାଭାରତ ଗ୍ରନ୍ଥ ଶ୍ରବଣରେ ପାଠକଗଣଙ୍କର ପଠନେଚ୍ଛା କ୍ରମଶଃ ବଳବତୀ ହେବାର (୨) କହି ଅଛନ୍ତି, ତାହା ଏକାନ୍ତ ସତ୍ୟ । ଆପଣମାନେ କ୍ରମଶଃ ଦେଖିନେଲେ, ଅବଶ୍ୟ ବିଶ୍ୱାସ କରିବେ, ଏହି ସୁନ୍ଦର ପ୍ରସାଦ ଗୁଣବିଶିଷ୍ଟ କବିତା ପାଠରେ ଶୁଶ୍ରୂଷା ଉତ୍ତରୋତ୍ତର ବଳବତୀ ହୋଇଉଠେ । କିନ୍ତୁ ଆଉ ଗୋଟିଏ କଥା ସୁହୃଦୟ ପାଠକଗଣ ସମାହିତ ମନରେ ହୃଦୟଙ୍ଗମ କରିବା ଆବଶ୍ୟକ । ସମ୍ପ୍ରତି ପ୍ରଦର୍ଶିତ ବର୍ଣ୍ଣନା ସ୍ଥଳମାନ ବହୁକାଳ ବ୍ୟାପୀ ଅସ୍ଥାନସ୍ଥିତ ହେତୁରୁ ବହୁ ପରିମାଣରେ ବିକୃତ ହୋଇଯାଇ ଅଛି । କବି ନିହିତ ପଦବିନ୍ୟାସର ସୌଷ୍ଠବ ଓ ଅପୂର୍ବ-ମାଧୁର୍ଯ୍ୟ ଅନେକ ସ୍ଥଳରେ ବିଚ୍ୟୁତ ହୋଇଯାଇ ଅଛି, ଏହି କବିତାଗୁଡ଼ିକର ପୂର୍ବ ରୂପ ଅପେକ୍ଷାକୃତ ପରିଶୁଦ୍ଧ ଓ ରମଣୀୟ ଥିଲା, ଏଥିରେ କିଞ୍ଚିଦପି ସନ୍ଦେହ ହୁଏନାହିଁ ।

---

(୧) ମାନବା ମୌଳିତୋ ବର୍ଣ୍ଣ୍ୟା ଦେବାଶ୍ଚରଣପ୍ରୋଃ ପୁନଃ । ଇତି କବିକଳ୍ପଲତା ।
(୨) ମ. ପ. ୧୧୨ ପୃଷ୍ଠା ଦେଖନ୍ତୁ ।

## ମଧ୍ୟପର୍ବରେ ଶାମ୍ବକୁମାରଙ୍କ ପ୍ରତି ନାରଦଙ୍କ ଉକ୍ତି
## ଚନ୍ଦ୍ରାବତୀଙ୍କ ସର୍ବାଙ୍ଗ ରୂପ ବର୍ଣ୍ଣନା

କୁଞ୍ଚିତକେଶ ଯେ ମାଳାରେଖ ଗଞ୍ଜଣି,
ଅତି ଶ୍ଳେଟ ଅତି ଲମ୍ବ ନୁହଇ ଚକୁର ବେଣୀ ।
ରତ୍ନରଞ୍ଜିତ ଜାଣି ଦିଶଇ ଲଲାଟ ପାଟୀ,
ତହିଁର ଉପରେ କି ମାଳାରେଖ ଗୋଟି ।
ଲଳିତ ଭ୍ରୂଲତା କି କାମଦେବର ଧନୁ,
ପୁରୁଷ ମାନଙ୍କ ଦେଖି କେ ନିଜ ଶରୀର ଦେନୁ ।
ତାହା ଶ୍ରେଷ ସରୁ ନୟନର ବାଣ,
ରବି ସୋମ ସତ୍ତ୍ୱ ରଜ ତମ ପଞ୍ଚ ଗୁଣ ।
ଏ ପଞ୍ଚ ଗୁଣ ଦେନ ବୃଷ୍ଟିଲେଣ ଦୃଷ୍ଟି,
ଲୋହ ପାଷାଣ ହୋଇଲେ ତକ୍ଷଣେ ଯିବ ଫୁଟି ।
ସୁନ୍ଦରୀର କଞ୍ଚିତ ଅବଲୋକନ ବୃହାଣି,
ଅନମିଷେ ସହସ୍ରେକ ସଂସାର ପାରଇ ହାଣି ।
ଏକ ଧର୍ମ ମାନଙ୍କ କଲା ପ୍ରଜାପତି,
ମାରି ତାରି ପାରଇ ଅମୂଲ୍ୟ-ରତ୍ନ-କାନ୍ତି ।
ନାସା ପଟାନ୍ତର କଣସୁ ଘଟନ ଶୋଭା,
ତିଳଫୁଲ ପଟାନ୍ତର କରନ୍ତୁ ମୂର୍ଖ ଅବା ।
ଅଳପ ଦିନେ ସେ ପୁଷ୍ପ ଭୂମିରେ ଲୋଟଇ,
ତେଣୁ କରି ପଟାନ୍ତର ସେ ପୁଷ୍ପ ନ ଘଟଇ ।
ଜୀବ ଯେଣେ ବହଇ ତହିଁ ପବନ ବେନି,
ମୃଦୁ ନାସା ଭିତରେ ଅଛି ମୃତ୍ୟୁସଞ୍ଜୀବନୀ ।
ମଞ୍ଜୁଳ ପୁଷ୍ପ ପ୍ରାୟେ ତାହାର ଅଧର ବିକାଶି,
ତମ୍ବୁଳ ବହୁନେ ଝଳକନ୍ତି ରୂପରାଶି ।
ମଞ୍ଜୁଳ ମଞ୍ଜି ପ୍ରାୟେ ଦିଶଇ ଦନ୍ତପନ୍ତି,
ଶ୍ୟାମଳ ମେଘେ ଦିଶଇ ବିଜୁଳୀର ଜ୍ୟୋତି ।
ମଉନେ ସୁନ୍ଦରୀ ନ କହଇ ବଡ଼େଁ କଥା,
ନ ପୁଣ ଇହଲୋକେ ପାବନ୍ତି ଅବସ୍ଥା ।

କୋକିଳ ଯେ ଭାଷନ୍ତି ମଧୁର ସ୍ୱର ବାଣୀ,
ବସନ୍ତ ଋତୁ ଗୁଡ଼ିଲା ସେ ତାହାର ବାକ୍ୟ ଶୁଣି ।
ଶୁଷ୍କ ତରୁ ପଲ୍ଲବଇ ତାହାର ଭାଷନ୍ତେ,
ମଳୟାନିଳ ବହିଲା କି ଏହାର ବାକ୍ୟ ଶୁଣନ୍ତେ ।
ଚଳନ୍ତ ଯେବେ କର୍ଣ୍ଣ ଏହାର ଶିରର ଦେଶପାଖେ,
ପଞ୍ଚଶର ଶର (ପାଶ) ଯେନ ଗମନ୍ତ ବା ଲକ୍ଷେ ।
କୁନ୍ଦ କମ୍ବୁ ଘଟଣା ପ୍ରାପ୍ୟେକ ତାହାର କଣ୍ଠତଟ,
ଉର୍ଦ୍ଧ୍ୱ ଗମ୍ଭୀର, ନୁହଇ ଯେ ବାକ୍ୟ ମୁଗଟ ।
ମାଳ ଯେହ୍ନେ ପଦ୍ମରେ ପଡ଼ନ୍ତେ ଢଳଢଳ,
ତହିଁ କ ଶୋଭାବନ କଂଶତ ରୋମାବଳୀ ।
ସମସ୍ତ ଠୁଳ କରି ଚନ୍ଦ୍ର ବଦନ କଲା,
ପଶ୍ଚାତେ ଶଶଧର ଲଜ୍ଜାହିଁ ପାଇଲା ।
ଚନ୍ଦ୍ର ହିତ ତୁଲ୍ୟ ନୋହିଲା ପ୍ରଜାପତିର ଶାପେ,
ତନୁ କ୍ଷିନ୍ନ ଗଲା ପଟାନ୍ତର ନୋହିଲା ଅନୁରୂପେ ।
ଚନ୍ଦ୍ରବଦନୀ ବୋଲି ଅବା ପଟାନ୍ତର କଲି ନ ଜାଣି,
ଲେଖକ ଘଟନେ ତ ତୁଲ୍ୟ କଲି ଆଣି ।
ସିନ୍ଧୁମନ୍ଥନୁ ଉତ୍ପତ୍ତି ଯେବଣ ଶଶୀ,
ସେ ଚନ୍ଦ୍ର ଅକଳଙ୍କ ଅଟଇ ନଶଦୋଷୀ ।
ସେ କନ୍ୟା ବଦନକୁ ସେ ଚନ୍ଦ୍ର ପଟାନ୍ତର ଅଟଇ,
ସମ୍ପୂର୍ଣ୍ଣ ଚନ୍ଦ୍ର ଯେ ନ ଛୁଟଇ ନ ଫୁଟଇ ।
ବପୁଦର୍ପ-ଧ୍ୱଂସିନୀ ସେ ଆକର୍ଷଣ ଯେବେ ବାହୁ,
ପୁରୁଷ କୁଳରେ ଦର୍ପ ଯେନ କେ ତାହା ସହୁ ।
ସୁବଳିତ ରସାଣ କନକରମ୍ଭ-ଝଳ,
ହେମଝଲି ଯେବେ ପଦ୍ମ ଉପରେ ଦଶ ଅଙ୍ଗୁଳୀ ।
ଏ ଉପରୁ କଙ୍କଣ ଝଟକିତ ପଞ୍ଚରେଖ,
ଶୁଦ୍ଧ ସ୍ଫଟିକ ପ୍ରାପ୍ୟେ ଘଟନ ଦିଶଇ ନଖ ।
ସେ ଦୁଇ ଭୁଜର ମଧ୍ୟେ ବିସ୍ତାର ତାର ହୃଦେ,
ସୁଠାଣି ଆରମ୍ଭ ତଥା ଯେବେ କୁମ୍ଭ ହାଦେ ।

"ଶରଦ ହେମ ଶିଶିର ବସନ୍ତ-ଗ୍ରୀଷମ ବରଷା",
ଏ ଛଅ ଋତୁକୁ ଯେଉଁ ସେବ୍ବ କୁନ୍ଦକଳସା ।
ଋତୁକୁମ୍ଭ ଉପରେ ମାଳା-ବେଣୀ ଜଳସା,
ଯେ ଯାହା ଋତୁକୁ ଯେଉଁ ଭୋଗ କରନ୍ତି ସାଠିଏ ଦିବସା ।
ସେ କୁଚକୁମ୍ଭ ଲଗିବ ଯାହାର ହୃଦେ,
ଗଗନ ତାପନ୍ତି ନ ଯେଉଁବ ଋତୁ ଶବଦେ ।
ଶିଶିରେ ଉଷ୍ମ ହୋଇବାକ ଜାଣ୍ଡେ,
ହେମ ଋତୁକୁ ହୋଇବ ବଦନ ତେଜ ପ୍ରାପ୍ତେ ।
ବସନ୍ତେ ହୋଇବ ଶୀତଳ ଜଳ ଜାଣି,
ଗ୍ରୀଷମେ ଶୀତଳ ଯେହ୍ନେ ଜଳେ ନଳନୀ ।
ବରଷା ଋତୁକୁ ହୋଇବ ଉଷ୍ମ,
ଛଅ ଋତୁକୁ ଯେଉଁ ବହିବ ଛଅ ନାମ । (୧)
ଯେଉଁଗୋଟି ତାହାର ମୃଣାଳ ପଦ୍ମ ପ୍ରାପ୍ତେ,
ସୁରଭି ପଦ୍ମ ଜାଣି, ଗମ୍ଭୀର କୂପ ସେ ଯେ ।
ମଦନ ମାଦନ ମୋହନ ଦହନ ଶୋଷଣ ଏ ପଞ୍ଚଶର (୨)
ଏ ବ୍ରହ୍ମକୁଣ୍ଡରୁ ହୋଇଛନ୍ତି ଅବତାର ।

× × × ×

ଉଲଟ କଦଳୀ ଜାଣି ତାହାର ବେନି ଜାନୁ,
ମଦନ ଧନୁକୁ କି ସନ୍ଧିଲ କୃଶାନୁ ?
ଜନଜଘନ ସୁନ୍ଦର ପରମ ବେଣୀ ବୃଷାଞ୍ଚି ଭଳୀ,
ଦେଖିଣ ପୁରୁଷ କେ ଯିବ ଚହ୍ନି ଚଳି ।

× × × ×

ନବ ସୃଷ୍ଟି ରଚନା ଗ୍ଭଡ଼ିଲ ପ୍ରଜାପତି,
ସହସ୍ରେ ବରଷେ ଲେଖନ କଲ୍ପ ଧ୍ୟାନି ରୂପକାନ୍ତି ।

(୧) ଶୀତେଷୁ କୋଷ୍ଣସର୍ବାଙ୍ଗୀ ଗ୍ରୀଷ୍ମେ ଯା ସୁଖଶୀତଳା—
ଏହି ଶାସ୍ତ୍ରୀୟ ମତକୁ ଅନୁସରି ଅଛନ୍ତି ।

(୨) ଉନ୍ମାଦନଃ ଶୋଷଣଶ୍ଚ ମାରଣସ୍ତାପନସ୍ତଥା,
ସମ୍ମୋହନଶ୍ଚ କାମସ୍ୟ ବାଣାଃ ପଞ୍ଚ ପ୍ରକୀର୍ତ୍ତିତାଃ ।

ଏତେକାଳେ କହିପାରିଲି ପତନେ ସମ୍ବାଦ,
କଣ୍ଟକ ଦୋଷେ ଅଳ୍ପ ହୋଇଲି ପ୍ରମାଦ ।
ମଣ୍ଡାଖଣ୍ଡ ଆଣି ସଙ୍କର୍ଣ୍ଣ କଲି ଖିନ୍ନ,
ପଞ୍ଚାନ୍ତରକୁଣ୍ଡି ହଣିଲି କୃପଣର ଦାନ ।
ଘନ ଗହନ ଲାଗି ପଡ଼ଇ ନିକ ଭଜ,
ପୁଣ କେତେକାଳେ ପ୍ରଜାପତି ପାଶବ ତାହା ସର୍ଜି ।
ଚାଲନ୍ତେ ସୁନ୍ଦରୀ ନ ପଡ଼ଇ ପାଦଗତି,
ଚକିତ ଚକିତେଣ ପାଦେଣ ପଦଭ୍ରାନ୍ତି ।
ଜଳେ ଯେସନେକ କ୍ରୀଡ଼ନ୍ତି ରାଜହଂସ ପନ୍ତି,
ସେହିରୂପେ କନ୍ୟା ଚାଲଇ ହଂସଗତି ।

ଆହା ! କି ସୁନ୍ଦର ସରଳ ବିମଳ ଭାବ, କି ସୁନ୍ଦର କଳ୍ପନା । ପାଠକେ ! କେତେଗୋଟି ଆଧୁନିକ କାବ୍ୟରେ ଏତାଦୃଶ ସରଳ ଭାବ ପ୍ରଚୁରତା ଏବଂ ବୃଥାଡ଼ମ୍ବରହୀନ ଭାବଗର୍ଭସୌନ୍ଦର୍ଯ୍ୟାଧାର ବର୍ଣ୍ଣନା ଦେଖିବାକୁ ପାଇବେ ? ଏଥି ମଧ୍ୟରେ ସୁକବିକବିତ ସାରଳାଦାସଙ୍କର ହୃଦ୍‌ଗତ ସୁମଧୁର ଭାବମାନ ଅନେକ ପ୍ରାଚୀନ ଓଡ଼ିଆ ସଂସ୍କୃତ କବିମାନଙ୍କ ଭାବ ସହିତ ଏକପ୍ରକାର ବିଦ୍ୟମାନ ରହିଅଛି । ଏହା ସଙ୍ଗେ ମିଳାଇବା ପାଇଁ ଅନ୍ୟାନ୍ୟ କାବ୍ୟର ପଦ୍ୟମାନ ଉଦ୍ଧୃତ କରି ପ୍ରବନ୍ଧ ବଢ଼ାଇବାର ଆବଶ୍ୟକତା ଦେଖୁନାହୁଁ । ଅଭିଜ୍ଞ ପାଠକଗଣ ଯେ କୌଣସି ପ୍ରାଥମିକ ସାହିତ୍ୟିକ ଲେଖାର କବିତା ସଙ୍ଗେ ଏହାକୁ ମିଳାଇ ଦେଖନ୍ତୁ, ସର୍ବଥା ଉତ୍କୃଷ୍ଟ ମନେ କରିବେ । ତଥାପି ନିତାନ୍ତ ଦୁଃଖର ବିଷୟ ଏହି ଯେ, କେତେକ ପଦ୍ୟର ଭାବ ଓ ପଦବିନ୍ୟାସରୀତିଗୁଡ଼ିକ ଅନଭିଜ୍ଞ ଅନୁଲେଖକମାନଙ୍କଦ୍ୱାରା ଅନ୍ୟାକୃତ ହୋଇଯାଇ ଥିବାରୁ ସୌନ୍ଦର୍ଯ୍ୟ ହରାଇ ଅନର୍ଥତାରେ ପଡ଼ିଯାଇ ଅଛି । ସୁତରାଂ ଏହି ପଦ୍ୟଗୁଡ଼ିକ ଛାପା ପୁସ୍ତକରେ ମଧ୍ୟ ଭିନ୍ନାକାର ଓ ଅଯଥାକ୍ରମ ହୋଇ ପଡ଼ିଅଛି । (୧) କବିଙ୍କର ରଚନାକାଳୀନ ପ୍ରକୃତ ସୌନ୍ଦର୍ଯ୍ୟାଧାର ପ୍ରତିକୃତି ଅତ୍ୟଳ୍ପ ସ୍ଥଳରେ ମାତ୍ର ଅକ୍ଷୁର୍ଣ୍ଣ ରହିପାରି ଅଛି । ସମଧିକ ସ୍ଥଳ ଅନୁଲେଖକଙ୍କର ମତିଦୋଷକାଳିମାରେ କଳଙ୍କିତ ଓ ବିକୃତ ହୋଇଯାଇ ଅଛି । ଏହି କବିଙ୍କର ଯାବତୀୟ ରୂପବର୍ଣ୍ଣନାର ସ୍ଥଳମାନ ଏତାଦୃଶ ଦୁରବସ୍ଥାରେ ଅବସ୍ଥିତ । ତଥାପି ତାହାର ନୈସର୍ଗିକ ଚମତ୍କାରିତା-

(୧) ମଧ୍ୟପର୍ବ ଛାପାରେ ୨୮୫ — ୨୫୭ ପୃଷ୍ଠା ଦେଖନ୍ତୁ ।

ଅଂଶ ଅଂଶତଃ ବିଦ୍ୟମାନ ରହିଅଛି । ଏତାଦୃଶ ଆଉ ଗୋଟିଏ ବିଚିତ୍ର ଚିତ୍ରଣ ବର୍ଣ୍ଣନାତ୍ମକ ସ୍ଥଳ ଦେଖନ୍ତୁ । ତହିଁରେ ସୁଦ୍ଧା ଏଭଳି ଅସାଧାରଣ ସୌନ୍ଦର୍ଯ୍ୟ ଚିତ୍ରଣର ପ୍ରତିମା ପ୍ରତିବିମ୍ବିତ ହୋଇଅଛି । ଦେଖିବେ, ତହିଁରେ ମଧ୍ୟ ପୂର୍ବ ପ୍ରଦର୍ଶିତ ଭାବମାନ ଠିକ ବିଦ୍ୟମାନ ରହିଅଛି । ଅତଏବ ପାଠକଗଣ ସମ୍ପୂର୍ଣ୍ଣ ପ୍ରତୀତ କରିବେ ଯେ, ଶ୍ରୀମାନ୍ ସାରଳାଦାସଙ୍କର ଚିତ୍ରିତ ସ୍ତ୍ରୀରୂପ ବର୍ଣ୍ଣନାତ୍ମକ ଚିତ୍ରଣ ପ୍ରାୟଶଃ ସର୍ବତ୍ର ସମାନ ।

ବନ ପର୍ବରେ ମେରୁଶୂଳ ନାମକ ଦୈତ୍ୟର ନନ୍ଦିନୀ ତ୍ରିପୁରମୋହିନୀଙ୍କର ସର୍ବାଙ୍ଗ ଶୋଭାବର୍ଣ୍ଣନା ନାରଦ ପ୍ରଦ୍ୟୁମ୍ନଙ୍କୁ କହୁଅଛନ୍ତି—

ବାବୁ ତ୍ରିପୁରମୋହିନୀ ସମ ନାହିଁ ତିନିପୁର,
ରୂପେ ଗୁଣେ ତାହାଙ୍କୁ ନାହିଁ ଯେ ପଟାନ୍ତର ।
ଆକୁଞ୍ଚିତ ଚିକୁର କବରୀ ଅଙ୍ଗ ଭାର,
ପ୍ରବନ୍ଧ ଥୋପ ତାର ବିସ୍ତାରଶାଳୀ ଭାର ।
କୁସୁମ ନ ଯେନଇ ଗୁନ୍ଥି ହେବ ବୋଲି,
ସୁଗନ୍ଧେ ମଧୁକର ବନ୍ଦୀ ହେଲେ ଭୁଲି ।
ରସାଣର ପତ୍ର ପ୍ରାୟେ ଲଲାଟ ପରିପାଟୀ,
ମର୍କତ ହେମାବଳୀ ମାଳାରେଖ ଗୋଟି ।
ଲଲାଟର ତଳେ ବଙ୍କ ଯେ ଭ୍ରୂପାଞ୍ଚି,
କାମଦେବ ଧନୁ କି ତହିଁରେ ନେଇଁ ଏଞ୍ଚି ।
ସେ ଧନୁ ଆମନ୍ତ୍ର ନୟନ ତୀକ୍ଷ୍ଣ ବାଣେ,
କଞ୍ଚିତେ ଚାହିଁଲେ ପୁରୁଷେ ଢଳନ୍ତି ତତକ୍ଷଣେ ।
ଯଦ୍ୟପି ପାଷାଣ ହୋଇବ ବଜ୍ର ଯୋଟି,
ଅପାଙ୍ଗେ ଚାହିଁଲେ ଯେ ସେହି ଯିବ ଫୁଟି ।
ହତ୍ୟା ଅପବାଦକୁ ଭୟ କରି ସେହି ବାଳୀ,
ତେଣୁ କରି ବଦନ ନ ଚାହେଁ ଦେବୀ ତୋଳି ।
କଣୟ ଘଟନ ପ୍ରାୟେ ତିଳପୁଷ୍ପ ନାସା,
ବନ୍ଧେ ଚାହିଁଲେ ପୁରୁଷର ଭାଙ୍ଗିବ ଭରସା ।
ତଥିରେ ପବନ କରନ୍ତେ ବିକାଶ,
ମୃଗନାଭିକସ୍ତୁରୀ ଯେହ୍ନେ କରଇ ବାସ ।

ବାନ୍ଧୁଲି ପୁଷ୍ପ ଜାଣି ରଙ୍ଗ ଓଷ୍ଠଗୋଟି,
ବିକାଶିତ ବିଦ୍ୟୁତ ଦଂଶନ ବେନ ପାଟି ।
ବଚନ ଶ୍ରବଣେ ନ ରହିଲେ ପିକ ଜନ୍ତୁ,
ଶୁଭଲେ ବନ ସ୍ଥାନେ ଅକାଳେଣ ମୃତ୍ୟୁ ।
ନବୀନ କୁନ୍ଦ ଜାଣି ହିରଣ୍ୟ ଗଣ୍ଡସ୍ଥଳ,
ଗଭୀର କଣ୍ଠତଟ ସୁସଞ୍ଜ ସରଳ ।
ବିସ୍ତାର ପ୍ରଲମ୍ବ ଭୁଜ ବେନ ବାହେ,
ହୃଦବିସ୍ତୃତ ସ୍ତନ ସୁଧାକୁମ୍ଭ ପ୍ରାୟେ ।
କୁମୁଦ ନାଳ ଯେହ୍ନେ ଶୀତଳ ସୁସଞ୍ଜ,
ନୁହଇ ସୂକ୍ଷ୍ମ ସେ ନୁହଇ ବଡ଼ ଜଡ଼ ।
ଚମ୍ପା କଢ଼ି ଜାଣି ଦଶଇ ଅଙ୍ଗୁଷ୍ଠୀ,
କୁନ୍ଦପାଖୁଡ଼ା ପ୍ରାୟେ ନଖ ରେଖ ଘଟି ।

× × ×

ଭଲଟ କଦଳୀ ଜାଣି ଦଶଇ ତାର ଜାନୁ,
ଦେଖିଲେ ପୁରୁଷର ଭାଜିଯିବ ତନୁ ।

× × ×

ସୁରଭି ପୁଷ୍ପ ପ୍ରାୟେ ପାଦତଳର କାନ୍ତି,
ସୁଗନ୍ଧ ପୋହଳା ପ୍ରାୟେ ଅଙ୍ଗୁଳୀ ବିରାଜନ୍ତି ।

× × ×

ଅତ୍ୟନ୍ତ ନବଡ଼ କୁଚ ବେନ ଶୋଭା,
ଅନଙ୍ଗଭଣ୍ଡାର କୁଢ଼ କରିଅଛି ଅବା ।
ସମ୍ପୂର୍ଣ୍ଣ ଚନ୍ଦ୍ରମା ବୋଲି ଯଟାନ୍ତର ମୁଖକୁ,
ତାର ମୁଖ ନହିଲା ଚନ୍ଦ୍ର ଦେବତାକୁ ।
କଣ୍ଠେ କଳଙ୍କୀ ଯେଣୁ ଯେ ହୋଇଲାକ ଶଶୀ,
ତାହାର ବଦନଗୋଟି ଅଟଇ ନର୍ଦ୍ଦୋଷୀ ।
ହୃଦୟ ବିସ୍ତାର ଯେ ଅତ୍ୟନ୍ତ ବିଶାଳ,
ତଥି ଉପରେ ଶୋଭ ଯେ ଅଛି କୁଚ ଯୁଗଳ ।

ଏ ମହା ଜଗତକୁ ଯେ ମନ୍ଥା ତାର ଶିନ୍ଧ,
ନ ପୁଣ ଭଜିବ ବନ୍ଧିଲେ ପବନ ।
ଏତେ କାଳ ବସି ସର୍ଜିଲ ବିଧାତା,
ସେ ଯେଣ ଗ୍ରନ୍ଥିଲା ନବ ସୃଷ୍ଟି ଚନ୍ତା ।
ଶିଶିରେ ହିମରେ ତପତ ତାର କାୟେ,
ବସନ୍ତ ଗ୍ରୀଷ୍ମରେ କମଳଦଳ ପ୍ରାୟେ ।
ବରଷା ଶରତକାଳେ ବାଳାର୍କର ତେଜ,
ତୋତେ ବିନା ପ୍ରାପ୍ତ ସେ ହୋଇବ ମନସିଜ ।

× × ×

ଇତ୍ୟାଦି (୧)

ଏହି କବି ମହୋଦୟ ସ୍ୱୟମ୍ବର ସଭାରେ ଉପଗତା ଦ୍ରୌପଦୀ ଦେବୀଙ୍କ ରୂପବର୍ଣ୍ଣନାଟିକୁ ପ୍ରାୟ ତିନି ପୃଷ୍ଠ ପର୍ଯ୍ୟନ୍ତ ସୁବିସ୍ତୃତ କରି ଅପେକ୍ଷାକୃତ ରମଣୀୟ-ରୂପେ ବର୍ଣ୍ଣି ଅଛନ୍ତି । ଏଥିରୁ ଅନେକଗୁଡ଼ିଏ ପଦ୍ୟ ବଡ଼ ହୃଦୟସ୍ପର୍ଶୀ । ଏଥିରେ ଦେଖିବେ, କବିଙ୍କର ଖୁବ ଭାବୁକତା ପ୍ରକାଶ ପାଉଅଛି । ବିରାଟ ପର୍ବରେ ମଧ୍ୟ ଦ୍ରୌପଦୀଙ୍କର ରୂପବର୍ଣ୍ଣନା ଏତାଦୃଶ କରି ଅଛନ୍ତି । ସ୍ଥୂଳତଃ କହିଲେ ଶ୍ରୀମାନ୍ ସାରଳାଦାସଙ୍କର ସ୍ତ୍ରୀରୂପ ବର୍ଣ୍ଣନାର ଚିତ୍ରଭାଷା ସର୍ବଥା ଏକପ୍ରକାର । ସ୍ଥାଳୀପୁଲାକ ନ୍ୟାୟରେ ପ୍ରଦର୍ଶିତ ସ୍ଥଳମାନଙ୍କରୁ ଅଭିଜ୍ଞ ପାଠକଗଣ ପ୍ରାଚୀନ କବିଙ୍କର ପ୍ରାଚୀନ କବିତ୍ୱପଟିମା ବିଚାର କରି ନେବେ । ଆଉ ବିଶେଷ ଉଦ୍ଧୃତ କରିବା ଆବଶ୍ୟକ ନୁହେ । ଏ ମହାଶୟ ସ୍ତ୍ରୀରୂପ ବର୍ଣ୍ଣନା ପରି ପୁଂରୂପ ବର୍ଣ୍ଣନରେ ମଧ୍ୟ କବିସମ୍ମତତ୍ୱ ଓ ବିଷୟସଙ୍ଗତସମ୍ମାନତ୍ୱବିଧାନରେ କୃତିତ୍ୱ ପ୍ରଦର୍ଶନ କରି ଅଛନ୍ତି । ଯଦିଚ ପାଠକଙ୍କର ଦିଦୃକ୍ଷା ହୁଏ, ଆଦିପର୍ବାନ୍ତର୍ଗତ କର୍ଣ୍ଣଙ୍କର ଶୈଶବ ରୂପ ବର୍ଣ୍ଣନାଟି ଦେଖିନେବେ, ଏହାର ପ୍ରଧାନ ଦୃଷ୍ଟାନ୍ତ ସ୍ଥଳରୂପେ ବିଦ୍ୟମାନ ଅଛି; କିନ୍ତୁ ଏତିକି ଅନୁରୋଧ ଯେ, ଏ ସବୁ ଛାପା ପୁସ୍ତକରେ ରୂପାନ୍ତରିତ ହୋଇଯାଇ

(୧) ଏହି ବର୍ଣ୍ଣନାତ୍ମକ ପଦ୍ୟଗୁଡ଼ିକ ଛାପା ବନ ପର୍ବର ୩୨୪।୩୨୫ ପୃଷ୍ଠାରେ ଦେଖନ୍ତୁ, ଭିନ୍ନାକାର ହୋଇ ପଡ଼ିଅଛି । ତାଳପତ୍ର ପୁସ୍ତକରେ ମଧ୍ୟ ଅନେକ ସ୍ଥଳ ମତିଦୁର୍ବୋଧ ଅନୁଲେଖକମାନଙ୍କ ଦ୍ୱାରା ଏକାନ୍ତ ବିକୃତ ଓ ବିଧ୍ୱସ୍ତ-ଭାବ ହୋଇ ଯାଇଅଛି । ଅତଏବ ସେପରିଗୁଡ଼ିକୁ ପରିତ୍ୟାଗ କଲୁଁ ।

ଥିବାରୁ ଚାଳପତ୍ର ପୁସ୍ତକରୁ କଷ୍ଟକରି ଗବେଷଣା ସହ କବିପ୍ରଦତ୍ତ ସରଳ ସୌନ୍ଦର୍ଯ୍ୟ ଦେଖିବାକୁ ଚେଷ୍ଟା କରିବେ ।

ଆମ୍ଭମାନଙ୍କର ଆଦ୍ୟ କବି ମହୋଦୟଙ୍କର ଶୃଙ୍ଗାର ରସାତ୍ମକ ବର୍ଣ୍ଣନାରେ ପ୍ରକାଶିତ କୃତିତ୍ୱ ଅପେକ୍ଷା ବୀରାଦି ରସବର୍ଣ୍ଣନାରେ ମଧ୍ୟ କିଛି ଉଣା ନୁହେ । ଏହାଙ୍କର ଯେଉଁ ରସାତ୍ମକ ବର୍ଣ୍ଣନାଟି ପଢିବେ, ତତ୍‌କ୍ଷଣାତ୍ ଭାବୁକଙ୍କ ହୃଦୟରେ ସେହି ରସ ଭାବର ଆବିର୍ଭାବ ହୁଏ । ବିସ୍ତୃତ ଭୟରୁ ବୀରବୀଭତ୍ସାଦି ରସାତ୍ମକ ସମଗ୍ର ବର୍ଣ୍ଣନାମାନ ନ ଦେଇ ନାନା ସ୍ଥାନଗତ କେତେକ ବର୍ଣ୍ଣନା ଅଂଶ ମାତ୍ର ଉଦ୍ଧୃତ କରୁଅଛୁଁ । ପାଠକଗଣ ତଦ୍ଦ୍ୱାରା କବିଙ୍କ କବିତା ଶକ୍ତି ଅବଶ୍ୟ ବୁଝି ପାରିବେ । ସୁତରାଂ ଏ କବି ଯେ ଯେ ସ୍ଥଳରେ ଯେଉଁ ଯେଉଁ ଯୁଦ୍ଧର ବର୍ଣ୍ଣନା କରି ଯାଇ ଅଛନ୍ତି, ସେ ସବୁ ବଡ଼ ସୁନ୍ଦର ଓ ହୃଦୟଗ୍ରାହୀ ହୋଇଅଛି । ଭୀଷ୍ମାଦିପର୍ବପଞ୍ଚକରେ ନିହିତ ଆହବିକ ବର୍ଣ୍ଣନା ଛଡ଼ା ଅନ୍ୟାନ୍ୟ ସ୍ଥଳଗତ ଯୁଦ୍ଧମାନଙ୍କ ପରିପାଟୀରେ ସୁଦ୍ଧା ଏହାଙ୍କର ଖୁବ୍ ସିଦ୍ଧହସ୍ତତା ପ୍ରକାଶ ପାଏ । ସଭା ପର୍ବରେ ଭୀମସେନଙ୍କର ପଶ୍ଚିମ ଦିଗ୍‌ବିଜୟ ସନ୍ଦର୍ଭରେ କାମପାଳ ରାଜାଙ୍କର ସହ ଭୀମକର୍ମା ବୃକୋଦରଙ୍କର, ଉତ୍ତର ଦିଗ୍‌ବିଜୟ ସନ୍ଦର୍ଭରେ ଦରଦସେନ ରାଜାଙ୍କ ସହ ଅର୍ଜୁନଙ୍କର ଏବଂ କାଶୀ ଖଣ୍ଡରେ ପରବର୍ତ୍ତିତ ଅର୍ଜୁନ ଓ ତତ୍ପୁତ୍ର ନାଗାର୍ଜୁନଙ୍କର କୃତ ଲୋମହର୍ଷଣକାରୀ ଯୁଦ୍ଧର ବର୍ଣ୍ଣନା ଅଥଚ ବନ ପର୍ବରେ ସଚଳା ହରଣ ବୃତ୍ତାନ୍ତରେ ପ୍ରବର୍ତ୍ତିତ ଯାଦବାଦିଗଣ ଓ ଦେବତା-ମାନଙ୍କର ବହୁ ପ୍ରସାରିତ ଯୁଦ୍ଧ ବର୍ଣ୍ଣନା ସର୍ବତୋଭାବେ ସମୁତ୍କୃଷ୍ଟ ହୋଇଅଛି ।

ଭୀମ ଓ ଦୁର୍ଯୋଧନଙ୍କର ଗଦାଯୁଦ୍ଧ ବା ବାହୁଯୁଦ୍ଧ ବର୍ଣ୍ଣନାର ଅଂଶ—

ଡାକହାକ କରି ଯେ ଧାଅନ୍ତି ଘୋର ରଡ଼,
ପ୍ରଳୟ ମେଘର କି ସେ ଅଟେ ଘଡ଼ଘଡ଼ ।
ଅନ୍ୟ ଅନ୍ୟେ କରି ଦୃଷ୍ଟି କରନ୍ତି ପଦ୍ମଜ,
ନିର୍ଦ୍ଧୂମ ଅନଳ ଜଣି ବିରାଜଇ ତେଜ ।
ହାହା ନାଦ କରି ବେନି ଗୃପନ୍ତି କପାଳେ,
ରଣଝଣ ଅଗ୍ନି ଯେ ଉଠଇ ଅନ୍ତରାଳେ ।
ଉଲଟ ପାଲଟ ଯେ ହୁଅନ୍ତି କ୍ଷଣେ କ୍ଷଣ,
ମୁଖରବ ଧାତ ଶୁଭେ ଯଥା ବଜ୍ର ବାଣ ।

ପରବତ ପ୍ରାୟେକ ପଡ଼ନ୍ତି ବେନି ବୀର,
ଗିରିବରମାନେ ସର୍ବେ ହେଉଛନ୍ତି ଚୂର ।
ରଟ ରଟ ମଟ ମଟ ଶୁଭେ ବେନି ପାଟି,
ଲୁପିଲେ ଅସ୍ଥି ଚର୍ମ ଯେ ଯାଉଥାଇ ଫାଟି ।
ଦୁହେଁ ପିଟାପିଟି ଯେ ହୁଅନ୍ତି ମହାଶ୍ରମେ,
ଝରଣ ରୁଧିର ଯେ ବହଇ ଗେମେ ଗେମେ ।
ମୁଥ ପ୍ରହାରେ ନାସାରୁ ବହଇ ରୁଧିର,
ଜଡ଼ ହୋଇଥାଏ ଯେ ଦୁହିଁଙ୍କ କଳେବର ।
ସଙ୍ଘସୁଗେ ଯେଉଁ ପଣ ବେଢ଼ୁ ଯେ ମଙ୍ଗଳ,
ସେପର କମ୍ପି ଯେ ମହୀ ହୁଏ ଟଳମଳ ।
ଗିରିବରମାନେ ଯେ ଉଠିଲେ ହୋଇ ଧୂଳ,
ଆକାଶରେ ଅଦୃଶ୍ୟ ଯେ ହୋଇଲେ ଅଂଶୁମାଳୀ ।

ଗଦାପର୍ବ ।

ଏହି ସ୍ଥଳରେ ବୀର ରସର ଅନୁଗୁଣ୍ୟ ବର୍ଣ୍ଣନାମାନଙ୍କରେ ଗଠିତ ଶବ୍ଦମାନଙ୍କ ଯୋଗେ କବିତାଟି ଯଥାଯଥ ଓଜଗୁଣବିଶିଷ୍ଟ ହୋଇଅଛି । ଏତାଦୃଶ ସ୍ଥଳମାନଙ୍କରେ ମୂଳ ଗ୍ରନ୍ଥରେ ଉକ୍ତ ପ୍ରତିଦ୍ୱନ୍ଦ୍ୱୀଙ୍କର "ବଳବାସବୟୋରିବ" "ବୃତ୍ରବାସବୟୋରିବ" "ବଳବାସବୟୋରିବ" ଇତ୍ୟାଦି ଉପମା (୧) ଧାର୍ଯ୍ୟ ହୋଇଥାଏ । ସାରଳାଦାସ କବି ମଧ୍ୟ ତଦନୁରୂପେ ପ୍ରତିଦ୍ୱନ୍ଦୀ ଦୁହିଁଙ୍କର ସାଦୃଶ୍ୟ ବେଢ଼ୁ ମଙ୍ଗଳରେ ଆରୋପଣ କରି ପୌରାଣିକ ଗାଥାର ସୂଚନା କରିପାରି ଅଛନ୍ତି ।

---

(୧) ତୟୋଃ ସମଭବଦ୍ୟୁଦ୍ଧଂ ଘୋରରୂପଂ ସଦାରୁଣଂ ।
ଈକ୍ଷିତୃପ୍ରୀତିଜନନଂ ଶୁକ୍ରାଙ୍ଗାରକୟୋରିବ ।
ଶ୍ୱ. ପ. ୪୫ ଅ: ୫୭ ଶ୍ଳୋକ ।

ତୌ ତଦା ସମରେ କ୍ରୁଦ୍ଧୌ ନର୍ଦ୍ଦନ୍ତୌ ଚ ମୁହୁର୍ମୁହୁଃ ।
ସମୀୟତୁଃ ସୁସଂକ୍ରୁଦ୍ଧାବଙ୍ଗାରକବୁଧାବିବ ।
ଶ୍ୱ. ପ. ୪୫ ଅ: ୪୧ ଶ୍ଳୋକ ।

## ସୈନ୍ୟ ବର୍ଣ୍ଣନା

କୁରୁସେନା ଦେଖି ବୈରାଟି ଉତ୍ତର ସମୁଦ୍ର ଜ୍ଞାନ କଲାରୁ ତତ୍‌ସମର୍ଥନରେ ବୃହନ୍ନଳା କହୁ ଅଛନ୍ତି:—

ଶୁଣ ହୋ ଉତ୍ତର ବୋଇଲା ସବ୍ୟସାଚୀ,
ସାଗର ବାକ୍ୟ ତୋର ନାସ୍ତି କେ କରୁଛି ।
ନଷ୍ଟେ ସାଗର ଅଟଇ ଏ କୁରୁ ସଇନ,
ସିନ୍ଧୁ ଘୋଷ ପ୍ରାୟେ ଶୁଭୁଅଛି ମୁଖଧ୍ୱନ ।
ବୋହିତ ବୋଲି ଯେ ବୋଲୁଅଛୁ ଯହିଁକି,
ରଥମାନେ ସେହି ଏହା ଏହା ତୁ ବଝୁଛୁ କି ?
ମତ୍ସ୍ୟ କୂର୍ମ ବୋଲି ଯା ବଝୁରୁ ହୃଦଗତେ,
ଗଜ ଅଶ୍ୱମାନେ ସେହୁ ଅଟନ୍ତି ମୁଗତେ ।
ତୁ ଯେ ବୋଇଲୁ ଦେଖ ସ୍ଥିର ଜଳ,
ସୈନ୍ୟ ବେଢ଼ିଛନ୍ତି ତୋର ଗୋରୁକୁଳ ।
ଧବଳ କମଳ ପ୍ରାୟେ ଅଟନ୍ତି ଗୋଧନେ,
ସ୍ଥିର ଜଳ ପ୍ରାୟେ ଅଟନ୍ତି ବଦ୍ୟମାନେ ।
ଲହରୀ ବୋଲି ଯେ ବୋଲୁଥିଲୁ ଏକା,
ରଥଙ୍କର ଉପରେ ଉଡ଼ଇ ପତାକା । ଇତ୍ୟାଦି । ଉ. ପ.

ପାଠକେ ! ସମ୍ୟକ୍ ପରିଶୀଳନ କରନ୍ତୁ । ଏହି ସାଙ୍ଗରୂପକ ଅଳଙ୍କାରରେ ସମେତ ବର୍ଣ୍ଣନାଟିକୁ କବି ମହାଶୟ ନିରାଡ଼ମ୍ବର ଭାବରେ କି ସୁନ୍ଦର ସଙ୍ଗତ କରି ଲେଖି ଅଛନ୍ତି । ମହାକାବ୍ୟୋଚିତ ବର୍ଣ୍ଣନାକୁ ଏତାଦୃଶ ସରଳ ଭାଷାରେ ପ୍ରକାଶ କରିବା ସାଧାରଣ ଜ୍ଞାନସାଧ୍ୟ ହୋଇ ନ ପାରେ । ଅଥଚ ଭାଷାର ଶୈଶବାବସ୍ଥାରେ ଏ ଭଳି ପଦବିନ୍ୟାସ ଗୁଚ୍ଛସି ସୁଦ୍ଧା କବିଙ୍କର ମହତୀ ବୁଦ୍ଧିସିଦ୍ଧିର ଫଳ ବୋଲିବାକୁ ହେବ । ଏହାର ବହୁକାଳ ପରେ ଭାଷାର ସମୁଚିତ ଶୈଶବ ଓ ସମ୍ମୁଖ ଯୌବନାବସ୍ଥାରେ ରାଜକବି ଶ୍ରୀ କୃଷ୍ଣସିଂହ ଦେବଙ୍କ କୃତ ଏହି ବର୍ଣ୍ଣନାର ଆକୃତି (୧) ଅପିଚ ମୂଳ ଗ୍ରନ୍ଥଗତ ଏତଦ୍‌ବର୍ଣ୍ଣନାମୂଳକ ପଦ୍ୟଗୁଡ଼ିକର

---

(୧) ଦେଖିଲେ କୁରୁଙ୍କର ସଇନ ସାଗର,
ଚଡ଼ୋକା ଫେନରେ ସେ ହୋଇଛି ସୁନ୍ଦର ।

ଭାବ ସୁଦ୍ଧା ଏହାଠାରୁ ଅତି ସୁସ୍ପଷ୍ଟ ନୁହେ । ସମ୍ୟକ୍ ଦେଖି ନେଲେ ଏ ତାହାର ସତ୍ତ୍ୱଣାବୃତ୍ତ ଅନୁଜ ପରି ପ୍ରତୀତ ହୁଏ । ଆମ୍ଭମାନଙ୍କର ଆଦମ ମହାଭବ ମହୋଦୟ ଭାଷାର ତରୁଣାବସ୍ଥାରେ ପରିଲକ୍ଷ୍ୟ ଶୋଭା ସମ୍ପତ୍ତିରୁ ଶୈଶବରେ ସୁଦ୍ଧା ସମ୍ପାଦନ କରିପାରି ଅଛନ୍ତି ଏବଂ ମୂଳ ଗ୍ରନ୍ଥର ଠିକ୍ ଅନୁବାଦରେ ଅପ୍ରବୃତ୍ତ ରହି ସୁଦ୍ଧା ମୌଳିକ ଭାବକୁ ଯଥାଯଥ ରକ୍ଷଣ କରିପାରି ଅଛନ୍ତି ।

### ବୀଭତ୍ସ ରସ ବର୍ଣ୍ଣନା

ରଣମଣ ଝଣଝଣ ଯେ ଶବଦ ଗୁରୁ ଟାଣ,
ଯେସନେ ଆକାଶୁଁ ପଡ଼ଇ ଅଗ୍ନି ବାଣ ।
ଜମ୍ବୁମଣ୍ଡଳ ଯେସନ୍ତେ ମେଘ ବରଷା କାଳେ,
ରୁଧିର ମାଂସ ଦେଖି ଭୁଞ୍ଜନ୍ତି କୁତୂହଳେ ।
ଢ଼ମଢ଼ମ ଡମ୍ବରୁ ବାଜଇ ଶୂନ୍ୟ ବ୍ୟାପି,
ଲହ ଲହ ଜିହ୍ୱା ଯେ କରେ ଖପର ଗୁପି ।

---

ସେ ସାଗର ଗର୍ଜନ ଅଟଇ ମୁଖଧ୍ୱନି,
ମଣ୍ଡୂଅଛୁ ତହିଁରେ ଶତ୍ରୁଙ୍କ କର୍ଣ୍ଣ ବେଣି ।
ମଗର ପରି ତହିଁ ଗଦା ଶକ୍ତି ଶୂଳ,
ହୋଇଛନ୍ତି ଶୋଭା ନୀରରେ ଚଞ୍ଚଳ ।
ଖଣ୍ଡା ଧଣ୍ଡା ସାପ ପରସ୍ପେ ଚଢଟି,
ଥୋଇଅଛୁ ଶତ୍ରୁଙ୍କ ବୁକୁରେ ଦକୁଟି ।
ହାତୀ କୂଳପଥର, ଓଟଙ୍କ ବେକପାକ,
ଟେକିଛନ୍ତି ଯାହାଟି ବସିଛନ୍ତି ବକ ।
ଛୁରୀଭାଡ ମୀନମାନଙ୍କୁ ଖାଇବାକୁ,
ଏ କଥା ବିନା ଆନ ନ ଆସେ ମନକୁ ।
କଚ୍ଛପର ଶୋଭାକୁ ନିନ୍ଦ ସୁନା ମୁଣ୍ଡା,
ଡାଲ ତହିଁ ଦିଶୁଛନ୍ତି ଗଣ୍ଡା ଗଣ୍ଡା ।
ଭୀଷ୍ମ ଦ୍ରୋଣ ଦ୍ରୌଣି କର୍ଣ୍ଣ ସାରଦ୍ୱତ,
ମାନଙ୍କେ ସେ ସାଗର ହୋଇଛୁ ରକ୍ଷିତ ।

କୃ. ସିଂ. ଭା. ବ. ପ.

ମେଦମେଦା ମାଂସ ଯେ କରନ୍ତି ଦେବୀ ଗ୍ରାସ,
ଜଳଗ୍ନଶାୟୀ ହୋଇ ନୃତ୍ୟରେ ହରଷ ।
କୃତୂହଳେ ରୁଧିର କରନ୍ତି ପେ ପାନ,
କେହୁ ମୁଣ୍ଡମାଳା ହୃଦରେ ଆଭରଣ ।
ବାଜଇ ବଜଘୋଷ ଡ଼ବଡ଼ବ ଦାଉଣ୍ଡି,
ଗାବନ୍ତି ଗୀତ ଯେ ନାଚନ୍ତି ଖେମଟା ଖଣ୍ଡି ।
ଆକାଶେ ଉଷ୍ଟ୍ର ଯେ ପାତାଳେ ତାଙ୍କ ପାଟି,
ଏକା ଥରକେ ମୃତ୍ୟୁପିଣ୍ଡ ଭକ୍ଷନ୍ତି କୋଟି କୋଟି ।
ନାଚନ୍ତି ଗାବନ୍ତି ଯେ ଗୀତ ନାନା ରସ,
ସମସ୍ତ ଦେବମାନେ ମୁକୁଳତ କେଶ ।
ଉପରକୁ ଫିଙ୍ଗି ଦେଇ କେହୁ ଲୁଣ୍ଡ ପାତି,
ଅନନ୍ତା ବିଜୟା ପେ ସଙ୍ଗେ କାଳରାତି ।
ବିକଟାଳ ଲୋକନ ମହାଗ୍ର ରସେ ଭୋଳୀ,
କହ କହ ହୋଇ ଦେ ମଙ୍ଗଳ ଧ୍ୱନ ତୋଳି ।
ପ୍ରେତ ପିଶାଚ ଯେ ବେଗଳ ମହାଖଳା,
ଶୂଦ୍ରମୁନି ସାରଳାଦାସର ଶରଣ ସର୍ବମଙ୍ଗଳା ।

ଶ୍ରୀମାନ୍ ରସଜ୍ଞ ସାରଳାଦାସ ମହାକବି ମହୋଦୟ ଏଠାରେ ସ୍ୱକୀୟ ବିଭାବାନୁଭାବାଦିଜନିତ ବୀଭତ୍ସ ରସକୁ ସମ୍ପୂର୍ଣ୍ଣ ମୂର୍ତ୍ତିମାନ କରି ଚିତ୍ରଣ କରିଅଛନ୍ତି । ମହାକବି ଭବଭୂତିଙ୍କ ରଚିତ ମାଳତୀମାଧବ ନାଟକର ପଞ୍ଚମାଙ୍କରେ ବର୍ଣ୍ଣିତ ପ୍ରକଟିତ-ଦଶନ ପ୍ରେତରଙ୍କ ପିଶାଚମାନଙ୍କର କୁଣପ ମାଂସ ଭୋଜନ ଓ ଅସ୍ଥି ସୁଷିର-ପୂରକ-ମଜ୍ଜଧାରା ପାନାଦି ବିକୃତ ହିଂସ୍ରାମୂଳକ ବୀଭତ୍ସରସବର୍ଣ୍ଣନାର ଆଭାସ ଏଥିରେ ସମ୍ୟକ୍ ପ୍ରକାଶ ପାଉଅଛି । (୧)

---

(୧) ଉତ୍କୃତ୍ୟୋତ୍କୃତ୍ୟ କୃତ୍ତିଂ ପ୍ରଥମମଥ ପୃଥୂତ୍ସେଧଭୂୟାଂସି ମାଂସା,
ନ୍ୟଂସସ୍ଫିକ୍ପୃଷ୍ଠପୀଠାଦ୍ୟବୟବସୁଲଭାନ୍ୟୁଗ୍ରପୂତୀନି ଜଗ୍ଧ୍ୱା ।
ଆର୍ତ୍ତଃ ପର୍ଯ୍ୟସ୍ତନେତ୍ରଃ ପ୍ରକଟିତଦଶନଃ ପ୍ରେତରଙ୍କଃ କରଙ୍କା-
ଦଙ୍କସ୍ଥାଦସ୍ଥିସଂସ୍ଥଂ ସ୍ଥପୁଟଗତମପି କ୍ରବ୍ୟମବ୍ୟଗ୍ରମତ୍ତି ॥

### ଯୁଧିଷ୍ଠିରଙ୍କ ରାଜତ୍ୱ ବର୍ଣ୍ଣନା

ଶୁଣ ହେ ମହାରାଜା ଯୁଧିଷ୍ଠିରଙ୍କ ବେଭାର,
ଲଭେ ତାହାଙ୍କର ନାହିଁ ଅଣାଚାର ।
ଆପଣା ଦେଶକୁ ବରଗିଲେ ଘର,
ମିଥ୍ୟା ନ ବାହାରେ ମୁଖରୁ କାହାର ।
ପ୍ରଜାଏ ବ୍ୟାକୁଳ ନ କରନ୍ତେ ମନ,
କୃଷି ଉପୁଜାଇ ହରଷ ହେବେ ମନ ।

× × ×

ପ୍ରଜାଙ୍କ ଭବନ କନକ ଶ୍ରେଣୀ,
ସୁବର୍ଣ୍ଣ କଳଶ ମଣ୍ଡିଲେ ନିର୍ମାଣି ।
ପିତା ପୁତ୍ରଠାରେ ନ ଥାଇ ଅବିଶ୍ୱାସ,
ଇନ୍ଦ୍ର ଜାଣି ବୃଷ୍ଟି କରଇ ଉପୁଜାନ୍ତି ଶସ୍ୟ ।
ଅନେକ ଆହୁତି ହୁଅନ୍ତି ଯେ ଅଗ୍ନି,
ସକଳ ବ୍ରାହ୍ମଣ ପୁରେ ଶୁଭଇ ବେଦଧ୍ୱନି ।
ଜଗ ଅବସ୍ଥା ନାହିଁ ଜନେ ଦିଶନ୍ତି ଇନ୍ଦ୍ରସମ,
ଫଳ ପତ୍ରେ ବୃକ୍ଷାଳ ଦିଶନ୍ତି ବୃକ୍ଷଗଣ ।
ଲୋକେ କଳ ନୃତ୍ୟନ୍ତି ହୁଅନ୍ତି ଏକ ସଙ୍ଗ,
ପବନ ପ୍ରାପ୍ୟେ ଗମନ୍ତି ମତ୍ତ ଅଷ୍ଟ ନାଗ ।
ମରାଳଗମନା ପଦ୍ମିନୀ ଜାତି ସବୁ ବାଳୀ,
ଉପୁ ଲଜ୍ଜାକୁ ସେ ଅଳପ ଆହାରୀ ।
ଶୁକ ସାରୀ ଭାଷନ୍ତି ରାମ କୃଷ୍ଣ ନାଦେ,
ଅହରକ୍ଷଣେ ଭାଷନ୍ତି (ଜନେ) ଶ୍ରୀକୃଷ୍ଣ ନାମ ହୃଦେ ।
ବ୍ରତ ଉପବାସ କରନ୍ତି ଦେବ ସେବା,
ଶ୍ରୀକୃଷ୍ଣ ଲୀଳାରେ ସମସ୍ତେ ଦିଶନ୍ତି ଶୋଭା ।
ଅରୋଗୀ ଅପାପୀ ଯେ ଅଟନ୍ତି ସର୍ବଜନ,
ସମସ୍ତେ ନିଷ୍ଠିନ୍ତି ଗୀତେ ଗୀତେ ପୁରାଣ ।
ଜାମେ ଅବଶ ସେ ନେ କେତେବେଳେ ନୃପମନ
ଅପାରବନ୍ତକୁ ଦୟା କରିଥାନ୍ତି ।

ଯେ ଯାହା ଅଧିକାରେ ବର୍ତ୍ତନ୍ତି ପୁରୁଷେ,
ଦଣ୍ଡ ମଣ୍ଡ ନାହିଁ ପଡ଼ ଧନ ଆଶେ ।
ଗୁରୁଜନେ ଭକ୍ତି, ଯେ ନାହିଁ ପରଦାର,
ଦୁଃଖୀ ତସ୍କର ନାହିଁ ପରଧନ ହର ।
ଦିବସେ ବୃଷ୍ଟି ଯେ ନ କରନ୍ତି ମେଘେ,
କୃଷିବେଳ ଜାଣି ଇନ୍ଦ୍ର ପାଳଇ ବେଗେ ।
ଯେ ଯାହା ବେଉର କରି ରହିଥାନ୍ତି,
ପରସ୍ତ୍ରୀ ବାରତା ଶ୍ରବଣେ ନ ଶୁଣନ୍ତି ।
ପାପକର୍ମ କଥାରେ ନ କରନ୍ତି ଲପ୍ତେ,
ସମସ୍ତେ ଦିଶନ୍ତି ରାଜକୁମାର ପ୍ରାପ୍ତେ ।
ଯମର ଅମାତ ନ ଶୁଣି ଶ୍ରବଣେ,
ମଙ୍ଗଳ ଧ୍ୱନି ଶୁଭଇ ସମସ୍ତ ଭବନେ । (୧)

ଏହି ପଂକ୍ତିଗୁଡ଼ିକରେ କବି ମହାଶୟଙ୍କର ଶାସ୍ତ୍ରୋକ୍ତ ରାଜ ନୀତିର ଅନୁମୋଦିତ ବିଷୟାଭିଜ୍ଞତା ଓ ବ୍ୟବହାରକୁଶଳତା ପ୍ରତିପନ୍ନ ହେଉଅଛି । ଅନ୍ୟାନ୍ୟ ପୁରାଣମାନଙ୍କରେ ମଧ୍ୟ ସୌରାଜ୍ୟ ଗୁଣକୀର୍ତ୍ତନ ପ୍ରସଙ୍ଗରେ ଏ ସବୁ କେବଳ କୁହାଯାଇ ଥାଏ । ଯାହାକି ପ୍ରଜାମାନଙ୍କର ଶ୍ରେୟସ୍କର ଓ ଆଦରଣୀୟ, ତାହାହିଁ ସୁଶାସନର ଲକ୍ଷଣ । ଯେଣୁ ସୁଶାସନ ପାଇଁ ଧର୍ମହିଁ ଏକାଶ୍ରୟ । ଧର୍ମ ବଳରେ କେବଳ ରାଜା ବଳୀୟାନ୍ ହୁଅନ୍ତି, ଅପିଚ ପ୍ରଜାବୃନ୍ଦର ଦୁଃଖାପନୋଦନରେ ସହାୟୀଭୂତ ହୋଇ ପାରନ୍ତି । ଅତଏବ ଶ୍ରୀ ସାରଳାଦାସ ମହୋଦୟ ଏ ସ୍ଥଳରେ ସ୍ୱଭୂବର୍ଣ୍ଣ୍ୟ, ଧର୍ମରକ୍ଷାକୁ କେବଳ ସୁଶାସନର ମୂଳ କାରଣ ମନେ କରି ଧର୍ମଜନିତ ବହୁବିଧ ସାଂସାରିକ ସୁଖର ଅବତାରଣା କରି ଅଛନ୍ତି । ସବୁ ଯୁଗରେ ସବୁ ଦେଶରେ ପ୍ରଜାବୃନ୍ଦ ଧର୍ମପ୍ରାଣ ରାଜାଙ୍କୁ ପାଇ ଏହି ସବୁ ସୁଖ କେବଳ ପ୍ରାପ୍ତ ହୁଅନ୍ତି । ସୁତରାଂ ମନୁଷ୍ୟ ସଂସାରରେ ସଂସାରୀ ହେଲେ ଏହାହିଁ ବାଞ୍ଛନୀୟ । ଯଦିତ ରାଜ୍ୟ ମଧ୍ୟରେ ସମସ୍ତେ ସର୍ବଦା ଧର୍ମୈକଶରଣ ପ୍ରବୃତ୍ତୋତ୍ସବମଙ୍ଗଳ ଓ ହର୍ଷନିର୍ଭରମାନସ ହୋଇ ଅନପଗାମିନୀ ଲକ୍ଷ୍ମୀଙ୍କ ପ୍ରସାଦରୁ ତୁଙ୍ଗ ପ୍ରାକାର

(୧) ଏ ସବୁ ତାଳପତ୍ରରେ ସ୍ୱୀପର୍ବରେ, ଗ୍ରନ୍ଥପାରେ କଷ୍ଟକର୍ ଭିନ୍ନପ୍ରକାରତଃ ଆଶ୍ରମିକ ପର୍ବରେ ଲେଖା ଅଛି ।

ଗୋପୁରରେ ସୁଖୋପକରଣ ସହ ବିହାର କରନ୍ତି, ପୁଣ୍ୟସମ୍ଭବ ବୈଭବ ସଞ୍ଚୟରେ ପରଦ୍ରବ୍ୟସନନାଶନତତ୍ପର ହୋଇ ଆଧିବ୍ୟାଧି ପ୍ରଭୃତି ଦୁଃଖରୁ ବିମୁକ୍ତ ରହନ୍ତି ଏବଂ "ସର୍ବଂ ଶୁଦ୍ଧଂ ଜଗତ ଧର୍ମିତ ଏବ ଲଭ୍ୟଂ" ଏହି ମହାବାକ୍ୟକୁ ହୃଦୟର ନିଭୃତ କକ୍ଷରେ ପ୍ରତିଷ୍ଠିତ ରଖି ସଂସାର ଯାତ୍ରା ନିର୍ବାହ କରିଯାନ୍ତି, ତେବେ ବିଶ୍ୱାସ କରିବାକୁ ହେବ ଯେ ରାଜ୍ୟ ସୁରାଜଭାବରେ ପ୍ରତିଷ୍ଠିତ ଅଛି । ଆମ୍ଭମାନଙ୍କ ଆଦିମ କବି ମହୋଦୟ ଏଠାରେ ତାହାହିଁ ଚିତ୍ରଣ କରି ଅଛନ୍ତି ।

ଏ ସବୁ ଛଡ଼ା ଏହି ଗ୍ରନ୍ଥ ମଧ୍ୟରେ ଯଥା ସ୍ଥାନମାନଙ୍କରେ ସମୁଚିତ ସମୟରେ ଋତ୍ୱାଦିର ବର୍ଣ୍ଣନା ଏବଂ ଆବଶ୍ୟକାନୁସାରେ ଆଗମ ପ୍ରଭୃତିର ବର୍ଣ୍ଣନା ବର୍ଣ୍ଣିତ ହୋଇଅଛି । କବି ମହାଶୟ ରାଜସୂୟ ଯାଗାର୍ଥ ରଚିତ ସଭାମଣ୍ଡପାଦିର ବର୍ଣ୍ଣନାରେ ବହୁବିଧ ଗୃହମାନଙ୍କର ନାମାଦି ବିବରଣ ଏବଂ ଉପକରଣ ଓ ଭୂଷଣାଦିର ବିବରଣ ବିସ୍ତୃତ ଭାବରେ ପ୍ରକାଶ କରି ଅଛନ୍ତି । ଏଥିରେ ଏ ମହୋଦୟଙ୍କର ନାନା ପ୍ରକାର ବୈଷୟିକ ବୈଦୁଷ୍ୟ ପ୍ରକାଶ ପାଉଅଛି । ପରନ୍ତୁ ଦୁଃଖର କଥା ଏହି ଯେ, ଏଥି ମଧ୍ୟରୁ ଅନେକଗୁଡ଼ିଏ ନାମର ଅର୍ଥ ଆଦୌ ଜଣାଯାଉ ନାହିଁ । ପ୍ରବନ୍ଧ ବିସ୍ତୃତି ଭୟରୁ ସେ ସବୁ ଉଲ୍ଲେଖ ନ କରି ବିରତ ହେଲୁଁ । (୨) ସୁତରାଂ ଶ୍ରୀମାନ୍ ସାରଳାଦାସଙ୍କ କୃତ ଦେଶାନୁରାଗମୂଳକ ସୁବିସ୍ତୃତ ବର୍ଣ୍ଣନାଗୁଡ଼ିକ ଦେଖିବେ, ସବୁଠି ଓଜସ୍ୱିନୀ ଭାଷାରେ ବଡ଼ ମନୋହର ଓ ଭାବଜନକ ହୋଇଅଛି । ଏହି ମହାକବି ମହୋଦୟ ବହୁ ସ୍ଥଳରେ ଯେପରି ସର୍ବସାଧାରଣ ପ୍ରଚଳିତ ପଦାର୍ଥଗୁଡ଼ିକର ସୌସାଦୃଶ୍ୟ ନେଇ ହୃଦୟ-ହୃଦୟଗ୍ରାହୀରୂପେ ଉପମା ଉତ୍ପ୍ରେକ୍ଷା ଦୃଷ୍ଟାନ୍ତାଦି ସହ ବର୍ଣ୍ଣନାଚମତ୍କୃତି ଦେଖାଇ ଅଛନ୍ତି, ସେହିପରି କେତେକ ସ୍ଥଳରେ ବର୍ଣ୍ଣନୀୟ ବିଷୟମାନଙ୍କୁ ମନୋହରରୂପେ ପୌରାଣିକ ଗାଥା ଓ ସମୁତ୍କୃଷ୍ଟ ପଦାର୍ଥର ସମକକ୍ଷ କରି ଅଛନ୍ତି । ଅର୍ଥାଳଙ୍କାରମାନଙ୍କରୁ ମୁଖ୍ୟତଃ ଉପମା ଉତ୍ପ୍ରେକ୍ଷା ରୂପକ ସ୍ୱଭାବୋକ୍ତି ଓ ଅତିଶୟୋକ୍ତି ମାତ୍ର ବହୁ ସ୍ଥଳରେ ପ୍ରୟୋଗ କରି ଅଛନ୍ତି । ଶବ୍ଦାଳଙ୍କାରକୁ ଆଦୌ ସ୍ପର୍ଶ କରି ନାହାନ୍ତି । ଏହାଙ୍କର ଅକୃତ୍ରିମ ରମଣୀୟ ଉପମାଦିର ବର୍ଣ୍ଣନା ସ୍ଥଳମାନ ପାଠ କଲେ ହୃଦୟ ଆନନ୍ଦରେ ବିମୁଗ୍ଧ ହୁଏ । ବୋଧହୁଏ ସମ୍ପ୍ରତିଭ କବିଙ୍କର ଆଶୁକବିତାଧୋରଣୀରେ ଏ ସବୁ ତାତ୍କ୍ଷଣିକ-ସ୍ଫୁରିତସଂଜାତ ଓ ଆକସ୍ମିକ ସମ୍ପ୍ରାପ୍ତ ହୋଇଥିବାରୁ ଅସାଧାରଣମାଧୁର୍ଯ୍ୟସମ୍ପନ୍ନ ହୋଇ ପାରିଅଛି । ପାଠକମାନଙ୍କର

(୨) ସ୍ଥଳପାଠରେ ସ. ପ ପୃ ୫୫—୫୯ ସ୍ତ୍ରୀ ଯାଏ ଦେଖନ୍ତୁ ।

ମନୋବିନୋଦନାର୍ଥ ଏପରି କେତେକ ସ୍ଥଳ ମାତ୍ର ନାନା ବିଗରୁ ଆନୟନ କରି ନିମ୍ନରେ ପ୍ରଦର୍ଶନ କରୁଅଛୁ । ତଦନୁସାରେ ପରିତ୍ୟକ୍ତ ବା ଅବଶିଷ୍ଟ ସ୍ଥାନମାନଙ୍କର ସ୍ୱାଭାବିକ କମନୀୟତା ପାଠକ ଅନୁମାନ କରିବେ ।

୧ । ତଦନ୍ତେ କି ହେଲ କୃଦ୍ଧ ଫେଡ଼ ବ୍ରହ୍ମସ୍ୱଗ,
ବଦତ ଅଗସ୍ତି ଯେଉଁ ପରି କୃଷିକାସ୍ତ ।
ବଳଦ ହଜାଇ ଏଣେ ତେଣେ ଖୋଜେ ବୁଲ,
ଭୀଷ୍ମଙ୍କ ଅଭାବେ ଷଣ୍ଢା ହେଲ ସେହିପରି । ଦ୍ରୋ. ପ.

୨ । ଯେସନେକ ପିଲ୍ଲମାନେ ଫିଙ୍ଗନ୍ତି ଢେଲା,
ସେ ରଥକୁ ଫିଙ୍ଗିଦେଲ ପବନର ବଳ । ଦ୍ରୋ. ପ.

୩ । ଯେସନେ ବଢ଼ି ପାଣି ବାନ୍ଧରେ ରହଇ,
ସେହିରୂପେ ଅସୁରେ ରହିଲେ ଦୂର ହୋଇ । ଅଶ୍ୱ. ପ.

୪ । ବୃକ୍ଷକୁ ପିଟିଲେ ଯଥା ଝଡ଼େ ପକ୍ୱଫଳ,
ନାଚନ୍ତି କବନ୍ଧ ଛିଣ୍ଡି ପଡ଼େ ବକ୍ଷଃସ୍ଥଳ ।
ସମସ୍ତଙ୍କ ଅଙ୍ଗରୁ ରୁଧିର ବୃଷ୍ଟି ହେଲ,
ପଲାଶ ଗଛ କି କୁସୁମେ ମଣ୍ଡିତ ହୋଇଲା । ଦ୍ରୋ. ପ.

୫ । ବସା ଭଗ୍ନେ ପକ୍ଷୀଏ ପଳାନ୍ତି ଯେହ୍ନେ ଡ଼ରେ,
କେ ରହି ନ ପାରିଲେ ନନ୍ଦଘୋଷ ସମ୍ମୁଖରେ । ଦ୍ରୋ. ପ.

୬ । କୁରୁସାଗର ବଳ ଯେ ମନ୍ଥନ ସମ,
ଲୋଟାଏ ପ୍ରଚଣ୍ଡ ବାତ କି ସେ ଅର୍ଜୁନ । ଦ୍ରୋ. ପ.

୭ । ଯେଉଁପରି ସର୍ପମାନେ ପଶନ୍ତି ବିମ୍ବରେ,
ପକ୍ଷ ପର୍ଯ୍ୟନ୍ତ ଶର ପଶିଲା ହୃଦୟରେ । ଦ୍ରୋ. ପ.

୮ । ଏକା ନାରାଚକେ ଅନେକ ଅସୁର ପଡ଼ି,
ଯେସନେ ବାତଘାତେ ପକ୍ୱଫଳ ଝଡ଼ି । ଅଶ୍ୱ. ପ.

୯ । ନାନାବିଧ ପୁଷ୍ପର ବାସ ଆମୋଦଇ,
କି ସେ ବଜାର ଅବା ମଧୁର ଅଟଇ । ମୂଷ. ପ.

୧୦ । ନାରଦ ବଚନ ଶୁଣି ଅସୁର କଲା କୋପ,
ଯଷ୍ଟି ପ୍ରହାରରେ ଯେହ୍ନେ ଗର୍ଜଇ କାଳସର୍ପ । ଅଶ୍ୱ. ପ.

୧୧ । ରକ୍ତେ ଉଲେପନ ଭୀମସେନର ଯେ ଅଙ୍ଗ,
ହିରଣ୍ୟ ବଦାର ଯେହ୍ନେ ଦଟଇ ନୃସିଂହ । ଭୀ. ପ.

୧୨ । ରୁଧିରେ କର୍ଦ୍ଦମ ଯେ ହୋଇଲା ସର୍ବକାୟେ,
ଭୀଷ୍ମର ଦଶିଲା ଯେ କିଂଶୁକ ପୁଷ୍ପ ପ୍ରାଏ । (୧) ଭୀ. ପ.

୧୩ । ଦୁଗ୍ଧ ସାଗର ଛବକୁ କୁରୁ ସୈନ୍ୟ ଜଣେ,
ଅଶ୍ୱେ ପହଁରନ୍ତି ହଂସପନ୍ତିର ସମାନେ । (୨) ଦ୍ରୋ. ପ.

୧୪ । ତାରକା ବଧରେ ଯଥା ଦିଶଇ କୁମାର,
ଅର୍ଜ୍ଜୁନର ମହିମା ଯେ ତେମନ୍ତ ପ୍ରକାର । ମଧ୍ୟ. ପ.

୧୫ । ମନ୍ଦର ମାଡ଼ି ଯେହ୍ନେ ବସଇ ହିମବନ୍ତ,
ସେହିରୂପେ ଭୀମ ବକ୍ଷଃସ୍ଥଳେ ଦିଶଇ ଦୈତ୍ୟ । ବନ. ପ.

୧୬ । କଦମ୍ବାସୁର ବଳରାମ ହେଲେ ଏକ କତ,
ମେରୁ ମନ୍ଦର ପ୍ରାୟେ ସମରେ ଦିଶନ୍ତି । ଅଶ୍ୱ. ପ.

୧୭ । ମେରୁ ପୃଷ୍ଠରୁ ଯେହ୍ନେ ବହଇ ନୀରଧାର,
ତଥା ଭୂରିଶ୍ରବା ଅଙ୍ଗୁ ଗଳପଡ଼େ ରୁଧିର । (୩) ଦ୍ରୋ. ପ.

୧୮ । ରେରେକାର ଲକ୍ଷଣ ଯେ ବୋଇଲା ପାଞ୍ଚାଳ,
ଘୃତ ସଂଯୋଗରେ ଯେହ୍ନେ ବହ୍ନି ଜକଜଳ । ଦ୍ରୋ. ପ.

୧୯ । ଆଦିତ୍ୟ ଉଦେ ଯଥା ଉଦେଗିର ଜ୍ୟୋତି,
ତଥା ନନ୍ଦଘୋଷ ଆସେ ଶଲ୍ୟଙ୍କର ରଥ । କର୍ଣ୍ଣ. ପ.

---

(୧) ଏତାଦୃଶ ଉପମା ମୂଳ ଗ୍ରନ୍ଥରେ ବହୁ ସ୍ଥଳରେ ଦେଖାଯାଏ ।
ବଭୌ ଭୀମ ସ୍ତଥା ରାଜନ୍ ପ୍ରଫୁଲ୍ଲ ଇବ କିଂଶୁକ । ଉ. ପ. ୧୮୦ ଅ:

(୨) ଏହି ଉପମା ସୁଦ୍ଧା ମୂଳ ଗ୍ରନ୍ଥରେ ବହୁ ସ୍ଥଳରେ ଦେଖାଯାଏ ।
"ତେ ହୟା କାଞ୍ଚନା ପୀଡ଼ା ନାନାବର୍ଣ୍ଣା ମହାଜବାଃ
ଉତ୍ପେତୁଃ ସହସା ରାଜନ୍ ହଂସା ଇବ ମହୋଦଧୌ ।
ନିପତନ୍ତି ମହାବେଗେ ହଂସୈରିବ ମହତ୍ସରଃ ।" ଭୀ. ପ. ୧୦୬ ଶ୍ଳୋ:

(୩) ଏତାଦୃଶ ଉପମା ସୁଦ୍ଧା ମୂଳ ଗ୍ରନ୍ଥରେ ଅସକୃତ୍ ବର୍ଣ୍ଣିତ ଅଛି ।
କ୍ଷତକୋଷେତପାଙ୍ଗାଙ୍ଗଃ କ୍ଷରନ୍ ସରୁଧିରଂ ରଣେ ।
ବଭୌ ରାମସ୍ତଦା ରାଜନ୍ ମେରୁର୍ଦ୍ଧାତୁମିବୋତ୍ସୃଜନ୍ । ଉ. ପ. ୧୮୦ ପୃ:

୨୦ । ଉଷାଣ ଶିରରେ ତାର ଲଗିଅଛୁ କଳା,
କଣସ୍ତ ପର୍ବତେ କ ଢଣିଲୁ ମେଘମାଳା ।
ବ. ପ. । ଇତ୍ୟାଦ ।

ପଶ୍ଚଶେଷରେ ସ୍ଥୂଳତଃ ଦୁଇ ଚ୍ୟର କଥା ପ୍ରକାଶ କର ଏହ ସନ୍ଦର୍ଭର ଉପସଂହାର କରବୁଁ । ଇତପୂର୍ବେ ନଦର୍ଶନ ପ୍ରଦର୍ଶନପୂର୍ବକ କହଅଛୁଁ କ, ସାରଳାଦାସ ମହାଶୟ ମହାଭାରତ ରଚନାରେ ଗ୍ରନ୍ଥଶୁଶ୍ରୂଷା ଓ ପୌରାଣିକ ଚରତବେତ୍ତାଙ୍କ ମୁଖର ନାନା ପ୍ରକାର ଚରତ ଶୁଶ୍ରୂଷା ବନା ଆଉ କୌଣସି ପ୍ରକାର ସାହାଯ୍ୟ ପାଇ ପାର ନଥିଲେ । ସେ କେବଳ ନଜ ବୁଦ୍ଧି ସିଦ୍ଧିକୁ ଅଗ୍ରସର କର ଏତାଦୃଶ ମହଟ୍ଟ କୀର୍ତ୍ତି ସମ୍ପାଦନ କରପାର ଅଛନ୍ତ । କନ୍ତୁ ମଦୀୟ ସୁହୃଦବନ୍ଧୁ ଜଣେ ପଣ୍ଡିତ ମହାଶୟ ଏହ ଭାରତର ସୂକ୍ଷ୍ମସୌଣକ ସମାଲୋଚନା ମାଧ କରବାକୁ ଯାଇ ଇତଃପୂର୍ବେ ମୁକୁର ପଞ୍ଚମ ଭାଗରେ କହ ଅଛନ୍ତ କ "ସାରଳା ମହାଭାରତ ଲେଖିବା ପାଇଁ ସେ କାଳରେ ଉପକରଣମାନ କବଙ୍କୁ ବଡ଼ ସୁଲଭ ଥିଲା । ସାରଳାଦାସ ତାହାଙ୍କର ସୁଲଭ ସ୍ତୂପୀକୃତ ମାଲ ମସଲା ପାଇ ମହାଭାରତ ରଚନାରେ ପ୍ରବୃତ୍ତ ହେଲେ ।" ପୁଣି ଏହ ଭ୍ରାନ୍ତ ଧାରଣାରେ ନଜର ବୃଥା କଳ୍ପନାକଳ୍ପିତ ଉପକରଣର ପ୍ରକାଶନାର୍ଥ ଏହ ଭାରତ କବଙ୍କର ସମସାମୟିକ ଉତ୍କଳ ଚକ୍ରବର୍ତ୍ତୀ କପିଳେନ୍ଦ୍ର ଦେବ ପ୍ରଭୃତଙ୍କର ଯୁଦ୍ଧାଦ ଚର୍ଯ୍ୟାମାନଙ୍କର ସ୍ୱରଚନାସମ୍ବଳତ ତାହାଙ୍କର ଐତହାସିକ ବବରଣରୁ କେତେକ ଟାଣି ଆଣି ଭର୍ତ୍ତି କର ଅଛନ୍ତ । ସେହ ଅବସ୍ଥାରେ ସାଧାରଣଙ୍କର ଏକାନ୍ତ ଦୁରଧିଗମ୍ୟ ମହାଭାରତର ଯୁଦ୍ଧବ୍ୟାପାର ସମସ୍ତଙ୍କ ଆଖି ଆଗରେ ନାଚୁଥିଲା, ଅତଏବ ସାରଳାଦାସ କବ ବଣଆଡ଼େ ସ୍ତୂପୀକୃତ ମାଲ ମସଲାମାନ ପାଇ ମହାଭାରତ ରଚନା କର ପକାଇଲେ ବୋଲି ବ୍ୟକ୍ତ କର ଅଛନ୍ତ । ଏ ବଡ଼ ବସ୍ମୟଜନକ ଓ ବଲକ୍ଷଣ ସମାଲୋଚକତା । କପିଳେନ୍ଦ୍ର ଦେବଙ୍କର ଯୁଦ୍ଧଚର୍ଯ୍ୟାସନ୍ଦୋହର ପରଦର୍ଶନ ଓ ପରଶ୍ରବଣ ଯଦ ମହାଭାରତ ରଚନାର ଉପକରଣ ବା ଉପାଦାନ ଅପିଚ ସାହାଯ୍ୟସ୍ୱରୂପ ହୋଇ ମହାଭାରତ ଗ୍ରନ୍ଥ ରଚନାରେ ପ୍ରବୃତ୍ତି ଓ ଶକ୍ତି ଜନ୍ମାଇ ପାରୁଥିଲା, ତାହାହେଲେ ଏତାଦୃଶ ଶତ ଶତ ଗ୍ରନ୍ଥ ସେହ ସମୟରେ ରଚତ ହୋଇ ପାରଥାନ୍ତା । ନା, ଏହା କଦାପି ହୋଇ ନ ପାରେ । ଯଥାର୍ଥ କହବାକୁ ହେଲେ ଏପର ଅଳୀକ ସାହସିକ ବାକ୍‌ଧୋରଣୀକୁ ଭ୍ରାନ୍ତବଳାସର ସରଣୀ ବୋଲବାକୁ ହେବ ।

ଏହା ପରେ ପ୍ରୋକ୍ତ ସୁହୃଦ୍‌ବନ୍ଧୁ ମହୋଦୟ ଏହି ଭାରତ ଗ୍ରନ୍ଥର ଭାଷା ଓ ଭାବ ସମ୍ବନ୍ଧରେ ସଂକ୍ଷେପରେ କିଛି କହିବୁଁ ବୋଲି ସମଗ୍ର ଗ୍ରନ୍ଥର କଳ୍ପିତ ବିଭାଗକୁ ଯଥାକ୍ରମରେ ମାନବର କୌମାର, ଯୌବନ ଓ ଜରାବସ୍ଥାର ଚେଷ୍ଟାରେ ଆରୋପିତ କରି ସାଧୁବାଣୀରେ ଗୋଟିଏ ପଦ୍ୟ ଦେଇ ଅଛନ୍ତି । ପଦ୍ୟଟିର ପୂର୍ବଦଳ ପ୍ରାଚୀନ ବା ଆର୍ଷ, ଦ୍ୱିତୀୟ ଦଳଟି ସମାଲୋଚକଙ୍କର ମନଗଢ଼ା, ଏହାର ଗର୍ଭଟି ଯେପରି ଝଞ୍ଜାର ଗତିପ୍ରାପ୍ତ ବିକୃତ, କଳ୍ପିତ ବିଭଜନ ସୁଦ୍ଧା ସେହିପରି ଅସମଞ୍ଜସ । ଏହି ବିଭାଗକରଣରେ ଆଦିପର୍ବଠାରୁ ବିରାଟପର୍ବ ପର୍ଯ୍ୟନ୍ତ ପର୍ବଚତୁଷ୍ଟୟକୁ ମାନବର କୌମାର ଚେଷ୍ଟାରେ ପକାଇ କବିପ୍ରତିଭାର ମାନ୍ଦ୍ୟ ଓ ମାଳିନ୍ୟ ପ୍ରକାଶ କରି ଅଛନ୍ତି । ଏହା ନିତାନ୍ତ ଅଳୀକ ଓ ଅସଙ୍ଗତ । ସମାଲୋଚକ ମହାଶୟ ଯଦି ଏହି ମହାଭାରତକୁ ଆମୂଳାନ୍ତ ପାଠ କରିଥାନ୍ତେ, ତାହାହେଲେ ଏହା କହନ୍ତେ ନାହିଁ । ଏହି ଭାରତ ଗ୍ରନ୍ଥରୁ ଆପଣମାନେ ଯେ କୌଣସି ପର୍ବର ଯେ କୌଣସି ଅଂଶ ଦେଖନ୍ତୁ, ନଚେତ୍ ନାନା ପର୍ବରୁ ଉଦ୍ଧୃତ ପ୍ରମାଣ ବାକ୍ୟମାନ ନେଇ ପରିଶୀଳନ କରନ୍ତୁ, ଦେଖିବେ, ସଂପୂର୍ଣ୍ଣ ବିଶ୍ୱାସ କରିବେ, ସାରଳା ମହାଭାରତର ଭାଷା ସର୍ବତ୍ର ସମାନ । ଭାବ ପ୍ରକାଶର କଥା କହିବେ ? ତଦୀୟ କୃତ ଦ୍ୱିତୀୟ ଭାଗରେ କେବଳ ଯୁଦ୍ଧ ବର୍ଣ୍ଣନାର ବାହୁଲ୍ୟ ମାତ୍ର କିଞ୍ଚିତ୍ ଅଧିକ, ବାକି ସବୁ ସମାନ । ପ୍ରଥମ ଭାଗରେ ଅର୍ଥାତ୍ ଆଦିପର୍ବଠାରୁ ବିରାଟପର୍ବ ପର୍ଯ୍ୟନ୍ତ ଅନେକତ୍ର ବୀର ଓ ଶୃଙ୍ଗାର ରସର ସମୁଚିତ ବର୍ଣ୍ଣନାରେ ସଂପୂର୍ଣ୍ଣତଃ ଭାବବିଦ୍ୟୋତିତ ହୋଇଅଛି । ଏହାର ପ୍ରାମାଣ୍ୟ ଇତଃପୂର୍ବେ ପ୍ରଦର୍ଶିତ ବର୍ଣ୍ଣନାତ୍ମକ ସ୍ଥଳମାନଙ୍କରୁ ହୃଦୟଙ୍ଗମ କରି ପାରିବେ । ସୁତରାଂ ଆଦିପର୍ବରେ ଏ କବି ମହାଶୟଙ୍କର ଆବଶ୍ୟକମତେ ସଂକ୍ଷିପ୍ତୀକରଣ ଓ ବିସ୍ତୃତୀକରଣର ରଚନାନୈପୁଣ୍ୟରୁ ପ୍ରୌଢ଼ମନସ୍କତାର ପ୍ରମାଣ ଖୁବ୍ ପ୍ରକାଶ ପାଉଅଛି । ଏ ମହାଶୟ ମୂଳ ଗ୍ରନ୍ଥର ନାନା ପ୍ରକାର ଅବାନ୍ତର କଥା ଜାଲ ସଙ୍କୁଳ ଧାରାବାହିକ ଭାରତୀୟ ଚରିତରୁ ପୃଥଗ୍‌ଭୂତ ପୌଷ୍ୟ ପୌଲୋମାଦି ପର୍ବମାନଙ୍କ ବିଷୟର ପରିତ୍ୟାଗରେ (୧) ସମ୍ୟକ୍ ସୁବିବୃତପୂର୍ବକ ଗ୍ରନ୍ଥର ପ୍ରଧାନ ନାୟକୀଭୂତ କୌରବମାନଙ୍କର ଆଦିପୁରୁଷର ଉତ୍ପତ୍ତିଠାରୁ କେବଳ ଗ୍ରନ୍ଥାରମ୍ଭ କରି ଅଛନ୍ତି । ଏପରି କରିବାରେ ବିଷୟ ସଂଯୋଗ ସମୀଚୀନତା ଓ ସୁସଙ୍ଗତତାର କ୍ଳାନ୍ତି କିଛିହିଁ ଘଟି ନାହିଁ । ଆପଣମାନେ ଅବଶ୍ୟ ଅବଗତ ଅଛନ୍ତି, ଗ୍ରନ୍ଥର ପ୍ରାରମ୍ଭ ଓ ପରିସମାପ୍ତିର

(୧) ତୈଲଙ୍ଗ ଭାରତକର୍ତ୍ତା ସୁଦ୍ଧା ଏତାଦୃଶ ତ୍ୟାଗ ସ୍ୱୀକାର କରି ଅଛନ୍ତି ।

ନୈପୁଣ୍ୟ ଗ୍ରନ୍ଥକର୍ତ୍ତାମାନଙ୍କର ସୁରୁଚିର ପ୍ରଧାନ ପରିଚାୟକ ବୋଲି ବିଦ୍ୱଦ୍‌ଗଣ ଅନୁମୋଦନ କରନ୍ତି । ଅତଏବ ସାରଳାଦାସଙ୍କର ଗ୍ରନ୍ଥାରମ୍ଭକରଣ ବିଦ୍ୱଦନୁମୋଦନୀୟ, ସନ୍ଦେହ ନାହିଁ । ଏଥିରେ ପୁଣି କବି ମହାଶୟ ମୂଳଗ୍ରନ୍ଥର ବହୁଦୂର ବିନ୍ୟସ୍ତ ଅମ୍ବୋପାଖ୍ୟାନର ଯାବତୀୟ ଘଟଣାବଳୀ ଏବଂ କର୍ଣ୍ଣୋତ୍ପତ୍ତି ସନ୍ଦର୍ଭକୁ ସଙ୍ଗତ ସଂଲଗ୍ନତାପୂର୍ବକ ଯଥାଯୋଗ୍ୟ ସ୍ଥାନରେ ସନ୍ନିବେଶିତ କରି ନିଜର ସମ୍ପୂର୍ଣ୍ଣ ବୈଦୁଷ୍ୟର ପରିଚୟ ପ୍ରଦାନ କରି ଅଛନ୍ତି ଏବଂ ଅର୍ଜୁନ ଲକ୍ଷଭେଦୀ ପ୍ରଭୃତି ସ୍ଥଳରେ ଅସାମାନ୍ୟ କବିତାଭୃଙ୍ଗୀସୂଚକ ଦେଦୀପ୍ୟମାନ କରି ଅଛନ୍ତି । ତଥାପି ଗ୍ରନ୍ଥ ମଧ୍ୟରେ ସର୍ବତ୍ର କଳ୍ପିତ-ଗଳ୍ପପ୍ରିୟତା ବୈଷମ୍ୟିକ ବୈଷମ୍ୟ ପ୍ରଭୃତି ନ୍ୟୂନାଧିକତଃ ବିଦ୍ୟମାନ ଅଛି ସତ୍ୟ, ତେବେ ଆଦି ସଭାଦି ପର୍ବଚତୁଷ୍ଟୟର ପାଠ ଶୈଶବଚେଷ୍ଟିତ କହିବ ? ପଣ୍ଡିତ ମହାଶୟଙ୍କର ଏହି ବିଭାଗକରଣ ଓ ଦୋଷାରୋପଣ ସୁରୁଚିର କାର୍ଯ୍ୟ ନୁହେଁ, କିମ୍ବା ଦୂରଦର୍ଶିତାର ପରିଚାୟକ ନୁହେଁ । ଏହା ଏକାନ୍ତ ଭ୍ରାନ୍ତିବିଳାସ । କିନ୍ତୁ ସାରଳାଦାସ କବି ମହୋଦୟ ଗ୍ରନ୍ଥର ଆରୋହ ସମାରୋହ ଓ ଅବରୋହ ଭାଗରେ ତତ୍‌ତତ୍‌ ଖଣ୍ଡମତେ ଯଥାସମ୍ଭବ ବାଗ୍‌ବୈଭବ ପ୍ରକାଶ କରି ଥିବାରୁ ଉଦୀୟମାନ ପ୍ରଭାକରଙ୍କର ପୂର୍ବାହ୍ଣ ମଧ୍ୟାହ୍ଣ ଓ ଅପରାହ୍ଣକାଳୀନ ତୈଜସ ଅବସ୍ଥାତ୍ରୟ ସହ ଗ୍ରନ୍ଥର ବିଭାଗତ୍ରୟର ତୁଳନା କରାଯାଇ ପାରେ । ଯେପରି ବିଭାବସୁଙ୍କ ପ୍ରଭାବୈଭବ ପୂର୍ବାହ୍ଣରେ ନାତିପ୍ରଖରରୂପେ କ୍ରମଶଃ ପରିବର୍ଦ୍ଧିଷ୍ଣୁ ହୋଇ ଉଠେ, ମଧ୍ୟାହ୍ଣରେ ଅମିତ ତେଜସ୍କର ଓ ଜଗନ୍ତରାଳ ତମୋଜାଡ୍ୟ-ବିନାଶକରୂପେ ଦେଦୀପ୍ୟମାନ ହୁଏ ଏବଂ ଅପରାହ୍ଣରେ ଯେପରି ନିଜ ଗୁଣଗୁଡ଼ିକ କ୍ରମଶଃ ମନ୍ଦୀଭୂତ କରି ଆଣି ଆଲୋକୋତ୍ସବ ପରି ସମାପ୍ତ କରେ, ଏହି ମହାଭାରତର କବିତାର୍ଭଟୀ ମଧ୍ୟ ସେହିପରି । ଉଦ୍ୟୋଗପର୍ବ ପର୍ଯ୍ୟନ୍ତ କବି ମହାଶୟ ନାନା ପ୍ରକାର ଐତିହାସିକ ଓ 'କାଳ୍ପନିକ ଘଟନା ସଂଯୋଗାର୍ଥ ଖୁବ୍‌ ସୁବିଧାପ୍ରାପ୍ତ ହୋଇ କ୍ରମଶଃ ତେଜ ବଢ଼ାଇ ଅଛନ୍ତି । ତା ପରେ କବି ନିଜେ ମଧ୍ୟ ଆଉ ରସର ମୂର୍ତ୍ତି ପରିଗ୍ରହାର୍ଥ ସୁଲଭ ସୁଯୋଗ ପ୍ରାପ୍ତ ହେଲେ । ତେତେବେଳେ ତାହାଙ୍କୁ ତୁଣ୍ଡକଣ୍ଡୂ ଖଣ୍ଡନପୂର୍ବକ ବାକ୍‌ତାଣ୍ଡବ ଆରମ୍ଭରେ ସ୍ୱକୀୟ ଓଜସ୍ୱିନୀ ଶକ୍ତିର ଉଦ୍ୟୋତନାର୍ଥ ସମୁଚିତ ସମୟ ପ୍ରାପ୍ତ ହେଲା । ସେ ସ୍ଥଳରେ ଭାରତୀ ବୈଭବକୁ ବହୁଦୂର ପର୍ଯ୍ୟନ୍ତ ସମ୍ପୂର୍ଣ୍ଣତଃ ବିକୀର୍ଣ୍ଣ କରି ଦେଲେ । ତା ପରେ ଆଉ ତାଦୃଶ ସୁବିଧା ନାହିଁ । ତେଣିକି ଗ୍ରନ୍ଥର ଅବରୋହ ଭାଗ । ଚରିତ ସୃଷ୍ଟି ତାଦୃଶ ନୁହେଁ । ତେତେବେଳେ କବି ମହୋଦୟ ନିଜ ଶକ୍ତିକୁ ସଂଶିଗୁଚ୍ଛ କ୍ରମରେ

କ୍ରମଶଃ କ୍ଷୀଣ-ବିକାଶ କରି ଆଣିଲେ । ତଥାପି ଭାଷା ଓ ଭାବ ସର୍ବତ୍ର ସମାନ ରଖି ଅଛନ୍ତି । ଉପକରଣର ପ୍ରାଚୁର୍ଯ୍ୟ ଓ ଅପ୍ରାଚୁର୍ଯ୍ୟରୁ ବର୍ଣ୍ଣନା ବୈଚିତ୍ର୍ୟରେ ତାରତମ୍ୟ ଥିଲେ ସୁଦ୍ଧା ଭାଷାକ୍ରମ ଯେ ସର୍ବତ୍ର ସମାନ, ଏଥିରେ କୌଣସି ପ୍ରକାର ସନ୍ଦେହ ନାହିଁ । ଅତଏବ କହୁଁ—

ଉତ୍ପତ୍ତିମଧ୍ୟସ୍ୟ ସୂର୍ଯ୍ୟସ୍ୟ ଯଥାବସ୍ଥାତ୍ରୟୀ ଭବେତ୍ ।
ତଥାତ୍ର ଭାରତେ ଗ୍ରନ୍ଥେ ପଶ୍ୟେଽବସ୍ଥାତ୍ରୟଂ ଖଳୁ ।

ଆଉ ଗୋଟିଏ କଥା, ଏ ମହାଭାରତ ଗ୍ରନ୍ଥ ବହୁ ପରିମାଣରେ ରୂପାନ୍ତର ହୋଇ ପଡ଼ିଲାଣି, ଏହାର ଜନ୍ମକାଳୀନ ନୈସର୍ଗିକ ସୁନ୍ଦରତା ଅତ୍ୟଳ୍ପ ସ୍ଥଳରେ ମାତ୍ର ରହିଅଛି । କେତେକ ସ୍ଥଳ ଅଜ୍ଞ ଅନୁଲେଖକମାନଙ୍କ ମତିମାନ୍ଦ୍ୟକାଳିମାରେ ଏପରି ଦୂଷିତ ହୋଇ ଯାଇଅଛି ଯେ, ଯାହା କିଛି ସୁନ୍ଦରତା ଅବଶିଷ୍ଟ ଅଛି, ତାହା ସୁଦ୍ଧା ପ୍ରକାଶ ପାଇପାରୁ ନାହିଁ । ପୂର୍ବୋକ୍ତ ପ୍ରକାଶକ କମ୍ପାନି ପୁସ୍ତକ ମୁଦ୍ରଣ ସମୟରେ ଅବଶ୍ୟ କେତେକ ସ୍ଥଳ ମାର୍ଜିତ କରି ଅଛନ୍ତି ସତ୍ୟ, ତଥାପି ସେଥି ମଧ୍ୟରେ ବହୁ ଦୋଷ ରହିଯାଇ ଅଛି । ମୁଦ୍ରଣ କ୍ରମ ସୁଦ୍ଧା ଭଲ ନୁହେଁ । କେଉଁଠି କେଉଁ ବିଷୟ ଅଛି, ପର୍ବଟିଯାକ ନ ପଢ଼ିଲେ ଜଣାଯାଏ ନାହିଁ । ଆମ୍ଭମାନଙ୍କ ଦେଶରେ ଅନେକ ମହାରାଜ ରାଜା ଓ ଧନ କୁବେରମାନେ ଅଛନ୍ତି, ତା ପରେ ଅନେକ ପୁସ୍ତକ ପ୍ରକାଶକ କମ୍ପାନିର ସୁଦ୍ଧା ଅଭାବ ନାହିଁ । ସେଥି ମଧ୍ୟରୁ କେହି ହେଲେ ଓଡ଼ିଆମାନଙ୍କର ଏହି ଖାଣ୍ଟି ବିଶୁଦ୍ଧ ରତ୍ନକୁ ସାଦରରେ ଗ୍ରହି ନାହାନ୍ତି । ଏ ବଡ଼ ଦୁଃଖ ଓ ଲଜ୍ଜାର କଥା । ଏହି ଗ୍ରନ୍ଥଟିକୁ ପ୍ରାଚୀନ ତାଳପତ୍ର ପୁସ୍ତକମାନଙ୍କ ସହ ମିଳାଇ ଅଭିଜ୍ଞ ପଣ୍ଡିତମାନଙ୍କ ସାହାଯ୍ୟରେ ଯଥାସାଧ୍ୟ ପରିଶୋଧନପୂର୍ବକ ଅବତରଣିକା ସହ ବିଷୟାନୁକ୍ରମସ୍ଥାନ କରି ସୁନ୍ଦର କାଗଜ ଓ ଛାପାରେ ଟିକେ ଟିକେତଃ ମୁଦ୍ରିତ କରାଇଲେ ଉପକାର ସାଧିତ ହୁଅନ୍ତା, ଭାଷା ଓ ଜାତିର ପ୍ରାଚୀନ ଗୌରବ ରକ୍ଷିତ ହୁଅନ୍ତା । ଆମ୍ଭେମାନେ ପ୍ରୋକ୍ତ କ୍ରମରେ ମୁଦ୍ରିତ ଏହାର ବିଷ୍ଟପର୍ବ ଖଣ୍ଡିଏ ମାତ୍ର ଉପହାର ସ୍ୱରୂପ ପାଇଅଛୁଁ । ପ୍ରୋକ୍ତ ପୁସ୍ତକଟି କଟକ ଅରୁଣୋଦୟ ପ୍ରେସରେ ମୁଦ୍ରିତ । ଏଥିରେ ଯେ କୌଣସି ପ୍ରକାର ଦୋଷ ନାହିଁ, ତାହା କହୁ ନାହୁଁ । ତଥାପି ସେହି ପୁସ୍ତକର ମୁଦ୍ରଣକ୍ରମ ଅନୁକରଣ-ଯୋଗ୍ୟ । ତଦନୁକ୍ରମରେ ବା ତତୋଽଧିକ ସୁନ୍ଦର ସୁନ୍ଦର କ୍ରମରେ ସମଗ୍ର ସାରଳା ମହାଭାରତ ଗ୍ରନ୍ଥଟି ପ୍ରକାଶିତ ହେବା ଏକାନ୍ତ ବାଞ୍ଛନୀୟ ।

## କବିଙ୍କ ପରିଚୟ

ଏହି ସମାଲୋଚନାମୂଳକ ପ୍ରବନ୍ଧର ପ୍ରଧାନ ଭାଗଦ୍ୱୟର ବିବୃତ୍ତି ଶେଷ ହୋଇଅଛି । ଏଥିରେ ପ୍ରବନ୍ଧର କଳେବର ମଧ୍ୟ ଟିକିଏ ବଢ଼ି ଯାଇଅଛି । ବର୍ତ୍ତମାନ ତଦଙ୍ଗଭୂତ ତୃତୀୟ ଭାଗର ବିସ୍ତର ଆସି ଉପଗତ । ଏହାର କାୟ ଅପେକ୍ଷାକୃତ ଅଳ୍ପ ପ୍ରସର ହୋଇ, ଏତତ୍‌ସମ୍ବନ୍ଧରେ ଗ୍ରନ୍ଥ ମଧ୍ୟରେ ଅନୁଦିତ ନାନା ଦିଗ୍‌ଦେଶରୁ ବଳାଦାକୃଷ୍ଟ ଆନୁମାନିକ ବିଷୟଗୁଡ଼ାଏ ଟାଣିଆଣି ସେ କୌଣସି ପ୍ରକାର ସମ୍ପର୍କ ଲଗାଇ ବୃଥା ସୁବିସ୍ତର କରିବା ଅନାବଶ୍ୟକ ଭାବୁଅଛୁଁ । କବି ନିର୍ଦ୍ଦିଷ୍ଟ ଏହି ଗ୍ରନ୍ଥଗତ ପ୍ରମାଣମାନ କେବଳ ପ୍ରଧାନତଃ ଗ୍ରାହ୍ୟ କରି ତତ୍ ତତ୍ ବିଷୟର ସ୍ଥିର ସିଦ୍ଧାନ୍ତ ସକାଶେ ଯାହା ଯାହା ଅତ୍ୟାବଶ୍ୟକ, ସେ ସବୁର ଆଶ୍ରୟରେ ମାତ୍ର ଏହି ସନ୍ଦର୍ଭକୁ ସମାସତଃ ସୁସମ୍ପନ୍ନ କରିବୁଁ ।

ଯେ କୌଣସି ସମାଲୋଚ୍ୟ ଗ୍ରନ୍ଥର କବି କିମ୍ବା ରଚୟିତାଙ୍କର ପରିଚୟ ପ୍ରଦାନ ସ୍ଥଳରେ କବିଙ୍କର ଜୀବିତ ସମୟ ବା ଗ୍ରନ୍ଥାରମ୍ଭର ସମୟ, ନିବାସ ସ୍ଥାନ, ନାମଧାମାଦି, ତତ୍‌କର୍ତ୍ତୃକ କୃତ ଅନ୍ୟାନ୍ୟ ଗ୍ରନ୍ଥସୂଚନା, ତଦୀୟ ସଦନୁଷ୍ଠାନ ନିଷ୍ଠାଗରିଷ୍ଠତ୍ୱ ପ୍ରଭୃତି ବିଷୟର ବିବୃତ କରିବାକୁ ହୁଏ । ଅନ୍ୟାନ୍ୟ ଭାଷାର ଗ୍ରନ୍ଥ ସମାଲୋଚନାରେ ସମାଲୋଚକମାନେ ସମାଲୋଚ୍ୟ ପୁସ୍ତକଗତ ପ୍ରମାଣ ବାକ୍ୟ-ମାନଙ୍କରେ ଅନୁପ୍ରାଣିତ ଓ ସିଦ୍ଧାନ୍ତିତ କରି ଏହାହିଁ କହିଥାନ୍ତି । ଯଦିଚ କବି ସ୍ୱକୀୟ ଜନ୍ମସ୍ଥାନର ପରିଚୟ ସ୍ପଷ୍ଟତଃ ପ୍ରକାଶ କରି ନ ଥାନ୍ତି, ତେବେ ତଦୀୟ ବର୍ଣ୍ଣିତ ସ୍ଥାନମାନଙ୍କରୁ ଯହିଁରେ କବିଙ୍କର ସମଧିକ ସମାଦର ଥିବା ତଦୀୟ କଣ୍ଠୋକ୍ତ ପଂକ୍ତିରୁ ଜଣାଯାଏ, ସେହି ସ୍ଥାନକୁ କେବଳ କବିଙ୍କର ଅଧ୍ୟୁଷିତ ବା ଜନ୍ମସ୍ଥାନ ବୋଲି ଅନୁମାନ କରିବାକୁ ହୁଏ; କାରଣ ସମସ୍ତଙ୍କର ସ୍ୱ ସ୍ୱ ନିବାସଭୂତ ଦେଶରେ କେବଳ ସମଧିକତଃ ସମାଦର ରହିବା ସହଜ ଅଟେ । ଏହି କାରଣାନୁସରଣରେ କେବଳ ଅନେକେ ଶ୍ରୀମାନ୍ କାଳିଦାସଙ୍କର ମେଘସନ୍ଦେଶାନ୍ତ-ଗତ ଉଜ୍ଜୟିନୀ ବର୍ଣ୍ଣନାର ଆଧିକ୍ୟ ବା ସମୁତ୍କର୍ଷ ଦେଖି ଉଜ୍ଜୟିନୀ ତାହାଙ୍କର ଜନ୍ମସ୍ଥାନ ଓ ପରିବର୍ଦ୍ଧନର ସ୍ଥାନ ବୋଲି କହନ୍ତି । କବି ଯଦି ନିଜର ଜୀବିତ ସମୟକୁ ଗ୍ରନ୍ଥ ମଧ୍ୟରେ କୁତ୍ରାପି ନିର୍ଦ୍ଦେଶ କରି ନ ଥାନ୍ତି, ତାହାହେଲେ ତଦ୍‌ବର୍ଣ୍ଣିତ ତତ୍ସାମୟିକ ମହାପୁରୁଷମାନଙ୍କର ଚରିତାନୁସରଣରେ କବି ସମୟ ନିର୍ଦ୍ଧାରଣ କରିବାକୁ ହୁଏ । ଏତାଦୃଶ ନିୟମରେ ଗ୍ରନ୍ଥକର୍ତ୍ତାଙ୍କର ଯାବତୀୟ ବିଷୟମାନ ତଦୀୟ ଗ୍ରନ୍ଥରେ ବର୍ଣ୍ଣିତ ବିଷୟ, ସ୍ଥାନ ଓ ମହାପୁରୁଷ ପ୍ରଭୃତିଙ୍କ ଚରିତର ଅନୁସରଣରେ ଅନୁମିତ ହୋଇଥାଏ ।

ସାରଳାଦାସ କବି ଏହି ମହାଭାରତ ଗ୍ରନ୍ଥ ରଚନାର ସାମୟିକ ପ୍ରମାଣ ବିଶେଷରୂପେ କେଉଁଠି ଦେଇ ନାହାନ୍ତି । କିନ୍ତୁ ଆଦି ପର୍ବର ପ୍ରାରମ୍ଭରେ ମଙ୍ଗଳାଚରଣ ବର୍ଣ୍ଣନାବସରରେ ମାତ୍ର ଲେଖି ଅଛନ୍ତି କି, ତଦାନୀଂ କପିଳେଶ୍ୱର ଦେବ ମହାରାଜ ଉତ୍କଳର ରାଜସିଂହାସନକୁ ଅଳଂକୃତ କରି ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବାରେ ତତ୍ପର ଥିଲେ । (୧) ଅତଏବ ଜଣାଯାଏ, ଶ୍ରୀମାନ୍ ସାରଳାଦାସ ମହାଶୟ ଶ୍ରୀ କପିଳେଶ୍ୱର ବା କପିଳେନ୍ଦ୍ର ଦେବ ମହାରାଜାଙ୍କ ସମସାମୟିକ ଥିଲେ । ତାହାହେଲେ ଶ୍ରୀମାନ୍ ସାରଳାଦାସ କବି ମହୋଦୟ ଆଜକୁ ପ୍ରାୟ ସାର୍ଦ୍ଧ ଚତୁଃଶତ ବର୍ଷ ପୂର୍ବେ ଅର୍ଥାତ୍ ପଞ୍ଚଦଶ ଶତାବ୍ଦୀର କୌଣସି ଦଶକରେ ଉତ୍କଳର ଅଳଂକାରସ୍ୱରୂପ ବିଦ୍ୟମାନ ଥିଲେ । ତଥାପି ବହୁ ଲୋକଙ୍କର ସିଦ୍ଧାନ୍ତକୁ ଅନୁସରଣ କଲେ କପିଳେଶ୍ୱର ଦେବଙ୍କ ରାଜତ୍ୱ ସମୟକୁ ଅନ୍ୟୂନାଧିକତଃ ଠିକ୍ ନିର୍ଦ୍ଧାରିତ କରି ହେଉନାହିଁ । ଅନେକେ ନାନାବିଧ ଅସଦୃଶ ପ୍ରମାଣମାନଙ୍କୁ ଅନୁସରି ଅନେକ ପ୍ରକାର ଲେଖିଯାଇ ଅଛନ୍ତି । ତତ୍ ତତ୍ ପ୍ରମାଣାନୁଗତ ସିଦ୍ଧାନ୍ତମାନଙ୍କରେ ପ୍ରାୟଶଃ ବିଂଶତି ବର୍ଷ ନ୍ୟୂନ ନଚେତ୍ ଅଧିକ ଥିବାର ଜଣାଯାଉ ଅଛି । ସେ ସବୁ ପ୍ରମାଣମାନ ଦେଇ ଆନୁମାନିକ ସିଦ୍ଧାନ୍ତରେ ଏହି ପ୍ରବନ୍ଧର କଳେବର ଅଯଥା ବଢ଼ାଇବା ଅନାବଶ୍ୟକ ମନେ କରି (୨) ହଣ୍ଟର ଓ ପ୍ୟାରୀମୋହନଙ୍କ ଐତିହାସିକ ବିବରଣ ଏବଂ ମାଦଳା ପାଞ୍ଜିର ନିର୍ଦ୍ଧାରଣକୁ ଅବଧାରଣ କରି ସମୟ ନିର୍ଦ୍ଧାରିତ କରୁଅଛୁଁ । ମାଦଳା ପାଞ୍ଜି ଏବଂ ବହୁ ଗବେଷଣା ତତ୍ପର ପ୍ୟାରୀମୋହନ ଆଚାର୍ଯ୍ୟ ହଣ୍ଟର ସାହେବଙ୍କ (୩)

---

(୧) ପ୍ରଣପତ୍ୟେ ଶିବଭକ୍ତ କପିଳେନ୍ଦ୍ରର ନାମେ ରାଜା ।
ତେତିଶ କୋଟି ଦେବେ ଚରଣେ ଯାର ପୂଜା । ଆ. ପ.

(୨) ଅନେକେ ସାରଳାଦାସଙ୍କୁ ୬୦୦ ଛଅ ଶତ ବର୍ଷର କବି ବୋଲି କହିଥାନ୍ତି । ଆମ୍ଭେମାନେ ମଧ୍ୟ ସମୟେ ସମୟେ ତାଦୃଶ ଭ୍ରାନ୍ତ ଧାରଣାରେ ପଡ଼ି ବର୍ତ୍ତମାନ ସିଦ୍ଧାନ୍ତିତ ସମୟ ଅପେକ୍ଷା ଅତି ପ୍ରାଚୀନ ବୋଲି ପ୍ରକାଶ କରିଥାଉଁ, କିନ୍ତୁ ସମ୍ପ୍ରତି ସମଗ୍ର ପରିଶୀଳନଦ୍ୱାରା ପ୍ରୋକ୍ତ ଧାରଣା ଭ୍ରାନ୍ତ ବୋଲି ସ୍ଥିର କରିଅଛୁଁ ।

(୩) ଶ୍ରୀମାନ୍ ହଣ୍ଟର ସାହେବ ତାତ୍କାଳିକ ସର୍ବସାଧାରଣ ଲୋକଙ୍କ କଥାରେ ବିଶ୍ୱାସ ରଖି ଅନ୍ୟାନ୍ୟ କେତେକ ବିଷୟମାନଙ୍କର ସାମୟିକ

ମତରେ କପିଳେନ୍ଦ୍ର ଦେବ ଖ୍ରୀଷ୍ଟାବ୍ଦ ୧୪୫୨ – ୧୪୭୯ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ ପ୍ରାପ୍ତ ହୋଇଥିଲେ । ଏହାଙ୍କର ରାଜତ୍ୱ ସମୟ ସପ୍ତବିଂଶତି ବର୍ଷର କୌଣସି ଭାଗରେ ଆନୁମାନିକ ଅଷ୍ଟମ ଭାଗ ପ୍ରାରମ୍ଭରେ ଶ୍ରୀମାନ୍ ସାରଳାଦାସ କବି ମହାଭାରତ ଗ୍ରନ୍ଥ ରଚନା ଆରମ୍ଭ କରିଥିଲେ । ଏଥି ମଧ୍ୟରେ ସେ ଗ୍ରନ୍ଥ ରଚନା ସମ୍ପୂର୍ଣ୍ଣ କରିଥିଲେ କି ନାହିଁ, ଠିକ୍ କୁହାଯାଇ ନ ପାରେ । ଏହି କବି ମହୋଦୟ ନିଜ ମହାଭାରତ ଗ୍ରନ୍ଥର ପ୍ରାରମ୍ଭରେ ମାତ୍ର କପିଳେନ୍ଦ୍ର ଦେବଙ୍କ ନାମ ଉଲ୍ଲେଖ କରି ଅଛନ୍ତି । ପରନ୍ତୁ ବର୍ଣ୍ଣନୀୟ ଚରିତର ପ୍ରାସ୍ତାବିକ ନ ହେଲେ ସୁଦ୍ଧା ଅନେକତ୍ର ପ୍ରସଙ୍ଗାନୁଷଙ୍ଗିକରୂପେ ଅନେକ ମହାପୁରୁଷ ପ୍ରଭୃତିଙ୍କର ନାମଧାମାଦି ପ୍ରକାଶ କରଣରେ ଅକୁଣ୍ଠିତ ହୋଇ କପିଳେନ୍ଦ୍ର ଦେବଙ୍କ ନାମ ଅନ୍ୟ କେଉଁଠି ପ୍ରକାଶିତ କରିନାହାନ୍ତି । ଅତଏବ କହିବାକୁ ହେବ ଯେ, ଏହି ଗ୍ରନ୍ଥର ରଚନାରମ୍ଭ ସମୟରେ କିମ୍ବା କେତେକ ଅଂଶ ରଚନାର ଶେଷ ପର୍ଯ୍ୟନ୍ତ କପିଳେନ୍ଦ୍ର ଦେବ ଜୀବିତ ଥିଲେ, ଏଥିରେ ସନ୍ଦେହ ନାହିଁ । ତାହାହେଲେ ବିଶ୍ୱାସ କରିହୋଇ ପାରେ କି, ଶ୍ରୀମାନ୍ ସାରଳାଦାସ ମହୋଦୟ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଷଷ୍ଠ ବା ସପ୍ତମ ଦଶକରେ ଗ୍ରନ୍ଥ ରଚନା ଆରମ୍ଭ କରିଥିବେ । ଏ କବି ମହାଶୟ ବିଲଙ୍କା ରାମାୟଣ ପ୍ରଭୃତି ଆଉ କେତେକ ଗ୍ରନ୍ଥ ପ୍ରଣୟନ କରି ଥିବାର ମଧ୍ୟ ଜଣାଯାଏ । ଯେଉଁ ମହାଗ୍ରନ୍ଥ ରଚନାରେ କୃଷ୍ଣଦ୍ୱୈପାୟନଙ୍କୁ ତିନି ବର୍ଷ ସମୟ (୧) ସତତ ଉଦ୍ୟମଶୀଳ ହେବାକୁ ପଡ଼ିଥିଲା, ସେହି ଗ୍ରନ୍ଥର ସମସ୍ତ କଥା ପ୍ରକାଶ କରିବା ପାଇଁ ସାରଳା-ଦାସେ ଯେ ତତୋଽଧିକ ସମୟ ରଚନାରେ ତତ୍ପର ହୋଇଥିବେ, ଏହା କହିବା ବାହୁଲ୍ୟ ମାତ୍ର । ଅଥଚ ଏହି କବି ମହୋଦୟ ଅଳ୍ପ ବୟସରେ ବା ସମ୍ପ୍ରାପ୍ତ ତାରୁଣ୍ୟରେ ମହାଭାରତ ରଚନାରେ ପ୍ରବୃତ୍ତ ହୋଇଥିବାର ସେ ନିଜେ ମଧ୍ୟ-

---

ନିର୍ଦ୍ଧାରଣରେ ଭ୍ରାନ୍ତ ପଥାନୁସରଣ କରିଥିଲେ ସୁଦ୍ଧା ତାହାଙ୍କର ଏହି ନିର୍ଦ୍ଧାରଣଟି ଭ୍ରାନ୍ତ ବୋଧହୁଏ ନାହିଁ, କାରଣ ଶିଳାଲିପି ତାମ୍ରପଟ୍ଟ ପ୍ରଭୃତି ବିଚାର କରି ସେ ଏହି ସମୟକୁ ନିର୍ଦ୍ଧାରିତ କରି ଅଛନ୍ତି ।

(୧) ତ୍ରିଭିର୍ବର୍ଷୈଃ ସଦୋତ୍ଥାୟୀ କୃଷ୍ଣଦ୍ୱୈପାୟନୋ ମୁନିଃ ।
ମହାଭାରତମାଖ୍ୟାନଂ କୃତବାନ୍‌ଦମଦ୍ଭୁତଂ ।
ଆ. ପ. ୬୨ ଅଧ୍ୟାୟ, ୫୨ ଶ୍ଳୋକ ।

ପର୍ବରେ ଏକ ସ୍ଥାନରେ ପ୍ରକାଶ କରି ଅଛନ୍ତି । (୧) ସୁତରାଂ ଏହା ସମ୍ପୂର୍ଣ୍ଣ ଯଥାର୍ଥ ବୋଧହୁଏ । କାରଣ ଏ ମହାଶୟ ଅପ୍ରାପ୍ତବୟସ୍କ ଥିବା ସମୟରେ ପିତାଙ୍କ ଦ୍ୱାରା ଭର୍ତ୍ସିତ ହୋଇ ପୌରାଣିକ ଜ୍ଞାନ ଓ ଗ୍ରନ୍ଥକର୍ତ୍ତୃତା ସମ୍ପାଦନାର୍ଥ ଦେବୀଙ୍କ ଗୃହରେ ଅଧା ପଢଥିଲେ । ସମ୍ଭବତଃ ପାଞ୍ଚ ସାତ ବର୍ଷ ମାତ୍ର ଦେବୀଙ୍କ ସେବାରେ ଅତୀତ ହୋଇଥିବ । ତା ପରେ ଦେବୀଙ୍କ ପ୍ରସାଦ ପ୍ରାପ୍ତ ହୋଇ ମହାଭାରତ ରଚନାରେ ପ୍ରବୃତ୍ତ ହୋଇଥିଲେ । ଏ ସବୁ ବିଚାର କରିନେଲେ ସାରଳାଦାସଙ୍କ ଗ୍ରନ୍ଥ ରଚନାର ସାମ୍ପ୍ରଦାୟିକ ସମୟ ମଧ୍ୟରେ କପିଳେନ୍ଦ୍ର ଦେବ ପଞ୍ଚତ୍ୱପ୍ରାପ୍ତ ହୋଇଥିଲେ ଏବଂ ତଦୀୟ ପଞ୍ଚତା ପରେ ସୁଦ୍ଧା ଏ କବି ମହାଶୟ କେତେକାଳ ଜୀବିତ ଥିଲେ ବୋଲିବା ଅସମ୍ଭବ ବୋଧହୁଏ ନାହିଁ । କିନ୍ତୁ ଏ ସ୍ଥଳରେ ପୂର୍ବୋକ୍ତ ପଣ୍ଡିତ ମହାଶୟ ସାରଳା ଚରିତରେ ସାରଳା ଭାରତର ରଚନାକାଳକୁ କବିଙ୍କର ବୟସ ନିର୍ଦ୍ଧାରଣ କରିବାକୁ ଯାଇଁ ତାହାଙ୍କୁ କାଳ୍ପନିକ ଜରାରେ ଜର୍ଜର କରିଦେଇ ଅଛନ୍ତି । "ସାରଳାଦାସଙ୍କୁ ପ୍ରଭୁ ଗତିମୁକ୍ତି ଦେବା" ଇତ୍ୟାକାରକ ବାକ୍ୟଗତ ମୁମୁକ୍ଷାକୁ ମାତ୍ର ଧରି କବିଙ୍କର ଜରାବସ୍ଥା ଧାର୍ଯ୍ୟ କରି ପକାଇ ଅଛନ୍ତି । ସମ୍ୟକ୍ ବିଚାରରେ ଅବଗତ ହୋଇପାରି ନାହାନ୍ତି ଯେ, ଭକ୍ତ ବୟସା ବୃଦ୍ଧ ହେଉନ୍ତୁ ବା ତରୁଣ ହେଉନ୍ତୁ ଅଥବା ଅପ୍ରାପ୍ତ-ତାରୁଣ୍ୟ ହେଉନ୍ତୁ, ହୃଦୟରେ ଯେବେ ଭକ୍ତି ଉଦ୍ରିକ୍ତ ହୋଇ ଉଠେ, ତଦା ଅବଶ୍ୟ ବିଷୟ ବିରକ୍ତି ଓ ବ୍ୟାକୁଳତା ସହ ମୁମୁକ୍ଷା ବଳବତୀ ହୁଏ; ଏହାର ବିପରୀତ ହୃଦୟରେ ଅଶୀତି ବର୍ଷ ବୟସ୍କତାରେ ସୁଦ୍ଧା ଭକ୍ତି, ବିରକ୍ତି ବା ବ୍ୟାକୁଳତା ଜନ୍ମେ ନାହିଁ । ଏହାର ଜ୍ୱଳନ୍ତ ପ୍ରମାଣମାନ ସର୍ବତ୍ର ଦେଖାଯାଏ । ସାରଳାଦାସଙ୍କ ହୃଦୟ ଉନ୍ମୁଖ ତାରୁଣ୍ୟ ସମୟରୁ ସମଧିକତଃ ଭକ୍ତିପ୍ରବଣ ଥିଲା । ଅତଏବ ପ୍ରତ୍ୟେକ ଦେବଦେବୀ-ସ୍ତୁତି ସ୍ଥଳରେ ସେ ବିଷୟ ବିରକ୍ତି ଓ ବ୍ୟାକୁଳତା ପ୍ରକାଶ କରି ମୁମୁକ୍ଷୁ ହୋଇ ଅଛନ୍ତି । ଏଥିପାଇଁ ସେ ତେତେବେଳେ ଅର୍ଥାତ୍ ଭାରତ ରଚନା ସମୟକୁ ବୟସା ବୃଦ୍ଧ ଥିଲେ ବୋଲି କହିବା ସଙ୍ଗତ ନୁହେ ।

ଶ୍ରୀମାନ୍ ସାରଳାଦାସ ମହାଶୟ ଓଡ଼ିଆର ସର୍ବପ୍ରଥମ ଉତ୍କଳ ଗ୍ରନ୍ଥକର୍ତ୍ତା ବା ମହାକବି ଥିଲେ । ଏହାଙ୍କ ପୂର୍ବେ କେହି ଏତାଦୃଶ କବି ଥିବାର ବିଶ୍ୱାସ ହୁଏ ନାହିଁ । ମାର୍କଣ୍ଡ ଦାସ ପ୍ରଭୃତି ଏହାଙ୍କର ପୂର୍ବବର୍ତ୍ତୀ ଥିଲେ ସୁଦ୍ଧା ସେମାନଙ୍କୁ ମହାକବି କୁହାଯାଇ ନ ପାରେ । କାରଣ ସେମାନେ ମୁଷ୍ଟିମେୟ କେତେକ ପଦ୍ୟ

(୧) ଶିଶୁ ବୁଦ୍ଧି ମୋହର ବୟସ ଅଳପଟି । ସ. ପ.

ମାତ୍ର ଲେଖିପାଇ ଅଛନ୍ତି । ଆମ୍ଭମାନଙ୍କ ସାହିତ୍ୟରେ ସାରଳା ମହାଭାରତ କେବଳ ଆଦ୍ୟମ ଓ ଅତି ପ୍ରାଚୀନ ଗ୍ରନ୍ଥ । ଏହା ବହୁ ଅନୁସନ୍ଧାତ୍ସୁ ହଣ୍ଟର ସାହେବଙ୍କ ଠାରୁ ଶ୍ରୀମାନ୍ ମଧୁସୂଦନ ଦାସ ବି. ଏ. ମହାଶୟଙ୍କ ପର୍ଯ୍ୟନ୍ତ ଅନେକ ଅଭିଜ୍ଞ ବ୍ୟକ୍ତି ସ୍ଥିର କରି ଅଛନ୍ତି । ଆମ୍ଭମାନଙ୍କର ବହୁ ଗବେଷଣାଲବ୍ଧ ଓ ପରିଶୀଳନ ଜନିତ ବିଶ୍ୱାସମୂଳକ ଅଭିମତ ମଧ୍ୟ ତାହା । ଓଡ଼ିଆ ଭାଷା ରାଜ୍ୟରେ ସାରଳା-ଦାସଙ୍କ ମହାଭାରତ ଗ୍ରନ୍ଥ ଯେ ସର୍ବପ୍ରଥମ ଓ ଅତି ପ୍ରାଚୀନ ଏବଂ କପିଳେନ୍ଦ୍ର ଦେବଙ୍କର ସମକାଳୀନ, ଏଥିରେ କୌଣସି ପ୍ରକାର ସନ୍ଦେହର କଥା ନାହିଁ । ଏହି ମହାଭାରତ ଗ୍ରନ୍ଥ ବିଶେଷତଃ ପ୍ରାଚୀନ ଓଡ଼ିଆ ଭାଷା ସାହିତ୍ୟର ଆଦର୍ଶସ୍ଥାନୀୟ । ଏଥିରେ ଭାଷାର ପ୍ରୟୋଗ ପ୍ରଣାଳୀର ବିଶେଷତ୍ୱ ଓ ମୌଳିକତା ବିଦ୍ୟମାନ ରହିଅଛି । ଅଥଚ ଏହାର ସମୟରେ ଓଡ଼ିଆ ଭାଷା ମଧ୍ୟରେ ପ୍ରାକୃତ ଭାଷାସମ୍ବନ୍ଧ ସମଧିକ ରହି ଥିବାରୁ ଅନେକ ପ୍ରାକୃତର ଭାତିମତେ ଶବ୍ଦବିଭକ୍ତି, କ୍ରିୟାବିଭକ୍ତି ପ୍ରଭୃତିର ପ୍ରୟୋଗ କରିହତ ଅଛି । ଏ ସମ୍ବନ୍ଧରେ ମତିମାନ୍ ସାରଳାଦାସ ମହାଶୟ ଯେ ଯେ କ୍ରମ ପ୍ରଦର୍ଶନ କରି ଅଛନ୍ତି, ସେ ସବୁ ତତ୍ପରବର୍ତ୍ତୀ ଶ୍ରୀ ବଳରାମ ଦାସଙ୍କ ପର୍ଯ୍ୟନ୍ତ ପ୍ରାୟଶଃ ଅକ୍ଷୁର୍ଣ୍ଣ ବ୍ୟବହୃତ ହୋଇ ଆସିଅଛି । ଭାଷାର ପ୍ରାଚୀନ ପ୍ରୟୋଗକ୍ରମ କିମ୍ବା ଭାଷା ଓ ସାହିତ୍ୟର ପ୍ରାଚୀନତାର ଅନୁସନ୍ଧାତ୍ସା ହେଲେ ସର୍ବାଗ୍ରେ ସାରଳା ମହାଭାରତ କେବଳ ଆମ୍ଭମାନଙ୍କର ଏକାନ୍ତ ଆଶ୍ରୟଣୀୟ । ଏଥିରେ କାହାରି କଦାଚ ଦ୍ୱିଧା ହେବାର ସମ୍ଭାବନା ନାହିଁ ।

ଏ ସ୍ଥଳରେ ଏ ସମ୍ବନ୍ଧୀୟ ଗୋଟିଏ ଭ୍ରାନ୍ତିର ନିରସନ କରିଦେବା ଉଚିତ ବୋଧ କରୁଅଛୁଁ । ସାରଳା ମହାଭାରତ ଗ୍ରନ୍ଥର ସର୍ବପ୍ରଥମତା ଓ ପ୍ରାଚୀନତା ସ୍ଥିର କରିବାକୁ ଯାଇ ମଦୀୟ ବନ୍ଧୁ ପୂର୍ବୋକ୍ତ ପଣ୍ଡିତ ମହାଶୟ କହିଦେଇ ଅଛନ୍ତି କି, "ପ୍ରାକୃତ ରୀତିମତରେ ଶୁଣସି, ହୋସ, ଦେସି, କରସି, ଗଚ୍ଛୁ, ତୋହର ଥାନ୍ତେ, ଆମ୍ଭର ଥିଲେ, ଧାମନ୍ତେଣ, ଯାନ୍ତେଣ ଇତ୍ୟାଦି କ୍ରିୟାପଦ, ସବୁନ୍ତି, ଆମ୍ଭନ୍ତି, ପୁଅନ୍ତି, ଦେବତାନ୍ତି, ତୁମ୍ଭୁରେଣ, ତୋହରେଣ, ସଙ୍ଗତେଣ ପ୍ରଭୃତି ଶବ୍ଦବିଭକ୍ତ୍ୟନ୍ତ ପଦ ଏବଂ ଜଗୃନାହା, କଣୟ, ରହୁବର ପ୍ରଭୃତି କେତେକ ପଦର ବ୍ୟବହାର ଯେପରି ସାରଳା ମହାଭାରତରେ ଦେଖାଯାଏ, ଏତତ୍ପରବର୍ତ୍ତୀ ପୁରାଣ ଗ୍ରନ୍ଥମାନଙ୍କରେ ତାଦୃଶ ପ୍ରୟୋଗ ଦେଖାଯାଏ ନାହିଁ ।" "ସେ ପ୍ରକାର ଶବ୍ଦର ବ୍ୟବହାର ଜଗନ୍ନାଥ ଦାସୀୟ ଅଥବା ତତ୍ପରବର୍ତ୍ତୀ ସାହିତ୍ୟରେ ଆମ୍ଭମାନେ ପ୍ରାୟ ଦେଖିପାରୁ ନାହିଁ ।" "ତୋହରେଣ, ମୋହରେଣ, ଏ ପ୍ରକାର

ପ୍ରୟୋଗ ତତ୍‌ପରବର୍ତ୍ତୀ କୌଣସି ପ୍ରାଚୀନ ସାହିତ୍ୟ ପୁସ୍ତକରେ ପ୍ରାପ୍ତ ନାହିଁ ବୋଲି ଆମ୍ଭମାନଙ୍କର ବିଶ୍ୱାସ ।" ଇତ୍ୟାଦି । କିନ୍ତୁ ଏହା ଅଳୀକ ନୁହେ । ଯେ କି ପ୍ରାଚୀନ ସାହିତ୍ୟର ପାରଦର୍ଶୀ ତାହାଙ୍କର ଏଥିରେ କୌଣସି ପ୍ରକାର ବିଶ୍ୱାସ ବା ଆସ୍ଥା ରହି ନ ପାରେ । ଏ ସବୁ ପ୍ରୟୋଗ ପ୍ରଣାଳୀ ସାରଳାଦାସଙ୍କ ପରବର୍ତ୍ତୀ ବଳରାମ ଦାସଙ୍କ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହି ଆସିଅଛି । ନିମ୍ନରେ ତାହାଙ୍କ ରାମାୟଣ ଆଦି କାଣ୍ଡରୁ ମାତ୍ର ଏବଂ ଅନ୍ୟାନ୍ୟ ପ୍ରାଚୀନ ଗ୍ରନ୍ଥରୁ କେତେକ ପ୍ରମାଣ ଉଦ୍ଧୃତ କରୁଅଛୁଁ —

(୧) କଉଶିକ ବୋଇଲେ ଶୁଣ ଶତାନନ୍ଦ ଋଷି ।
ଅଯୋଧ୍ୟା ରାଜାକୁ ବାରତା ଘେନି 'ଯାସି' ।
(୨) ଆମ୍ଭେ ବିଭାଣ୍ଡକ ପୁତ୍ର ବ୍ରହ୍ମଋଷି ।
ନ କର ତୁ ବିଷ୍ଣୁର କନ୍ୟା ମୋତେ 'ଦେସି' ।
(୩) ଜୁଆଁଇ ସଙ୍ଗତେଣ ଦୋହିତାକୁ 'ନେସି' ।
ଅତ ଆରମ୍ଭ କର ଯାଗ ତୁ 'କରସି' ।
(୪) ସହସ୍ରେକ ଯୋନି 'ହୁଅସି' ବୋଇଲେ ।
(୧) ଦେବତାଏ ନ 'ଗଣ୍ଡିଲେ' ମହାପାପୀ ବୋଲି ।
(୨) ଧନ ଲୋଭରେ ପର ପୁରୁଷକୁ 'ଗନ୍ତୁ' ।
(୧) 'ତୁମ୍ଭର ଥାନ୍ତେ' ମୋହର ଅଣ୍ଡ ଭେଦୁ ନେଲା ।
(୨) 'ମୋହର ଆସନ୍ତେ' ହୋଇଲା ଏଥେ ବୃଷ୍ଟି ।
(୧) ବାସୁଦେବ ଜାତ ହୋଇବେ 'ଏହାର ଯାଗ କଲେ' ।
(ଏହାର ଯାଗ କଲେ = ଏ ଯାଗ କଲେ ।)
(୨) 'ତୋହର ଗଲେ' ସିନା ରକ୍ଷା ହୋଇବ ରାଜ୍ୟ ।
(୧) ପୁତ୍ର 'ନ ଥିଲେ ଣ' ନୁହଇ କାରଣ ।
(୨) ଏକ 'କହନ୍ତେଣ' ଆରେକ ଧାମନ୍ତି ।
(୧) ଦ୍ୱାରପାଳମାନ ସେହି ବଚନ 'ସବୁନ୍ତି' । ଇତ୍ୟାଦି ।
(୨) ପାଚନର ପୁଟିଲର 'ବୃକ୍ଷନ୍ତ' ନେଇ ଥାପ ।
(୩) ଜନକ ମଣ୍ଡିଆ ଯେ ଦେଖାଇଣ 'ତାହାନ୍ତି' ।
(୪) 'ଦାସୀନ୍ତ' ବଚଣ ଆଜ୍ଞା ଦେଲେ ରାମ ମାତା ।

(୧) 'ତାହାରେଣ' ରକ୍ଷା ହୋଇବ ତୋର ଗୋଷ୍ଠ ।
(୨) 'ତୋହରେଣ' ଭ୍ରାନ୍ତ ଯେ ପାଇଲ ଏହୁ କଥା ।
(୩) 'ଏଥେଣ' ଆମ୍ଭର କିଛୁ ନାହିଁ ପ୍ରୟୋଜନ ।
(୪) ବିଧାତା 'ପ୍ରସାଦେଣ' ଜଣିଲ୍ଲ ଭିନପୁର ।

ଏ ସବୁ ଛଡ଼ା ଏହି ରାମାୟଣରେ ପ୍ରାକୃତ ରୀତିମତେ ବାରହ, ତେରହ, ଜସ, ତିସ, ଏହ୍ନେକ, ତେହ୍ନେକ, କେହ୍ନେକ ପ୍ରଭୃତି ପଦମାନ, ଆହୁରି ଅନ୍ୟାନ୍ୟ କେତେକ ବିଲକ୍ଷଣ କ୍ରିୟାପଦ ସୁଦ୍ଧା ବ୍ୟବହୃତ ଅଛି ।

ଜଗଜଣା— ଶିର ଖେଚନ୍ତି ସରପଣା ।
ଧରି ଚଲନ୍ତି ଜଗଜଣା । ଦା. ର.

ଜଗଜେଠି— ବାହ୍ମଣମାନେ ଜଗଜେଠିମାନଙ୍କେ
ଏବଧିର ରଣରଚକ । ବୈ. ବି.

ଜଗନାହା— ଶୁଣିଣ ମନେ ମନେ ହସିଲେ ଜଗନାହା । ନୃ. ପ. ସ. ଚ.

ଜଗୁଜୀବନ— ଜଗୁଜୀବନ ଦାଶରଥି ।
ଜାନକୀଦେବୀ ପ୍ରାଣପତି । କ. ଲୋ.

ଜଗୁଜତା— ବେଣକୁ ବଢ଼ାଇ ଭସ୍ମ ହେଲେ
ଜଗୁଜତା । ମ. ସ.

ଜଣମ୍ବୁ— କପିଳାସ ପୁରେ ବର୍ଷ ଯାକେ ଥରେ ।
ହୁଅଇ ଜଣମ୍ବୁ ବୃଷ୍ଟି ସମ ଉବସରେ । ନୃ. ସ୍ତୁ. ହି. ଚ.

ରହୁବର— ପ୍ରତିଜ୍ଞା କରଣ ବାହାର ହୋଇଲ୍ଲ
ହେମରହୁବର ଚଢ଼ି । ବ. ଗ୍ରା.

ଅଭିଜ୍ଞ ପାଠକଗଣ କ୍ରମଶଃ ଦେଖିନେଲେ ଅବଶ୍ୟ ବିଶ୍ୱାସ କରିବେ ଯେ, ସାରଳାଦାସଙ୍କ ପ୍ରଦର୍ଶିତ ଏତାଦୃଶ ପ୍ରୟୋଗ ପ୍ରଣାଳୀ ଓଡ଼ିଆର ତତ୍ପରବର୍ତ୍ତୀ ପୁରାଣ ସାହିତ୍ୟରେ ବହୁକାଳ ଅନୁକୃତ ଓ ସମାଦୃତ ହୋଇଅଛି ।

ଶ୍ରୀମାନ୍ ସାରଳାଦାସଙ୍କ ନିବାସସ୍ଥାନ କଟକ ଜିଲ୍ଲା ଅନ୍ତର୍ଗତ ଝଙ୍କଡ଼ ପରଗଣାସ୍ଥ ଶ୍ରୀ ସାରଳା ଦେବୀଙ୍କ ପୀଠର ଅନତିଦୂରବର୍ତ୍ତୀ କୌଣସି ଏକ ପ୍ରସିଦ୍ଧ ଗ୍ରାମ ହେବ । ଅନେକେ କହନ୍ତି, ଶ୍ରୀ ସାରଳା ପୀଠର ସମୀପ ତେନ୍ତୁଳିପଦା

ନାମକ ଗ୍ରାମରେ ସାରଳାଦାସେ ଜନ୍ମଗ୍ରହଣ କରିଥିଲେ । କବି ନିଜେ ସ୍ଥାନେ ସ୍ଥାନେ ଜଙ୍ଘେରପୁର (ଯକ୍ଷପୁର) ବା କନକପୁର ପାଟଣା ତାହାଙ୍କର ଜନ୍ମସ୍ଥାନ ଓ ନିବାସଧାମ ଥିବାର ବ୍ୟକ୍ତ କରି ଅଛନ୍ତି ଏବଂ ବିରାଟପର୍ବ ପାଠର ପରିଶେଷରେ ସ୍ୱକୀୟ ଜନ୍ମସ୍ଥାନର ସମ୍ପୂର୍ଣ୍ଣ ପରିଚୟ ପ୍ରଦାନରେ କହି ଅଛନ୍ତି କି, ଜମ୍ବୁଦ୍ୱୀପ ଭରତଖଣ୍ଡଗତ ଓଡ୍ରରାଷ୍ଟ୍ରର ଯାଜନ ନଗରର ପୂର୍ବ ଭାଗରେ ଶ୍ୱେତବରାହ ଓ ନୀଳାଚଳର ମଧ୍ୟ-ପ୍ରଦେଶରେ ଚନ୍ଦ୍ରଭାଗା କୋଣାର୍କର ଈଶାନ୍ୟ ଦିଗରେ ମୋର ଜନ୍ମସ୍ଥାନ । * ସମ୍ଭବତଃ ଅନ୍ୟୋନ୍ୟ ନେଦିଷ୍ଟବର୍ତ୍ତୀ ଝଙ୍କଡ଼, ଶାରଳ, ତେନ୍ତୁଳିଆପଦା ଓ କନକପୁର ପାଟଣା ବା ଗ୍ରାମ ପାଟଣା ଏହି ସ୍ଥାନମାନ ସାରଳାଦାସ କବିଙ୍କର ସାମୟିକ ନିବାସର ଆବାସଭୂତ ଥିଲା । ଅଦ୍ୟାପି ତାଙ୍କର ବଂଶଧରମାନେ ତହିଁ ତହିଁ ନିବାସ କରୁଅଛନ୍ତି । ସେମାନେ ଉଦାର୍ଗ ଆଚୋଲ୍ଲ କରଣ ବୋଲି ପରିଚିତ କରନ୍ତି; କିନ୍ତୁ ପ୍ରକୃତିତଃ ସେମାନେ ଏବଂ ଏହି କବି ମହୋଦୟ ଖଣ୍ଡାଏତ ଥିଲେ । ଆମ୍ଭେ ସମ୍ପୂର୍ଣ୍ଣ ବିଶ୍ୱସ୍ତ ହୃଦୟରେ କହିପାରୁଁ ଯେ, ବଳାଙ୍ଗୀ, ବୈତରଣୀ ଓ ଚନ୍ଦ୍ରଭାଗା ନଦୀର ଅନତିଦୂରରେ ଗ୍ରାମମାନ ଉତ୍କଳ ଆଦି ମହାକବିଙ୍କର ଆବାସଭୂମି ଥିଲା । ମହାକବି କାଳିଦାସ ଯେପରି ନିଜର ସମ୍ପୂର୍ଣ୍ଣ ଅନୁଭୂତ ଓ ଆଦରଣୀୟ ଶିପ୍ରା ନଦୀକୁ ଗୌରବର ସମୁଚ୍ଚସ୍ଥାନ ଓ ସମାଦର ପ୍ରଦାନ କରି ଅଛନ୍ତି, ବଳାଙ୍ଗୀ, ବୈତରଣୀ ଓ ଚନ୍ଦ୍ରଭାଗା ସମ୍ବନ୍ଧରେ ସାରଳା-

---

* (୧) ଚିତ୍ରୋତ୍ପଳା ନଦୀର ଯେ ଉତ୍ତର ଭାଗେଣ ।
ଜଙ୍ଘେରପୁର ନାମରେ ଅଟଇ ପାଟଣ ।
କନକପୁର ପାଟଣା ଯହିଁ ପଶ୍ଚିମ ।
ମୂର୍ଖି ତାହି ଅନୁଜ ସାରଳାଦାସ ନାମ । ମଧ୍ୟପର୍ବ ।

(୨) ଜମ୍ବୁଦ୍ୱୀପ ଭରତଖଣ୍ଡ ମଣ୍ଡଳ ଓଡ଼ ରାଷ୍ଟ୍ର ।
ଭୁବନ ଯାଜନଗ୍ର ପୂର୍ବଦିଗ ମହୋଦଧି ତଟ ।
ଶ୍ୱେତବାରାହ ନୀଳସୁନ୍ଦର ଗିରି ମଧ୍ୟସ୍ଥାନେ ।
ମହେନ୍ଦ୍ର ଚନ୍ଦ୍ରଭାଗା କୋଣାର୍କ ଈଶାନ୍ୟେ ।
ସେ ପୁର ବାସି (ଜଙ୍ଘେରପୁର ବାସିମା) ଯକ୍ଷେରପୁର ବାସିନୀ ।
ଶ୍ରୀରାମ ଆଜ୍ଞାରେ (ଗିରିଜାର ଆଜ୍ଞାରେ) ତହିଁରେ ମୂର୍ଖି ଜନ୍ମି ।
ଇତ୍ୟାଦି ।

ତାସେ ମଧ୍ୟ ସେହିପରି ସମାଦର ପ୍ରକାଶ କରିଅଛନ୍ତି । ଏ କବି ମହୋଦୟ ଅନେକସ୍ଥ ଆସ୍ଥାନରେ ମଧ୍ୟ ବଳାଙ୍ଗୀ, ବୈତରଣୀ ଓ ଚନ୍ଦ୍ରଭାଗାର ନାମ ଉଲ୍ଲେଖ କରିଅଛନ୍ତି । ବୋଧହୁଏ, ଏହି ନାମମାନ କବିଙ୍କର ଅତି ପରିଚିତ । ପ୍ରୋକ୍ତ ନଦୀତ୍ରୟ ତାହାଙ୍କର ଜନ୍ମଭୂମି ଓ ବହୁଦୃଷ୍ଟ ଥିବାରୁ ଅପିଚ ତତ୍ ତତ୍ ଭକ୍ତି ଓ ଶ୍ରଦ୍ଧାର ଆତିଶଯ୍ୟରୁ ଅପଥା ସ୍ଥାନରେ ସୁଦ୍ଧା ସେହି ନାମରେ ଅନ୍ୟାନ୍ୟ ନଦୀମାନଙ୍କୁ ଅଭିହିତ କରିଅଛନ୍ତି । ଦେଖିବେ, ଭୀମସେନଙ୍କର ପଶ୍ଚିମ ଦିଗ୍‌ବିଜୟ ପ୍ରସ୍ତାବରେ ବିନ୍ଧ୍ୟଗିରି ନିକଟରେ କୌଣସି ମନୋହାରିଣୀ ନଦୀରେ ବଳାଙ୍ଗୀ ନଦୀର ଆବିର୍ଭାବ କରିଅଛନ୍ତି । ସେହିପରି ଅର୍ଜୁନଙ୍କର ଉତ୍ତର ଦିଗ୍‌ବିଜୟ ସନ୍ଦର୍ଭରେ କନକଧାଶ୍ୱ ପର୍ବତ ସନ୍ନିଧାନରେ ସେହି ବଳାଙ୍ଗୀ ନଦୀର ଅସ୍ତିତ୍ୱ ଖ୍ୟାପନ କରିଅଛନ୍ତି ଏବଂ ଅସ୍ଥ ଅରଣ୍ୟବାସୀମାନେ ବୈଦିସ୍ୱତ-ବଧୂ ଜାନକୀ ବାଲୁକାଲିଙ୍ଗ ପୂଜା କରିଥିବାର ମଧ୍ୟ ଲେଖିଅଛନ୍ତି । ପଶ୍ଚିମ ଦିଗ୍‌ବିଜୟୀଷୁ ଭୀମସେନଙ୍କର ତୈର୍ଥଯାତ୍ରା ପ୍ରସଙ୍ଗରେ ଅର୍କଦେବାଧିଷ୍ଠିତ କୋଣାର୍କ ଚନ୍ଦ୍ରଭାଗା ନଦୀର ଉଦ୍‌ଘୋଷ କରିଅଛନ୍ତି (୧) ଏବଂ ବନପର୍ବରେ ସୁଦ୍ଧା ପାଣ୍ଡବମାନଙ୍କର ବନଭ୍ରମଣ ପ୍ରସ୍ତାବାନୁମୋଦନରେ ଏହି ଚନ୍ଦ୍ରଭାଗା ନଦୀର କଥା ଦୁଇଠିଁ ଉଲ୍ଲେଖ କରିଅଛନ୍ତି । (୨) ଏତାଦୃଶ ସମୟରେ ଏ ମହୋଦୟ ଅନେକସ୍ଥ ଅସ୍ଥାନରେ ପ୍ରସିଦ୍ଧ ନଦୀର ନାମ ବୈତରଣୀ ଏବଂ ତତ୍ତୀରସ୍ଥ ନଗରର ନାମ କରବୀରପୁର କରିଅଛନ୍ତି । ଏଥିରୁ ବୋଧହୁଏ, ଏ ତାହାଙ୍କର ଚିର ପରିଚିତ ନେଦିଷ୍ଠବର୍ତ୍ତିନୀ ବୈତରଣୀର ସୁପବିତ୍ରତାରେ ଏକାନ୍ତ ଭକ୍ତି-ପ୍ରବଣତା ପ୍ରକାଶ କରିଅଛନ୍ତି, ତଥାତ ତର୍କିରୁ ଅନୁମାନ ହୁଏ, ବୈତରଣୀ ତୀରସ୍ଥ କୌଣସି ପ୍ରଧାନ ସ୍ଥଳର ନାମ କରବୀରପୁର ହୋଇଥିବ, ନଚେତ୍ ଅନ୍ୟସ୍ଥ ଥିଲେ ସୁଦ୍ଧା ଏହି କବିଙ୍କର ବହୁ ଅଧ୍ୟୁଷିତ ବା ନିବାସାଭ୍ୟସ୍ତ ହୋଇଥାଇ ପାରେ । ଦେଖନ୍ତୁ, ଯେଉଁ ଦରିଦ୍ର ବ୍ରାହ୍ମଣଙ୍କୁ ଶ୍ରୀକୃଷ୍ଣ ନେତ୍ର ପ୍ରଦାନ କରିଥିଲେ, ସେ ମହାଶୟ ବୈତରଣୀ ତୀରସ୍ଥ କରବୀରପୁରରୁ ଗୃହ ପାଞ୍ଚ ବର୍ଷ ବ୍ୟାପୀ ପଦବ୍ରଜରେ ଦ୍ୱାରକାରେ ପ୍ରବିଷ୍ଟ

(୧) ଓକୋଣରେ ମାଡ଼ି ବସିଲୁ ଦେବ ସିନ୍ଧୁ କୂଳେ ।
ଅଗ୍ନିକୋଣେ ଚନ୍ଦ୍ରଭାଗା ପଶ୍ଚିମପ୍ରଷ୍ଠେ ।
କୋଣାର୍କ ବୋଲି ଧାତା ଶାସ୍ତ୍ରର ସଙ୍କେତେ । ସ. ପ. ୧୦୫ ପୃ ।

(୨) ବନପର୍ବ ୨୪୪ ଏବଂ ୨୪୭ ପୃଷ୍ଠା ଦେଖନ୍ତୁ ।

ହୋଇଥିଲେ ବୋଲି ବିଦୁର ଓ ଧୃତରାଷ୍ଟ୍ରଙ୍କ ସମ୍ବାଦାତ୍ମକ ଚରିତରେ ଲେଖି ଅଛନ୍ତି । (୧)

ଏହି କବିଙ୍କର ପିତୃମାତୃପ୍ରଦତ୍ତ ବା ଶୈଶବରୁ ଆହୂତ ନାମ ସାରଳାଦାସ ନୁହେ । ତାହାଙ୍କ ଜନ୍ମକାଳୀନ ଅନ୍ୟ ନାମ ଥିଲା । ଏହି ଭାରତର ଭୂମିକାରେ ପ୍ରକାଶକ ଉଲ୍ଲେଖ କରି ଅଛନ୍ତି କି, ସାରଳାଦାସଙ୍କର ପିତୃଦତ୍ତ ଜନ୍ମକାଳୀନ ବା ଶୈଶବ ନାମ ସିଦ୍ଧେଶ୍ୱର ଥିଲା । କିନ୍ତୁ କବି ମହାଶୟ ସ୍ୱୀୟ ପ୍ରକାଣ୍ଡ ଗ୍ରନ୍ଥ ମଧ୍ୟରେ ନାନା ସ୍ଥାନରେ ଆପଣାର ନାନାବିଧ ବିବରଣ ଦେବାରେ କୃତପ୍ରବୃତ୍ତି ହୋଇ ଏକ ସ୍ଥାନରେ ସୁଦ୍ଧା ପିତୃଦତ୍ତ ନାମ ଉଲ୍ଲେଖ କରି ନାହାନ୍ତି । ଜନଶ୍ରୁତି କହୁଅଛି, ଏ କବି ମହାଶୟଙ୍କର ଆଉ ପାଞ୍ଚ ସହୋଦର ମଧ୍ୟ ଥିଲେ । ସେମାନଙ୍କ ମଧ୍ୟରୁ ଜ୍ୟେଷ୍ଠ ଭ୍ରାତାଙ୍କ ନାମ ପର୍ଶୁରାମ ଥିବାର ମାତ୍ର କବି ଅସଙ୍କୁଚ୍ ପ୍ରକାଶ କରି ଅଛନ୍ତି । (୨) ଅନ୍ୟମାନଙ୍କର ଆଭାସ ସୁଦ୍ଧା କୁତ୍ରାପି ଦେଇ ନାହାନ୍ତି । ସେ ଯାହାହେଉ ସାରଳା ଦେବୀଙ୍କ ପ୍ରତି ଜନିତ ତତ୍ପର ପ୍ରଗାଢ଼ ଭକ୍ତିର ସୂଚକ ଓ କାଳ୍ପନିକ ଏବଂ ଭାରତ ରଚନା ପ୍ରବୃତ୍ତି ପୂର୍ବେ କିମ୍ବା ଦେବୀଙ୍କ ପ୍ରତି ପ୍ରଗାଢ଼ ଭକ୍ତି ସଞ୍ଜନନ ପୂର୍ବେ ତାହାଙ୍କର ଅନ୍ୟ କୌଣସି ନାମ ଥିଲା, ଏହା ସମ୍ପୂର୍ଣ୍ଣ ସତ୍ୟ । କେତେକ ସମୟ ପରେ ଏ ମହାତ୍ମା ମହାମାୟା ଶ୍ରୀ ସାରଳା ଦେବୀଙ୍କର ଚରଣାରବିନ୍ଦରେ ନବବିଧ ଭକ୍ତିରୁ ସମଧିକତଃ ଦାସ୍ୟ ଭକ୍ତିମତେ ଏକାନ୍ତ ପ୍ରସନ୍ନ ରହି ଆତ୍ମାକୁ ଦେବୀଙ୍କ ଦାସ ବୋଲି ଅଭିହିତ କରି ଅଛନ୍ତି । ଏହିପରି କରିବାହିଁ ପ୍ରଗାଢ ଭକ୍ତିର ଲକ୍ଷଣ । ଏହି ମର୍ମ ଅଭିପ୍ରାୟକୁ କବି ମଧ୍ୟ ଗ୍ରନ୍ଥ ମଧ୍ୟରେ ଅସଙ୍କୁଚ୍

---

(୧) ବୈତରଣୀ କୂଳେ କରଣୀର ନାମେ ପୁର ।
ଲକ୍ଷେ ଅଶି ସହସ୍ର ଯେ ବସେ ଚହିଁ ଘର । ଉ. ପ. ୪୩ ପୃ ।

ଭାରତର ଦକ୍ଷିଣାଞ୍ଚଳରେ କରଣୀର ନାମରେ ଏକ ପ୍ରସିଦ୍ଧ ନଗର ଥିବା ଶ୍ରୀମଦ୍‌ଭାଗବତାଦିରେ କଥିତ ଅଛି ।

ଏ ମହାଶୟ ମଧ୍ୟ ଏକ ସ୍ଥାନରେ କରଣୀରପୁର ଭାରତର ଦକ୍ଷିଣରେ ଅବସ୍ଥିତ ଥିବାର ଲେଖି ଅଛନ୍ତି ।

(୨) କନକପୁର ପାଟଣା ଘର ପର୍ଶୁରାମ ।
ମୁହିଁ ତାର ଅନୁଜ ସାରଳାଦାସ ନାମ । ଇତ୍ୟାଦି । ମ. ପ.

ସୁସ୍ପଷ୍ଟରୂପେ ବ୍ୟକ୍ତ କରି ଅଛନ୍ତି । (୧) ପରନ୍ତୁ ସାରଳାଦାସ ଆଖ୍ୟାନ ପ୍ରଖ୍ୟାନ କେବଳ ତାଙ୍କର ଇଚ୍ଛାମୂଳକ ନୁହେ । କୃପାମୟୀ ଦେବୀଙ୍କର ଅନୁକମ୍ପାନୁକମ୍ପା-ବଶତଃ ଏହା ତାହାଙ୍କ ପ୍ରତି ପ୍ରବର୍ତ୍ତି ଥିଲା । ଏହି ଭକ୍ତିପରବଶଲୁବ୍ଧ ଦେବୀଙ୍କୁ ଜନ୍ମଦାତ୍ରୀ ମାତା ପ୍ରାୟ ଭାବନା କରୁଥିଲେ, ଅନ୍ୟାନ୍ୟ ବିଷୟ-ବ୍ୟାବର୍ତ୍ତନପୂର୍ବକ ସତତ ତନ୍ମନସ୍କତାରେ ଏକତା ନ ରହି ଦେବୀଙ୍କୁ ସ୍ୱକୀୟ ହୃଦୟ-ପ୍ରାସାଦରେ ଅଧିଷ୍ଠିତା ମନେ କରୁଥିଲେ । ତାହାଙ୍କର ବିଶ୍ୱାସ ହୋଇଥିଲା କି, ଦେବୀଙ୍କ ପ୍ରଣୋଦନରେ କେବଳ ସକଳେନ୍ଦ୍ରିୟମାନ ନିଯୋଜିତ ହୋଇଅଛନ୍ତି, ହୃଦୟରେ ଯେ ସଦଭିଳାଷ ଜାଗ୍ରତ ହୁଏ, ସେ ସବୁ ଦେବୀଙ୍କର କୃପାନୁପ୍ରାଣିତ—ଆଦେଶାନୁଜାତ କେବଳ । ଅତଏବ ସେ ଦେବୀଙ୍କ ପ୍ରତି ଏକାନ୍ତ ଅନ୍ତର୍ମୁଖ ଥିବା ସମୟରେ ଅନୁଭବ କଲେ କି ଦେବୀ ମୋତେ ସାରଳାଦାସ ନାମ ପ୍ରଦାନ କରି ଅଛନ୍ତି । ସେ ଏହି ପ୍ରଗାଢ଼ତମ ଭକ୍ତିଭାବନାରେ ରତ ଥାଇ ଆପ୍ତାଙ୍କୁ ଦେବୀଦତ୍ତ ନାମରେ ସାଦରେ ନାମିତ କରି ଦେବୀ କୃପାକଟାକ୍ଷରୁ ସର୍ବତ୍ର ପ୍ରଖ୍ୟାତ ହେଲେ; ନିଜକୁ ଦେବୀଙ୍କ ପୁତ୍ର ବୋଲି ପ୍ରଶ୍ନଗତ କଲେ । କବି ଏହି ଅଭିପ୍ରାୟକୁ ଗ୍ରନ୍ଥର ସ୍ଥାନେ ସ୍ଥାନେ ମଧ୍ୟ ପ୍ରକାଶ କରିଦେଇ ଅଛନ୍ତି । (୨) ଏହାଙ୍କ ଅପେକ୍ଷା ଅତି ପ୍ରାଚୀନ ସଂସ୍କୃତକ କବିମାନେ ମଧ୍ୟ ଏତାଦୃଶ ନାମଗ୍ରହଣରେ ଆପ୍ତାଙ୍କୁ ପବିତ୍ର ଓ କୃତାର୍ଥ ମନେ କରି ଅଛନ୍ତି । ରଘୁବଂଶାଦି ଓ ଶକୁନ୍ତଳାଦିର ପ୍ରଣେତା ମହାକବି କାଳିଦାସଙ୍କର ନାମକରଣ ମଧ୍ୟ ଏତାଦୃଶ ହୋଇଥିଲା । ଭାଗବତ ଚମ୍ପୂର ରଚୟିତା ଅଭିନବ କାଳିଦାସଙ୍କର ନାମ ଉତ୍ପତ୍ତିର କ୍ରମ ସୁଦ୍ଧା ଏତାଦୃଶ ।

---

(୧) ସାରଳା ଚଣ୍ଡୀ ନାମ ଅଟଇ ସେହି ଦେବୀ ।
ତାହାର ଦାସ ମୁଁ ଯେ ସାରଳାଦାସ କବି । ଆ. ପ.
ଶ୍ରୀ ଚଣ୍ଡୀ ସାରଳାର ମୁଁ ଭୃତ୍ୟର ଭୃତ୍ୟ ।
ସାରଳାଦାସର ଚର୍ଚ୍ଚି ରହିଥାଉ ଚିତ୍ତ । ଦ୍ରୋ. ପ.
ଶ୍ରୀମାତା-ବଲ୍ଲଭ ଶ୍ରୀଚରଣ ନିଜ ଦାସ ।
ବଦେ ଶୂଦ୍ରମୁନି ଗ୍ରନ୍ଥକର୍ତ୍ତା ସାରଳାଦାସ । ଆ. ପ.

(୨) ଜଗନ୍ମାତା ଯହୁଁ ପ୍ରସନ୍ନ ମୋତେ ହେଲେ ।
ଶୂଦ୍ରମୁନି ସାରଳାଦାସ ନାମ ଦେଲେ । ଆଶ୍ର. ପ.
ଶୂଦ୍ରମୁନି ସାରଳାଦାସ ଅଟେ ଚଣ୍ଡୀ ପୁତ୍ର । ସ. ପ.

ଏ ମହାଶୟ ଶ୍ରୀମାନ୍ ସାରଳାଦାସଙ୍କ ପରି ଭକ୍ତ୍ୟତଃ ଆତ୍ମାକୁ ଦେବୀଙ୍କର ପ୍ରେମପାତ୍ର ପୁତ୍ର ମନେ କରୁଥିଲେ । (୧)

ମୂଳଗ୍ରନ୍ଥର ରଚୟିତା ବ୍ୟାସଦେବ ବ୍ରାହ୍ମଣକୁଳ ବ୍ରହ୍ମମୁନ ଥିବାରୁ ତଦନୁକରଣରେ ଆତ୍ମଗୌରବ ଓ ସ୍ୱକୃତ ଗ୍ରନ୍ଥର ସମୁତ୍କର୍ଷ ବର୍ଦ୍ଧନାର୍ଥ ସାରଳାଦାସ ମହାଶୟ ଜନ୍ମତଃ ଶୂଦ୍ର ଥାଇ ମଧ୍ଯ ଦେବୀଙ୍କ ପ୍ରସାଦରୁ ଭାରତ ରଚନାରେ ପ୍ରାପ୍ତ-ସାମର୍ଥ୍ୟ ହେଲେ ବୋଲି ଶୂଦ୍ରମୁନି ନାମ ଉପାଧିରୂପେ ପରିଗ୍ରହ କରିଥିଲେ । ଏହି ଉପାଧି ଧାରଣ ମଧ୍ଯ ଶ୍ରୀ ସାରଳା ଦେବୀଙ୍କର ଆଦେଶାନୁମୋଦିତ ବୋଲି ପ୍ରକାଶ କରି ଅଛନ୍ତି । (୨) କେହି କେହି ଏହି ମୁନି ଶବ୍ଦକୁ ନେଇ କହନ୍ତି, ଶୂଦ୍ର ଜାତିର ଅନ୍ୟତମ ଶ୍ରେଣୀ ଦେବୀପୂଜକ ମୁନି ନାମଧାରୀ ଯେଉଁ ଜାତି ଅଛନ୍ତି, ସାରଳାଦାସ ସେହି ଶ୍ରେଣୀରେ ଭୁକ୍ତ ଥିଲେ; ମାତ୍ର ତାହା ଯଥାର୍ଥ ନୁହେ । ସାରଳାଦାସେ ସ୍ୱକୀୟ ପୌରାଣିକ ଗୌରବ ସମ୍ପାଦନାର୍ଥ ଓ ପୂର୍ବ ଜନ୍ମାନୁଗତ ବାସନାର ଉନ୍ନତି ସାଧନାର୍ଥ କେବଳ ମୂଳ କବିଙ୍କ ନାମାନୁକରଣରେ ଶୂଦ୍ରମୁନି ଉପାଧି ଧାରଣ କରିଥିଲେ, ସନ୍ଦେହ ନାହିଁ ।

ସାରଳାଦାସ ମହାଶୟ ଶ୍ରୀ ସାରଳା ଦେବୀଙ୍କୁ ସର୍ବତୋଭାବେ ମାତା ପ୍ରାୟ ବିଶ୍ୱାସ କରି ଏକାନ୍ତ ଭକ୍ତି ବିସ୍ତାର କରିଥିଲେ; ଏଥିରେ କେହି ମତଦ୍ୱୈଧ କରି ପାରିବେ ନାହିଁ । ସେ ଦେବୀଙ୍କ ସ୍ତୁତିରେ ଆପଣାକୁ ତାହାଙ୍କର ପୁତ୍ର ବୋଲି ନିବେଦନ କରୁଥିଲେ, ଅନୁଦିନ ଦେବୀଙ୍କର ନିଗମାଗମଦୁର୍ଗମ ମହିମାରେ ଅଶ୍ରୁ-ଶ୍ରବଣୋତ୍କଣ୍ଠା ପ୍ରକାଶ କରୁଥିଲେ, ଦେବୀଙ୍କୁ ସତତ ଧ୍ୟାନ କରି ଆନନ୍ଦପୂର-ପରିପୂରିତହୃଦୟ ହେଉଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଏ, ଶ୍ରୀ ସାରଳା ଦେବୀଙ୍କ

(୧) ଅଭିନବଜୟଦେବଃ କାଳିଦାସଃ ପ୍ରଗଲ୍ଭଃ ।
ହିମଗିରିଦୁହିତାୟାଃ ପ୍ରେମଭକ୍ତ୍ୟୈକଶାଳୀ ।
ବିରଚୟିତ ତସ୍ୟୈବ ପ୍ରେରିତଃ ପ୍ରେମପର୍ବଂ ।
ହରଗୁଣ-ପରିଶିଷ୍ଟଂ ସ୍ତୁତିଚମ୍ପୂ ପ୍ରବନ୍ଧଂ ।

(୨) ଯେଣୁ ଶାସ୍ତ୍ର ବାହାର ହୋଇଲା ମୋର ହସ୍ତୁ ।
ଶୂଦ୍ରମୁନି ପଦ ମୋର ସାରଳା ପ୍ରସାଦୁ । ସ. ପ.
ତୋ ଆଜ୍ଞାରେ ବହିଲି ଶୂଦ୍ରମୁନି ନାମ ।
ଏ କଥା ଅନ୍ତର ଗୋ ନ କରିଅ ମତିଭ୍ରମ । ଆ. ପ.

ଚରଣାମ୍ବୁଜରେ ଏହାଙ୍କର ପରିଶୁଦ୍ଧ ପ୍ରଗାଢ଼ ଆନ୍ତରିକ ଭକ୍ତି ଥିଲା । ଏ କବି ଗ୍ରନ୍ଥର ସ୍ଥାନେ ସ୍ଥାନେ ଗଣେଶ, ମହାଦେବ, ଜଗନ୍ନାଥ, ସରସ୍ୱତୀ ପ୍ରଭୃତି ଦେବଦେବୀଙ୍କର ସ୍ତୁତି କରି ଅଛନ୍ତି, ସ୍ଥାନେ ସ୍ଥାନେ ବ୍ରହ୍ମାଙ୍କର (୧) ସ୍ତୁତି ମଧ୍ୟ କରି ଅଛନ୍ତି, ବିଶେଷତଃ ଭୀଷ୍ମପର୍ବ ପ୍ରାରମ୍ଭରେ ଏକତ୍ର ମହାଦେବ, ଗଣେଶ, ଜଗନ୍ନାଥ ପ୍ରଭୃତିଙ୍କୁ ସ୍ତୁତି କରି ଅଛନ୍ତି ସତ୍ୟ, ତଥାପି ଶ୍ରୀ ସାରଳା ଦେବୀଙ୍କଠାରେ କେବଳ ଏହାଙ୍କର ସମଧିକ ଐକାନ୍ତିକ ଭକ୍ତିନିଷ୍ଠାପରିଷ୍ଫୁଟ ଥିବାର ପ୍ରତୀତ ହୁଏ । ଅତଏବ ବହୁସ୍ଥଳରେ ଏ ମହାଶୟ ଶ୍ରୀ ସାରଳା ଦେବୀଙ୍କର ମହିମା ପ୍ରଦ୍ୟୋତନାର୍ଥ ସ୍ତବାବଳୀର ମଧ୍ୟେ ମଧ୍ୟେ ତଦୀୟ ବହୁବିଧ ଚରିତକୁ ଗର୍ଭିତ ରଖି ସ୍ତବନ କରି ଅଛନ୍ତି । ଲୋକରେ ପ୍ରଥିତ ଅଛି, ଏହି ମହାଭାରତ ରଚନା ସମୟରେ କବିଙ୍କୁ ଯେଉଁ ସ୍ଥାନରେ ଚରିତ ପ୍ରବାହ କିମ୍ବା ଚରିତ-ସନ୍ଧାନ ଗହନ ହୋଇପଡ଼େ ଅର୍ଥାତ୍ ସ୍ମୃତିମନ୍ଦିରରେ ଲୁକ୍କାୟିତ ରହେ, ସେହି ସେହି ସ୍ଥଳରେ ଶ୍ରୀ ସାରଳା ଦେବୀଙ୍କର ତଥାତ ଅନ୍ୟାନ୍ୟ ସ୍ୱସମାରାଧିତ ଦେବତାମାନଙ୍କର ସ୍ତୁତି ପାଠ କରନ୍ତି । ଏହି ଭାରତୀୟ ସ୍ତୁତି-ପ୍ରଚୁରତା ବିଚାର କଲେ ଉପର୍ଯ୍ୟୁକ୍ତ ଉକ୍ତିଟି କେତେଦୂର ଅନଳୀକ ବୋଧହୁଏ । ତଥାପି ଏହାଙ୍କର ଦୈବିକ ସମାଶ୍ରୟରେ ଏହାହିଁ ସ୍ଥିର କରିବାକୁ ହେବ ଯେ, ଏ ମହାଶୟ ଅନ୍ୟାନ୍ୟ ଦେବଦେବୀଙ୍କ ପ୍ରତି ଭକ୍ତିନିଷ୍ଠାର ପରାକାଷ୍ଠା ପ୍ରକାଶ କରିଥିଲେ ସୁଦ୍ଧା ପ୍ରଧାନତଃ ଦେବୀଭକ୍ତ ଥିଲେ । ଏଥିରେ ସନ୍ଦେହର ଆଭାଷ ସୁଦ୍ଧା ହୁଏ ନାହିଁ । ଏହାଙ୍କର ଭକ୍ତିପ୍ରବୃତ୍ତ ହୃଦୟ ସତତ ଦେବୀଙ୍କ ପ୍ରତି ସମାସକ୍ତ ଓ ଉଦ୍ଦିକ୍ତ ଥିବାରୁ ଗ୍ରନ୍ଥ ମଧ୍ୟରେ ବହୁ ବିଷୟର ପ୍ରାରମ୍ଭ ଓ ପରିସମାପ୍ତି ସ୍ଥଳରେ ଦେବୀଙ୍କର ସ୍ତୁତିମାନ ଅତି ଓଜସ୍ୱିନୀ ଭାଷାରେ ଲେଖି ସାହଚର୍ଯ୍ୟାହ୍ଲାଦସମ୍ପନ୍ନତା ପ୍ରକାଶ କରି ଅଛନ୍ତି ଏବଂ ଭାରତରୂପକ ଚିତ୍ତପ୍ରସାଦଜନକ ସାରସ୍ୱତ କୀର୍ତ୍ତି-ପ୍ରସାଦ ରଚନାର ସାମର୍ଥ୍ୟ ସାରଳା ଦେବୀଙ୍କ ପ୍ରସାଦଜନିତ ବୋଲି ବ୍ୟକ୍ତ କରି ଅଛନ୍ତି । (୨)

---

(୧) ବ୍ରହ୍ମାଙ୍କ ସ୍ତୁତି ଭୀଷ୍ମପର୍ବ ୨୧ ପୃଷ୍ଠାରେ ଦେଖନ୍ତୁ ।

(୨) କୃପାଜଳନନ୍ଦିନୀ ନାମ ଭଦ୍ରକାଳୀ ।
ସେ ମୋର ଗଳାରେ ମାଳୋପ୍ରଳମାଳୀ ।
ତାହାର ପ୍ରସନ୍ନେ କହିବି ଶ୍ରୀକୃଷ୍ଣର ଗୀତ ।
ପିବନ୍ତେ ଅମୃତ ଶୁଣନ୍ତେ ସଦଗତି । ଅଶ୍ୱପର୍ବ ।

# ଦୁଇ 'ବ୍ୟାସ'ଙ୍କ ତୁଳନା

ପ୍ରିୟ ଅଭିଜ୍ଞ ପାଠକ ମହାଶୟମାନେ! ଦାସମୁନିଙ୍କର ବ୍ୟାସମୁନିଙ୍କ ନାମସାଦୃଶ୍ୟର ପ୍ରାପ୍ତି କ୍ରମ ଦେଖିଅଛନ୍ତି; ଏବେ କ୍ରମଶଃ ଦେଖିନେବେ, ବ୍ୟାସମୁନି ଓ ଦାସମୁନିଙ୍କର ମହାଭାରତ ରଚନାର ପ୍ରବୃତ୍ତିକାରଣ ପ୍ରଭୃତିରେ ମଧ୍ୟ କେତେଦୂର ଏକଦେଶୀୟ ସାଦୃଶ୍ୟ ଦେଖାଯାଉ ଅଛି। ପ୍ରଥମତଃ ଅନ୍ୟାନ୍ୟ ପୁରାଣମାନଙ୍କରେ କଥିତ ବ୍ୟାସଦେବଙ୍କର ମହାଭାରତ ରଚନ ପ୍ରବୃତ୍ତିମୂଳକ କେତେକ କଥା ଲେଖାଯାଉ ଅଛି। ଏଥିରୁ ଘଟନାବିଶେଷ ଧରି ସାରଳାଦାସଙ୍କ ଚରିତରୁ ସାଦୃଶ୍ୟ ଖୋଜିବାକୁ ହେବ; କିମ୍ବା ତାଙ୍କ ଚରିତ୍ର ସଂଲଗ୍ନ କରିବାକୁ ହେବ। ନାରାୟଣଙ୍କ ଅଂଶସମ୍ଭୂତ ମହର୍ଷି କୃଷ୍ଣଦ୍ୱୈପାୟନ ପ୍ରଥମତଃ ଦ୍ୱାପରାନ୍ତରେ ସ୍ୱତଃସିଦ୍ଧ ଦିବ୍ୟଜ୍ଞାନଦ୍ୱାରା ଅବଗତ ହୋଇ ପାରିଲେ ଯେ, ପାପଜାଳ-ସଂକୁଳ କଳିକାଳରେ ଅଧର୍ମବାହୁଲ୍ୟରୁ ମନୁଷ୍ୟମାନେ ଅଳ୍ପାୟୁ, ଅଳ୍ପବୁଦ୍ଧି ଓ ଅଳ୍ପବଳ ହେବେ। କଳିକାଳୀନ ଦ୍ୱିଜମାନେ ସମଗ୍ର ବେଦାଧ୍ୟୟନରେ ନିତାନ୍ତ ଅସମର୍ଥ ହେବେ। ଅତଏବ ଅଗାଧଜ୍ଞାନ ତ୍ରିକାଳତତ୍ତ୍ୱଦର୍ଶୀ ମହର୍ଷି ପରମେଶ୍ୱରଗତ ପରମ-ପ୍ରମାଣ ପରମାର୍ଥ-ପ୍ରକାଶକ ସମଗ୍ର ବେଦକୁ ଉଚିତକ୍ରମରେ ବିଭକ୍ତ କରି ବେଦବ୍ୟାସ ନାମରେ ଅଭିହିତ ହୋଇଥିଲେ। ଆମ୍ଭମାନଙ୍କର ଭାରତକର୍ତ୍ତା ସିଦ୍ଧେଶ୍ୱର ଭଗବତୀ ସାରଳା ଦେବୀଙ୍କ ଭକ୍ତିର ଏକାନ୍ତନିଷ୍ଠତାରେ ସଂକଳ୍ପିତ କାର୍ଯ୍ୟ ସାଧନପୂର୍ବକ ଅବଶିଷ୍ଟ ଜୀବିତ ସମୟରେ କର୍ତ୍ତବ୍ୟ ବିଭକ୍ତ କରି ସାରଳାଦାସ ନାମରେ ସର୍ବତ୍ର ଅଭିହିତ ହୋଇଥିଲେ। ବେଦାଧ୍ୟଯ୍ୟ ଆର୍ଯ୍ୟବର୍ଯ୍ୟ ପାଶ୍ଚଶର୍ଯ୍ୟ ରୁକ୍, ଯଜୁଃ, ସାମ ଓ ଅଥର୍ବ ନାମକ ଆର୍ଯ୍ୟ, ସର୍ବସ୍ୱଭୂତ ବେଦଭାଗକୁ ଯଥାକ୍ରମେ ଅନଳ୍ପପ୍ରଜ୍ଞ ସମସ୍ତ ଶାସ୍ତ୍ରରେ ପ୍ରତ୍ୟୁତ୍ପନ୍ନ ଶିଷ୍ୟମାନ ପୈଲ, ବୈଶମ୍ପାୟନ, ଜୈମିନି

---

ନୁହଇ ପଣ୍ଡିତ ମୁଁ ନ ଜାଣେ ଶାସ୍ତ୍ରବିଧି।
ସାରଳା ପ୍ରସାଦେ ହେଲା ମୋର ବୁଦ୍ଧି।
ସେ ଯାହା ଆଜ୍ଞା ଦେଲେ କୃପାଜଳନନ୍ଦିନୀ।
ତାହାଙ୍କୁ ସେବିଲି ହୃଦପଦ୍ମେ ଘେନି।
ସର୍ବଜନବୋଧନ ଯକ୍ଷରପୁରବାସୀ।
ତାହାର ଚରଣେ ଶରଣ ପଶିଛି ଅହର୍ନିଶି। ଶାନ୍ତିପର୍ବ।

। ଇତ୍ୟାଦି।

ଓ ସୁମନ୍ତ ନାମକ ଶିଷ୍ୟମାନଙ୍କୁ ପ୍ରଦାନ କଲା ପରେ ବିଚାର କଲେ ଯେ ବେଦର ଅନଧିକାରୀ ଓ ଅନୁପଯୁକ୍ତ ଦ୍ୱିଜେତରମାନଙ୍କର ଉପଯୋଗାର୍ଥ ଅଥଚ ଦ୍ୱିଜାତି-ମାନଙ୍କର ବେଦାର୍ଥ ବିବରଣଜ୍ଞାନର ସୌଗମାର୍ଥ ଏବଂ ସର୍ବବର୍ଣ୍ଣସାଧାରଣଙ୍କର ନିର୍ବିଶେଷ ଐହିକାମୁଷ୍ମିକ ଧର୍ମବିବୃତିରେ ସମର୍ଥତା ପ୍ରତିପାଦନାର୍ଥ ବେଦାର୍ଥବୃଂହକ ଗୋଟିଏ ଗ୍ରନ୍ଥ ରଚନା କରିବୁଁ । ଶୂଦ୍ରମୁନି ମହାଶୟ ନିଜର ପିତୃପିତାମହ-ସମର୍ଜିତ ପରମ୍ପରାନୁଗତ ସର୍ବସମ୍ପତ୍ତିକୁ ସ୍ୱକୀୟ ସହୋଦରମାନଙ୍କୁ ସମର୍ପଣ କରି ବିଷୟବାସନାରହିତ ଓ ମୁକ୍ତସଂସାରବନ୍ଧନ ହୋଇ ବିଶେଷତଃ ସ୍ତ୍ରୀ ଶୂଦ୍ର ଦ୍ୱିଜ ଓ ବନ୍ଧୁମାନଙ୍କ ଭବବନ୍ଧନ ଛେଦନର ଉପଯୋଗାର୍ଥ ଏବଂ ସର୍ବସାଧାରଣଙ୍କର ଚିତ୍ତବିନୋଦନାର୍ଥ ଶ୍ରୀ ସାରଳା ଦେବୀଙ୍କ ପ୍ରସାଦରୁ ମହାଭାରତ ରଚନାରେ ଇଚ୍ଛୁକ ହୋଇଥିଲେ । ତେତେବେଳେ ଶ୍ରୁତିମାନ୍ ନିୟମପର ପ୍ରୟତାତ୍ମା ପବିତ୍ର-ଜ୍ଞାନନିଷ୍ଠ ମହର୍ଷି ଦେବଭାବୋତ୍ତେଜକ ହିମାଳୟର ଏକ ବିବିକ୍ତ ଗୁହାଗୃହରେ ଦର୍ଭାସନାସୀନ ହୋଇ ନିଜର ଦିବ୍ୟଚିତ୍ତରେ ସମୁଦାୟ ବେଦ ପୁରାଣାଦିର ଅକ୍ଷୁଣ୍ଣ ଅର୍ଥଜାଳ ସମୁଦ୍ୟତ ରଖି କୁରୁ ପାଣ୍ଡବମାନଙ୍କର ଚରିତ୍ରାନୁପ୍ରାଣନରେ ଶ୍ରୀ ମହାଭାରତ ନାମକ ପଞ୍ଚମ ବେଦ ସ୍ଥାନୀୟ ଇତିହାସ ଲେଖାରେ ଏକତାନ ହେଲେ । ସାରଳାଦାସ ମଧ୍ୟ ଭଗବଦ୍ଭକ୍ତି-ପ୍ରଯୁକ୍ତହୃଦୟରେ ବିବିକ୍ତ ଓ ପବିତ୍ର ସ୍ଥାନରେ ଆସୀନ ରହି ମହର୍ଷି ଗ୍ରନ୍ଥ ଶୁଶ୍ରୂଷାବଳରୁ ଭାରତ ଓ ଅନ୍ୟାନ୍ୟ ପୁରାଣ-ମାନଙ୍କ ଚରିତସନ୍ଦର୍ଭସନ୍ଦୋହକୁ ସ୍ମୃତିକୋଷରେ ସମୁଦ୍ୟତ ରଖି ଅନନ୍ୟ ବୃତ୍ତିରେ ମହାଭାରତ ଲେଖାରେ ପ୍ରବୃତ୍ତ ହୋଇଥିଲେ । ବ୍ୟାସଦେବ ନିତ୍ୟ ପ୍ରଯତ୍ନରେ ପ୍ରୋକ୍ତ ଗ୍ରନ୍ଥକୁ ବର୍ଷତ୍ରୟରେ ସମ୍ପୂର୍ଣ୍ଣ କରି ସମୟରେ ଜନକାନୁକୃତ-ଧର୍ମା ଜନମେଜୟ ସର୍ପସତ୍ର କରଣାନନ୍ତର ଶ୍ରୀ ମହାଭାରତ ଶୁଶ୍ରୂଷାରେ ପ୍ରାର୍ଥନା କଲାରୁ ସେ ସାନୁକ୍ରୋଶହୃଦୟରେ ରାଜାଙ୍କୁ ଶ୍ରବଣ କରାଇବା ପାଇଁ ନିଜ ଶିଷ୍ୟ ବୈଶମ୍ପାୟନଙ୍କୁ ଆଦେଶ ଦେଇଥିଲେ । ସାରଳାଦାସ ମଧ୍ୟ ଚିକୀର୍ଷିତ ଗ୍ରନ୍ଥର ପରିସମାପନରେ ସର୍ବତ୍ର ପ୍ରଚାରକରଣାର୍ଥ ତାହାଙ୍କ ସ୍ୱକୀୟ ମତାନୁଗତ ଶିଷ୍ୟମାନଙ୍କ ହସ୍ତରେ ତାହା ସମର୍ପଣ କରିଥିଲେ ।

ଶ୍ରୀମାନ୍ ସାରଳାଦାସଙ୍କ ମହାଭାରତ ରଚନା ପ୍ରବୃତ୍ତି ସମ୍ବନ୍ଧରେ ଲୋକରେ ଗୋଟିଏ ପ୍ରବାଦ ପ୍ରଚଳିତ ଅଛି । ଜଗଦମ୍ବା ଶ୍ରୀ ସାରଳା ଦେବୀଙ୍କ ପୀଠ ସ୍ଥାନରୁ ଅନତିଦୂର ଜନପଦରେ ଭାରତ ଚରିତ-ଗଳ୍ପନିପୁଣ କୌଣସି ଏକ ଶୂଦ୍ର ବାସ କରୁଥିଲେ । ସେ ସମସ୍ତ ସମୟରେ ନିଜ ସନ୍ତାନମାନଙ୍କ

ସମ୍ମୁଖରେ ଭାରତୀୟ ଚରିତମାନ ଗଳ୍ପ କରନ୍ତି; ପୁଣି ଅନ୍ୟ ସମୟରେ ନିଜ ବର୍ଣ୍ଣିତ ବିଷୟଗୁଡ଼ିକ ପୁତ୍ରମାନେ ମନସ୍ଥ କରି ଅଛନ୍ତି କି ନାହିଁ, ଏହାର ଜିଜ୍ଞାସାରେ ସେମାନଙ୍କୁ ପ୍ରଶ୍ନ କରନ୍ତି । କନିଷ୍ଠ ପୁତ୍ର ବିନା ଅନ୍ୟମାନେ ପୂର୍ବଶ୍ରୁତ କଥାମାନ ହୃଦୟସ୍ଥ କରିପାରି ଥିବାରୁ କିଛି କିଛି କହି ପାରନ୍ତି, ମାତ୍ର ସିଦ୍ଧେଶ୍ୱର ନାମଧେୟ କନିଷ୍ଠ ପୁତ୍ର (ଯେ କି ଭବିଷ୍ୟମାଣ ସାରଳାଦାସ) ସ୍ମରଣଶକ୍ତି ଅଭାବରୁ କିଛି କହି ପାରନ୍ତି ନାହିଁ । ତେଣୁ ପିତା ତାହାଙ୍କୁ ସହୋଦରମାନଙ୍କ ସମକ୍ଷରେ କଠୋରତର ଭର୍ତ୍ସନା କରନ୍ତି । ସେ ତାହା ସହ୍ୟ କରି ନ ପାରି ଆପଣାକୁ ଅପମାନିତ ଜ୍ଞାନ କରିଥିଲେ । ତା ପରେ ଅତି ଗହନ ମହାଭାରତୀୟ ଚରିତମାନଙ୍କର ସମ୍ୟକ୍ ହୃଦୟଙ୍ଗମତା ଲାଭପୂର୍ବକ ସ୍ୱୟଂ ବକ୍ତା ହେବା ସକାଶେ ଶ୍ରୀ ସାରଳା ଦେବୀଙ୍କ ସମ୍ମୁଖରେ ଅଧିଆ ପଡ଼ି ରହିଲେ । ଇତ୍ୟାଦି ।

ଏ ମହାଶୟଙ୍କର ଭାରତ ରଚନା ପ୍ରବୃତ୍ତିରେ ଉପର୍ଯ୍ୟୁକ୍ତ କିମ୍ବଦନ୍ତୀରେ କେତେଦୂର ଆନୁପୂର୍ବିକ ସତ୍ୟତା ଅଛି, କହି ନ ପାରୁଁ । ଉକ୍ତ କିମ୍ବଦନ୍ତୀର ସମ୍ପୂର୍ଣ୍ଣ ସତ୍ୟତାର ଉପଲବ୍ଧି ସକାଶେ କବିଙ୍କ ମୁଖୋଚ୍ଚାରିତ ବାକ୍ୟ ତାଙ୍କ ମହାଭାରତରେ କୁହାପି ପଦେ ଅଧେ ମଧ୍ୟ ଦେଖାଯାଏ ନାହିଁ । ଅତଏବ କହିବାକୁ ହେବ ଯେ, ସାରଳାଦାସଙ୍କର ମହାଭାରତ ରଚନା ପ୍ରବୃତ୍ତିର କାରଣ ସ୍ୱପିତାଙ୍କ ଭର୍ତ୍ସନା ହେଉ କିମ୍ବା ବହୁଜନ୍ମାର୍ଜିତ ସୁପୁଣ୍ୟସଞ୍ଜାତ ବାସନା ହେଉ, ସେ ଯେ ଭଗବତୀ ସାରଳା ଦେବୀଙ୍କ ଅନବସାଦ ମହାପ୍ରସାଦରୁ ସର୍ବବିଧ ଦୁଃଖରେ ନିର୍ଲିପ୍ତ ଥାଇ ପୁରାଣରଚୟିତା ହୋଇପାରି ଅଛନ୍ତି, ଅନନ୍ୟ ସୁଲଭ ଶକ୍ତି ସମ୍ପାଦନ କରିପାରି ଅଛନ୍ତି, ସାରସ୍ୱତ ଯଶୋଡିଣ୍ଡିମ ଧ୍ୱନିତ କରିପାରି ଅଛନ୍ତି, ଏହା ସମ୍ପୂର୍ଣ୍ଣ ସତ୍ୟ । ଶ୍ରୀ ସାରଳା ଦେବୀଙ୍କର ସୁପ୍ରସନ୍ନତାସୂଚକ ଆଦେଶ ବଳରେ କେବଳ ସେ ଶକ୍ତିମାନ୍ ଓ ସମୁତ୍ସାହିତ ହୋଇ ମହାଭାରତ ଲେଖିପାରି ଥିବାର ପ୍ରମାଣ ବହୁ ସ୍ଥଳରେ ଦେଇ ଅଛନ୍ତି ଏବଂ ଦେବୀଙ୍କୁ ସତତ ତନ୍ମୟତା ଓ ତନ୍ନିଷ୍ଠତାରେ ଧ୍ୟାନ କରି କଳ୍ପବଟ ମୂଳରେ ବସି ଦେବୀସମାଦିଷ୍ଟ ବଚନ ପରିପାଟୀ ଅନୁସାରେ ଏହି ଭାରତ ଲେଖିଥିବାର କହି ଅଛନ୍ତି । (୧) ସୁତରାଂ

(୧) ପ୍ରସନ୍ନେ ଆଜ୍ଞା ମୋତେ ଦେଲେ ଶାକାମ୍ବରୀ ।
ଲଭ ତୁ ଯଶ ମହାଭାରତ ଗ୍ରନ୍ଥ କରି ।
ଶୁଣିଣ ବୁଧଜନେ ନ ଧରି ଆନମନ ।
ନୁହେ ପଣ୍ଡିତ ମୁଁ ଯେ ସ୍ୱଭାବେ ମୂର୍ଖଜନ । ଇତ୍ୟାଦି । ଆ. ପ.

ଦେବୀ-ପ୍ରସାଦ-ପ୍ରାପ୍ତ କବିମାନେ ଏପରି ପରିପୂତ ଭାବକୁ ହୃଦଂସ୍ପୃଗନ୍ଥି ରୂପେ ପରିପୋଷଣ କରିବାକୁ ଉଚିତ।" ଅଭିନବ କାଳିଦାସ ପ୍ରଭୃତି ସାଂସ୍କୃତିକ କବିମାନେ ମଧ୍ୟ ଏହି ଭାବ ପ୍ରକାଶ କରି ଅଛନ୍ତି। (୧) ବୋଧହୁଏ ଏପରି ମହାକବିମାନେ ସ୍ୱଗ୍ରନ୍ଥର ଗୌରବ ବର୍ଦ୍ଧନାର୍ଥ ସର୍ବକର୍ତ୍ତ୍ରୀଙ୍କୁ ଆରାଧ୍ୟ-ଦେବତାଙ୍କୁ ସମର୍ପଣ କରିଥାନ୍ତି। ଏ ମହାଶୟ ଆହୁରି ସ୍ଥାନେ ସ୍ଥାନେ କହିଅଛନ୍ତି, "ମୁଁ ତାଦୃଶ ବିଦ୍ୱାନ ନୁହେ, ତଥାପି ସର୍ବସାଧାରଣଙ୍କର ଯାହା କି ଅଦୃଷ୍ଟି-ସାଧ୍ୟ କମ୍ବା ଅଜ୍ଞେୟ, ତାଦୃଶ ମହମାପ୍ତ ବିଷୟକୁ ମୁଁ ଯାହା ପରିଦୃଷ୍ଟ ଉପଲବ୍ଧି କରି ପାରିଅଛି, ସେଥିରେ ମୋହର ନିଜର କିଛିମାତ୍ର ପ୍ରତିଜ୍ଞା ନାହିଁ, ପ୍ରତିଭା ନାହିଁ। ମତ୍ପ୍ରତି କୃତ ଶ୍ରୀ ସାରଳା ଦେବୀଙ୍କ ପ୍ରସାଦ କେବଳ ମୋତେ ଏତାଦୃଶ ଶକ୍ତିମାନ୍ ବିଦ୍ୱାନ୍ ଓ ସଫଳପ୍ରତିଜ୍ଞ କରିଅଛି। (୨) ସେ ଯାହା ଯାହା ମୋତେ ଆଦେଶ କରନ୍ତି, ସେଗୁଡ଼ିକ କେବଳ ମୁଁ ଲିପିବଦ୍ଧ କରେଁ। ଦେବୀ ମୋର ହୃଦୟ ମନ୍ଦିରରେ ବସି ହୋଇ ଯାହା କହନ୍ତି, ତାହା କେବଳ ମୁଁ ପ୍ରକାଶ କରେଁ।" ଇତ୍ୟାକାରକ ଭାବମାନ ଏ ବହୁ ସ୍ଥଳରେ ପ୍ରକାଶ କରି ଅଛନ୍ତି। ସେ ସବୁ ବିଚାର କରିନେଲେ ଜଣାଯାଏ, କୃପାନିଧାନୀ ଭକ୍ତାନୁକମ୍ପିତହୃଦୟା ଭଗବତୀ ସାରଳା ଦେବୀ ଏହାଙ୍କ ପ୍ରତି ସମ୍ପୂର୍ଣ୍ଣ ସଦୟା ରହି ସ୍ୱରୂପତଃ ପ୍ରତ୍ୟକ୍ଷତଃ ସାଧାରଣମାନଙ୍କର ଦୃଷ୍ଟି ପଥାରୂଢ଼ ହେବା ଅସମୀଚୀନ ବୋଲି ସ୍ୱପ୍ନାବେଶରେ ନିଜ ଦାସଙ୍କ ମହାଭାରତର ଗହନ ଚରିତମାନ ନିଜର ଶକ୍ତିସଞ୍ଚାରପୂର୍ବକ ଅବଗତ କରାଇ

---

(୧) ବିରଚୟ୍ୟତି ତସ୍ୟୈବ ପ୍ରେରିତଃ ପ୍ରେମପୂର୍ବଂ।
ହରିଗୁଣପରିଣଦ୍ଧଂ ଗ୍ରନ୍ଥରତ୍ନଂ ପ୍ରବନ୍ଧଂ। ଅଭିନବ କାଳିଦାସ।

(୨) ଅଦୃଷ୍ଟିକୁ ଦୃଷ୍ଟି ମୂର୍ତ୍ତି କରାଇଲ ଆଣି।
କୃପା କରିବାରୁ ମା ସାରଳା ଠାକୁରାଣୀ।
ଏ ପଦ ରଚନେ ମୁହିଁ ନ କରେ ପ୍ରତିଜ୍ଞା।
ଲେଖେଁ ସାରଳା ଦିଅନ୍ତି ମୋତେ ଯାହା ଆଜ୍ଞା।
ଜନ୍ମହୁଁ ମୂର୍ଖ ମୁଁ ପଢ଼ିନାହିଁ ବିଦ୍ୟା।
ନ ଜାଣଇ ଜପମନ୍ତ୍ର ନୁହଇ ପ୍ରସିଦ୍ଧା।
ଏମ ମାତା ସମାଦନ ଯାହା ସଦନ ମୋର ସ୍ଥୂଳରେ।
[illegible] ବସି ନୀଳକଣ୍ଠ ବଟ ମୂଳେ। ଦ୍ରୋଣପର୍ବ।

ହୋଇଥିଲେ । ଦେବୀସମାଦିଷ୍ଟ ଭାରତୀୟ ବଚନକ୍ରମଗୁଡ଼ିକ ହୃଦୟରୁ ନିର୍ଭୁଳ କଣ୍ଠରେ ଅଷ୍ଟପ୍ରହର ରହି ଏ ପୁଣି ପଦ୍ୟ ରଚନାରେ ପ୍ରବୃତ୍ତ ହେଉଥିଲେ ।

[୧] ସୁବୁଦ୍ଧି ଜନେ ମୋର ନ ଘେନିବା ଦୋଷ ।
ସେ ଯାହା କହଇ ମୁଁ ତାହା କରଇ ପ୍ରକାଶ ।
ମାନବ ହୋଇ କେ ତାଙ୍କୁ ସ୍ୱରୂପେ ଦେଖଇ ।
ସେ ଭାବେ କହେ ଯାହା ଦିବସେ ତା ମୁଁ ଲେଖଇ ।
ମୁହିଁ ମୂଢ଼ ମୂର୍ଖଜନ ଶୂଦ୍ର ଅପଣ୍ଡିତ ।
ମୁହିଁ କାହୁଁ କହିବି ଅକଳିତ ଭାରତ ।
ନ ପଢ଼ିଲି ନ ଘୋଷିଲି ଗତଜନ୍ମ ପୁଣ୍ୟେ ।
ପୁରାଣ ଅଭ୍ୟାସ କଲି ସାରଦା ପ୍ରସନ୍ନେ । ଉ. ପ.

[୨] ନ ପଢ଼ି ପଣ୍ଡିତ ହେଲି ମୋତେ ଶାରଳା ପ୍ରସନ୍ନ ।
ଜନ୍ମେ ଜନ୍ମେ ମୋତେ କହଇ ସେ ଜ୍ଞାନ ।
ତେଣୁ ଲେଖନ୍ତେ ମୋତେ ସମସ୍ତ ହୁଏ ଦୃଶ୍ୟ ।
ଆପଣେ କହଇ ସେ ଅବା ଅଦୃଶ୍ୟ ।
ସେ ଦେବୀର କରୁଣା ଅଛି ମୋର ହୃଦେ ।
ଅନୁବର୍ତ୍ତେ ସେବଇ ସେ ଦେବୀ ପଦ୍ମପାଦେ । ଭୀ. ପ.

ଏହା ଛାପାରେ ଭିନ୍ନ ପ୍ରକାର ହୋଇ ଯାଇଅଛି ।

[୩] ମୋତେ ଯେତେ ଦୃଶ୍ୟ ହେଲି କହିଲଇଁ ମୁହିଁ ।
ଆଜ ଯେ ମାହେଶ୍ୱରୀ କହିଲେ କର୍ଣ୍ଣେ ମୋର ରହି ।
ଆ. ପ. ଦ୍ରୌପଦୀ ସ୍ୱୟମ୍ବର ସ୍ଥଳେ ।

[୪] ଜ୍ଞାମା ବା ଋଷିସୁତ ନୁହେ ଅନୁବ୍ରତେ ।
ଜଗନ୍ମାତା ଯାହା କହିଅଛନ୍ତି ନିରତେ ।
ଜଗତଜନ ହିତେ କରୁଛି ପ୍ରକାଶ ।
ସାଧୁଜନମାନେ ମୋର ନ ଘେନିବା ଦୋଷ । ଦ୍ରୋ. ପ.

ଆମ୍ଭମାନଙ୍କର ସାରଳା ବରପୁତ୍ର କବି ଦେବୀଙ୍କ ପ୍ରସାଦଜନିତ ଅସାଧାରଣ ସ୍ମୃତିମତ୍ତା ଧୀମତ୍ତା ଓ ପ୍ରତିଭାରେ ସମ୍ପନ୍ନ ଥାଇ ମଧ୍ୟ ଶିଷ୍ଟାଚାରବଶତଃ ନିଜର ଅଲ୍ପଜ୍ଞତା ପ୍ରକାଶପୂର୍ବକ ଆମ୍ଭଦୈନ୍ୟକୁ ବହୁ ସ୍ଥଳରେ ବନସ୍ପୁରଃସର

ବର୍ଣ୍ଣିତ କରି ଅଛନ୍ତି । ଏହା ତାହାଙ୍କର ମହାଶୟ ହୃଦୟବତ୍ତାର ଲକ୍ଷଣ । ସେ ସାଧୁତା-ପ୍ରଣୋଦିତ ହୋଇ ଆପଣାର ଏତାଦୃଶ ଅଜ୍ଞତା ପ୍ରକାଶ କରି ଅଛନ୍ତି ଯେ, ପାଠକ ସେହି ସନ୍ଦର୍ଭ ପଦଗୁଡ଼ିକ କେବଳ ପଢ଼ିନେଲେ "ସାରଳାଦାସ ଅତି ତାଦୃଶ ଜ୍ଞାନବାନ୍ ନଥିଲେ" ହୃଦୟରେ ଏହି ଆକସ୍ମିକ ମନ୍ତବ୍ୟକୁ ଜନ୍ମାଇ ଦେଇ ପାରନ୍ତି; ମାତ୍ର ତାହାଙ୍କ ସମଗ୍ର ଭାରତ ପାଠ କଲେ ଅବଶ୍ୟ ବିଶ୍ୱାସ କରିବେ, ଦାସ ମହୋଦୟ ଅଗାଧ ଶକ୍ତିଶାଳୀ ଥିଲେ । ପାଠକେ ! ସମାହିତ ହୃଦୟ ହେଉନ୍ତୁ, ଆଦିମ ମହାକବି ମହୋଦୟଙ୍କର ଶିଷ୍ଟାଚାର ଓ ସାଧୁତାର ସମାଦର କରନ୍ତୁ, ନିମ୍ନରେ ଉଦ୍ଧୃତ ପଂକ୍ତିଗୁଡ଼ିକ ପଢ଼ି ମନନ କରନ୍ତୁ ନାହିଁ ଯେ "ସାରଳାଦାସ ମହାଶୟଙ୍କର ତାଦୃଶ ପାଣ୍ଡିତ୍ୟ ନ ଥିଲା ।"

[୧] ନ ପଢ଼ିଲି ଅକ୍ଷର ମୁଁ ନୁହେ ଶାସ୍ତ୍ରବାଦୀ ।
ପଣ୍ଡିତଙ୍କ ସଙ୍ଗେ ବସି ନ କଲି ସମାଧି ।
କୁସ୍ଥାନେ ବସିଲି ନ ବସିଲି ବିପ୍ରଗୋଷ୍ଠୀ ।
ଶିଶୁବୁଦ୍ଧି ମୋହର ବୟସ ଅଳପଟି ।
ପଣ୍ଡିତ ଜନଙ୍କୁ ମୁହିଁ ମାଗଇ ବିନୟେ ।
କରି ଆଜ୍ଞା ହେଉ ମୋର ନାରାୟଣେ ଲୟେ । ମ. ପ.

[୨] ନ ପାଇଲି ପଦମନ୍ତ୍ର ନ ଗଲି ମୁଁ ତୀର୍ଥ ।
ନ ପଶିଲି ଯାଗଯଜ୍ଞେ ନ ଶ୍ରବିଲି ମନ୍ତ୍ର ।
ନ ପଢ଼ିଲି ଅକ୍ଷର ମୁଁ ନ ଜାଣଇ କିଛି ।
ଆନ ଅଭ୍ୟାସେ ମୋତେ ପ୍ରସନ୍ନ ହିଙ୍ଗୁଳାକ୍ଷୀ । ଶ୍ରୀ. ପ.

[୩] ଅପଣ୍ଡି ଅକର୍ମୀ ମୂର୍ଖ ମୁହିଁଟି ଅଟଇ ।
ଶ୍ରୀସାରଳା ପ୍ରସନ୍ନରେ ଗ୍ରନ୍ଥ ମୁଁ ରଚଇ ।
ଯେବଣ ଭାରତ ଖଣ୍ଡି ନ ଯାଇ ଯେ ଲେଖା ।
କିସ ମୁହିଁ ଲେଖିବି ବା କିସ ମୋର ଶକ୍ତା ।
ଯେତେଦୂର ପଶିଥିଲି ତେତେ ମୁଁ ଜାଣିଲି ।
କେହୁ ଲେଖା କରିବ ଯେ ଗଙ୍ଗାକୂଳ ବାଲି । ଭୀ. ପ.

[୪] ନର୍ମଳ ଜଳେ ଯେସନ୍ତେ କ୍ରୀଡ଼ନ୍ତି ହଂସପନ୍ତି ।
ତଥା ମୋ ହୃଦେ ବିଳସେ ଶ୍ରୀକୃଷ୍ଣ ଭାରତୀ ।

ବୁଢ଼ିଲ୍ଲ ମୋ ସବ ମୋହ କୃଷ୍ଣଗଙ୍ଗ ଯୋଗେ ।
ବାକ୍ୟଦେବୀ ଭଣ୍ଡାରେ ବଳସେ ନାନାରଙ୍ଗେ ।
ନ ପଢ଼ିଲ ନ ଦେଖିଲ ନ ଜାଣେ ମୂର୍ଖ କିଛୁ ।
ତବ ପ୍ରସାଦେ ଶବ୍ଦ ମାତ୍ରକ ଶୁଣିଛୁ ।
ହୃଦକୁ ଅଳଙ୍କାର ତବ ନାମ ଗୋଟି ।
ତୁମ୍ଭେ ଦୟା କଲେ ଭବମୋହ ଯିବ ତୁଟି । ଦ୍ରୌ. ପ.

ଏହି ପଦ୍ୟଗୁଡ଼ିକ ପ୍ରୋକ୍ତ ମହାନୁଭବ ସ୍ୱକୀୟ ସୌଜନ୍ୟ ଓ ସମୁଚ-ହୃଦୟତାର ପରାକାଷ୍ଠା ପ୍ରଦର୍ଶନାର୍ଥ କେବଳ ଲେଖି ଅଛନ୍ତି ବୋଲି ବିଶ୍ୱାସ କରନ୍ତୁ । ସଂସ୍କୃତର ମହାଶାସ୍ତ୍ରବିଶାରଦ କବିମାନେ ମଧ୍ୟ ଏପରି ଲେଖିଥା[illegible] (୧) ଏ ଭକ୍ତଙ୍କର ଖୁବ୍ ପୁରାଣପାରଦର୍ଶିତ ଓ ତଦାବଶ୍ୟକତାନୁଯାୟୀ ପାଣ୍ଡିତ୍ୟ ଥିଲା, ଏଥିରେ କିଛି ମାତ୍ର ସନ୍ଦେହ ନାହିଁ । କବି ନିଜର ପାଣ୍ଡିତ୍ୟ ସମ୍ବନ୍ଧରେ ନିଜେ କହିବାରେ ଆତ୍ମପ୍ରୀତିର ଆଶଙ୍କା ଭାବି ତାହା ସମ୍ପୂର୍ଣ୍ଣତଃ ଦେବୀଙ୍କ ପ୍ରସାଦ-ଜନିତ ବୋଲି ଅନେକ ସ୍ଥଳରେ ମଧ୍ୟ ଲେଖି ଅଛନ୍ତି । ପାଠକେ ଅନ୍ୟାନ୍ୟ ନିମ୍ନସ୍ଥ ପଦ୍ୟଗୁଡ଼ିକରୁ ତାହାର ପ୍ରମାଣ ପାଇ ପାରିବେ । ଲେଖନ୍ତୁ ବା ନ ଲେଖନ୍ତୁ, ଏହି ପ୍ରକାଣ୍ଡ ଗ୍ରନ୍ଥର ଆମୂଳାନ୍ତ ବିଚାର କଲେ କବିଙ୍କର ଅସୀମ ଶକ୍ତିମତ୍ତା ଓ ବିଦ୍ୱତ୍ତା ସ୍ପଷ୍ଟ ପ୍ରତୀୟମାନ ହୁଏ । ଏ ମହୋଦୟ କିନ୍ତୁ ବିଧି ଶାସ୍ତ୍ରପାଠରୁ ବଞ୍ଚିତ ଥିଲେ ସୁଦ୍ଧା ଦେବୀଙ୍କ ପ୍ରସାଦରୁ ଅଥବା ପୂର୍ବଜନ୍ମ ବାସନାରୁ ଯେ ଯଥାସାଧ୍ୟ ପାଣ୍ଡିତ୍ୟ ଲାଭ କରିଥିଲେ, ଏଥିରେ କୌଣସିମତେ ସନ୍ଦେହ ନ ହେବାର କଥା ନାହିଁ । କବି ମଧ୍ୟ ନିଜେ କହି ଅଛନ୍ତି, ମୁଁ ଶାସ୍ତ୍ରମାନ ନ ପଢ଼ି ସୁଦ୍ଧା ଦେବୀଙ୍କ ବରପ୍ରସାଦରୁ ପଣ୍ଡିତ ହୋଇ ପାରିଅଛି । (୨)

---

(୧) କ ସୂର୍ଯ୍ୟପ୍ରଭବୋ ବଂଶଃ କ ଚାଲ୍ପବିଷୟା ମତିଃ ।
ଇତ୍ୟାଦି । କାଳିଦାସ ।

କେ ବୟଂ ପୁନରମୀ ମଣିଶୋଭିରଗଭୀରବାଚଃ । ଇତ୍ୟାଦି ।
ଅଭିନବ କାଳିଦାସ ।

(୨) ନ ପଢ଼ି ପଣ୍ଡିତ ହେଲ ମୋତେ ସାରଳା ପ୍ରସନ୍ନ ।
ଜନ୍ମ ଜନ୍ମେ ମୋତେ କହିଛ ସେ ଜ୍ଞାନ । ବିରାଟପର୍ବ ।
ନ ପଢ଼ି ପଣ୍ଡିତ ମୁଁ ନ ସାଧି ବେଦବିଦ୍ୟା ।
ସଭାପର୍ବ, ୧୨୯ ପୃ: ଇତ୍ୟାଦି ।

ଏ ସ୍ଥଳରେ ଏହାଙ୍କର ଅଳ୍ପ ଦୁଇଗୋଟିଏ କଥା ପ୍ରକାଶିତ ରଖିବା ଉଚିତ ବୋଧକରୁ ଅଛୁଁ । ଏ କବି ଆତ୍ମଦୈନ୍ୟାଦି ପ୍ରକାଶନାବସରରେ କାଳ୍ପନିକ ଅବସ୍ଥାସହ ପ୍ରକାଶ କରି ଅଛନ୍ତି କି "ଗ୍ରାମ ପାଟଣା ବା କନକପୁର ପାଟଣା କିମ୍ବା କନକାବତୀ ପାଟଣା (୧) ଯାହା କି ସମୟରେ ତାହାଙ୍କର ନିବାସଭୂତ ସ୍ଥାନ ଥିଲା, ତହିଁରେ ତାହାଙ୍କର ସୁଖ ଶାନ୍ତିର ସଂସ୍ଥାନ ହୋଇପାରୁ ନ ଥିଲା ।" ପାଠକେ ଜାଣିଅଛନ୍ତି, "ଦୁଃସ୍ଥାନସ୍ଥିତଃହେତୋର୍ଗୁଣବାନପି ହାସ୍ୟତାଂ ଯାତି ।" କେବଳ "ହାସ୍ୟତାଂ ଯାତି" ଏତିକି ନୁହେ, "ଦୁଃସହକଷ୍ଟଂ ଭୁନକ୍ତି", "ଅସୀମ-ସନ୍ତାପସମୁଦ୍ରମଧ୍ୟେ ମଜ୍ଜତି", "ହତପ୍ରଜ୍ଞୋ ଭବତି ଚ ।" ଭୁକ୍ତଭୋଗୀ ମାନକେ ଅବଶ୍ୟ ସ୍ୱୀକାର କରିବେ, ଦୁଃସମାଜ ମନୁଷ୍ୟଙ୍କୁ ଅପଦାର୍ଥ କରି ପକାଏ, ହତପ୍ରଜ୍ଞ କରି ପକାଏ । ପାରିବାରିକ ସମାଜ ହେଉ କିମ୍ବା ଜାତୀୟ ସମାଜ ହେଉ ନଚେତ୍ ଏକସ୍ଥାବସ୍ଥିତ ସମାଜ ହେଉ ଅର୍ଥାତ୍ ଯେଉଁମାନଙ୍କ ସଙ୍ଗେ ଏ ସମସ୍ତ ପ୍ରକାର ସମ୍ବନ୍ଧ ବା ସମ୍ପର୍କ ରଖିବାକୁ ବାଧ୍ୟ, ସେ ଯଦି ଅଶିକ୍ଷିତ ବା ଅସଭ୍ୟ ଅଥଚ ଦୁଷ୍ଟବୃତ୍ତ ଥାଏ, ତେବେ ତଦଧୀନ ବ୍ୟକ୍ତିର ଅବସ୍ଥା ବଡ଼ ଶୋଚନୀୟ ହୋଇପଡ଼େ । ଅନୁମାନ ହୁଏ, ଆମ୍ଭମାନଙ୍କର ଏହି ଆଦିମ ମହାକବି ମହୋଦୟ ସେପରି ଦୁରବସ୍ଥାରେ କେତେକ ଦିନ ପଡ଼ିଥିଲେ; ତଥାପି ସେ ଭକ୍ତାନୁକମ୍ପିତ-ହୃଦୟା ଦେବୀଙ୍କ କୃପାବଳରୁ ସମସ୍ତ ପ୍ରକାର ଅଭାବ ଓ ଦୁର୍ଭାବରୁ ମୁକ୍ତ ପାଇଥିଲେ । ଶ୍ରୀ ସାରଳା ଦେବୀଙ୍କୁ ହୃଦୟପ୍ରାସାଦର ଅଧିଷ୍ଠାତ୍ରୀ ଦେବତା ରଖି ଅସାଧ୍ୟ ସାଧନ କରି ପାରୁଥିଲେ ।

ଆହେ ସାଧୁଜନେ ମହାଭାରତ ପରିମାଣି ବୁଝ ।
ଲେଖନ୍ତେ ଅନ୍ତ କରି ନୁହଇ ମହାଭାରତ ଯୁଦ୍ଧ ।
ଅସାଧ୍ୟ ସାଧ୍ୟ ପୁଣ କଲା କାର ବୁଦ୍ଧି ।
ଅସଂଖ୍ୟ ପୃଷ୍ଠ ଅଟଇ ପୟୋଧି ।

---

(୧) କନକପୁର ପାଟଣା ବା କନକାବତୀ ପାଟଣାର ଆଧୁନିକ ନାମ କନକପୁର । ଏହାର ପାର୍ଶ୍ୱରେ ଚନ୍ଦ୍ରଭାଗା ପ୍ରବାହିତ । ଏହି ଗ୍ରାମକୁ କବିଙ୍କ ଅଗ୍ରଜ ପର୍ଶୁରାମ ବସାଇଥିଲେ ବୋଲି ଲୋକେ କହନ୍ତି । ଏହାର ଅନତିଦୂରରେ ଶାରଳା ନାମକ ଗ୍ରାମ । ଏହା କବିଙ୍କ ଆଦିନିବାସ ସ୍ଥାନ । ସାରଳା ଦେବୀ ମଧ୍ୟ ପ୍ରଥମେ ଏହିଠାରେ ପ୍ରତିଷ୍ଠିତ ଥିବାର ଶୁଣାଯାଏ ।

ସକଳ ଦୃଶ୍ୟ ସେ କହିବାକୁ ମୋତେ ।
ଶାସ୍ତ୍ରଜନେ ନ ବୁଝନ୍ତୁ ଗହଳ ଲେଖନ୍ତେ ।
ତେଣୁ କରି କହିଲି ଠିକ ଠିକ ବାକ୍ୟ ।
ଶ୍ରୀ ସାରଳା ପ୍ରସାଦେ ମୋତେ ନୁହଇ ଅଶକ୍ୟ ।
ମୂର୍ତ୍ତି ଭ୍ରାନ୍ତ କରିବ କୁଟୁମ୍ବ ଦେଖନ୍ତେ ।
ମାୟା ସଂସାର ସେ ବଞ୍ଚାଇ ଦଅଇ ମୋତେ ।
ହେ ବୁଧଜନେ ମୁଁ ମୂର୍ଖ ଅପଣ୍ଡିତ ।
କୃଷାସନେ ମୁଁ ବସଇ ନଣାଗତ ।
ରାମପାଠଣା ହେଲୁ ନାହିଁ ମୋର ଭଲେ ।
ନିକଟ ଶାସନେ ନ ବସିଲି ଶାସନଙ୍କ କୁଳେ ।
ଯକ୍ଷପୁରବାସିନୀ ସାରଳା ଚଣ୍ଡୀ ବୋଲି ।
ତାହାର ବଚନେ ମୁଁ ଭରତରେ କହିଲି ।
ନ କଲି ପୁଣ୍ୟ ମୁଁ ନ କଲି ବଡ଼ ଜନେ ସେବା ।
ଅଦ୍ଭୁତେ ଆଜ୍ଞାଦେଲେ ମହାଭାରତ କହିବୁରେ ବାବା ।

ଇତ୍ୟାଦି । ଦ୍ରୋଣପର୍ବ ।

ଛାପାରେ ଏ ପଦ୍ୟଗୁଡ଼ିକ କିଛି ଭିନ୍ନ ପ୍ରକାର ହୋଇଅଛି ।

ଦ୍ରୋ. ପ. ୧୦୮ ପୃଷ୍ଠା ଦେଖନ୍ତୁ ।

ଏ ସ୍ଥଳରେ ଆଉ ଗୋଟିଏ କଥା ସୂଚିତ କରିବା ଉଚିତ ବୋଧ କରୁଅଛୁଁ । କବିଶିରୋମଣି ସାରଳାଦାସେ ନିଜ ପାରିବାରିକ ପରିଚୟ କୁହାପି ଦେଇ ନାହାନ୍ତି । କେବଳ ଜ୍ୟେଷ୍ଠଭ୍ରାତା ପର୍ଶୁରାମଙ୍କ ନାମମାତ୍ର ଉଦ୍‌ଘୋଷ କରି ଅଛନ୍ତି । ପିତା ମାତା ପୁତ୍ର ଓ କଳତ୍ର ପ୍ରଭୃତିଙ୍କର ଆଭାଷ ସୁଦ୍ଧା ଦେଇ ନାହାନ୍ତି । ଯିଏକି ନାନା ପ୍ରକାର ଅବାନ୍ତର କଥାମାନଙ୍କରେ ବାବଦୁକ ହୋଇ ସୁଦ୍ଧା ପ୍ରୟୋଜନମତେ ଏତେବଡ଼ ଗ୍ରନ୍ଥ ମଧ୍ୟରେ କିଞ୍ଚିତ୍‌ମାତ୍ର ପରିଚୟ ନ ଦେବା ବଡ଼ ସନ୍ଦେହର କଥା । ଏହାଙ୍କର ଅନ୍ୟତର ଗ୍ରନ୍ଥ ଚଣ୍ଡୀପୁରାଣ ପ୍ରଭୃତି ଦେଖି ସମୟରେ ତାହାର ବିସ୍ତାର କରିବାର ଇଚ୍ଛା ରହିଲା । ସେ ଯାହାହେଉ ଏହାଙ୍କର କଳତ୍ର ସ୍ନେହସମ୍ପତ୍ତି ତାଦୃଶ ପରିପୁଷ୍କଳ ଥିବାର ଅନୁମିତ ହୁଏ ନାହିଁ । ଯେତେଦୂର ସମ୍ଭବ, ଦୁର୍ଭାବାପନ୍ନ ହୋଇଥାଇ ପାରେ । ମାତ୍ର ଏହାର କୌଣସି ପ୍ରତ୍ୟକ୍ଷ ପ୍ରମାଣ ପ୍ରକାଣ୍ଡ ଗ୍ରନ୍ଥ ମଧ୍ୟରେ କୁହାପି ନିହିତ ନାହିଁ ସତ୍ୟ, ତଥାପି ଆଦିପର୍ବରେ

ଗଙ୍ଗା ଓ ଶାନ୍ତନୁଙ୍କର ପତ୍ରପ୍ରଶ୍ନ ଦ୍ୱାମହଁତଳିବରେ ସେ ଯାଦୃଶ ଭଦର୍ଯ୍ୟତାର ଆରୋପଣ କରି ଅଛନ୍ତି, ତଦ୍ଦ୍ୱାରା କବିଙ୍କର ହୃଦୟର ନିଗୂଢ଼ଭାବ ଅନୁମେୟ ହୋଇପାରେ ।

ଏ କବି ମହାଶୟ ଯେ ଶ୍ରୀ ସାରଳା ଦେବୀଙ୍କର ପୂର୍ଣ୍ଣ ପ୍ରସାଦରୁ ମହାପ୍ରଜ୍ଞ ହୋଇ ମହାଭାରତ ଲେଖିପାରି ଅଛନ୍ତି, ଏହାର ପ୍ରମାଣ ବହୁ ସ୍ଥଳରେ ଜାଜ୍ୱଲ୍ୟମାନ ରହିଅଛି । ଆଜି ତାହା ବିଶେଷ ଉଲ୍ଲେଖ କରିବାର ପ୍ରୟୋଜନ ଦେଖୁ ନାହିଁ । ସାରଳାଦେବୀ ଯେ ଏ କବିଙ୍କ ପ୍ରତି କେବଳ ଅନୁଗ୍ରହ ପ୍ରକାଶ କରିଦେଇ ନୀରବ ବା ନିଶ୍ଚେଷ୍ଟ ରହିଥିଲେ, ତାହା ନୁହେ । ସେ କବିଙ୍କ ପ୍ରତି ନିଜ ହୃଦୟସମ୍ଭୂତ ଅସୀମ୍ ଅନନ୍ୟଲଭ୍ୟ ଦୟାରେ ବିବଶା ହୋଇ ସମୟ ସମୟରେ କବିଙ୍କ ହୃଦୟକୁ ସମାଶ୍ୱାସନପୂର୍ବକ ସାରସ୍ୱତ ଶକ୍ତିରେ ଉଦ୍ବେଳିତ କରି ଦେଉଥିଲେ ଏବଂ ଅସୀମ ଦୁରଧିଗମ୍ୟ ଗ୍ରନ୍ଥ ଲେଖନର ପ୍ରଧାନ ସାଧନୀଭୂତ ଅମୋଘ ଓ ନବୀମୟ ଲେଖନୀ (୧) ସୁଦ୍ଧା ପ୍ରାପ୍ତ କରାଇ ଦେଇଥିଲେ । କବି ମହୋଦୟ ଦେବୀପ୍ରସାଦପ୍ରାପ୍ତ ଲେଖନୀର ସର୍ବସାଧକ ଶକ୍ତିରେ ଶକ୍ତିମାନ୍ ହୋଇ ନିରବଚ୍ଛିନ୍ନ ଧାରାକ୍ରମରେ ସମସ୍ତ ଲେଖିଗଲେ । ଏହି ମହାଭାରତ ଗ୍ରନ୍ଥଟି ଦେବୀଙ୍କ ପ୍ରସାଦସମ୍ଭୂତ ହୋଇ ଥିବାରୁ ଏହାର ସମଗ୍ର ପାଠ ବନ୍ଧ୍ୟାଙ୍କୁ ଓ ମୃତବତ୍ସାଙ୍କୁ ନବୀକରଣ କରି ଅବଶ୍ୟ ସୁପୁତ୍ର ପ୍ରାପ୍ତ କରାଇବ ବୋଲି ଦେବୀକୃପାନୁଭାବିତ-ହୃଦୟ କବି ମହୋଦୟ ପ୍ରକାଶ କରି ଅଛନ୍ତି । ଆମ୍ଭେମାନେ ଯେତେଦୂର ଜାଣୁଁ, ଯେତେ-ଠାରେ ଦେଖିଅଛୁଁ, ଯେତେଠାରେ ଶୁଣିଅଛୁଁ, ସମଧିକ ବ୍ୟକ୍ତି ପୁତ୍ରପ୍ରାପ୍ତି କାମନାରେ ଶ୍ରୀ ସାରଳା ମହାଭାରତ ପାଠ କରନ୍ତି ଏବଂ ନିଷ୍ଠା ନିଷ୍ପତ୍ତିରେ ଶ୍ରବଣ କରିଥାନ୍ତି ।

---

(୧) × × × ×

ଅଭୟବାକ୍ୟେ ଶ୍ରୀ ଶାରଦା ପ୍ରସନ୍ନ ।
ସେ ଯାହା କହଇ ମୁଁ କରଇ ଲେଖନ । × ×

ପ୍ରସନ୍ନେ ଦେଲେ ମୋତେ ଲେଖନ ଗୋଟିଏ ।
ତାହା ଘେନି ଲେଖିଲେ ଦୃଶ୍ୟ ମୋତେ ହୁଏ ।

ତେଣୁ କରି ଲେଖନ କଲି ମୁହିଁ ଗ୍ରନ୍ଥ ।
ସମ୍ପୂର୍ଣ୍ଣ କରି ପଢ଼ିଲେ ହେବ ପୁତ୍ର ଜାତ । ବିରାଟପର୍ବ ।

ଏହାଙ୍କର ପରିଚୟସୂଚକ କେତେକ ପଂକ୍ତିରୁ ଜଣାଯାଏ, ପୂର୍ବକୃତ ପୁଣ୍ୟନିଚୟର ମହିମାବଶରୁ ଏବଂ ଦେବୀମୂର୍ତ୍ତିବଳରୁ ଜାତିସ୍ମରତା ଶକ୍ତି ମଧ୍ୟ ଏ ପାଇଥିଲେ । ତତ୍ପ୍ରଭାବରୁ ସେ ତ୍ରୈକାଳିକ ବିଷୟମାନ ଯଥାସାଧ୍ୟ ଅବଗତ ହୋଇ ପାରୁଥିଲେ । ପୁଣି କହନ୍ତି, ସେ ସିଦ୍ଧ ଦେହରେ ପୂର୍ବ ଶିବଙ୍କର ଦ୍ୱାରପାଳ ଥିଲେ, ଦୈବବଶତଃ ମାନୁଷଯୋନିରେ କ୍ରମଶଃ ତିନିଗୋଟି ଜନ୍ମରେ ମର୍ତ୍ତ୍ୟ-ମଣ୍ଡଳରେ ଅବତୀର୍ଣ୍ଣ ହେବାପାଇଁ ଗଣେଶଙ୍କଠାରୁ ଶାପ ଲଭି ଆଗେ କାଳିଦାସ, ଦ୍ୱିତୀୟତଃ ମହାକାଳଧ୍ୱଂସ ଓ ତୃତୀୟତଃ ସାରଳାଦାସ ନାମ ବହି କବିଶକ୍ତିରେ ସମ୍ପନ୍ନ ହୋଇଥିଲେ । ତଥାଚ ଏହି ଜନ୍ମ ପରେ ଆଉ ଥରେ ପୁଣି ମାନୁଷ କଳେବର ଧାରଣ କରିବେ । ପ୍ରତ୍ୟେକ ଜନ୍ମରେ ପଞ୍ଚଦଶ ଲକ୍ଷ ପରିମାଣରେ ସମୁଦାୟ ଷାଠିଏ ଲକ୍ଷ ପଦ ଲେଖି ସାରିଲା ପରେ ପୁନଶ୍ଚ ମର୍ତ୍ତ୍ୟମଣ୍ଡଳ ତ୍ୟାଗ କରି ମହାଦେବଙ୍କର ଦ୍ୱାରପାଳ ହେବେ । ଇତ୍ୟାଦି ।

କୈଳାସ ଦ୍ୱାରପାଳ ନାମ ମୋର ନନ୍ଦୀ ।
ଶାସ୍ତ୍ରର ଆଗମେ ହର ଗଜସଙ୍କୁ ବନ୍ଦି ।
ଯେଉଁପରି ରତିରସ ସେ ମୋତେ ବୋଇଲେ ।
ମାତା ପିତାଙ୍କ ସଙ୍ଗ ବୋଲଣ କହିଲେ ।
ତାହା ଶୁଣି ବଘ୍ନରାଜ ଦେଲେ ମୋତେ ଶାପ ।
ତହୁଁ ଦୋଷୀ ହୋଇଲି ମୁଁ ମନୁଷ୍ୟ ସ୍ୱରୂପ ।
ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ ।
ଦ୍ୱିତୀୟ ଜନ୍ମରେ ମୁହିଁ ମହାକାଳଧ୍ୱଂସ ।
ତୃତୀୟ ଜନ୍ମରେ ମୁଁ ସାରଳାଦାସ କବି ।
ଆଉ ଜନ୍ମେ ମୁହିଁ ମର୍ତ୍ତ୍ୟମଣ୍ଡଳେ ଜନ୍ମିବି ।
ପ୍ରତି ଜନ୍ମେ ମୁଁ ପନ୍ଦର ଲକ୍ଷ କଥା ଭାବି ।
ସରି ଜନ୍ମେ ଷାଠିଏ ଲକ୍ଷ କଥା ମୁଁ କହିବି ।
ଉକ୍ତ କଥା କହି ସାରି ଏ ମର୍ତ୍ତ୍ୟମଣ୍ଡଳ ।
ତେବେ ଯାଇ ହୋଇବି ମୁଁ ଶିବ ଦ୍ୱାରପାଳ ।
ମୋର ଜାତି ନ ଜାଣେ ମୁଁ ଜାଣଇ ଯେ ଏହା ।
ସିଦ୍ଧଚଣ୍ଡୀ ଶ୍ରୀ ସାରଳା କଲେ ଯାହା ଯାହା । ସ୍ୱ. ପ.

ଏତାଦୃଶ ପରିଚୟ ପ୍ରଦାନର ପଂକ୍ତିମାନ ସ୍ୱର୍ଗାରୋହଣ ପର୍ବର ପ୍ରାରମ୍ଭରେ ଶତୋପୃଜାତିଃଷନକଃପ୍ସ ଯାଜନ ନଗରର ନବାସିନୀ ବୈଶ୍ୟାତ୍ମଜା ସହ ଯୁଧିଷ୍ଠିରଙ୍କ ସମ୍ବାଦ ସ୍ଥଳରେ ଲେଖାଅଛି । ତାଳପତ୍ର ପୁସ୍ତକମାନଙ୍କରେ ପ୍ରୋକ୍ତ ବୈଶ୍ୟ କନ୍ୟାର ବୈବାହିକ ବିଷୟ ଅନ୍ୟ ସ୍ଥଳରେ ଲକ୍ଷିତ ଥିଲେହେଁ, କେତେକ ତାଳପତ୍ର ପୁସ୍ତକରେ ଏହି ପଦ୍ୟଗୁଡ଼ିକ ଲେଖା ନାହିଁ । କିନ୍ତୁ ଅନ୍ୟତ୍ର ଲେଖା ଥିବାର ଖୁବ୍ ସମ୍ଭାବନା । ପରନ୍ତୁ ଏହି ଭାବର ପଦ୍ୟଗୁଡ଼ିକ କବି ନିଜେ ଲେଖି ନାହାନ୍ତି, ଅନ୍ୟ କେହି ଲେଖି ଏ ସ୍ଥଳରେ ଭର୍ତ୍ତି କରିଦେଇ ଅଛନ୍ତି ପରି ? ଏହି ଆଶଙ୍କାର ନିରସନ ସୁଦ୍ଧା ସ୍ପଷ୍ଟ ଜଣା ଯାଉଅଛି । କାରଣ ଏ ସବୁର ଭାବ ସବୁଠି କେବଳ ଲେଖା ଥିବାର ଦେଖାଯାଉ ନାହିଁ । ଅନେକ ସ୍ଥଳରେ ଏହି ଭାବର ପଦ୍ୟମାନ ବିଦ୍ୟମାନ ରହିଅଛି ।

[୧] ମୋତେ ସବୁ ଭଣଇ ଲେଖିବା ଲୋକ ନାହିଁ ।
ଯୋଗ ବ୍ରହ୍ମ ସାଧନା ନ ଜାଣଇ ମୂର୍ଖି ।
ଶିବ ଦ୍ୱାରପାଳ ଅଭିଶାପରୁ କବି ।
ମାନୁଷ ଯୋନିରେ ଜାତ ପ୍ରସନ୍ନ ବାକ୍ୟଦେବୀ । ମୁ. ପ.

କଷ୍ଟ ସାଧିବି ମୁଁ ତୁମ୍ଭେ ପ୍ରସନ୍ନ ହୋଇଲେ ।
ଶୂଦ୍ରମୁନି ସାରଳାଦାସ ସ୍ତୁତି କରି ବୋଇଲେ ।
ଜୟ ତୁ କାମସେଣୀ ଗୋ କାମାକ୍ଷି କାମାକ୍ଷୀ ।
ଏ ଦୁରପଦ ପ୍ରତିଜ୍ଞାକୁ ତୁହି ମୋତେ ସାକ୍ଷୀ ।
ନୁହଇ ପଣ୍ଡିତ ମୁଁ ନ ଜାଣଇ ଶାସ୍ତ୍ର ।
ସାଧନେ ବୋଧନେ ମୋତେ ପ୍ରସନ୍ନ ଜଗନ୍ନାଥ ।
ଅଭୟେ ଅନ୍ନପୂର୍ଣ୍ଣା ଗୋ ଯକ୍ଷରପୁରବାସୀ ।
ଯମଦଣ୍ଡି, ମୋତେ ତୁମ୍ଭ ଭୁବନ ଦେଖି ।
ସଦାଶିବ ଦ୍ୱାରେ ଦ୍ୱାରପାଳ ପୂର୍ବେ ।
କଣ୍ଟକ ଶାପେ ମୁଁ ମାନୁଷ ଜନ୍ମ ଏବେ ।
ବିଷ୍ଣୁ ସ୍ମରଣେ ମୁଁ ପାଇଲି ଚେତନା ।
ମୋର ପୂର୍ଣ୍ଣ କଲେ ସେ ସମସ୍ତ କଳ୍ପନା । ଇତ୍ୟାଦ । ବ. ପ.

ଏ ସବୁ ଛଡ଼ା ବନ ପର୍ବର ଶେଷଭାଗରେ କବିପ୍ରଦତ୍ତ ସମସ୍ତବିଧ ଆତ୍ମପରିଚୟର ପଙ୍କ୍ତିରେ ମଧ୍ୟ ଏହି ଭାବ ନିହିତ କରି ଅଛନ୍ତି ।

× × × ×

ପୂର୍ବର ପାତକେ ଜନ୍ମିଲି ମାନୁଷ ଯୋନି ।
ଦେବୀର ପ୍ରସନ୍ନେ ମୁଁ ହେଲି ଶୂଦ୍ରମୁନି ।

× × × ×

ଅତଏବ ବିଶ୍ୱାସ ହୁଏ, ଏହି ଭାବ କେବଳ କବିଙ୍କର ହୃଦୟୋଦ୍ଭୂତ ଥିଲା। ଘଟନା ଅଳୀକ କିମ୍ବା ନବ୍ୟାଳୀକ ଭାବନ୍ତୁ, କବି କେବଳ ଏପରି ଲେଖିଯାଇ ଅଛନ୍ତି, ଏଥିରେ କିଛିମାତ୍ର ସନ୍ଦେହ ହେଉନାହିଁ। ସୁତରାଂ ସାରଳାଦାସ କବି ନିଜେ ନିଜର ଏକ ଭାବୀ ଜନ୍ମ ଅବଶିଷ୍ଟ ଥିବାର କହି ଥିବାରୁ କେବଳ ନୃସିଂହପୁରାଣ ରଚୟିତା ଶ୍ରୀ ପିତାମ୍ବରଦାସ ମହାଶୟ ତଦନୁସରଣରେ ଆପଣାକୁ ଜନ୍ମାନ୍ତର-ପ୍ରାପ୍ତ ସାରଳାଦାସ ବୋଲି ପରିଚୟ ଦେବାକୁ ଅଗ୍ରସର ହୋଇପାରି ଅଛନ୍ତି ।

ଏ ଯେନ ବିଷ୍ଣୁ ଆଜ୍ଞାରେ ହେଲି ମୁଁ ମନୁଷ୍ୟ ।
ଆଦ୍ୟଜନ୍ମେ ବୋଲାଇଲି ନାମ କାଳିଦାସ ।
ସେ ଜନ୍ମେ ମୋତେ ପ୍ରସନ୍ନ ହେଲେ ବାକ୍‌ଦେବୀ ।
ମାଘ (ରଘୁ ?) କାବ୍ୟ କରିଣ ରଚିଣ ଗଲି ଭୂବି ।
ଦ୍ୱିତୀୟ ଜନ୍ମେ ହୋଇଲି ଜଗନ୍ନାଥ ଦାସ ।
ଶ୍ରୀଭାଗବତ ଗ୍ରନ୍ଥ ମୁଁ କଲଇଁ ପ୍ରକାଶ ।
ତୃତୀୟ ଜନ୍ମେଣ ବଳରାମ ଦାସ ହେଲି ।
ରାମାୟଣ ଗ୍ରନ୍ଥ ମୋ ହୃଦୁଁ ପ୍ରକାଶିଲି ।
ଚତୁର୍ଥ ଜନ୍ମେଣ ହେଲି ମୁଁ ଅଚ୍ୟୁତ ଦାସ ।
ବାନ୍ଧିଲି ହରିବଂଶ ପୁରାଣ ଗୀତ ରସ ।
ତହିଁ ଉତ୍ତାରୁ ଯାଇ ପଞ୍ଚମ ଜନ୍ମେ ପୁଣ ।
ସାରଳାଦାସ କବି ହୋଇଲି ଜଗତେଣ ।
ଶ୍ରୀମହାଭାରତ ଯାକ ବାନ୍ଧିଲି ପ୍ରାକୃତେ ।
ଅଠର ଖଣ୍ଡ ହୋଇଣ ରହିଲା ଜଗତେ ।
ତହିଁ ଉତ୍ତାରୁ ବାନ୍ଧିଲି ଚଣ୍ଡିକା ପୁରାଣ ।
ସାଧୁଙ୍କ କୃପାଣୁ ମୁଁ ଅଟଇ ବଡ଼ ଜଣ ।
ଷଷ୍ଠ ଜନ୍ମେଣ ମହାଦେବ ଦାସ ମୁହିଁ ।
ବିଷ୍ଣୁ ପୁରାଣ, ବିଷ୍ଣୁ କେଶରୀ ଗଲି ଲେଖି ।

ଏ ଅନ୍ତେ ପଦ୍ମପୁରାଣ କରିଣ ଲିଖିଲି ।
ଶ୍ରୀଗୋବିନ୍ଦ କୃପାରୁ ମୁଁ ପଦ ନିର୍ଭା କଲି ।
ସପ୍ତମ ଜନ୍ମେ ମୋର ଶୁଣିବା ସାଧୁଜନେ ।
ଗୋବିନ୍ଦ ଆଣି ମୋତେ ଲୋଡ଼ିଲେ ବଡ଼ ସ୍ଥାନେ ।

× × × ×

ଇତ୍ୟାଦି । ନୃ. ପୁ. ଦ୍ୱିତୀୟ ତରଙ୍ଗ ।

କିନ୍ତୁ ଏହାଙ୍କ କଥାଗୁଡ଼ିକ ସାରଳାଦାସଙ୍କ ମତରେ ସମ୍ପୂର୍ଣ୍ଣ ଐକମତ୍ୟ ସ୍ଥାପନ କରିପାରି ନାହିଁ । ଉଭୟ କବିଙ୍କର ପଦ୍ୟଗୁଡ଼ିକୁ ବିଗ୍ରହ କରିନେଲେ ଏହି ଶ୍ଳୋକ କାଳ୍ପନିକ ପରି ଆଭାସୁ ଅଛି । ସାରଳାଦାସଙ୍କ ସମୟକୁ ବା ତତ୍ପୂର୍ବରୁ କେହି ପ୍ରଧାନ ଓଡ଼ିଆ କବି ନ ଥିଲେ ବୋଲି ସେ ମହାଶୟ କାଳିଦାସ ଓ ମହାକାଳଙ୍କୁ ଆପଣାର ଜନ୍ମାନ୍ତର ସ୍ଥାପିତ କରି ଅଛନ୍ତି । ପୀତାମ୍ବର ଦାସଙ୍କ ବହୁ ପୂର୍ବେ ଅନେକ ପ୍ରଧାନ ପ୍ରଧାନ ଓଡ଼ିଆ ପୌରାଣିକ କବିମାନେ ଆବିର୍ଭୂତ ହୋଇଯାଇ ଥିଲେ, ସେମାନଙ୍କ ନାମ ଓ ଗ୍ରନ୍ଥ ଶୁଣିବାକୁ ଓ ପଢ଼ିବାକୁ ଏ ପାଇ ପାରିଥିଲେ; ଅତଏବ ସେମାନଙ୍କୁ ଆପଣାର ଜନ୍ମାନ୍ତର ସ୍ଥାପିତ କରି ପକାଇ ଅଛନ୍ତି । ସୁତରାଂ ଏଥିରେ ଆନୁପୂର୍ବିକ କ୍ରମ ସୁଦ୍ଧା ଭ୍ରାନ୍ତ ଓ ବିପର୍ଯ୍ୟସ୍ତ ହୋଇଅଛି । ଏ ମହାଶୟ ସର୍ବାଗ୍ରବର୍ତ୍ତୀ ସାରଳାଦାସଙ୍କୁ ସର୍ବପଶ୍ଚାତ୍ ପକାଇ ଦେଇ ଅଛନ୍ତି । ଏହା ତାହାଙ୍କର ଅସାବଧାନତାର ଫଳ ବୋଲିବାକୁ ହେବ । ଯେ ଯାହାହେଉ ଶିବ ଦ୍ୱାରପାଳ ନନ୍ଦୀ ଯେ ଗଣପତ୍ୟ ଶାପରେ ଅଭିଶପ୍ତ ହୋଇ କ୍ରମଶଃ ସାରଳାଦାସ ରୂପରେ ଅବତୀର୍ଣ୍ଣ ହୋଇଥିଲେ, ଏହା କେତେଦୂର ସତ୍ୟ କହି ନ ପାରୁ । ସଂସ୍କୃତ ଭାଷାରେ ସମଗ୍ର ଧୀଶକ୍ତି-ସମ୍ପନ୍ନ ଐଶ୍ୱରିକ ଭକ୍ତିନିଷ୍ଠାଗରିଷ୍ଠ ଅତ୍ୟନ୍ତ ମହିମାମୟ ଗ୍ରନ୍ଥ ଲେଖକ, ଏମନ୍ତ କି, ପ୍ରୋକ୍ତ ଭାଷାର ସଞ୍ଜୀବନୀ ଶକ୍ତିର ଜନକ କବିମାନେ ମଧ୍ୟ ନିଜ ଭାଗ୍ୟରେ ଜାତିସ୍ମରତା ଶକ୍ତି ପ୍ରାପ୍ତ ହୋଇଥିବାର ଉଲ୍ଲେଖ କରି ନାହାନ୍ତି । ସାରଳାଦାସେ ତାହା କିପରି ଲଭି ପାରିଥିଲେ, ଠିକ୍ ବିଶ୍ୱାସସୂତ୍ରରେ କହି ନ ପାରୁଁ । ପରନ୍ତୁ ସଂସ୍କୃତର ପୁରାଣମାନଙ୍କରେ ପୂର୍ବବାସନା-ବଶତଃ ଏତାଦୃଶ ଶକ୍ତି ସମ୍ପ୍ରାପ୍ତିର ଚରିତମାନ ଅନେକଧା ଉକ୍ତ ଅଛି । କି ବ୍ରାହ୍ମଣ, କି କ୍ଷତ୍ରିୟ, କି ବୈଶ୍ୟ, କି ଶୂଦ୍ର, ଏପରି କି, ତିର୍ଯ୍ୟକ୍‌ଜାତୀୟ ବିଶେଷ ବିଶେଷ ବ୍ୟକ୍ତିମାନେ ସୁଦ୍ଧା ପୂର୍ବବାସନାନୁବାସିତ ହୋଇ ଜାତିସ୍ମର ଥିବାର ପ୍ରମାଣମାନ ଦେଦୀପ୍ୟମାନ ରହିଅଛି । ତେବେହିଁ ସାହସରେ କହି ପାରିବୁଁ

ଯେ, ପ୍ରସନ୍ନ-ସାରଳାଦାସଙ୍କର ଏହି ଭବିଷ୍ୟଦ୍ୱୋତନ ଅଳୀକ କେବଳ ? ଆପଣମାନେ ଅବଶ୍ୟ ବିଶ୍ୱାସ କରିବେ ଯେ, ଐଶ୍ୱରିକ ଶକ୍ତିସମ୍ପନ୍ନ ଭକ୍ତିର କିଛି ତାଦୃଶ ଅସାଧ୍ୟ ନୁହେ । ଏ ମହାଶୟ ପ୍ରଗାଢ଼ଭକ୍ତିପ୍ରବଣ ହୃଦୟରେ ଏବଂ ଦେବୀ-ପ୍ରଦତ୍ତ ଶକ୍ତିରେ ଆତ୍ମାକୁ ଗୌରବାନ୍ୱିତ କରି ସୁଦ୍ଧା ଏପରି କହି ପାରିଥିବେ । ଯଦି କେହି କହିବେ, ଅନ୍ୟ କେହି ପ୍ରକୃତିସ୍ୱରୂପଙ୍କ "ଶ୍ରୀମାନ ସାରଳାଦାସଙ୍କ ପ୍ରତିଷ୍ଠା ଏକାନ୍ତ ପୂଜନୀୟ" ଜାଣିପାରି ତାହାଙ୍କୁ ଦେବାତ୍ମାରେ ଅନୁପ୍ରାଣିତ କରି ସମୁଚିତ କବିମାନଙ୍କର ଅନର୍ଘ ଆସନୋପରି ସମାରୂଢ଼ କରାଇ ଥରେ ଥରେ ପୂଜା କରି ଅଛନ୍ତି, ଆମ୍ଭେ କହୁଁ, ତଥାପି ଏହା ଦୂଷଣୀୟ ନୁହେ ।

ପୂର୍ବୋକ୍ତ ଭାବର ପରିପୋଷକରୂପେ ଆହୁରି ଅନେକ ସ୍ଥଳରେ ଅନେକ ପ୍ରକାର ଚରିତ ଲେଖାଅଛି । ସେ ସବୁ ତାଦୃଶ ସୁସଙ୍ଗତ ବୋଧ ନ ହେବାରୁ ଅଥଚ ଗ୍ରନ୍ଥବିସ୍ତୃତି ଭୟରୁ ପରିତ୍ୟାଗ କରି କେବଳ ମଧ୍ୟପର୍ବରେ ଲିଖିତ ଗୋଟିଏ ଚରିତସମ୍ବନ୍ଧୀୟକୁ ମାତ୍ର ଏ ସ୍ଥଳରେ ପ୍ରଦର୍ଶନ କରୁଅଛୁଁ । ଲେଖାଅଛି, ଜଗଦ୍ଧାତ୍ରୀ ମହାମାୟା ଆଦିଶକ୍ତି ବିଷ୍ଣୁଙ୍କ ଆଦେଶରେ କନକପୁର ପାଟଣା ନାମକ ସ୍ଥାନରେ ଶ୍ରୀ ସାରଳା ଚଣ୍ଡୀରୂପରେ ଆବିର୍ଭୂତ ହୋଇ ସ୍ୱପୁତ୍ରକଳ୍ପ ସାରଳାଦାସଙ୍କ ପ୍ରତି ସୁପ୍ରସନ୍ନା ହେଲେ, ତାଙ୍କ ହୃଦୟରେ ଶକ୍ତି ସଞ୍ଚାର କରାଇ ମହାଭାରତକୁ ତାଙ୍କ ମୁଖରେ କୁହାଇଲେ । ଇତ୍ୟାଦି । ଛାପା ପୁସ୍ତକରେ ମଧ୍ୟପର୍ବ ୮୨ ପୃଷ୍ଠାରେ ଲେଖାଥିଲା ପରି ୧୧୨ ପୃଷ୍ଠାରେ ମଧ୍ୟ ଗୋଟିଏ ଚରିତର ଅନ୍ତିମ ଭାଗରେ ଏ ସବୁ ଅବିକଳ ଭାବରେ ଲେଖାଅଛି । କିନ୍ତୁ ଏ ବିଷୟସୂଚକ ପଂକ୍ତିଗୁଡ଼ିକ କେତେକ ତାଳପତ୍ର ପୁସ୍ତକରେ ଦେଖାଯାଏ ନାହିଁ । ତଥାପି ସାରଳାଦାସଙ୍କର ଏତାଦୃଶ କ୍ରମରେ ପୌରାଣିକ କ୍ଷମତାଶକ୍ତିସମ୍ପନ୍ନତା କବିଶକ୍ତିସମ୍ପନ୍ନତା, ଦେବତା ବରପ୍ରାପ୍ତି ପ୍ରଭୃତି ବିଷୟମାନଙ୍କର ସ୍ଥଳ ସାରାଂଶମାନ ସେହି ସେହି ପୁସ୍ତକମାନଙ୍କର ଅନ୍ୟାନ୍ୟ ସ୍ଥଳମାନଙ୍କରେ ସୁସ୍ପଷ୍ଟ ବିଦ୍ୟମାନ ରହିଅଛି ।

ଆମ୍ଭମାନଙ୍କର ଏହି ଭାରତ କବି ମହାଶୟ ଜ୍ୟୋତିଃଶାସ୍ତ୍ରରେ ମଧ୍ୟ ବିଶେଷତଃ ତୃତୀୟ ଭୃଗୁୀୟ ସ୍କନ୍ଧ (୧) ସଂହିତା ଭାଗରେ ସମଧିକ ପାରଦର୍ଶିତା ଲାଭ କରିଥିଲେ । ଏହାର ଜ୍ୱଳନ୍ତ ପ୍ରମାଣମାନ ଏହି ଗ୍ରନ୍ଥମଧ୍ୟରୁ ସମ୍ୟକ୍‌ରୂପେ ମିଳୁଅଛି । ପ୍ରାୟଶଃ ପ୍ରତ୍ୟେକ ପ୍ରଧାନ ଘଟଣା ଅର୍ଥାତ୍ ଯାତ୍ରା, ଜନ୍ମ, ରଜୋଦର୍ଶନ,

---

(୧) ସ୍କନ୍ଧତ୍ରୟାତ୍ମକଂ ଶାସ୍ତ୍ରଂ ଆଦ୍ୟଂ ସିଦ୍ଧାନ୍ତସଞ୍ଜ୍ଞକଂ ।
ଦ୍ୱିତୀୟଂ ଜାତକସ୍କନ୍ଧଂ ତୃତୀୟଂ ସଂହିତାହ୍ୱୟଂ ।

ବିବାହ, ଗଣ୍ଡଦୋଷ ପ୍ରଭୃତି ସ୍ଥାନମାନଙ୍କରେ ଗ୍ରହ-ନକ୍ଷତ୍ରାଦିର ପ୍ରକୃଷ୍ଟାପ୍ରକୃଷ୍ଟ ସଂସ୍ଥାନଜନ୍ୟ ଫଳାଫଳର ବିବରଣ ଲେଖିଯାଇ ଅଛନ୍ତି । ଏହାର ପ୍ରତ୍ୟେକ ଅଂଶର ପ୍ରତ୍ୟେକ ବିବରଣ ନିର୍ଦ୍ଦେଶତଃ ଦେଖାଇବା ଅନାବଶ୍ୟକ । ଏହି ଭାରତରୁ ଏତାଦୃଶ ଯେ କୌଣସି ସ୍ଥଳ ବାହାର କରି ଦେଖନ୍ତୁ, ଅବଶ୍ୟ ଏହାର ସତ୍ୟତା ଉପଲବ୍ଧି କରି ପାରିବେ । ମୂଳଗ୍ରନ୍ଥରେ ମଧ୍ୟ ଏହିପରି ଜ୍ୟୋତିଷିକ ବିଷୟମାନ ସ୍ଥାନେ ସ୍ଥାନେ ଦିଆ ଯାଇଅଛି । ମାତ୍ର ସେ ସବୁ ଆଦର୍ଶ କରି ଏ ଲେଖି ନାହାନ୍ତି । ନିଜ ବୁଦ୍ଧିମତେ ମୂଳଗ୍ରନ୍ଥରୁ ଭିନ୍ନରୂପ ହେଲେ ସୁଦ୍ଧା ଶାସ୍ତ୍ରର ଅବିରୋଧକ୍ରମରେ ଲେଖିଯାଇ ଅଛନ୍ତି । କିନ୍ତୁ ମୌଳିକ ଯଥାର୍ଥତା ରହି ନାହିଁ । ଏ ସମ୍ବନ୍ଧରେ ଆଦ୍ୟ ପ୍ରକରଣରେ ଆବଶ୍ୟକମତେ କେତେକ ସ୍ଥଳ ଦେଖାଇ ଅଛୁଁ, ପୁଣି ଏ ସ୍ଥଳରେ ଉଭୟ ଗ୍ରନ୍ଥର ଏକ ଦୁଇ ବିବରଣ ମାତ୍ର ଦିଗ୍‌ଦର୍ଶନତଃ ବିଚାର କରିନେଲେ ପାଠକଙ୍କୁ ଏହାର ଯାଥାର୍ଥ୍ୟ ଉପଲବ୍ଧି, ବୋଧହୁଏ, ଯଥେଷ୍ଟ ହୋଇ ପାରିବ ।

### ଯୁଧିଷ୍ଠିରଙ୍କ ଜନ୍ମ ଦିନର ବିବରଣ

ମେଷ ମାସ ଶୁକ୍ଳପକ୍ଷ ପ୍ରତିପଦା ତିଥି ।
ସେ ଦିନ ଚନ୍ଦ୍ରବାର ଅଢ଼ାଇ ପ୍ରହର ସ୍ଥିତି ।
ହସ୍ତା ନକ୍ଷତ୍ର ଭୋଗ ସତାଇଶ ଦଣ୍ଡ ।
ମେଷ ରାଶିରେ ନାହିଁ ପାପଗ୍ରହ ଦଣ୍ଡ ।
ମଙ୍ଗଳ କ୍ଷତ୍ରିକୁଳେ ଉପୁଜିଲା ବଳା ।
ଚନ୍ଦ୍ର ରୋହିଣୀ ଯେ ସପ୍ତମ ଘରେ ମେଳା ।
(ପ୍ରଥମ) ପାଦେ ଜନ୍ମିଲା ଚତୁର୍ଥ ଘରେ ବୃହସ୍ପତି ।
ତୈତିଲ ନାମେ କରଣ ଯୋଗ ଯେ ବୈଧୃତି ।
ଚୌଧର୍ମ ନାମ କାଳ ଅମୃତ ଯୋଗ ଘେନି ।
ଐଶାନ୍ୟରେ ଯୋଗିଣୀ ଯେ ମହାଲକ୍ଷ୍ମୀ ମୂର୍ତ୍ତି ।
ମାହେନ୍ଦ୍ର ଯୋଗ ଘେନି ଉତପତି ନନ୍ଦନ ।
ଗୁରୁଙ୍କ ବଚନେ ସାନନ୍ଦ ପାଣ୍ଡୁ ରାଜନ । ଆ. ପ.

ମୂଳଗ୍ରନ୍ଥରେ ଏହା ଭିନ୍ନ ପ୍ରକାର ।

ଶ୍ରୀନ୍ଦ୍ରେ ଚନ୍ଦ୍ରସମାଯୁକ୍ତେ ମୁହୂର୍ତ୍ତେଽଭିଜିତେଽଷ୍ଟମେ
ଦିବାମଧ୍ୟଗତେ ସୂର୍ଯ୍ୟେ ତିଥୌ ପୂର୍ଣ୍ଣେଽତିପୂଜିତେ ।
ସମୃଦ୍ଧଯଶସଂ କୁନ୍ତୀ ସୁଷାବ ପ୍ରବରଂ ସୁତଂ ।

ଆ. ପ. ୧୧୨ ଅ:

ମୂଳ ଟୀକାରେ ଲେଖାଅଛି କି, କୁନ୍ତୀ ଅଗ୍ରହନ ମାର୍ଗଶିର ମାସର ଅତି ପ୍ରଶଂସିତା ଶୁକ୍ଳପଞ୍ଚମୀ ପୂର୍ଣ୍ଣାତିଥିରେ ଚନ୍ଦ୍ରଯୁକ୍ତ ଜ୍ୟେଷ୍ଠାନକ୍ଷତ୍ରରେ ଅଭିଜିତ୍ ନାମକ ଅଷ୍ଟମ ମୁହୂର୍ତ୍ତରେ ଦିବସର ମଧ୍ୟଭାଗରେ କୁନ୍ତୀ ସମୃଦ୍ଧଯଶା (ଯୁଧିଷ୍ଠିର) ସୁତପ୍ରବରଙ୍କୁ ପ୍ରସବ କଲେ । ଇତ୍ୟାକାର ସ୍ଥଳମାନଙ୍କରୁ ସ୍ପଷ୍ଟ ଜଣାଯାଏ, ସାରଳାଦାସ କବି ବ୍ୟାସ କବିଙ୍କର କୌଣସି ଘଟନାସନ୍ଧାନ୍ତ ତଥ୍ୟ ବୃତ୍ତାନ୍ତର ଅନୁସରଣ କରି ନାହାନ୍ତି । ସେ ଜ୍ୟୋତିଃଶାସ୍ତ୍ରରେ କେତେଦୂର ପ୍ରବୀଣ କିମ୍ବା ପ୍ରଧାନ କାର୍ତ୍ତାନ୍ତିକ ଥିବାରୁ ଚିତ୍ର ଚିତ୍ର ବିଷୟମାନଙ୍କର ଉପଯୁକ୍ତ ଓ ଶୁଭକାରକ ତଥ୍ୟ ବାବଦ ଓ ଗ୍ରହନକ୍ଷତ୍ରାଦିର କାଳ୍ପନିକ ସଂସ୍ଥାନ ନିର୍ଦ୍ଦେଶ କରି ଅଛନ୍ତି । ଏତାଦୃଶ ବିବରଣଗୁଡିକ ମୌଳିକତମରୁ ଭିନ୍ନପ୍ରକାର ଓ କାଳ୍ପନିକ ସତ୍ୟ, ତଥାପି ଶାସ୍ତ୍ରୀୟ ନିୟମର ବିରୁଦ୍ଧ ହୋଇ ନ ପାରେ ବୋଲି ଆମ୍ଭମାନଙ୍କର ବିଶ୍ୱାସ । କବି ଆହୁରି ଅନେକ ସ୍ଥଳରେ ଶିଶୁରିଷ୍ଟ ବା ଗଣ୍ଡଯୋଗର ମଧ୍ୟ ଉଲ୍ଲେଖ କରି ଅଛନ୍ତି । ସେଥିରୁ କେତେକ ସ୍ଥଳ ଆମ୍ଭେମାନେ ଜ୍ୟୋତିଃଶାସ୍ତ୍ରୋକ୍ତ ପ୍ରମାଣ ବାକ୍ୟସହ ମିଳାଇ ଦେଖିଅଛୁଁ, ଠିକ୍ ଶାସ୍ତ୍ରାନୁମୋଦିତ ହୋଇଅଛି । ପାଠକମାନଙ୍କ ଅବଗତ୍ୟର୍ଥେ ସେଥିରୁ ଗୋଟିଏ ଦିଓଟି ମେଳନନୟନ ଉଲ୍ଲେଖ କରୁଅଛୁଁ । ମଧ୍ୟପର୍ବର ଅନ୍ତିମ ଭାଗରେ ମାଳେନ୍ଦ୍ରୀ କନ୍ୟାଙ୍କ ଜନ୍ମ ସ୍ଥଳରେ କବି ଗଣ୍ଡଦୋଷ ଦେଖାଇ ଅଛନ୍ତି । ଏହା ଠିକ୍ ଶାସ୍ତ୍ରସମ୍ମତ ହୋଇଅଛି ।

ବରୁଣଙ୍କ ଅଗ୍ରତେ ଜଳାଧି ମନ୍ତ୍ରୀ କହିଲା ।
ପ୍ରଥମେ ଅଶ୍ୱିନୀ ନକ୍ଷତ୍ର ଆଦ୍ୟ ଗଣ୍ଡ ପାଇଲା ।
ଦିବସେ ଉତପତ୍ତି ହୋଇଲାଟି ବିବୋଧି ଲୁକୁ ।
ପ୍ରଥମେ ଗଣ୍ଡ ଉପୁଜିଲା ଷୋଳ ବରଷକୁ ।
ଦିବସେ ଉପୁଜିଲା ପିତାକୁ ବିଘେଧିଲା ।
ଯହେ ଉପୁଜିଲେ ମାତାକୁ ଲଗନ୍ତା ଶାହାସ୍ୱେ କହିଲା । ମ. ପ.

[୧] ଅଶ୍ୱିନୀମଘମୂଳାନାଂ ତିସ୍ରୋଗଣ୍ଡାଦ୍ୟନାଡ଼ିକାଃ ।
ଅନ୍ତ୍ୟେ ପୌଷ୍ଣେନ୍ଦ୍ରଗେନ୍ଦ୍ରାଣାଂ ପଞ୍ଚୈବ ଯବନା ଜଗୁଃ ।

[୨] ଅଶ୍ୱିନ୍ୟାଂ ଷୋଡ଼ଶଦାନ—

[୩] ପିତ୍ର୍ୟାନ୍ତାଦିଦଣ୍ଡେଷୁ ଗଣ୍ଡଯୋଗୋଦ୍ଭବଃ ଶିଶୁଃ ।
ଆତ୍ମାନଂ ମାତରଂ ତାତଂ ହନ୍ତି ଚନ୍ଦ୍ର ଯଥାକ୍ରମଂ ।—

ଇତି ଦୀପିକା ।

ଏପରି ଆଉ ଗୋଟିଏ ମତାନ୍ତର ସ୍ଥଳ ଦେଖନ୍ତୁ—

ଉଭୟ ମଧ୍ୟେ ଯେବେ ଉପୁଜଇ ସନ୍ତତି ।
ସେ ପୁତ୍ର ନାଶଯାଏ ଜାଣ ତତ୍‌କ୍ଷଣାନ୍ତି ।
ମଘାନକ୍ଷତ୍ରର ଆଦ୍ୟ ଯେଉଁ ଚାରି ଦଣ୍ଡ ।
ଏଥେ ଜନମ ହେଲେ ବରଷେ ପାଇ ଗଣ୍ଡ ।
ମୂଳାନକ୍ଷତ୍ରରୁ ଯେବେ ଚାରି ଦଣ୍ଡ ଥାଇ ।
ଜନ୍ମିଲେ ତହିଁରେ ତୃତ ବର୍ଷ ଗଣ୍ଡ ପାଇ ।
ଜ୍ୟେଷ୍ଠାନକ୍ଷତ୍ରରେ ଯେ ପ୍ରଥମ ପାଦ ଗଣ୍ଡ ।
ଏଥେ ଜନମ ହେଲେ ବରଷେ ପାଇ ଗଣ୍ଡ ।
ଅଶ୍ଳେଷା ନକ୍ଷତ୍ରର ଯେ ସାତ ଦଣ୍ଡ ମଧ୍ୟେ ।
ବାର ବରଷରୁ ଗଣ୍ଡ ପାଇ ସେ ଯେ ମଧ୍ୟେ ।
ରେବତୀ ନକ୍ଷତ୍ରର ଯେ ଦୋଷ ପଞ୍ଚ ଦଣ୍ଡ ।
ଏଥେ ଜନମ ହେଲେ ବରଷେ ପାଇ ଗଣ୍ଡ ।
ଏତେ ଯୋଗେ ଦିବସେ ସନ୍ତାନ ଜନ୍ମହେଲେ ।
ପିତାକୁ ଗଣ୍ଡ ଦୋଷ ଲାଗଇ ନଷ୍ଟକଳେ ।
ରାତିକାଳେ ଯଦି ଉପୁଜଇ ସନ୍ତତି ।
ମାତାକୁହିଁ ଗଣ୍ଡ ହୁଏ ବୋଲନ୍ତି ଅଗସ୍ତି ।
ଉଭୟ ମଧ୍ୟରେ ଯେବେ ଉପୁଜଇ ବାଳ ।
ତାହାର ଉପରେ ସେ ଭୋଗଇ ନଷ୍ଟେ କାଳ । ବ. ପ.

ଜ୍ୟୋତିଃଶାସ୍ତ୍ରରେ ଫଳିତ ଜ୍ୟୋତିଷ ଓ ମୌହୂର୍ତ୍ତିକ ଭାଗରେ ଏହାଙ୍କର ଯେ ଖୁବ୍ ପାରଦର୍ଶିତା ଥିଲା, ଏହା କହିବା ବାହୁଲ୍ୟ ମାତ୍ର । ଅତଏବ ପ୍ରତ୍ୟେକ ଯୋଗଯାତ୍ରାଦି ଓ ପ୍ରଧାନ ଘଟନା ସ୍ଥଳମାନଙ୍କରେ ତିଥିବାରାଦି ଓ ଲଗ୍ନାଦିର ବିବରଣ ଦେଇପାରି ଅଛନ୍ତି, ବିଶେଷତଃ ମଧ୍ୟପର୍ବର ପ୍ରାରମ୍ଭରେ ସ୍ତ୍ରୀର ପ୍ରାଥମିକ ଋତୋଦର୍ଶନର ଦୋଷାଦୋଷ ବିବରଣ ସମ୍ପୂର୍ଣ୍ଣ ଓ ବିସ୍ତାରିତଃ ଲେଖିବାକୁ ପାରି

ଅଛନ୍ତି । ସୁତରାଂ ଏହାଙ୍କର କାର୍ତ୍ତାନ୍ତିକବିଦ୍ୟାର ଅଖଣ୍ଡ ପରିଚୟ ଭୀଷ୍ମ ପର୍ବର ପ୍ରାରମ୍ଭରେ ଦେଖାଯାଏ । (୧) ଏଥିରେ ଚନ୍ଦ୍ର ପ୍ରଭୃତିର ନିୟମ, ମୃତ୍ୟୁଠାରୁ ପ୍ରଳୟ ପର୍ଯ୍ୟନ୍ତ କାଳନିର୍ଣ୍ଣୟ, ପ୍ରଳୟାନ୍ତେ ପୁନଃ ସୃଷ୍ଟି ନିୟମ, ମୃତ୍ୟୁ ସମ୍ବନ୍ଧରେ ବାରବେଳା ଓ ଯୋଗିନୀମାନଙ୍କର ନିର୍ଣ୍ଣୟ ପ୍ରଭୃତି ଜ୍ୟୋତିଃଶାସ୍ତ୍ରୀୟ ନାନାବିଧ କଥା ପ୍ରକାଶ କରି ଅଛନ୍ତି । ଏଥି ମଧ୍ୟରେ କେତେକ ନାମାନ୍ତର କପୋଳକଳ୍ପିତ ଓ ଅସାମଞ୍ଜସ୍ୟ ଲକ୍ଷିତ ହେଉଥିଲେ ମଧ୍ୟ କବିଙ୍କର ଖୁବ୍ ବହୁଦର୍ଶିତା ପ୍ରକାଶ ପାଉଅଛି, ଏଥିରେ କୌଣସି ସନ୍ଦେହ ନାହିଁ । କବି ଯେ ବୈଜ୍ଞାନିକ ଜ୍ୟୋତିଃଶାସ୍ତ୍ରର ମୌଳିକ ଭାବରେ ଯଥେଷ୍ଟ ପାରଙ୍ଗମ ଥିଲେ, ଏଥିରେ ବିଶ୍ୱାସ ଦ୍ୱିଧା ହୁଏନାହିଁ । ଅଷ୍ଟାଦଶ ପର୍ବ ମଧ୍ୟରେ ଏହାଙ୍କର ପ୍ରଦର୍ଶିତ ଜ୍ୟୋତିଷିକ ବିବରଣଗୁଡ଼ିକୁ ପୃଥକ ଲେଖିଲେ ଗୋଟିଏ ସ୍ୱତନ୍ତ୍ର ସାଧାରଣ ପଞ୍ଜିକା ହେବ । ଏଥି ମଧ୍ୟରେ ଯେ କବିଙ୍କର କିଛି ସ୍ୱେଚ୍ଛାଚାରିତା ଓ ଅମୂଳକ କାଳ୍ପନିକ ବ୍ୟବସ୍ଥା ନାହିଁ, ତାହା କହୁ ନାହିଁ । ଚରିତମାନଙ୍କରେ ବହୁ ସ୍ଥଳରେ ଯେପରି ନିଜର ଇଚ୍ଛାମତେ ଐତିହାସିକ ପ୍ରକୃତ ନାମଗୁଡ଼ିକୁ କୃତିମାଦର୍ଶରେ ଢାଳି ବଦଳି କରିଦେଇ ଅଛନ୍ତି, କେତେକ ସ୍ଥଳରେ ଏଥିରେ ମଧ୍ୟ ସେହିପରି । ବନପର୍ବରେ ଯୁଧିଷ୍ଠିରଙ୍କ ପ୍ରଶ୍ନରେ ସହଦେବ ବନବାସର ଦଶ ବର୍ଷ ଅତୀତ ହୋଇଅଛି ବୋଲି ସେହି ବର୍ଷଗୁଡ଼ିକର ନାମ କାଂଭୂତକିମାକାର କରି କହିଥିବାର ଲେଖି ଅଛନ୍ତି । (୨) କେତେକ ସ୍ଥଳରେ ଧର୍ମଶାସ୍ତ୍ରାନୁମୋଦିତ ଦାମ୍ପତ୍ୟ ଧର୍ମର ବ୍ୟବସ୍ଥା ଅର୍ଥାତ୍ ସ୍ତ୍ରୀର ଆର୍ତ୍ତବ ସମୟରେ ସଙ୍ଗମ ବ୍ୟବସ୍ଥା ବା କର୍ତ୍ତବ୍ୟ ନିର୍ଦ୍ଧାରଣ ପ୍ରଭୃତି ଠିକ୍ ଲେଖିଯାଇ ଅଛନ୍ତି । ଏଥିରୁ ଜଣା ଯାଉଅଛି, ଏ ମହାପୁରୁଷଙ୍କର ଧର୍ମଶାସ୍ତ୍ର ଶୁଶ୍ରୂଷାଜନିତ ଧର୍ମବ୍ୟବସ୍ଥାପକତନୈପୁଣ୍ୟ ମଧ୍ୟ କିଛି କିଛି ଥିଲା । ଉଦ୍‌ବୋଦର୍ଶନ

---

(୧) ଛାପା ପୁସ୍ତକରେ ୧୭ ପୃଷ୍ଠା ଠାରୁ ୨୧ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

(୨) ଅନୁସମ୍ଭବରେ ଆମ୍ଭେ କଲଇଁ ବନବାସ ।
କନ୍ୟା ମାସ କୃଷ୍ଣପକ୍ଷ ଦ୍ୱିତୀୟା ଦିବସ ।
ଅନ୍ଧ, ଚନ୍ଦ୍ର, ଅଗ୍ନି, ଧ୍ୱଜ, ଉଦାସନ ।
ଧ୍ରୁବ, ହରଷ, କରଷଣ, ଅନୁମାନ ।

ଏହା ପୁଣି ଛାପା ପୁସ୍ତକରେ ଆଉ ଟିକିଏ ଭିନ୍ନ ଆକାର ଧାରଣ କରିଅଛି ।
ବ. ପ. ୩୧୦ ପୃଷ୍ଠା ଦେଖନ୍ତୁ ।

ସମୟରେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ତଥାତ ଚତୁର୍ଥ ଦିବସରେ ମଧ୍ୟ ସ୍ତ୍ରୀସଙ୍ଗମ-ଯୋଗ୍ୟା ନୁହେ । ତଦା ସେ ଆତ୍ରେୟୀ (୧) ପ୍ରାୟ ଅଗମ୍ୟା ଥିବାରୁ ଆତ୍ରେୟୀ ନାମ ଧାରଣ କରିଥାଏ । ତାହାର ଆତ୍ରେୟୀ ନାମର ସାର୍ଥକତା ସେହି ସମୟରେ କେବଳ ପ୍ରକାଶ ପାଏ । "ଚତୁର୍ଥେଽହନି ଶୁଦ୍ଧ୍ୟତି" ଏହି ସ୍ମାର୍ତ୍ତ ବାକ୍ୟର ଆଦେଶାନୁସାରେ ଚତୁର୍ଥ ଦିବସରେ ରଜସ୍ୱଳା ସ୍ପର୍ଶଯୋଗ୍ୟା ମାତ୍ର, ବ୍ରାହ୍ମଣମାନଙ୍କ ପକ୍ଷରେ କଥଂଚିତ୍ ସଙ୍ଗମଯୋଗ୍ୟା ନୁହେ । ଏହି ତତ୍ତ୍ୱାର୍ଥକୁ ତଥାତ "ଋତୌ ତିସ୍ରଂ ସ୍ମରତଂ" ଇତ୍ୟାଦି ଶ୍ରୌତ ସ୍ମାର୍ତ୍ତ ଓ ଆୟୁର୍ବେଦୀୟ ପୁରୁଷାର୍ଥପ୍ରତିପାଦକ ବିଧିବାକ୍ୟର ସ୍ପଷ୍ଟାର୍ଥକୁ ପ୍ରକାଶ କରି ଅଛନ୍ତି । ଏ ମହାଶୟ ଯେ ଯେ ସ୍ଥଳରେ ଏତାଦୃଶ ବିଧିମାନ ଲେଖି ଅଛନ୍ତି, ମୂଳଗ୍ରନ୍ଥର ତତ୍ ତତ୍ ସ୍ଥଳରେ ତାହା ଉକ୍ତ ହୋଇନାହିଁ । ସ୍ମାର୍ତ୍ତ ବାକ୍ୟ ଶୁଶ୍ରୂଷାଜନିତ ଜ୍ଞାନବଳରୁ କେବଳ ଏ ପ୍ରାସଙ୍ଗିକ କ୍ରମରେ ଲେଖିଯାଇ ଅଛନ୍ତି । (୨)

ଆଉ କେତେକ ସ୍ଥଳର ବିଷୟାବତରଣମାନ ସମ୍ୟକ ବିଚାର କରିନେଲେ ଏ ମହାଶୟ ବୈଦିକ କର୍ମକାଣ୍ଡ ଓ ଛନ୍ଦାଦି ଉପବିଦ୍ୟାମାନଙ୍କ କ୍ରମ ଅବଗତ ଥିବା ଅନୁମିତ ହୁଏ । ଗ୍ରନ୍ଥ ମଧ୍ୟରୁ ଏତାଦୃଶ କେତେକମାତ୍ର ବିବରଣର ପରିଚୟ ଦିଗ୍‌ଦର୍ଶନମାତ୍ରରେ ଲେଖୁଅଛୁଁ । ବିରାଟପର୍ବର ସର୍ବାବସାନ ବୈବାହିକ ଉପପର୍ବ ପାଠରେ ଉତ୍ତରଙ୍କ ବିବାହ ସ୍ଥଳରେ ଏ ମହାଶୟ ହୁତ ଅଗ୍ନିଙ୍କର

(୧) ସ୍ତ୍ରୀଧର୍ମିଣ୍ୟବିରାତ୍ରେୟୀ ମଳିନୀ ପୁଷ୍ପବତ୍ୟପି— ଅମର ।

(୨) ଚତୁର୍ଥ ଦିନେ ଯେ ଯାନ୍ତି ମୂର୍ଖ ଶିର ପାଶ ।
ଗୋହତ୍ୟା ବ୍ରହ୍ମହତ୍ୟା ମାତୃହରଣ ଦୋଷ ।
ଶୁଦ୍ଧସ୍ନାନ କରନ୍ତେ ସ୍ତ୍ରିୟ ପଞ୍ଚମ ଦିବସେ ।
ସେ ଦିନେ ଯିବେ ପୁରୁଷେ ସ୍ତ୍ରୀୟଙ୍କର ପାଶେ ।
ନାନା ଧର୍ମ ନିନ୍ଦ୍ୟା ପିତୃନିନ୍ଦ୍ୟା ଯଜ୍ଞ ଆଦି କରି ।
ସମସ୍ତ ନିତ୍ୟ ତାରେ ହୋଇବ ବ୍ରତଚ୍ଛିଦ୍ର ।
ପଞ୍ଚମ ଦିନୁ ଯେ ସଙ୍ଗମ ପରିଯନ୍ତେ ।
ଯେବଣ ଜନ ନ ଯାନ୍ତି ଦୋଷ ଲୋପ ଅର୍ଥେ ।
ସେ ଶୋଣିତ ପାନ କରନ୍ତି ତା ପିତୃଲୋକେ ।
ଏମନ ଅଛନ୍ତି ଧର୍ମଶାସ୍ତ୍ର ବାକ୍ୟେ । ଇତ୍ୟାଦି । ଆ. ପ.

ଜ୍ୱାଳାଜାଳ ସମୁତ୍‌ଥାନର ନିୟମ ଏବଂ ତଦ୍ଧିମ୍ବ କେଉଁ ଅଙ୍ଗରେ ଆଦ୍ଧତପାତ ହେଲେ କି ଫଳ ହୁଏ, ଇତ୍ୟାଦି ସମ୍ବନ୍ଧରେ ଅନେକଗୁଡ଼ିଏ କଥା ଲେଖିଯାଇ ଅଛନ୍ତି । ଏ ସବୁ ତଥ୍ୟ ମୂଳ ପାଠରେ ନାହିଁ । କିନ୍ତୁ ଅନୁଭବବୈଭବରୁ କିମ୍ବା ପଣ୍ଡିତ ବ୍ରାହ୍ମଣ ସମାଜର ସହବାସ ସୁଯୋଗରୁ ଏତାଦୃଶ ସୂକ୍ଷ୍ମ ବ୍ୟୁତ୍ପତ୍ତି ବା ଜ୍ଞାନ ଲାଭ କରିପାରି ଥିବାର ଜଣାଯାଏ । ଏ ସ୍ଥଳରେ ଏ ମହାଶୟ ସାକ୍ଷାତ୍ ବୈଦିକବିଧାନଜ୍ଞ କର୍ମକାଣ୍ଡପାରଦର୍ଶୀ ବ୍ରାହ୍ମଣଙ୍କର ସାରସ୍ୱତ ବିଭୂତିରେ ବିରାଜମାନ ଥିଲା ପରି ପ୍ରତୀୟମାନ ହେଉ ଅଛନ୍ତି । ବିରାଟ ନଗରରେ ଦ୍ରୌପଦୀ ଦେବୀ ମାତ କୀଚକର ଘୋର ଉପଦ୍ରବ ଯୁଧିଷ୍ଠିରଙ୍କୁ ଜଣାଇବା ନିମନ୍ତେ ପ୍ରଚ୍ଛନ୍ନବେଶରେ ରାତ୍ରି ସମୟରେ ଯାଇଥିବା ସନ୍ଦର୍ଭରେ ଉଲ୍ଲୁକ ବିଦ୍ୟାରୁ(୧) ପ୍ରଭାବରୁ ଯାଇ ପାରିଥିଲେ ବୋଲି କହନ୍ତି । ମୂଳଗ୍ରନ୍ଥରେ ତ ଏହାର କୌଣସି କଥା ନାହିଁ । ଏହା ଏହାଙ୍କର ଅନୁଭୂତ ବା ଜ୍ଞାତ ଔପୟିକ ଉପାୟର କଳ୍ପନା ହୋଇପାରେ । ଏଥିରୁ କଣ ଅନୁମାନ କରାଯାଇ ନ ପାରେ ଯେ, ଏ ମହୋଦୟ ଏଭଳି କେତେକ ତନ୍ତ୍ରଶାସ୍ତ୍ରୋକ୍ତ ନିରପାୟ ଉପାୟମାନ ମଧ୍ୟ ଜାଣୁଥିଲେ ? ଅନୁମାନତଃ କହିପାରୁଁ, ସାରଳାଦାସ କିଛି ଭୂତ ପ୍ରେତାଦିର ଆବେଶନ, ବନ୍ଧନ, ମାରଣ ପ୍ରଭୃତି ଭୂତଚିକିତ୍ସା ଓ ତାନ୍ତ୍ରିକ ଉପାୟମାନ ସୁଦ୍ଧା ଅବଗତ ଥିଲେ । ଏହାର ବିଶେଷ ପ୍ରମାଣସ୍ୱରୂପ ଉଦ୍‌ଯୋଗ ପର୍ବରେ ଦୁର୍ଯ୍ୟୋଧନ-ହନୁମନ୍ତ ସମ୍ବାଦରେ ଭୂତପ୍ରକ୍ରିୟାର ବଶୀକରଣାଦିର କ୍ରିୟାମାନ ଲେଖାଥିବାର ଦେଖା-ଯାଏ । ଏହି କ୍ରିୟାକଳାପରେ ସଜ୍ଜନମାନେ (ଏମାନେ ପ୍ରଧାନ ଗୁଣିଆ ବୋଲି ପ୍ରଖ୍ୟାତ) ନିପୁଣ ଥିବାର ମଧ୍ୟ କହି ଅଛନ୍ତି । ପ୍ରଥମତଃ ଭୂତମାନଙ୍କୁ ମୁଦ୍ରାରେ ମୁଦ୍ରିତ କରିବା ଅର୍ଥାତ୍ ମୁଦ୍ରା ପକାଇ ବାନ୍ଧିବା କିମ୍ବା ସମନ୍ତ୍ରକ ଜାଲ ବିସ୍ତାର କରି ବାନ୍ଧିବା ତା ପରେ ଲୌହକୀଲକରେ କୀଳଣ କରିବା କିମ୍ବା କିଳିବା ଏବଂ ଭୂତମାନଙ୍କୁ ସ୍ୱବଶରେ ରଖି ସେମାନଙ୍କଦ୍ୱାରା ଆପଣାର ଅନ୍ୟାନ୍ୟ କାର୍ଯ୍ୟମାନ କରାଇନେବା ପ୍ରଭୃତି ବିଷୟ ଲେଖି ଅଛନ୍ତି । (୨) ଏ କବି ଭୂତବିଦ୍ୟା ପରି ଗାରୁଡ଼ିବିଦ୍ୟା ସୁଦ୍ଧା ଅବଗତ ଥିବାର ଅନୁମାନତଃ ଜଣାଯାଏ । ଗାରୁଡ଼ି ବିଦ୍ୟାରେ

---

(୧) ଯେବଣ ଉଲ୍ଲୁକ ବିଦ୍ୟା ବ୍ୟାସ ଦେଇଛନ୍ତି ।
ସେ ବିଦ୍ୟାର ବଳେ ଦେବୀ ଚଳେ ନିଶା ସ୍ୱନ୍ତ । ଉ. ପ. ୮୩ ପୃ:

(୨) ଉ. ପ. ୬୬—୬୭ ପୃଷ୍ଠା ଦେଖନ୍ତୁ ।

ମଧ୍ୟ ଗୋରକ୍ଷନାଥ ପ୍ରଭୃତି ଖୁବ୍ ପ୍ରସିଦ୍ଧି ଲାଭ କରିଥିଲେ । ଆମ୍ଭମାନଙ୍କର ଏହି ଭାରତ କବି ଅନେକ ସ୍ଥଳରେ ମୂଳଗ୍ରନ୍ଥରେ ଅନୁକ୍ତତା ସତ୍ତ୍ୱେ ସେହି ମତ୍ସ୍ୟେନ୍ଦ୍ର-ନାଥ ଶିଷ୍ୟ ଗୋରକ୍ଷନାଥଙ୍କର ନାମ ଓ ମହିମା ପୁନଃ ପୁନଃ ଉଦ୍‌ଘୋଷ କରି ଆସି ଅଛନ୍ତି । ସୁତରାଂ ବିରାଟପର୍ବରେ ଶମୀକୋଟରନିହିତ ଶର ଶରାସନାଦିର ଆହରଣ ସମୟରେ କାଳସର୍ପ-ଦଷ୍ଟ ବୈରାଟିଙ୍କର ଦୁର୍ବିସହ ବିଷଝାଡ଼ଣକୁ ଅର୍ଜୁନ ଗୋରକ୍ଷନାମ ଉଚ୍ଚାରଣପୂର୍ବକ ନିଷ୍ପନ୍ନ କରିଥିବାର ଲେଖି ଅଛନ୍ତି । (୧) ଏଥିରୁ ଅନୁମାନ କରାଯାଏ ଦାସ ମହାଶୟ ଗୋରକ୍ଷନାଥଙ୍କର ଦୈଶିକୋପଦେଶକ୍ରମ କିଛି କିଛି ଅବଗତ ଥିଲେ ଏବଂ ତନ୍ତ୍ରପନ୍ଥାନୁଗତ ଗାରୁଡ଼କ୍ରମରେ ବିଷଜାରଣ ଝାଡ଼ଣରୀତି ମଧ୍ୟ ଜାଣି ପାରିଥିଲେ । ଅପିଚ ବିରାଟପର୍ବରେ ବର୍ଣ୍ଣିତ (୨) ସ୍ଥୂଳ ଋଷି ଓ ଇନ୍ଦ୍ରଙ୍କ ବିବାଦ ବିସମ୍ବାଦ ପ୍ରସ୍ତାବରେ ତାହାଙ୍କ ପୂଝ ଦୁହେଁ ଋଷିଙ୍କ ଦେହରେ ସୂକ୍ଷ୍ମଶରୀରଯୋଗେ ପ୍ରବେଶ କରି ଅତ୍ୟାଚାର କରିଥିବାର କଳ୍ପିତ ବିଷୟ ସଂସ୍ଥାନଟି ସମ୍ୟକ୍ ପରିଶୀଳନ କରି ଗଲେ ବୋଧହୁଏ, ଏହି ଦୈବିକ ବଳପ୍ରାପ୍ତ କବି ପରକାୟା ପ୍ରବେଶ ବିଦ୍ୟାର କ୍ରମ କିଛି କିଛି ଅବଶ୍ୟ ଜାଣି ପାରିଥିଲେ । ତାହା ନ ହେଲେ ମୂଳଗ୍ରନ୍ଥରେ ଅନୁକ୍ତ ଏପରି ଗୋଟିଏ ପ୍ରସ୍ତାବର ଉତ୍ଥାପନ କରି କପରି ଅବା ତତ୍‌ସମ୍ବନ୍ଧରେ କଳ୍ପିତ ସଙ୍ଗତ ଉତ୍ତର ପ୍ରଦାନ କରି ପାରିଥାନ୍ତେ ? ସେ ନିଜେ ଦେବୀଙ୍କ ପ୍ରସାଦରୁ ପ୍ରୋକ୍ତ ବିଦ୍ୟାର କ୍ରମ ଜାଣୁଥିବେ, ନଚେତ୍ ତାଦୃଶ ପ୍ରକ୍ରିୟାକୁଶଳ ତାତ୍କାଳିକ ତାନ୍ତ୍ରିକମାନଙ୍କର ସହବାସରୁ ତଦ୍ରୂପ ଘଟନାସମୂହ ଶ୍ରବଣରେ ସମ୍ପୂର୍ଣ୍ଣ ଅଭ୍ୟସ୍ତ ଥିବେ । ବର୍ତ୍ତମାନ ସମୟରେ ଏ ଭଳି ପ୍ରକ୍ରିୟା ସମ୍ପୂର୍ଣ୍ଣ ଅନ୍ତର୍ହିତ ବା ବିଲୁପ୍ତ ହୋଇଥିଲେ ସୁଦ୍ଧା ଏହାଙ୍କ ସମୟକୁ ଉତ୍କଳରେ ସେ ବିଦ୍ୟାର ଏକାନ୍ତ ଅଭାବ ନ ଥିଲା । ତାତ୍କାଳିକ

---

(୧) ମହାପଣ୍ଡିତ ଉତ୍ତର ନ ଜାଣଇ ବିଦ୍ୟା ।
ଗୋରେକ୍ଷ ବଚନେ ଯେ ପରମଯୋଗସିଦ୍ଧା ।
× × × ×
ସପତ ଋଷି ଯେ ମୋତେ ଦେଇଥିଲେ ବର ।
ଆରେ ରେ ବିଷମ ଘାଆ ଅନ୍ତରୀକ୍ଷେ ମର ।
ଏହି ରୂପରେ ଅର୍ଜୁନ ଝାଡ଼ିଲା ଗରଳ ।
ସାଷ୍ଟମ ହୋଇ ବସିଲା ସୁଦେଷ୍ଣାର ବାଳ । ଭ. ପ.

(୨) ଭ. ପ. ୫୦—୫୧ ପୃ.

ଏବଂ ତାହାର ଅନନ୍ତରପ୍ରକୃଷ୍ଟ ସମୟର ଐତିହାସିକ ଘଟନାମାନ ତାହାର ପ୍ରତ୍ୟକ୍ଷ ପ୍ରମାଣସ୍ୱରୂପ ସାକ୍ଷ ପ୍ରଦାନ କରୁଅଛି । ଯେତେବେଳେ ତାନ୍ତ୍ରିକମତମତସ୍ଥ ଶାସ୍ତ୍ରବିତ୍ ବ୍ରାହ୍ମଣମାନେ ଏତାଦୃଶ ଅତ୍ୟାଶ୍ଚର୍ଯ୍ୟଜନକ ଅସାଧାରଣ କାର୍ଯ୍ୟମାନ ସମ୍ପନ୍ନ କରି ନେଇ ପାରୁଥିଲେ ।

ଏ ମହାଶୟଙ୍କର କେତେଗୋଟି ଉକ୍ତି ଏବଂ ପ୍ରଦର୍ଶିତ ଭ୍ରମ ଉତ୍କଳରେ ଅଦ୍ୟାପି ବିଧିବାକ୍ୟ ପ୍ରାୟ ସମାଦୃତ ଓ ପ୍ରଚଳିତ ହେଉଅଛି । ଯିମିତି ଖେଳରୁ ମହାଭାରତ— ଏହାର କୌଣସି ପ୍ରକାର ତାଦୃଶ ପ୍ରାମାଣ୍ୟ ଓ ଯଥାର୍ଥ୍ୟ ମୂଳ-ଗ୍ରନ୍ଥରେ ଅଭିହିତ ନ ଥିଲେ ସୁଦ୍ଧା ଏ କବିଙ୍କ ପ୍ରଦର୍ଶିତ ମତ ଅନୁସାରେ ସମଗ୍ର ଉତ୍କଳ ପ୍ରୋକ୍ତ ସୂକ୍ତିକି ଗୋଟିଏ ପ୍ରବଚନରୂପେ ସାଦରେ ଧାର୍ଯ୍ୟ କରି ଅଛନ୍ତି । ଯାହାଙ୍କର ବଚନ ସମଗ୍ର ଦେଶରେ ମହାବାକ୍ୟସ୍ୱରୂପ ଗୃହୀତ, ସେ ଦେଶର ଜଣେ ଉପଦେଶକ ଏହା ବୋଲିବା ଅସମୀଚୀନ ନୁହେ । ଅଥଚ ଯେ କି ବହୁମୃତ-ଦାର, ତଦୋଷ ପରିହାରାର୍ଥ ଆଗେ ଶାହାଡ଼ା ବୃକ୍ଷକୁ ବିବାହ ହେଲେ ପରେ ପୁନଶ୍ଚ ଉଦ୍ବାହ୍ୟ-କନ୍ୟାର ପାଣିଗ୍ରହଣ କରିବାର ଭ୍ରମ ମତିମାନ ସାରଳା-ଦାସ ଆଦିପର୍ବଗତ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ବିବାହ ସ୍ଥଳରେ ବିବୃତ କରି ଅଛନ୍ତି । ତଦବଧି ଏହା ଏ ଦେଶରେ ପ୍ରଚଳିତ ହୋଇ ଆସୁଅଛି । ଏତଦ୍ଦ୍ୱାରା ସାରଳାଦାସଙ୍କ ମତ ଧର୍ମଶାସ୍ତ୍ରର ଆଦେଶ ପ୍ରାୟ ଗୃହୀତ ହୋଇ ଯାଇଅଛି ବୋଲିବାକୁ ହେବ । ଅତଏବ ସେ ଉତ୍କଳର ଜଣେ ପ୍ରାଚୀନ ଦେଶିକକଳ୍ପ ବୋଲିଯାଇ ପାରନ୍ତି । ମଧ୍ୟପର୍ବରେ ଚନ୍ଦ୍ରାବତୀ ପରିଣୟ ପ୍ରକରଣରେ ସେ ଯାହା କଟକମାସୁରର ପ୍ରସ୍ତାବରେ ବିବାହରେ କଟକମାରି ନିର୍ଦ୍ଦେଶ କରି ଅଛନ୍ତି, ତାହା ସୁଦ୍ଧା ସଂପ୍ରତି ଉତ୍କଳର ଦ୍ୱିଜାତିତର ବା ଅଧସ୍ତନ ସମାଜରେ ଚଳି ଆସୁଅଛି । ଅତଏବ ଏହାଙ୍କୁ ଏକ ପ୍ରକାର ବିଧିପ୍ରବର୍ତ୍ତକ କହିବା ଅସଙ୍ଗତ ହେବନାହିଁ । ଔନ୍ନତ୍ୟ ଓ ଔଦ୍ଧତ୍ୟରେ ଏକାନ୍ତ ଉନ୍ନତ ପାପକଞ୍ଚୁକ-ଭଞ୍ଜକ ଦୁଷ୍ଟ ଅଶିଷ୍ଟ ଲୋକେ ପବିତ୍ର-ଚରିତ୍ର ଲୋକପୂଜ୍ୟ ମହଜ୍ଜନମାନଙ୍କର ଯେପରି ଅନିଷ୍ଟାଚରଣ ଓ ଅପମାନ-ଦାନରେ ସତତ ବ୍ୟାପୃତ ରହିଥାନ୍ତି, ମତିମାନ୍ ଦାସ କବି ମହୋଦୟ ସେ ସବୁ ଅନେକଦା ଦେଖି ହୃଦୟରେ ବହୁ ଦୁଃସହ ଦୁଃଖ ଭୋଗ କରି ସେମାନଙ୍କର ଗର୍ହଣ ଉଦ୍ଦେଶ୍ୟରେ ପ୍ରସ୍ତାବତଃ ମର୍ମଗର୍ଭିକ କଥା ଭଲ ରଚନା କରି ପାରୁଥିଲେ । ଏହାର ନିଦର୍ଶନ ଗ୍ରନ୍ଥ ମଧ୍ୟରେ ବହୁ ସ୍ଥଳରେ ଦେଖା ଯାଉଅଛି ସତ୍ୟ, ତଥାପି ଏହି ଚିଡ଼-ପଟୁତା ପ୍ରଧାନତଃ ଉଦ୍ଯୋଗପର୍ବରେ ଶ୍ରୀକୃଷ୍ଣଙ୍କ

ଦୌତ୍ୟସାଧନାବସରରେ ସମ୍ପୂର୍ଣ୍ଣତଃ ପ୍ରକାଶିତ ହୋଇଅଛି । ଅତ ଚରିତସଂସ୍ଥାନ ମୌଳିକ ଚରିତ ଅପେକ୍ଷା ସମ୍ପୂର୍ଣ୍ଣ ଭିନ୍ନ ପ୍ରକାର । ଶ୍ରୀକୃଷ୍ଣଙ୍କୁ ବନ୍ଧନ ସମସ୍ତ ସଭାଧଃସ୍ଥ କରିଥିବା ବଳ-ମଦ-ମତ୍ତ ଦୁର୍ଯ୍ୟୋଧନାଦିଙ୍କର ଔଦ୍ଧତ୍ୟ ଓ ଦୁର୍ନୀତିର ପରାକାଷ୍ଠା ପ୍ରଦର୍ଶନରେ ତତ୍କାଳୀନ ଦୁଷ୍ଟ ନଷ୍ଟ ଲୋକଙ୍କ ଦୁରାଚରଣର ପରିଚୟ ପ୍ରକାଶ କରି ଅଛନ୍ତି ।

ଅଭିଜ୍ଞ ପାଠକମାନେ ! ବିଶ୍ୱାସ କରନ୍ତୁ ଯେ ଏତାଦୃଶସମୟରେ ଅଷ୍ଟାଦଶ ପର୍ବ ମଧ୍ୟରେ ଗଭୀର ଅନୁସନ୍ଧାନ କଲେ ଆମ୍ଭମାନଙ୍କର ଆଦିମ ମହାକବିଙ୍କର ନାନା ପ୍ରକାର ଅଭିଜ୍ଞତାର ପରିଚୟ ପାଇ ପାରିବେ । ଗ୍ରନ୍ଥବିସ୍ତାର ଭୟରୁ କେବଳ ଆମ୍ଭେ ଏତଠାରୁ ବିରତ ହେଉଅଛୁଁ । ଆଜ ଗୋଟିଏ ପ୍ରସ୍ତାବ ମାତ୍ର କହି ଏହି ପ୍ରକରଣର ଉପସଂହାର କରିବୁଁ । କୌଶଳ-ପେଶଳ ପାଣ୍ଡବମାନେ ଜତୁଗୃହରୁ ବହିର୍ଗତ ହୋଇ ଜାହ୍ନବୀ ଉତ୍ତରଣପୂର୍ବକ ଭାରତବର୍ଷର ଉତ୍ତର ପଶ୍ଚିମାଞ୍ଚଳକୁ ଯାଇଥିଲେ ବୋଲି ବ୍ୟାସ ମୁନିଙ୍କ ମତ; କିନ୍ତୁ ଦାସ ମୁନି ଏହି ସନ୍ଦର୍ଭରେ ଜତୁଗୃହୋତ୍ତୀର୍ଣ୍ଣ ପାଣ୍ଡବମାନେ ବନଭ୍ରମଣସମୟରେ ନାନା ଦେଶରେ ଅବସ୍ଥାନ କଲା ପରେ ଓଡ୍ଡାଦ ଶିବପୁରକୁ ଯାଇଥିଲେ ବୋଲି, ଜନନୀ-ହିତାର୍ଥ ଭୀମସେନଙ୍କୁ ସେହିଠାରେ ରଖାଇ ଯୁଧିଷ୍ଠିର ଅନ୍ୟ ଭ୍ରାତୃମାନଙ୍କସହ ଗୋଦାବରୀ ତୀର୍ଥକୁ ପ୍ରସ୍ଥାନ କରିଥିଲେ ବୋଲି ଲେଖି ଅଛନ୍ତି । କେବଳ ଏ ସ୍ଥଳରେ ନୁହେ, ଗ୍ରନ୍ଥ ମଧ୍ୟରେ ଅନେକସ୍ଥ ପ୍ରସଙ୍ଗାନ୍ତର ଲଗାଇ ଓଡ଼ାଦର ନାମ ଅସକୃତ୍ ପ୍ରକାଶ କରି ଅଛନ୍ତି । ଓଡ୍ଡାଦ ନାମକ ସ୍ଥାନ ଉତ୍କଳର ବିଶେଷତଃ ଗଞ୍ଜାମର ଦକ୍ଷିଣରେ ଗୋଦାବରୀର ଅନତିଦୂରରେ ଅଦ୍ୟାପି ପ୍ରୋଲ୍ ନାମରେ ନାମିତ ଅଛି । ବୋଧହୁଏ, ଏହି ଓଡ୍ଡାଦ ସ୍ଥାନ କବିଙ୍କର ଅନୁଭୂତ ବା ପରିଚିତ ଥିଲା । ଉତ୍କଳର ଏତେଦୂର ଦକ୍ଷିଣରେ ଅବସ୍ଥିତ ଓଡ୍ଡାଦର ପରିଚୟ ଏ ମହାଶୟ କିପରି ପାଇଲେ ? ଏହି ପ୍ରଶ୍ନ ହେବା ଅନୁଚିତ ନୁହେ । ଏହି ତୈଲଙ୍ଗୀୟ ଦେଶବିଦେଶର ନାମ ଅସକୃତ୍ ଉଦ୍‌ଘୋଷ କରି ଥିବାରୁ, ତଥାଚ ଅସ୍ଥାନରେ ସେ ସ୍ଥାନରୁ ଅଭୀମସେନ ଯୁଧିଷ୍ଠିରାଦି ଚତୁଷ୍ଟୟ ଗୋଦାବରୀକୁ ଯାଇଥିଲେ ବୋଲି କହିଥିବାରୁ ଅନୁମିତ ହୁଏ, ଏ ମହାଶୟ ସମୟରେ ଗୋଦାବରୀ ସ୍ନାନାର୍ଥ ଦକ୍ଷିଣ ଦେଶକୁ ଯାଇଥିଲେ ଏବଂ ତଦ୍ଦେଶ ପ୍ରବର୍ତ୍ତିତ ଓ ପ୍ରଥିତ ଓଡ଼ାଦ ନାମ ଓ ତଦ୍ଦେଶର ତାତ୍କାଳିକ ରମଣୀୟତା ମନେ ରଖିଥିଲେ । ନତୁବା ଦକ୍ଷିଣବିସ୍ତୃ ଶାଙ୍ଗିତା ଉତ୍କଳସମ୍ରାଟ ଶ୍ରୀ କପିଳେନ୍ଦ୍ର ଦେବଙ୍କର ଏ ମହାଶୟ ସମସାମୟିକ

ଥିବାରୁ ତଦୀୟ ସୈନ୍ୟଯାତ୍ରାର ଗନ୍ତବ୍ୟ ମାର୍ଗରେ ଅବସ୍ଥିତ ଓଡ଼ାଗଡ଼ର ପରିଚୟ ପାଇଥିଲେ । କପିଳେନ୍ଦ୍ରଦେବ ଦକ୍ଷିଣରେ କାଞ୍ଚୀ ପ୍ରଭୃତି ଦେଶ ଜୟ କରି ସ୍ୱକୀୟ ସାମ୍ରାଜ୍ୟ ବଢ଼ାଇଥିବା ଇତିହାସମାନଙ୍କରେ ପ୍ରତିପାଦିତ ଅଛି । ଯେତେବେଳେ କପିଳେନ୍ଦ୍ର ଦେବ (କିମ୍ବା ତତ୍ପରବର୍ତ୍ତୀ ପୁରୁଷୋତ୍ତମ ଦେବ) ଦକ୍ଷିଣ ଦିଗ୍‌ବିଜୟରେ ବ୍ୟାପୃତ, ତଦା ହୋତାଙ୍କ ବୃତ୍ତିସମ୍ପନ୍ନ, ଅସ୍ଥିରଚିତ୍ତବୟସ୍କ ଏହି କବି ମହାଶୟ ଉତ୍କଳ ସମ୍ରାଟଙ୍କ ଅଭିନିର୍ଯ୍ୟାଣର ଅନୁଗମନ କରିଥିଲେ; କିମ୍ବା ତଦ୍‌ଗତ ତଦୀୟ ବଂଶସ୍ଥ ଲୋକଙ୍କ ମୁଖରୁ ପ୍ରୋକ୍ତ ସ୍ଥାନର ତାତ୍କାଳିକ ଉତ୍କୃଷ୍ଟତା ଅବଗତ ଥିଲେ । ସୁତରାଂ ଏ ସ୍ଥଳରେ ତତ୍ରତ୍ୟ ଚଣ୍ଡାଳ ଓ ବ୍ରାହ୍ମଣ-ମାନଙ୍କର କଳ୍ପିତ ଯୁଦ୍ଧଘଟଣାରେ ମହାବଳପରାକ୍ରାନ୍ତ କପିଳେନ୍ଦ୍ର ଦେବଙ୍କର ଯୁଦ୍ଧକ୍ରମ ବ୍ୟଞ୍ଜିତ କରି ଅଛନ୍ତି । ସେହିଠାରେ ଗ୍ରାମକର୍ତ୍ତା ଗ୍ରାମସେବକଙ୍କର ପ୍ରାପ୍ତ ପଦବୀ (ଉପାଧି) କାଳବର ଶବ୍ଦଟି ଉତ୍କଳ ସମ୍ରାଟଙ୍କର କାଳବର ନାମଜନିତ ଅନନ୍ୟଲଭ୍ୟ ପ୍ରୌଢ଼ିକୁ ସୂଚିତ କରୁଅଛି । ଏହି ସନ୍ଦର୍ଭରେ ବୋଧହୁଏ କବି ମହୋଦୟ ଶତ୍ରୁଦୁର୍ଦ୍ଧର୍ଷ କପିଳେନ୍ଦ୍ର ଦେବଙ୍କଠାରେ ଗ୍ରାମତ୍ୱାରୋପଣ କରି ଆଶୟାର୍ଥରେ ଏ ସବୁ ଲେଖିଯାଇ ଅଛନ୍ତି । ଏ କବି ମହାଶୟ ଏପରି ଆଶୟାର୍ଥରେ ଅନେକତ୍ର ବୀରଚରିତର ଚିତ୍ରଣ କରି ଅଛନ୍ତି । ଏହାର ବିଶେଷ ପ୍ରମାଣ ସଙ୍ଗ-ପର୍ବରେ ଅନେକତ୍ର ଦେଖାଯାଏ । ତହିଁ କଳ୍ପିତ ବର୍ଣ୍ଣନାରେ ବର୍ଣ୍ଣିତ ଜେନାବଳି ନଗରର ଅଧିପତି ଜୟସିଂହଙ୍କର ଔଦ୍ଧତ୍ୟ ବର୍ଣ୍ଣନା ପ୍ରଭୃତି ରାଜସ୍ଥାନର ସିଂହୋପାଧିକ କେତେକ ବୀରପୁରୁଷମାନଙ୍କର ଚେଷ୍ଟାନୁସରଣରେ ଆଶୟାର୍ଥରେ ଲେଖିଥିବାର ଜଣାଯାଉ ଅଛି । ଇତ୍ୟାଦି ।

---

## ସଙ୍କୀର୍ଣ୍ଣ ଭାଗ

ଅଭିଜ୍ଞ ପାଠକଗଣ! ଏହି ଭାରତ ଦର୍ପଣ ପ୍ରବନ୍ଧର ପ୍ରଧାନ ଭାଗଦ୍ୱୟର ବିସ୍ତର କଥଞ୍ଚିତ୍ ଶେଷ କରିଅଛୁଁ । କଥଞ୍ଚିତ୍ କହିବାର କାରଣ ଏହି, ଆମ୍ଭେ ଯାଦୃଶ କ୍ରମରେ ବିଷୟ ସଂସ୍ଥାନମାନ ସନ୍ନିବେଶ କରିବାର ସଂକଳ୍ପ କରିଥିଲୁଁ, ଅପିଚ ଆପାତତଃ ଉଭୟ ମହାଭାରତ ଗ୍ରନ୍ଥ ଆମୂଳାନ୍ତ ଆଲୋଡ଼ନ ଓ ପରିଶୀଳନ କରି ଯାବତ୍ ପରିମିତ ଜ୍ଞାତବ୍ୟ ସାମଗ୍ରୀ ସମ୍ପାଦନ କରିପାରି ସଞ୍ଚିତ ରଖିଥିଲୁଁ, ସେଥିରୁ ଅନେକ ଉଦ୍‌ବୃତ୍ତ ରହିଗଲା । ଗ୍ରନ୍ଥାରମ୍ଭରୁ ଆମ୍ଭେ କହି ଆସିଅଛୁଁ କି,

ଏହାର ଅଖଣ୍ଡ ପାଠରେ ଯେ ପାଠକମାନଙ୍କର କିଞ୍ଚିତ୍ ଘୈର୍ଯ୍ୟ ଓ ଶୃଙ୍ଖଳତା ଆବଶ୍ୟକ ପଡ଼ିବ, ସେଥିପାଇଁ ସେମାନେ ଭୀତର ନ ହୋଇ ଅକୁଣ୍ଠପାଠନୋତ୍କଣ୍ଠାସହ କ୍ରମସହିଷ୍ଣୁତା ଅବଲମ୍ବନ କରିବେ । ମାତ୍ର ଫଳତଃ ଅବଗତ ହୋଇ ପାରିଲୁଁ, କେତେକ ପାଠକ ବିଷୟୀଭୂତ ଗୁରୁତର ମହତ୍ତ୍ୱକୁ ସମ୍ୟକ୍ ହୃଦୟଙ୍ଗମ କରି ନ ପାରି ଅଯଥା ବିସ୍ତୃତିରେ ପ୍ରବନ୍ଧକୁ ଅତିକାୟ ମନେ କରି ଖିନ୍ନ ହୋଇ ପଡ଼ିଲେ; ଗ୍ରନ୍ଥ ମଧ୍ୟରେ ନାନା ବିଷୟର ଆବଶ୍ୟକ ଭୂରି-ଭାଷଣ-ଭୂଷଣକୁ ଦୂଷଣ ପ୍ରାୟ ମନେ କରିବାକୁ ଶଙ୍କିତ ହେଲେ ନାହିଁ । ଆଉ କେତେକ ମହାତ୍ମା ପ୍ରକୃତ କଚଡ଼ା-ମତ ଏହି ପ୍ରବନ୍ଧଟି ବହୁମୂଲ୍ୟ ସାହିତ୍ୟ ପତ୍ରିକାରେ ଦୀର୍ଘକାଳ କାହିଁକି ନିବେଶାଧିକାର ସ୍ଥାପନ କରିବ ବୋଲି ଶ୍ରୀମାନ୍ ସମ୍ପାଦକଙ୍କ ପ୍ରତି ପ୍ରଶ୍ନବର୍ଷୀମାନ ହେବାକୁ ଲାଗିଲେ । କିନ୍ତୁ ଉତ୍କଳ-ସାହିତ୍ୟର ପ୍ରତିଷ୍ଠାତା ଓ ମଙ୍ଗଳ ସମ୍ପାଦକ ସମ୍ପାଦକ ମହାଶୟ ଆଉ କାହାର ପର ଚଳକ୍ଷଣଗୁଣଜ୍ଞ ନୁହନ୍ତି, ଏତାଦୃଶ ବା ଅନ୍ୟାଦୃଶ ବୃଥା ବିଶ୍ରିଙ୍କାରେ ତାଙ୍କର ଅଟଳ-ମନୀଷା ବିଚଳିତ ହେବାର ନୁହେ, ସେ ଯାହା କର୍ତ୍ତବ୍ୟ ତାହାହିଁ ସାଧନ କଲେ । ପରନ୍ତୁ ଆମ୍ଭେମାନେ ପ୍ରବନ୍ଧ ପ୍ରତି ଆରୋପିତ ଏହି ଅତିକାୟତ୍ୱ ଓ ଅଯଥା ଦୂଷଣତ୍ୱ ଏବଂ ମହନୀୟ ପ୍ରଶ୍ନପରମ୍ପରା ପ୍ରଖରତ୍ୱରେ କିଞ୍ଚିତ୍ ବିଚଳିତ ହୋଇଗଲୁଁ । ଏଭଳି ପାଠକମାନଙ୍କୁ କୌଣସି ପ୍ରକାର ଗୋଟାଏ ଧନ୍ୟବାଦ ଦେଇ ମନେକଲୁଁ ଯେ, ଯେ କୌଣସି ପ୍ରକାରେ ଗ୍ରନ୍ଥ ଶୀଘ୍ର ସମାପନ ନ କଲେ ଆଉ ମଙ୍ଗଳ ନାହିଁ ।

"ଅପ୍ରତିବୋଧେ ଶ୍ରୋତରି ବକ୍ତୁର୍ବାକ୍ୟଂ
ପ୍ରୟାତି ବୈଫଲ୍ୟଂ ।"

ଏହାହିଁ ସ୍ଥିର କଲୁଁ । "ତଥାପି ହୃଦୟ ବଡ଼ ଦୁଃଖିତ ହେଲା । ଏପରି ସମୟରେ ଗୁଣଗ୍ରହଣକୌତୂହଳୀ ଶ୍ରୀମାନ ମାଳକଣ୍ଠ ଦାଶ, ଏମ୍. ଏ. ମହୋଦୟ ଯଦୃଚ୍ଛାକ୍ରମେ ଆସି ଉପଗତ ହେଲେ । ପ୍ରସ୍ତାବବଶତଃ ସେ ମହାଶୟ ଏହି ପ୍ରବନ୍ଧ ସମ୍ବନ୍ଧରେ ନିଜର ଏକାନ୍ତ ଅନୁକୂଳ ମତ ପ୍ରକାଶ କଲେ । ତେତେବେଳେ ମୁଁ ପୁଣି ଏହି ଦୁଃଖକୁ ହୃଦୟରେ ପ୍ରଚ୍ଛନ୍ନ ଶଲ୍ୟ ପ୍ରାୟ ଅନ୍ତର୍ନିହିତ ନ ରଖି ପ୍ରକାଶ କରିଦେଲି । ସେ ମହାଶୟ କହିଲେ, "ଆପଣ ଯଦି ଏହି ହତଭାଗ୍ୟ ଦେଶର ଏତାଦୃଶ୍ୟ ପାଠକଙ୍କ ସମାଲୋଚନାରେ ଲାଗିବେ, ତାହାହେଲେ ଆଉ କଣ କରି ପାରିବେ ?" ପ୍ରୋକ୍ତ ମହାଶୟଙ୍କର ଇତ୍ୟାକାରକ ଅନେକଗୁଡ଼ିଏ ଅମୋଘ କଥାକୁ ଉପଦେଶ ପ୍ରାୟ ଗ୍ରହଣ କରିବା ପାଇଁ "ଶିଶୁର୍ବାଶିଷ୍ୟା ବା ଯଦସି ମମତତ୍ତ୍ୱିଷ୍ଟୁତ୍ତ

ତଥା । ବଣ୍ଡୁଭେରୁତ୍କର୍ଷ ସ୍ୱପ୍ନିତ୍ତୁ ମମ ଭକ୍ତ୍ୟଂ ଦ୍ରୁତପୃତ । ଶିଶୁଭ୍ୟଂ ସ୍ୱୈଣଂ ବା ଭବତ୍ତୁ ତନ୍ନୁ ବନ୍ଦ୍ୟାସି ଜଗତଃ । (ଗୃଣାଃ ପୂଜାସ୍ଥାନଂ ଗୁଣିଷୁ ନଚ ଲିଙ୍ଗ ନଚବୟଃ ।" ଏହି ମହାବାକ୍ୟକୁ ସ୍ମରଣ କରି ଆଜ ପଶ୍ଚାତ୍ପଦ ହେଲୁ ନାହିଁ ।) ତତ୍ପ୍ରଭୃତ ବନ୍ଧୁଙ୍କ ବାକ୍ୟରେ ଏବଂ ଗୁଣଜ୍ଞମାନେ ପ୍ରୀପ୍ରମାଣ-ମାନସ ସମ୍ପାଦକଙ୍କର କାଳୋଚିତ ସମାଶ୍ୱାସନରେ ସାହସୋତ୍ସାହ-ସମ୍ପନ୍ନ ହୋଇ କର୍ତ୍ତବ୍ୟପରାୟଣତାରେ ବ୍ୟସ୍ତ ହେଲୁଁ । ବିଷୟଗୁଡ଼ିକୁ ସମ୍ପୂର୍ଣ୍ଣତଃ ତ୍ୟାଗ କଲେ ଗ୍ରନ୍ଥ ବିକଳାଙ୍ଗ ହୋଇ ପଡ଼ିବ, ସମଗ୍ର ସନ୍ନିବେଶରେ ଗ୍ରନ୍ଥ ଅତି ବିସ୍ତୃତ ହୋଇଯିବ, ଭାବି ଯାହା ଯାହା ଅତ୍ୟାବଶ୍ୟକ, ସେଗୁଡ଼ିକର ଯଥାଯଥ ବିବୃତ୍ତିରେ କେବଳ ଗ୍ରନ୍ଥକୁ ପ୍ରାୟ ସମାପ୍ତ କରି ଆସିଲୁଁ । ବର୍ତ୍ତମାନ ତଦବଶିଷ୍ଟ ସଂକୀର୍ଣ୍ଣ ଭାଗର କିଞ୍ଚିତ୍ ବିସ୍ତାର କରିବୁଁ । ପାଠକମାନେ ଏହାର ନାମକରଣରୁ ସଙ୍କ୍ଷିପ୍ତ ଉପସ୍ଥାପିଷ୍ୟମାଣ ବିଷୟପରମ୍ପରା ଅବଶ୍ୟ ବୁଝି ପାରିଥିବେ । ଏଥିରୁ ଏକମାତ୍ର ବିଷୟ-ମୂଳକ ଧାରାଳ-ବାକ୍ୟପ୍ରଣାଳୀ କିମ୍ବା ଚରିତ୍ର ଚିତ୍ରଣର ବିସ୍ତୃତ ସନ୍ନିଧାନ ପାଇ ପାରିବେ ନାହିଁ । ଏଥିରେ ପରସ୍ପର ବିଜାତୀୟ ଅନନ୍ତପ୍ରକାର କ୍ଷୁଦ୍ରବିଷୟକ ବିବରଣମାନ ସନ୍ନିବେଶିତ କରାଯିବ । ଅତଏବ ଏହାର ନାମ ହେଲା, ସଂକୀର୍ଣ୍ଣ ଭାଗ ବା ମିଶ୍ରିତ ଭାଗ । ଆମ୍ଭେ ଯେତେଦୂର ପାରୁଁ ବା ଯେତେଦୂର ଅବସର ଓ ସୁବିଧା ପାଉଁ, ଅପିଚ ବହୁ ବିସ୍ତୃତକାଠର ବହୁ ପଠନ ଶ୍ରମରେ ଅସହିଷ୍ଣୁ ପାଠକ ମହାଶୟଙ୍କର କଣ୍ଟକିତାକ୍ଷରେ ଯେପରି ପତିତ ନ ହେଉ ତଦନୁକ୍ରମରେ କେବଳ ପୂର୍ବୋକ୍ତ ସନ୍ଦର୍ଭମାନଙ୍କରୁ ଅବଶିଷ୍ଟ କେତେକ ବିଷୟର ବିସ୍ତର ସଂକ୍ଷିପ୍ତତଃ ଏଥିରେ ମିଳିତ ରଖିବୁଁ ।

ଆମ୍ଭମାନଙ୍କର ଆଦିମ ମହାକବି ମହୋଦୟ ଓଡ଼ିଆର ପ୍ରାଚୀନ ସାରସ୍ୱତ-ବିଭୂତିପେଟିକା ଏହି ପ୍ରକାଣ୍ଡତମ ମହାଭାରତ ଗ୍ରନ୍ଥ ମଧ୍ୟରେ ବହୁତ-ଗୁଡ଼ିଏ କଳ୍ପିତାର୍ଥ ଶବ୍ଦ ପଦ ଚୟ ସନ୍ନିବେଶିତ କରି ରଖିଅଛନ୍ତି । ସେଥିରୁ କେତେକମାତ୍ର ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପିତ କରୁଅଛୁଁ । ତାହାଙ୍କର ମନୁ ସ୍ୱରୂପ ଆଜ କୁରୁବଂଶୀୟମାନଙ୍କର ମହାପୁରୁଷ ଥିବାରୁ ମହାତ୍ମା ଶାନ୍ତନୁ ଓ ପରାଶରଙ୍କୁ ଏ ମହାଶୟ (୧) ଯୁଗମନୁ ନାମରେ ଅଭିହିତ କରି ଅଛନ୍ତି । ସତ୍ୟାଭିରୁଚି ମହାସତ୍ତ୍ୱ ପାଣ୍ଡବମାନେ ଯେତେବେଳେ ଏକଚକ୍ରାପୁରରେ ସ୍ୱସ୍ୱବିତଃ

(୧) ଏହା ଦେଖିକରି ଧାଇଁଲେ ସେ ଶାନ୍ତନୁ ।
ଋଷିଙ୍କ ହସ୍ତ ଧଇଲେ ଯାଇ ଯୁଗମନୁ । ଆ. ପ.

ପରାନ୍ନଭୁଜ୍ଜିଷ୍ଣୁ ନ ଥାଇ ସୁଦ୍ଧା ଦୈବଗତ୍ୟା ଭିକ୍ଷୁକକର୍ମ-ଇଚ୍ଛୁକ ଥିଲେ, ସେତେବେଳେ ସେମାନଙ୍କର ଅନୁଷ୍ଠିତ ଭିକ୍ଷାକ୍ରମକୁ ଚଟଭିକ୍ଷା (୧) ନାମରେ ନିର୍ଦ୍ଦିଷ୍ଟ କରି ଅଛନ୍ତି । ଏହାର କୌଣସି ପ୍ରକାର ଆଂଶିକ ପ୍ରମାଣ ସୁଦ୍ଧା ମୂଳ-ଗ୍ରନ୍ଥରେ ଦେଖାଯାଏ ନାହିଁ । ଏପରି ନାମ କାହିଁକି ଦେଲେ ? ଏହାର କୌଣସି ଅବାରଣ-କାରଣ ଜଣାଯାଉ ନାହିଁ । ତଥାପି କହିବାକୁ ହେବ ଯେ, ଏ ସମ୍ବନ୍ଧରେ କବିଙ୍କ ହୃଦୟରେ କୌଣସି ଏକ ଭାବ ଅବଶ୍ୟ ଜନ୍ମିଥିବ, ସେହି ଭାବର ଅନୁସରଣରେ ଏହି ଭିକ୍ଷାକୁ ଏପରି ନାମରେ ନାମିତ କରି ଅଛନ୍ତି । ନୂତନତ ଏପରି ହୋଇଥାଇ ପାରେ, ଏହି ଦେଶରେ ଅନେକଗୁଡ଼ିଏ କେତେକ ଭିକ୍ଷୁକ-ବ୍ରାହ୍ମଣ ଚର୍ଚ୍ଚାକୃତ ସାହିତ୍ୟରେ ଭିକ୍ଷାଭାର ଧରିଥାନ୍ତି, ଏମାନେ ସାମୟିକ ଭିକ୍ଷୁକ, ସର୍ବଦା ସର୍ବତ୍ର ଯାନ୍ତି ନାହିଁ । ଏମାନଙ୍କର ଉପସ୍ଥିତ ମାତ୍ରକେ ଲୋକେ ଭିକ୍ଷା ଦିଅନ୍ତି, ଏପରି କି, ଯେଉଁ ବ୍ୟକ୍ତି କେବେହେଁ କାହାକୁ କିଛି ଦିଏ ନାହିଁ, ସେ ସୁଦ୍ଧା ଭୟରେ କିମ୍ବା ଭକ୍ତିରେ ଏହାଙ୍କୁ ଭିକ୍ଷା ପ୍ରଦାନ କରିଥାଏ । ବୋଧହୁଏ କବି ମହାଶୟ ଏହି ଭିକ୍ଷାକ୍ରମକୁ ଅନୁସରି ଚଟଭିକ୍ଷା ପଦର ସୃଷ୍ଟି କରିଥିବେ କିମ୍ବା ସାରଳାଦାସଙ୍କ ପ୍ରଦର୍ଶିତ ଚଟଭିକ୍ଷାର ଅନୁସରଣରେ କାଳକ୍ରମେ ଦେଶରେ ଉପର୍ଯ୍ୟୁକ୍ତ ଭିକ୍ଷାକ୍ରମ ପ୍ରଚଳିତ ହୋଇଥିବ । ସୁତରାଂ କବି ମହାଶୟ ଏହି ଭିକ୍ଷାପାଣିକୁ ସ୍ଥାନେ ସ୍ଥାନେ ଚଟଭାର ବୋଲି ମଧ୍ୟ ଲେଖିଅଛନ୍ତି । (୨)

ଗ୍ରନ୍ଥ ମଧ୍ୟରେ ଅନେକ ସ୍ଥଳରେ ଗଙ୍ଗାଙ୍କ ନାମ ଧବଳୀ ଓ ବଳରାମଙ୍କ ନାମ ଧବଳ (୩) ଲେଖାଅଛି । ସମସ୍ତେ ଦେଖୁଅଛନ୍ତି, ଗଙ୍ଗା ସର୍ବଦା ଧବଳବର୍ଣ୍ଣା,

---

(୧) ଚଟଭିକ୍ଷା କାବୁରେ ଅନେକ ଅବଗୁଣ ।
ମିଥ୍ୟା କହିଲେ ରୌରବେ ପଡ଼ଇ ବ୍ରାହ୍ମଣ । ଆ. ପ.

(୨) ଯୁଧିଷ୍ଠିର ସଜରିଥାଇ ଭୀମ ଚଟଭାର ।
ହରିଗୋବିନ୍ଦ (ମୁଣି) ଯେ ଅର୍ଜୁନ କନ୍ଧର । ଆ. ପ.

(୩) ଧର୍ମ ଅଭିଷେକ ହୋନ୍ତି ଶମୀବୃକ୍ଷ ତଳେ ।
ଦିଗପାଳମାନେ ଯେନି ବଜେ ଆଖଣ୍ଡଳେ ॥
ଅଭିଷେକ ଦେଖି ଆସନ୍ତି ଯିବା କି ଧବଳ ।
ବ୍ରହ୍ମା ଇନ୍ଦ୍ର ସଙ୍ଗେ ଦିଗପାଳେ ଛନ୍ତି ମିଳି ॥ ବି. ପ.

ବଳରାମଙ୍କ ପ୍ରତି ଶ୍ରୀକୃଷ୍ଣ ।

ପ୍ରକୃତ ପ୍ରତ୍ୟୟ କମାନୁସାରେ ସୁଦ୍ଧା ଧବଳୀ ଶବ୍ଦଟି ସାଧୁ ଶବ୍ଦ ପ୍ରାପ୍ତ । ବଳସ୍ୱମଙ୍କର "ଶଶାଙ୍କଧବଳଂ ଶ୍ରୀକାମପାଳଂ ଭଜେ" ଇତ୍ୟାକାର ସୂତନଧ୍ୱତ ଶିଷ୍ଟପ୍ରୟୋଗର ଅନୁସରଣରେ କବି ମହାଶୟ ରାମଙ୍କୁ ଧବଳ-ବଭ୍ରଦ୍ବ-ଜାଣି ଏହି କଳ୍ପିତ ନାମରେ ନାମିତ କରି ଅଛନ୍ତି; ସୁତରାଂ ଏହା ଓଡ଼ିଆରେ ତଦ୍‌ଭବଶବ୍ଦରୂପେ ଗ୍ରାହ୍ୟ ଅସଙ୍ଗତ ବୋଧହୁଏ ନାହିଁ । ଯଦିଚ ଏହି ଶବ୍ଦଟି ତତ୍‌ପରବର୍ତ୍ତୀ ବଳରାମ ଦାସ ପ୍ରଭୃତଙ୍କ କବିତାରେ ପ୍ରଯୁକ୍ତ ଥାଏ, ତେବେହେଁ କହିବାକୁ ହେବ ଯେ ବଳସ୍ୱମାର୍ଥବୋଧକ ଧବଳ ପଦର ସୃଷ୍ଟିକର୍ତ୍ତା ସାରଳାଦାସ କେବଳ । କାରଣ ଏହାଙ୍କ ଅପେକ୍ଷା ପ୍ରାଚୀନ ଓଡ଼ିଆର ପ୍ରଧାନ ଗ୍ରନ୍ଥକର୍ତ୍ତା ବା ଶବ୍ଦକର୍ତ୍ତା କେହି ନ ଥିଲେ ।

କବି ଆଦିପର୍ବରୁ ବହୁ ସ୍ଥଳରେ ଯମଜ ପାଣ୍ଡବଙ୍କ ମାତା ମାଦ୍ରୀଦେବୀଙ୍କୁ ମଦନାବତୀ ବୋଲି ଏବଂ ଗ୍ରନ୍ଥର ଅନେକତ୍ର ଶ୍ରୀ ସାରଳା ଦେବୀଙ୍କୁ କୃପାଜଳନନ୍ଦିନୀ ବୋଲି ଆଖ୍ୟାତ କରି ଅଛନ୍ତି । ମୂଳଗ୍ରନ୍ଥର କେତେକ ସ୍ଥାନରେ ପାଣ୍ଡୁଙ୍କ ଦ୍ୱିତୀୟ କଳତ୍ରଙ୍କ ନାମ ମାଦ୍ରବତୀ ଥିବାରୁ ବୋଧହୁଏ ଏ ଦାସ ମହାଶୟ ମୂଳ ଶୁଶ୍ରୂଷାରେ ସ୍ମରଣ ଶକ୍ତିକୁ ଯଥାଯଥ ଅକ୍ଷୁର୍ଣ୍ଣ ରଖି ନ ପାରି ମାଦ୍ରବତୀ ପଦକୁ ମଦନାବତୀ କରି ଦେଇଥିବେ । କିନ୍ତୁ କୃପାଜଳନନ୍ଦିନୀ (୧) ନାମକରଣର କାରଣ ଠିକ୍ ଜଣାଯାଉ ନାହିଁ । କବି ଏଠାରେ କୃପାଜଳସ୍ଥାନୀୟ କାହାକୁ କରି ଅଛନ୍ତି ? ତଦନୁଧାବନମୂଳକ ଉଦ୍ଧାର ଧାରଣା ସୁଦ୍ଧା ବସ୍ତୁତ୍ୟନ୍ଦ ଦଣ୍ଡାୟମାନ ରହିପାରୁ ନାହିଁ । ଉଦ୍ଧାର ସରଣୀ ନାନା ଦିଗକୁ ଗ୍ଭଲି ଯାଉଅଛି । ଯାହାହେଉ, କବି ଯେ ଦେବୀଙ୍କର କୃପାମୟୀତ୍ୱ ସ୍ଥିର କରି ଏହି ନାମ ଦେଇ ଅଛନ୍ତି, ଏଥିରେ ସନ୍ଦେହ ହେଉ ନାହିଁ ।

ଅନେକ ସ୍ଥଳରେ ହସ୍ତିନା ନଗରୀକୁ କମ୍ବା କୁରୁକ୍ଷେତ୍ରକୁ କୁଞ୍ଜଗଳ ନାମରେ ଏବଂ ଦୁର୍ଯ୍ୟୋଧନଙ୍କୁ (୨) କୁଞ୍ଜଗଳ ଦେଶାଧିପତି, ପଦଙ୍ଗାନାରାୟଣ

(୧) କୃପାଜଳନନ୍ଦିନୀ ନାମ ଭଦ୍ରକାଳୀ ।
ସେ ମୋର ଗଳାରେ ନୀଳୋତ୍ପଳମାଳୀ । ଅଶ୍ୱ· ପ.
କୃପା କଲେ ମୋତେ କୃପାଜଳର ନନ୍ଦିନୀ ।
ତେଣୁ ଭର ଭବଳ ମୁଁ ସାରଳାଦାସ ମୁନି । ମଧ୍ୟପର୍ବ ।
(୨) ସେ ବୋଲେ ମୁଁ କୁଞ୍ଜଗଳଦେଶ ଅଧିକାରୀ ।
ମୁହିଁ ପାଣ୍ଡବଙ୍କ ସଙ୍ଗେ ଅଛି ବାଦ କରି । ଦ୍ରୋ· ପ.

ବା ପନ୍ନଗାନାଗସ୍ପୃଣ ଓ ମାନଟଗୋଷ୍ଠନ ନାମରେ ସମାଖ୍ୟାତ କରି ଅଛନ୍ତି । ମୂଳଗ୍ରନ୍ଥରେ କୁରୁକ୍ଷେତ୍ରର ଅନ୍ୟ ନାମ ଏବଂ ତନ୍ନିକଟବର୍ତ୍ତୀ ଦେଶର ନାମ କୁରୁଜାଙ୍ଗଳ । ହୁଏତ ଦାସ କବି ମହୋଦୟ ପ୍ରୋକ୍ତ ନାମର ନିର୍ଦ୍ଦେଶାର୍ଥ ଏପରି ବିକୃତୀକରଣରେ ଲେଖି ଦେଇଥିବେ, ନୂହେତ ଅନୁଲେଖକମାନେ କୁରୁଜାଙ୍ଗଳ ପଦକୁ କୁଞ୍ଜଗଳ କରି ଦେଇଥିବେ । ସାରଳାଦାସଙ୍କର ବିଶ୍ବାସ ଯେ ଦୁର୍ଯ୍ୟୋଧନ ଜଣେ ସାଧାରଣ ମାନବ ନୁହନ୍ତି । ସେ ଶେଷ ପନ୍ନଗଙ୍କ ଅଂଶରେ ଉତ୍ପନ୍ନ । ଅତଏବ ତାହାଙ୍କୁ ପନ୍ନଗାନାଗ୍ପୃଣ ଜନ୍ମ ଅଛନ୍ତି ଏବଂ ସେ ପୁଣି ଅନୁପମାନ ଅଭିମାନରେ ଏକନିଷ୍ଠ ଥିବାରୁ ମାନଓଗୋଷ୍ଠନ ନାମରେ ନାମିତ କରି ଅଛନ୍ତି । ନରମାଂସ ପରିବର୍ତ୍ତିରେ ମଧୁମାଂସ ଏବଂ ସ୍ବର୍ଣ୍ଣ ରତ୍ନାଦ ପରିବର୍ତ୍ତରେ ପାଣିଦ୍ରବ୍ୟ ପଦର ବ୍ୟବହାର ବହୁ ସ୍ଥଳରେ ଦେଖାଯାଏ । କିନ୍ତୁ ଛପା ପୁସ୍ତକରେ ନରମାଂସାର୍ଥବାଚକ ମଧୁମାଂସ ପଦଟି ମିଳେ ନାହିଁ । ଛପା ପୁସ୍ତକରେ କୁହାପି ଦୃଷ୍ଟ ନ ହେଲେ ସୁଦ୍ଧା ସେଇଟି ଯେ କବିଙ୍କଦ୍ୱାରା ନିଶ୍ଚେ ବ୍ୟବହୃତ ଏଥିରେ ସନ୍ଦେହ ନାହିଁ । ବିଶ୍ବାସ ହୁଏ ପ୍ରକାଶକ ମହାଶୟ ମଧୁମାଂସ ପଦର ଅର୍ଥ ସଙ୍ଗତ ମନେକରି ଉଠାଇ ଦେଇ ଅଛନ୍ତି । ପ୍ରୟୋଗକର୍ତ୍ତା ମହାଶୟ ପ୍ରୋକ୍ତ ପଦର ଅର୍ଥସାଙ୍ଗତ୍ୟକୁ ଭିନ୍ନ ପ୍ରକାର ସମୀଚୀନ ମନେ କରିଥିବାର ଅନୁମାନ ହୁଏ । ନରମାଂସ ମାଂସାଦମାନଙ୍କର ବଡ଼ ଇଷ୍ଟ ଓ ମିଷ୍ଟ ବୋଲି ପ୍ରସିଦ୍ଧି ଅଛି; ଅତଏବ ମିଷ୍ଟତ୍ବ ପ୍ରତିପାଦକ ମଧୁ ଶବ୍ଦସହ ମାଂସ ଶବ୍ଦ ଯୋଗେ ମଧୁମାଂସ ପଦର ସୃଷ୍ଟି ଅନୁମିତ ହୁଏ । ରତ୍ନାଦିଙ୍କୁ ପାଣିଦ୍ରବ୍ୟ କହିବାର କାରଣ ତାଦୃଶ ଜଟିଳ ନୁହେ । ରତ୍ନମାନଙ୍କର ପ୍ରଧାନ ଆଧାର ରତ୍ନାକର ପ୍ରସ୍ତୁତଃ ପାଣିମୟ, ସେହି ପାଣିରୁ ତ ସମଧିକ ରତ୍ନ ଜାତହୁଏ; ଅତଏବ ତାହାକୁ ପାଣିଦ୍ରବ୍ୟ ଆଖ୍ୟା ପ୍ରଦାନ କରି ଅଛନ୍ତି; ସୁତରାଂ ଲୋକରେ ଏତାଦୃଶ କ୍ରମରେ କରିବାକୁ ସ୍ୱର୍ଗ ଫଳ ଜନ୍ମିଥାନ୍ତି । ଯଦିତ ଏହି କ୍ରମରେ ରତ୍ନାଦ ପାଣିଦ୍ରବ୍ୟ ବୋଲି ଧାର୍ଯ୍ୟ ହେଲା, ତେବେ ତଦାୟ ସାହଚର୍ଯ୍ୟରୁ ସ୍ୱର୍ଣ୍ଣାଦ ମଧ୍ୟ ତନ୍ନାମରେ ନାମିତ ହୋଇ ଆସିଲା । କନ୍ୟାର ପ୍ରଥମ ଋତୋଦର୍ଶନ ସମୟରେ ବରୋପରି ନିକ୍ଷେପଣୀୟ ଜଳକୁ କୁସୁମଜଳ ନାମରେ ଆଖ୍ୟାତ କରି ଅଛନ୍ତି ।(୧) ଏ ସମ୍ବନ୍ଧରେ କବିଙ୍କ ହୃଦୟର କଳ୍ପିତ ଭାବ କଣ,

---

(୧) ଏଥୁଅନ୍ତେ ଯେ ମତ୍ସ୍ୟଦେଶର ଦୂତ ।
କୁସୁମ ଜଳ ଘେନି ପ୍ରବେଶ ଇନ୍ଦ୍ରପ୍ରସ୍ଥ ॥

ତାହାକୁ ଜ୍ଞାତବ୍ୟ । କୁସୁମ ସମସ୍ତ ଅର୍ଥାତ୍ ସ୍ତ୍ରୀର ଆର୍ତ୍ତବ ସମୟରେ ନିର୍ଦ୍ଦିଷ୍ଟ କୌଳିକ ପ୍ରଥାନୁସାରେ ଯେଉଁ ପ୍ରକାର ଜଳ ବ୍ୟବହାରଣୀୟ, ତାହାକୁ କୁସୁମଜଳ କୁହାଯାଇ ପାରେ । ଭୀମକର୍ମା ଭୀମସେନ ଯେତେବେଳେ ଅତିମାନୁଷ-କର୍ମ ଚିକୀର୍ଷାର ବଶବର୍ତ୍ତୀ ହୁଅନ୍ତି, ତଦା ଉଦଗ୍ର-ଉଗ୍ରମୂର୍ତ୍ତି ଧାରଣପୂର୍ବକ ଅତି ପ୍ରକାଣ୍ଡ ବୃକ୍ଷକୁ ଉତ୍ପାଟନ କରି ନଅନ୍ତି । ସେପରି ଆଚରଣରେ ସେ ବଡ଼ ଅଭ୍ୟସ୍ତ ଓ ଲବ୍ଧହସ୍ତ । ଦ୍ରୌପଦୀ ସ୍ୱୟମ୍ବର ସ୍ଥଳରେ ଶତ୍ରୁ-ବୃକୋଦର ବୃକୋଦର ପ୍ରତିଦ୍ୱନ୍ଦୀମାନଙ୍କ ପ୍ରହରଣାର୍ଥ ଦୁଇଗୋଟି ତିନ୍ତିଡ଼ୀ ବୃକ୍ଷ ଉତ୍ପାଟନ କରିଥିଲେ ଏବଂ ତଦବଧି ଶ୍ରୀକୃଷ୍ଣ ସେହି ଜାତୀୟ ବୃକ୍ଷକୁ ପାଣ୍ଡବବୃକ୍ଷ ନାମରେ ଅଭିହିତ କରିଥିଲେ ବୋଲି ଲେଖା ଅଛି । (୧) ଏହି ନାମକରଣରେ କବି ଏହି ଭାବ ମନେ କରିଥିବେ, ଭୀମ ବିଶେଷତଃ ଏହି ତିନ୍ତିଡ଼ୀ ବୃକ୍ଷକୁ କେବଳ ଉତ୍ପାଟନ କରନ୍ତି, ଏଥିରେ ଏହାଙ୍କର ମନ ଆକୃଷ୍ଟ ହୁଏ, ସେ ଏହାକୁ ଭଲ ପ୍ରହରଣ ଭାବନା କରନ୍ତି; ଅତଏବ ଯେପରି କକୁଭର ନାମ ଅର୍ଜୁନବୃକ୍ଷ, ସେପରି ତିନ୍ତିଡ଼ୀର ନାମ ପାଣ୍ଡବବୃକ୍ଷ ହେବା ଉଚିତ ।

କେତେକ ସ୍ଥଳରେ ଶ୍ରୀପୁରୁଷୋତ୍ତମକ୍ଷେତ୍ର ବା ଶ୍ରୀଜଗନ୍ନାଥ ପୁରୀର ନାମ ଯମନିକ ତୀର୍ଥ ଏବଂ ଯମପୁରୀର ନାମ ସଂଯମନୀପୁର ବୋଲି ଲେଖି-ଅଛନ୍ତି । (୨) ଶ୍ରୀଜଗନ୍ନାଥକ୍ଷେତ୍ର ପ୍ରତି ପ୍ରଯୁକ୍ତ ଯମନିକ ନାମର ସାର୍ଥକତା

---

ଉତ୍ତରୀ ରଜୋ ବସ୍ତ୍ର ବୋଲି ତଥ୍ୟବାଣୀ ।
ଉପରେ ସିଞ୍ଚିଲେ ଗଙ୍ଗାଜଳ ଆଣି ॥ ଉ. ପ.

(୧) ଯାନ୍ତେ ଦେଖିଲେ ବାଟେ ତେନ୍ତୁଳି ବେନି ବୃକ୍ଷ ।
ବେଗେ ଉପାଡ଼ିଲେ ତାହା ପବନର ବତ୍ସ ॥

× × × ×

ଶ୍ରୀକୃଷ୍ଣ ବୋଇଲେ ଯେ ବୃକ୍ଷ ଧଇଲା ଭୀମ ।
ପାଣ୍ଡବବୃକ୍ଷ ବୋଲି ହେଉ ସେ ତରୁନାମ ॥ ଆ. ପ.

(୨) ଯାଦବ ଜୀବର ପ୍ରଭୁ ଜଗନ୍ନାଥ ମୂର୍ତ୍ତି ।
ଯମନିକ ତୀର୍ଥ ଉଦଧି ଉତ୍ତରେ ସ୍ଥିତି ॥
ଏ ଧନୁକୁ ଧଇଲେ କମ୍ପେ ଆଖଣ୍ଡଳ ।
ଯମ ଦେବତା ନ ରହେ ସଂଯମନୀପୁର ॥ ବ. ପ.

ବା କାରଣ ଏ ସ୍ଥଳରେ କିଛି ଜଣାଯାଉ ନାହିଁ । କବି ହୃଦୟରେ କି ଭାବ ପୋଷି ଏହି ନାମକରଣ କରି ଅଛନ୍ତି, ତାହା ଠିକ୍ ଅନୁମିତ ହୋଇପାରୁ ନାହିଁ । ମାତ୍ର ଏକ୍ଷଣି ତାହାର ବ୍ୟୁତ୍ପତ୍ତି ସାଧନ କରିବାକୁ ଗଲେ ପାପମାନଙ୍କର ଯମନ ସେ ଛେଦନ ବା ନାଶନ ଯେଉଁ ଅର୍ଥରେ ହୁଏ, ତାହାକୁ ଯମନକ ଅର୍ଥ ବୁଝାଯାଇ ପାରେ । ଏହା କବିଙ୍କର ହୃଦ୍‌ଗତ ଭାବ କି ନୁହେ, କହି ନ ପାରୁଁ । କିନ୍ତୁ ବୈବସ୍ୱତପୁତ୍ର ପ୍ରତି ପ୍ରଯୁକ୍ତ ସଞ୍ଜୀବନୀପୁର ପଦଟି ପ୍ରାମାଦିକ କେବଳ । ଯମପୁତ୍ରର ନାମ ସଂଯମନୀ । (୧) ତାହାହେଲେ ସଂଯମନୀପୁର ବା ପୁତ୍ର କହିବା ଉଚିତ । ସଂଯମନୀ ପଦଟି ପ୍ରମାଦବଶତଃ କବିଙ୍କ ଦ୍ୱାରା ହେଉ କିମ୍ବା ଅନୁଲେଖକଙ୍କଦ୍ୱାରା ହେଉ ସଞ୍ଜୀବନୀ ହୋଇ ଯାଇଅଛି, ଏଥିରେ କିଛି ସନ୍ଦେହ ନାହିଁ । ଏହି ଭାରତ କବି ଅନେକସ୍ଥ ଶଲ୍ୟଙ୍କୁ ଶାକଲ୍ୟଦେଶାଧିପ ଏବଂ ଦ୍ରୋଣଙ୍କୁ ପାଟଋଷିଗୋଷୀ ବୋଲି ଅଭିଖ୍ୟାତ କରି ଅଛନ୍ତି । (୨) ଶାକଲ ନାମରେ ଦେଶବିଶେଷ ଅଛି ସତ୍ୟ, ମାତ୍ର ଶଲ୍ୟ ମଦ୍ରାଧିପ ନାମରେ ସର୍ବତ୍ର ପ୍ରଥିତ । ମଦ୍ରର ନାମାନ୍ତର ଶାକଳ ବା ଶାକଲ୍ୟ ବୋଲି ମୂଳ ମହାଭାରତରେ କୁତ୍ରାପି ଉକ୍ତ ଥିବାର ଦେଖାଯାଇ ନାହିଁ । କିନ୍ତୁ ଋଷିପ୍ରବର ଭରଦ୍ୱାଜଙ୍କୁ ପାଟଋଷି କରି ତଦ୍‌ଗୋତ୍ରସମ୍ଭବ ଦ୍ରୋଣଙ୍କୁ ପାଟ ଋଷିଗୋଷୀ ନାମରେ ଅଭିହିତ କରିବା ଅସମୀଚୀନ ନୁହେ । ଏ ସମ୍ବନ୍ଧରେ ଆଉ ଅଧିକ ଲେଖିବୁ ନାହିଁ । ପାଠକଗଣ ଏତିକରୁ ଅବଗତ ହୋଇ ପାରିବେ ଯେ ଏହି ମହାଭାରତ ଗ୍ରନ୍ଥ ଭିତରେ କବି ମହାଶୟ ଏତାଦୃଶ ଆହୁରି କେତେଗୁଡ଼ିଏ କଳ୍ପିତାର୍ଥ ଶବ୍ଦର ପ୍ରୟୋଗ କରି ବୁଦ୍ଧିର କୌଶଳ ପ୍ରଦର୍ଶନ କରି ଅଛନ୍ତି ।

ଏ ସବୁ ଛଡ଼ା ଆଉ କେତେକ ସ୍ଥଳରେ ଗୋରୁମାନଙ୍କର ସଂଖ୍ୟା ବିଶେଷରୁ ଅନୁସାରେ ନିର୍ଦ୍ଦିଷ୍ଟ ପଲ୍ଲୀ, ଲଭଡ଼, ମହାଗୁଡ଼ ପ୍ରଭୃତି ନାମର (୩)

---

(୧) ସଂଯମନୀ — ଯମପୁତ୍ର = ଅନ୍ୟେଽପି ଯେ ସଂଯମିନଃ
ସଂଯମନ୍ୟାମୁଶନ୍ତି ତଂ ।

(୨) ଶାକଲ୍ୟ ସେହି ଅଟେ ଦଣ୍ଡଧାରୀ ।
ମାଦ୍ରୀଦେବୀଙ୍କର ଭ୍ରାତା ସେହି ନରଧାରୀ । ବି. ପ.
ଦ୍ରୋଣଙ୍କୁ ଜାଣୁ ନା ବାବୁ ପାଟଋଷିଗୋଷୀ ।
ନିମିଷକେ ପୃଥ୍ୱୀଭର ଯେ ପାରେ ନିପାତି । ଉ. ପ.

(୩) ପଞ୍ଚଶତ ଗାଈରେ ଯେ ହୁଏ ଏକ ପଲ୍ଲୀ ।
ଚତୁର୍ବିଂଶ ପଲ୍ଲୀରେ ଯେ ଗୋଷ୍ଠେକ କହିଲି ।

ନିର୍ଦ୍ଦେଶ କରି ଅଛନ୍ତି । ସେହି ନାମଗୁଡ଼ିକ ଏତତ୍‌ପୂର୍ବରୁ ଅନ୍ୟ କୌଣସି ଗ୍ରନ୍ଥରେ ପ୍ରଥିତ ଥିବାର ବିଦିତ ହୁଏ ନାହିଁ । ଅତଏବ କୁହାଯାଇ ପାରେ ଯେ ସେଗୁଡ଼ିକର ସୃଷ୍ଟିକର୍ତ୍ତା ଏ ମହାଶୟ କେବଳ ହୋଇ ପାରନ୍ତି । ସନ୍ଧ୍ୟାବନ୍ଦନାଦି ସ୍ଥଳରେ ଆର୍ଯ୍ୟଶାସ୍ତ୍ରଦାୟିକମାନେ ସୂର୍ଯ୍ୟଙ୍କୁ ଜଗଦାଦିପୁରୁଷ ଓ ଜଗତ୍‌ପ୍ରସୂତି-ସ୍ଥିତି-ନାଶ-କାରକ ଭାବି "ବିରଞ୍ଚିନାରାୟଣ-ଶଙ୍କରାତ୍ମନେ ନମଃ" ବୋଲି ସ୍ତବ କରିଥାନ୍ତି । ଆମ୍ଭମାନଙ୍କର ଭାରତ କବି ମହାଶୟ ଦ୍ୱିଜାତିରୁ ଇତର ହେଲେହେଁ ସେମାନଙ୍କର ସଜାତୀୟ ପରି ଅନବରତ ସହବାସ ଓ ସଳାପରେ ଅନୁରକ୍ତ ଥିବାରୁ ପ୍ରୋକ୍ତ ସୌରସ୍ତବ ବାକ୍ୟକୁ ଅସକୃତ୍ ଶ୍ରବଣ କରୁଥିଲେ । ଅତଏବ ଅନେକ ସ୍ଥଳରେ ସୂର୍ଯ୍ୟଦେବଙ୍କୁ ବିରଞ୍ଚି ନାମରେ ଅଭିହିତ କରି ଅଛନ୍ତି । (୧) ମୂଳ ମହାଭାରତରେ ଋଷିମାନଙ୍କର ପରିଧେୟବାଚକ କର୍ପଟ ଶବ୍ଦ ଏବଂ ସ୍ନାନ ସନ୍ଧ୍ୟା ବନ୍ଦନାଦି କ୍ରିୟାବାଚକ ଆହ୍ନିକ ଶବ୍ଦର ବ୍ୟବହାର ବହୁ ସ୍ଥଳରେ ହୋଇଅଛି । ଏ ମହାଶୟ ମୂଳ ଭାରତ ଶ୍ରବଣରେ ସମ୍ପୂର୍ଣ୍ଣ ନିଷ୍ଣାତ ଥିବାରୁ ସେହି ଶବ୍ଦମାନଙ୍କୁ ଠିକ୍ ସମୁଚିତ ସ୍ଥଳମାନଙ୍କରେ 'କରପଟ' ଓ 'ଆହାନିକ' ଭାବି ଆହ୍ନିକ କରି ପ୍ରୟୋଜିତ କରି ଅଛନ୍ତି । ଏହି ଭାରତ ଗ୍ରନ୍ଥ ମଧ୍ୟରେ ଦେଖିବେ, ଭରଦ୍ୱାଜ ଦ୍ରୋଣଙ୍କ ଶାଳକ ଗୌତମ କୃପଙ୍କର ଉପାଧି କେତେକ ସ୍ଥଳରେ ବ୍ରହ୍ମା ଆଉ କେତେକ ସ୍ଥଳରେ ବର୍ମା କରିଥିବାର ପ୍ରତ୍ୟକ୍ଷତଃ ଦେଖା ଯାଉଅଛି । ଯଦିଚ ବ୍ରହ୍ମା ପଦକୁ ଅନୁଲେଖକମାନେ ବର୍ମା ପଦରେ ପରିଣତ କରି ନ ଥାନ୍ତି, ତାହାହେଲେ କବି ମହାଶୟ କୃପଙ୍କର ବ୍ରାହ୍ମଣତ୍ୱରୁ ତାହାଙ୍କୁ ବ୍ରହ୍ମା ଉପାଧିରେ ଭୂଷିତ କରି ଅଛନ୍ତି ଏବଂ ସେ ନିଜେ ବ୍ରାହ୍ମଣ ଥାଇ କ୍ଷତ୍ରିବୃତ୍ତିରେ କୃତାଦର ହେବାରୁ କ୍ଷତ୍ରିୟ-ଉପାଧି ବର୍ମା ପଦରେ ଭୂଷିତ କରି ତାହାଙ୍କର ପୂର୍ବବର୍ତ୍ତୀ ପର୍ଶୁରାମଙ୍କ ପରି କ୍ଷତ୍ରିୟ ବ୍ରାହ୍ମଣତ୍ୱ ପ୍ରକାଶ କରି ଅଛନ୍ତି, ଏହାହିଁ ବୋଲିବାକୁ ହେବ ।

---

ଚନ୍ଦ୍ରବଂଶ ଗୋଷ୍ଠେ ଲଉଡ଼ି ଏକ ନିର୍ମାଣି ।
ଚନ୍ଦ୍ରବଂଶ ଲଉଡ଼ିରେ ମହାଖଣ୍ଡେ ଗଣି ।
ଚନ୍ଦ୍ରବଂଶ ମହାଖଣ୍ଡେ ହୁଏ ଯେତେ ଗାଣ୍ଡି ।
ତେତେକ ଉପରେ ଖଟଇ ଏକ ମହାଭୋଇ । ସ. ପ.

(୧) ଅର୍କ ଦେଇତକୁ ମାଡ଼ି ବସିଲେ ବିରଞ୍ଚି ।
ଏ ହେତୁରୁ କୋଣାଅର୍କ ନାମ ଏବେ ଅଛି । ବ. ପ.

ଏତତ୍ପୂର୍ବେ ଭାଷା ଓ ସାହିତ୍ୟର କ୍ରମ ପ୍ରଦର୍ଶନ ସ୍ଥଳରେ ବାଇକ୍ତ କିମ୍ବା ପ୍ରଭୃତିର ପ୍ରୟୋଗ ଗୁଡିକମାନ ସମ୍ବନ୍ଧରେ ଉଲ୍ଲେଖ କରିଅଛୁ । ପ୍ରୋକ୍ତ ପ୍ରୟୋଗ-ପରିପାଟୀରେ ଅନନ୍ତର୍ଭୁକ୍ତ ଅବଶିଷ୍ଟ ଆଉ କେତେକ ଶବ୍ଦର ପ୍ରୟୋଗ ଗୁଡିକୁ ଏ ସ୍ଥଳରେ ଉଲ୍ଲେଖ କରିବୁଁ । ତଦ୍ଦ୍ୱାରା ସାରଳାଦାସଙ୍କର ସବିଶେଷ ପଦପ୍ରୟୋଗ-ପଟୁତାର ପରିଚୟ ପାଠକେ ଅବଶ୍ୟ ଅବଗତ ହୋଇ ପାରିବେ । ଉତ୍ତରମୁଖରେ ବା ଉତ୍ତରାଭିମୁଖ ହୋଇ, ପୂର୍ବମୁଖରେ ବା ପୂର୍ବାଭିମୁଖ ହୋଇ, ଇତ୍ୟାଦିର ଅର୍ଥବୋଧକ ସ୍ଥଳରେ ଉତ୍ତରମୂର୍ତ୍ତିରେ, ପୂର୍ବମୂର୍ତ୍ତିରେ ଇତ୍ୟାଦି କାରକପଦମାନ କବି ମହାଶୟ ବହୁ ସ୍ଥଳରେ ବ୍ୟବହାର କରି ଅଛନ୍ତି । ପୂର୍ବାଦି ଶବ୍ଦରୁ ଉତ୍ତର ଅଭିମୁଖ ଅର୍ଥରେ ମୂର୍ତ୍ତି ଶବ୍ଦର ବ୍ୟବହାର କାହିଁରୁ କିପରି ଅନୁକୃତ ହୋଇଅଛି, ତାହା ସହସା ଠିକ୍ ଧରିହୋଇ ନ ପାରେ ।

[୧] ଉତ୍ତର ମୂର୍ତ୍ତିରେ ରାଜା ଥାଟକୁ ଚଳାଇ । ସ. ପ.
ଚଳନ୍ତି ପାଣ୍ଡବେ ହୋଇ ପଶ୍ଚିମ ମୂରତି ।
କୌତୁକବନେ ପ୍ରବେଶ ହେଲେ ଧର୍ମନୃପତି । ବ. ପ.

[୨] ବିରାଟ ରାଜା ସହିଲ ଆମ୍ଭର ଅର୍ଦ୍ଦନ ।
କୀଚକମୂଳେ ମାରିଲୁ ଶତମହାବଳୀ । ବି. ପ.
କଂସକେଶୀ ମୂଳେ ଯେ ଅନେକ ମାରି ଦୈତ୍ୟ ।
କଂସ ଭୂଲେ ଦେଲେକ କବନ୍ଧ କୋଟି ସାତ । ଦ୍ରୋ. ପ.

ଏହିପରି ପ୍ରମୁଖ ବା ପ୍ରଭୃତି ଅର୍ଥରେ "ମୂଳେ" ପଦର ବ୍ୟବହାର ମଧ୍ୟ ଏହି ଭାରତରେ ବହୁ ସ୍ଥଳରେ ଦେଖା ଯାଉଅଛି । ଅଧୀଶ୍ୱର ବା ଅଧିଦେବ ପ୍ରଭୃତି ପଦର ଅର୍ଥବୋଧନାର୍ଥ କେବଳ ଅଧିପଦର ପୂର୍ବପଦ ସହ ସମାବେଶ ଏବଂ କୋହ ବା ଶୋକ ଅର୍ଥରେ କ୍ରୋଧ ଶବ୍ଦର ବ୍ୟବହାର ମଧ୍ୟ ଏହି ଗ୍ରନ୍ଥ ମଧ୍ୟରେ ବିରଳ ନୁହେ । (୧) କବି ଏହି ଗ୍ରନ୍ଥରେ ବିଶେଷଣ ଶବ୍ଦମାନଙ୍କରୁ

---

(୧) ନାନାରତ୍ନେ ଭୂଷିତ ହୋଇଛନ୍ତି ଦେବାଧି ।
ଅନନ୍ତ ମାୟାଧର କରୁଣା ଜଳଧି । ଅଶ୍ୱ. ପ.
ଚରଣେ ପଡ଼ି ଯେ ବୋଇଲା ଉଦ୍ଧବ ।
କି ନିମିତ୍ତେ କ୍ରୋଧ କର ତୁମ୍ଭେ ଦେବ । ମୃ. ପ.
କ୍ରୋଧ = ଶୋକ ।

ଉତ୍ତର "ରେ" ବା "ଏ" ପ୍ରତ୍ୟୟ ଯୋଗ ଆଜ୍ଞ କେତେକ ସ୍ଥଳରେ ଆନୁସଙ୍ଗିକ କରି ଓ ହୋଇ ପଦ ଯୋଗଦ୍ୱାରା କ୍ରିୟାବିଶେଷଣ ପଦମାନଙ୍କର ନିର୍ଦ୍ଦେଶ କରି ଏବଂ ବହୁ ସ୍ଥଳରେ ବିଶେଷ୍ୟ ଓ ବିଶେଷଣ ପଦର ଅଭେଦ କଳ୍ପନା କରି ପ୍ରାଚୀନ ପ୍ରୟୋଗପରିପାଟୀ ଦେଖାଇ ଅଛନ୍ତି ।

[କ] ସନ୍ତାନ ସମାନରେ ବର୍ତ୍ତନ୍ତି ଜନଚିଂତା ।
ଏସନକ ସାର୍ଥକ ଯେ ସୋମବଂଶ ରାଜା । ଆ. ପ.
ଭୋକର ବେଳେ ଅନ୍ନ ନ ଦିଅଇ ପାଞ୍ଚ ।
ଅଭୋକ ବେଳରେ ସେ ଅନେକ କରି ଯାଚ । ଆ. ପ.
ଯୁଧିଷ୍ଠିର ବୋଇଲେ ତୋତେ ଲାଗିଲା ମୋହପାଶ ।
ନକୁଳକୁ ଥୋଇ ରେ ବହନ ହୋଇ ଆସ ।

ଆଧୁନିକ ସାହିତ୍ୟରେ ଚଞ୍ଚଳ ହୋଇ ଆସ, ସତ୍ୱର ହୋଇ ଆସ ଏପରି ପ୍ରୟୋଗ ସାଧୁ, ମାତ୍ର ଶୀଘ୍ର ହୋଇ, ବହନ ହୋଇ ଆସ ଏଗୁଡ଼ିକ ସୁସଙ୍ଗତ ବୋଧହୁଏ ନାହିଁ ।

[ଖ] ଅତ୍ୟନ୍ତ ଶୂରବନ୍ତ ସେ କାଶୀ ସେବା କରି । ଆ. ପ.
ଶୌର୍ଯ୍ୟବନ୍ତ ହେବାର ଥିଲା ।
ସମସ୍ତ ନିଷ୍କଳଙ୍କ ହେଲା ଏବେ ବନେ ।
ସୁଖେ ତୀର୍ଥ କରିବା ତୋହର ପ୍ରସନ୍ନେ । ବ. ପ.
ଇତ୍ୟାଦି ।
ତୋହର ପ୍ରସାଦେ—ଏପରି ହେବାର ଥିଲା ।

ଅଦ୍ୟାପି "ହସ୍ତାରସମାନ୍ନ ଓଡ଼ିଆ ସାହିତ୍ୟରେ ଏହାଙ୍କ ପ୍ରଦର୍ଶିତ କ୍ରିୟା-ବିଶେଷଣର କ୍ରମ ପ୍ରାୟଶଃ ଚଳୁଅଛି; ମାତ୍ର ବିଶେଷ୍ୟ ଓ ବିଶେଷଣର ଅଭେଦ କଳ୍ପନାକୁ ପ୍ରାମାଣିକ ନ କରି ସାଧୁ କୁହାଯାଇ ନ ପାରେ । ଏ ମହାଶୟ ଯେ କୌଣସି ପ୍ରକାର ଶବ୍ଦ ହେଉ, ତାହାର ସ୍ତ୍ରୀଲିଙ୍ଗ ପ୍ରତିପାଦନାର୍ଥ କେବଳ ଈକାର ପ୍ରତ୍ୟୟ ଯୋଗ ଆଉ ମହାଶବ୍ଦ ସହ ସ୍ତ୍ରୀତ୍ୱବୋଧକ ଆଳି ଶବ୍ଦର ଯୋଗ (୧)

---

(୧) ବ୍ରାହ୍ମଣ ରୂପ ଧରି ମୁଁ ଅଇଲି ଏଥିକି ।
ବୁଦ୍ଧି ବିଦାରିଲି ଅସୁର ଦେବୀଙ୍କି । ବ. ପ. ଇତ୍ୟାଦି ।
ସମସ୍ତ ଜାଣି ନ କରିଥିଲେ ଇନ୍ଦ୍ରଙ୍କୁ ହୁଏ ଗାଳି ।
ଏମନ୍ତ ଅପକୀର୍ତ୍ତି ମୋତେ ଦେବଟି ମହାଆଳି । ବ. ପ.

ଏବଂ ଅନୁଚିତ ହେଉ ପଛକେ ଆବଶ୍ୟକ ହେଲେ ଅନର୍ଥକତଃ ଆନୁଷଙ୍ଗିକ "କାର" ପଦର ଯୋଗ ଅନଳ୍ପ ସ୍ଥଳରେ କରି ଆସି ଅଛନ୍ତି, ଆହୁରି ଦେଖିବେ, ଅନେକତ୍ର ଏକାର୍ଥ ପ୍ରତିପାଦକ ଦୁଇ ଦୁଇ ଗୋଟି ବିଶେଷ୍ୟ ପଦ ଏବଂ ନଞାର୍ଥ-ପ୍ରତିପାଦକ ଦୁଇ ଦୁଇ ଗୋଟି ଅବ୍ୟୟ ପଦର ବ୍ୟବହାର ମଧ୍ୟ ଜଣା କରି ନାହାନ୍ତି । ଏପରି ସ୍ଥଳରେ ବକ୍ତବ୍ୟ ଭାବର ଦୃଢ଼ତା ସାଧନାର୍ଥ ଦ୍ୱିରୁକ୍ତି କର-ଥିବାର ଜଣା ଯାଉଅଛି ।

ଅଦ୍ୟାପି ବିଶେଷତଃ ମୌଖିକ ଭାଷାରେ "ସେ ବଡ଼ ଅଧିକ ଲୋକ" "ସେଟା ବଡ଼ ଅଳ୍ପ ଲୋକ" ଏପରି ପ୍ରୟୋଗର ବ୍ୟବହାର ଚଳୁଅଛି । ଏହା ଅସାଧୁ ବୋଲି କୁହାଯାଇ ନ ପାରେ । ଆମ୍ଭମାନଙ୍କର ଆଦିମ ମହାକବି ମହୋଦୟ ମଧ୍ୟ ଏତାଦୃଶ ପ୍ରୟୋଗପ୍ରଣାଳୀ ଦେଖାଇ ଅଛନ୍ତି । ବୋଧହୁଏ ଏଭଳି ପ୍ରୟୋଗକ୍ରମ ଏହାଙ୍କ ସମୟରୁ ପୌରାଣିକ ସାହିତ୍ୟରେ ଚଳି ଆସୁଥିବାରୁ ଅଭ୍ୟାସବଶତଃ ଅଦ୍ୟାବଧି ବ୍ୟାବହାରିକ ଭାଷାରେ ଅକ୍ଷୁର୍ଣ୍ଣ ରହିଅଛି । ଅଳ୍ପ ଓ ଅଧିକ, ଏ ଦୁଇଟି ସଂଖ୍ୟାବାଚକ ପରିମିତବାଚକ ହେଲେ ସୁଦ୍ଧା ଏପରି ସ୍ଥଳରେ ମାତ ଓ ମହତ୍ତର୍ ଅର୍ଥ ବୁଝାଇ ଦେଉଥାଏ । (୨) ଉତ୍କଳର ଆଦିମ ଭାରତ କବି ଏହି ଗ୍ରନ୍ଥ ମଧ୍ୟରେ ବହୁ ସ୍ଥଳରେ ଯୁଗ୍ମ ଶବ୍ଦଗୁଡ଼ିଏ ଅର୍ଥାତ୍ ଗୋଟିଏ ପଦ ସଙ୍ଗେ ତଦାତ୍ମଭୂତ ତଦାକୃତିବିଶିଷ୍ଟ ଅନନ୍ୟାନବ୍ୟଞ୍ଜକ ଶବ୍ଦଗୁଡ଼ିଏ ସୁନ୍ଦରରୂପେ ବ୍ୟବହାର କରି ଆସି ଅଛନ୍ତି । ଏପରି ସ୍ଥଳମାନଙ୍କରେ ପରବର୍ତ୍ତୀ ବା ପୂର୍ବବର୍ତ୍ତୀ ଗୋଟିଏ ଶବ୍ଦର କୌଣସି ସ୍ୱତନ୍ତ୍ରତା ନ ଥାଏ, ସେଇଟି କେବଳ ତଦନ୍ତ୍ରକସ୍ଥ ଅଭିଧେୟରେ ଆବଦ୍ଧ ଓ ସାପେକ୍ଷ ରହିଥାଏ । ସୁତରାଂ ଏତାଦୃଶ ଶବ୍ଦବିନ୍ୟାସ ଭାଷାରାଜ୍ୟରେ ବଡ଼ ଚମତ୍କାରଜନକ ବୋଧହୁଏ ।

---

କର୍ଣ୍ଣର ଆଗେ ଯାଇ କହନ୍ତି ଦୂତକାରେ—ବ. ପ. ଇତ୍ୟାଦି ।

ଦୂତକାରେ=ଦୂତମାନେ ।

ନିର୍ଦ୍ଧୂମ ଅଗ୍ନି ଜାଣି ବ୍ରାହ୍ମଣର ତେଜକାନ୍ତି—ଉ. ପ. ଇତ୍ୟାଦି ।

ଚତୁର୍ବେଦ ଶାସ୍ତ୍ରେ ତାକୁ ନାହିଁ ନା ଜଣନ୍ତି । ବ. ପ. ଇତ୍ୟାଦି ।

(୨) ବିପ୍ରଙ୍କର ବିଭୀଷଣ ଏ ନୁହେ ଅଳ୍ପ ଜଣ ।

ଶ୍ରୀକୃଷ୍ଣ ଯା [illegible] ପାଦେ କରନ୍ତି ପ୍ରଣାମ । ସ. ପ. ଇତ୍ୟାଦି ।

ଅଳ୍ପ ଜଣ = ସାଧାରଣ ବ୍ୟକ୍ତି ।

ଠାଣିମାଣିରେ ଯେ ଜାଣ ହୋଇଲା ଅର୍ଜୁନ ।
ବାବୁ ମୋ ଆୟୁଷ ଯେନ ବଞ୍ଚ ବୋଲେ ଦ୍ରୋଣ । ଆ. ପ.
ଆପ୍ତ ଅଳଙ୍କାର ସବୁ ଦେହେ ଛନ୍ତି ପୂର । ମ. ପ.
ସ୍ଥାନମାନ୍ୟ ବୁଝିସୁଝି କଥା ସିନା କହ ।
ଜସନ୍ତର ଆସ୍ଥାନେ ପ୍ରାପ୍ତ କ ବୁଝୁ କ୍ଷୁଦ୍ର । ଉ. ପ. ଇତ୍ୟାଦ ।

ପରନ୍ତୁ ଏହି ଭାରତ ମଧ୍ୟରେ ଏକାତ୍ମଭୂତ ଅଥବା ଦ୍ୱିଧାବିଶ୍ଲିଷ୍ଟ ପଦମାନଙ୍କ ମଧ୍ୟରେ ପାଦପୂରଣାର୍ଥ ଅର୍ଥବୋଧକ "ଯେ" ଅବ୍ୟୟର ଯୋଗ ଏବଂ ଅନୁଚିତ ଓ ଅସଙ୍ଗତ କେତେକ ବହୁବ୍ରୀହି ସମାସାନ୍ତ ପଦମାନଙ୍କର ବ୍ୟବହାର ଅନଳ୍ପ ସ୍ଥଳରେ ହୋଇଯାଇ ଅଛି ।

ପ୍ରବେଶ ହର ଅର୍ଜୁନ ବନ୍ଦ୍ୟ ଯେ ପ୍ରଶସ୍ତ । ଉ. ପ.
ଅପୂର୍ବ ପଦାର୍ଥ ଦେବ ଧୂତ ଯେ ଭାସ୍ତ୍ରକୁ । ଉ. ପ.
ଯେସନେ ଆଉ ହୋନ୍ତି ବସାଭଗ୍ନ ପକ୍ଷୀ ।
ଭାଜଲେ କୁରୁବଳ ବସ୍ତୁର ତେଜ ଦେଖି । ଉ. ପ.

ଭଗ୍ନ-ବସା-ପକ୍ଷୀ—ଏପର ହେବାର ଥିଲା ।

ମହାଦାନୀ କର୍ଣ୍ଣ ଯେ କଷା ଜଗଜେଠେ ।
ସତ୍ୟ ଅଲଙ୍ଘିତ ଯାର ବାନା ଗୋଟି । ଉ. ପ.

ଯାର ବାନା (ମହିମା) ଅଲଙ୍ଘିତ—ସତ୍ୟ ଅଟେ, ଏପର ହେବାର ଥିଲା ଇତ୍ୟାଦ ।

ଏ ମହାଶୟ ଯୁଦ୍ଧାଦ ବର୍ଣ୍ଣନାର ସ୍ଥଳମାନଙ୍କରେ ରଥ ଗଜ ଅଶ୍ୱ ପ୍ରଭୃତିର ସଂଖ୍ୟା ଉଲ୍ଲେଖନରେ ଏବଂ ରାଜାଙ୍କ ପଟୁଆର ଯୌତୁକଦାନ ପ୍ରଭୃତିର ବର୍ଣ୍ଣିକରଣରେ ଅପେକ୍ଷାକୃତ ଅତିରଞ୍ଜିତା ବା ଅତିଶୟୋକ୍ତିକୁ ଉଚ୍ଛୃଙ୍ଖଳ ଭାବରେ ଚାଳିତ କର ଅଛନ୍ତି ଏବଂ ଯେଉଁ ଯେଉଁ ଘଟନାସଂହାନ ତଥି ଦ୍ୱାର ନକ୍ଷତ୍ର ଆଦର ବିବରଣ ଦେଇ ଅଛନ୍ତି, ତତ୍ ତତ୍ ବୃତ୍ତାନ୍ତର ସମସାମୟିକ ଓ ଏକସ୍ଥାନୀୟ ଥାଇ ସବୁ ପ୍ରତ୍ୟକ୍ଷ କରିଥିଲା ପର ଲେଖିଯାଇ ଅଛନ୍ତି । ଏହାର ସତ୍ୟତାର ଉପଲବ୍ଧି ସକାଶେ ପାଠକମାନଙ୍କୁ ପ୍ରାମାଣିକ ସ୍ଥଳମାନ ଉପହାର ଦେବାର ଆବଶ୍ୟକତା ନାହିଁ । ଏତାଦୃଶ ଯେ କୌଣସି ପ୍ରଧାନ ଘଟନାର ବର୍ଣ୍ଣନା ବ୍ୟବହାର କରି ଦେଖିନେଲେ ପ୍ରାମାଣ୍ୟ ଉପଲବ୍ଧି କର ପାରିବେ । ମନେକରୁଁ, ଏହାଙ୍କର ଏତାଦୃଶ ଅତିଶୟୋକ୍ତି ବର୍ଣ୍ଣନପଟୁ ସ୍ୱଭାବ କେବଳ ନିରାଲମ୍ବ ନୁହେ ।

ଏ ତାହାର ଅନୁକରଣ ପାଇଁ ମୂଳ ଭାରତାଦି ଗ୍ରନ୍ଥମାନଙ୍କର ସ୍ଥାନେ ସ୍ଥାନେ ବର୍ଣ୍ଣିତ ଅତିଶୟୋକ୍ତିକୁ ଅବଶ୍ୟ ଆଶ୍ରୟ କରିଥିବେ । ଏହାଙ୍କର ପୁରାଣ ଲେଖନ ଶକ୍ତିମତ୍ତ୍ୱ ତ ବିଶେଷତଃ ଶୁଶ୍ରୂଷାଜନିତ, ପୁରାଣ ଶ୍ରବଣରେ ଯଦି ସ୍ଥାନେ ଅତିଶୟୋକ୍ତି ବର୍ଣ୍ଣନା ଶୁଣି ପାରିଲେ, ତେବେ ତାହାର ଆଶ୍ରୟରେ ସବିଶେଷ ତାହାହିଁ ଧାର୍ଯ୍ୟ କରି ନେଲେ । ଆପଣମାନେ ଦେଖିବେ, ମୂଳ ଭାରତ ଗ୍ରନ୍ଥରେ କେତେକ ବିଷୟର ଉତ୍କର୍ଷ ବା ଆଧିକ୍ୟ ପ୍ରଦ୍ୟୋତନାର୍ଥ ଅତିଶୟୋକ୍ତିର ଆବଶ୍ୟକତା ଧାର୍ଯ୍ୟ ହୋଇଅଛି ।

---

## ଅନ୍ୟାନ୍ୟ ବିଷୟ

ଏ କବି ଯେ ଯେ ସ୍ଥଳମାନଙ୍କରେ ମୃଗ ପକ୍ଷୀ ପ୍ରଭୃତି ଜନ୍ତୁମାନଙ୍କର ବହୁଧା ନାମ ଦେଇ ଅଛନ୍ତି, ସେଥିରୁ ସମଧିକ ଶବ୍ଦର ଅର୍ଥ ଆଦୌ ଜଣାଯାଉ ନାହିଁ । ବ୍ୟୁତ୍ପତ୍ତିକୁ ଧରିବା ବୋଇଲେ, ସେଗୁଡ଼ିକ ସଂସ୍କୃତ ଶବ୍ଦ ନୁହେ । ପରନ୍ତୁ ପ୍ରତ୍ୟେକ ତାଳପତ୍ର ପୁସ୍ତକରେ ସେପରି ଶବ୍ଦଗୁଡ଼ିକରେ ରୂପ ସମାନ ଦେଖାଯାଏ ନାହିଁ । ବିଶେଷତଃ ଛପା ଓ ତାଳପତ୍ର ପୁସ୍ତକର ବହୁ ପ୍ରଭେଦ ଦେଖାଯାଏ । କବିଦତ୍ତ ଶବ୍ଦ ଯଦି ଅବିକୃତ ଓ ସସ୍ୱରୂପ ଥାନ୍ତା, ତାହାହେଲେ ଅର୍ଥାବଗତି ଏତେ ଦୁଃସାଧ୍ୟ ହୁଅନ୍ତା ନାହିଁ । ପ୍ରୋକ୍ତ ଶବ୍ଦମାନଙ୍କର ଅନଭିଜ୍ଞ ଅନୁଲେଖକମାନଙ୍କଦ୍ୱାରା ସଂପ୍ରାପ୍ତ ଅନେକ ପ୍ରକାର ବିକୃତ ପରିଣତି ଘଟି ଯାଇଅଛି । ପାଠକଙ୍କୁ ପ୍ରତ୍ୟକ୍ଷତଃ ଦେଖାଇବା ପାଇଁ ସେ ସବୁ ପ୍ରତ୍ୟେକ ପୁସ୍ତକରୁ ଉଦ୍ଧୃତ କରି ପ୍ରବନ୍ଧର କଳେବର ବୃଥା ବଢ଼ାଇବା ଅନାବଶ୍ୟକ ମନେ କଲୁଁ । କାରଣ କେବଳ ପ୍ରତ୍ୟକ୍ଷ୍ୟତଃ ଦେଖାଇ ଦେବାରେ ସୁଦ୍ଧା କୌଣସି ଫଳ ହେବ ନାହିଁ । ଯଦି କବିପ୍ରଦତ୍ତ ତାଦୃଶ ଶବ୍ଦ କୌଣସି ପୁସ୍ତକରେ ହେଲେ ଅବିକୃତ ରହିଥାନ୍ତା, ତେବେ ଅର୍ଥାବଗତିର ଯେ କୌଣସି ପ୍ରକାର ସୁଗମୋପାୟ ଦେଖାଇ, ଅନ୍ୟାନ୍ୟ ପୁସ୍ତକଗତ ଭିନ୍ନାକାରରେ ପରିଣତ ଶବ୍ଦମାନଙ୍କର ଉଲ୍ଲେଖ କରିଗଲେ କିଛି ପ୍ରୟୋଜନ ହୋଇଥାନ୍ତା । ଅତଏବ ଏ ସମ୍ବନ୍ଧରେ ସହସା କିଛି କର୍ତ୍ତବ୍ୟ ନିର୍ଦ୍ଧାରଣ କରିଯାଇ ନ ପାରେ । ଏହା ବହୁ ସମୟ ଓ ବହୁ ଭାଷାତତ୍ତ୍ୱବିସ୍ତରଣଶୀଳ ଅଭିଜ୍ଞ ବ୍ୟକ୍ତିମାନଙ୍କର ଗଭୀର ବିଚାରର ସାପେକ୍ଷ ।

ବିରାଟପର୍ବରେ ଦେଖିବେ, ବିରାଟଙ୍କ ସଭାରେ ନକୁଳ ଓ ସହଦେବଙ୍କ ପ୍ରବେଶ ପ୍ରସ୍ତାବରେ ଅଶ୍ୱ ଓ ଗୋରୁମାନଙ୍କର ବିବିଧ ରୋଗମାନଙ୍କର ଦେଶୀୟ

ନାମମାନ ପ୍ରଦାନ କରି ଅଛନ୍ତି । ସେଗୁଡ଼ିକ ସୁଦ୍ଧା ଏତାଦୃଶ ବିକୃତ ଓ ଅନର୍ଥ ହୋଇ ଯାଇଅଛି । ମୂଳଗ୍ରନ୍ଥରେ ଏଭଳି ବେଗର ନାମ କିମ୍ବା ପରିଚୟ ଆଦୌ ଲକ୍ଷ୍ୟ ନାହିଁ । ବୋଧହୁଏ, ଏହି ଭାରତ କବି ତଦାନୀନ୍ତନ ପ୍ରଚଳିତ ଦେଶୀୟ ନାମଗୁଡ଼ିଏ ଦେଇଥିବେ । ସେ ସବୁ ଷମରେ ଅନଭିଜ୍ଞମାନଙ୍କ ଲେଖାରେ ପଡ଼ି ବିକୃତ ହୋଇ ଯାଇଅଛି । ତାଳପତ୍ର ପୁସ୍ତକରେ ଛାପା ପୁସ୍ତକଗତଆକୃତି ଅପେକ୍ଷା ବିକୃତିର ମାତ୍ରା ସମଧିକ ଦେଖା ଯାଉଅଛି । ସାରଳାଦାସଙ୍କ ସମୟରେ ସର୍ବତ୍ର ସୁଖସଞ୍ଚାର-ସୁବିଧାର ଅଭାବ କିଛି ଊଣା ହୋଇ ନ ଥିଲା । ସେହି ସମୟରେ ଦେଶମାନଙ୍କର ସଂସ୍ଥାନ କିମ୍ବା ଭୌଗଳିକ ବିବରଣ ପ୍ରତ୍ୟକ୍ଷତଃ ଜାଣି ପାରିବା ବହୁତ କଷ୍ଟ-ସାଧ୍ୟ ଥିଲା । ଅତଏବ ଏହାଙ୍କର ଦେଶାଦି ସଂସ୍ଥାନର କଳ୍ପିତ ବର୍ଣ୍ଣନାମାନଙ୍କରେ ଅଯଥାର୍ଥତା ରହିଯାଇ ଅଛି ସତ୍ୟ, ତଥାପି ଏ ମହାଶୟ ଧୃଷ୍ଣାଦିର ଶୃଙ୍ଖଳାବଳରେ ଅନେକ ସ୍ଥଳରେ ଦେଶାଦିମାନଙ୍କର ସଂସ୍ଥାନକ୍ରମ ଠିକ୍ ଅନୁସନ୍ଧାନ କରି ରଚନା କରି ଅଛନ୍ତି । ଆଦିପର୍ବରେ ଦେଖିବେ, ଆସିଆକୁ ଜମ୍ବୁଦ୍ୱୀପ ବୋଲି, ଶତଶୃଙ୍ଗ ପର୍ବତ ଯାହାର ଏକ ଭାଗ ସେହି ହିମାଳୟ ପର୍ବତ ଜମ୍ବୁଦ୍ୱୀପର ମଧ୍ୟବର୍ତ୍ତୀ ବୋଲି ନିର୍ଦ୍ଧାରିତ କରିପାରି ଅଛନ୍ତି ଏବଂ ଗ୍ରନ୍ଥାରମ୍ଭରେ ପ୍ରକାଶ କରି ଅଛନ୍ତି କି, ଶ୍ରୀ ଜଗନ୍ନାଥ କ୍ଷେତ୍ର ଭାରତବର୍ଷର ଐଶାନ୍ୟ କୋଣରେ ଅବସ୍ଥିତ ଇତ୍ୟାଦି । (୧)

ଆମ୍ଭମାନଙ୍କର ଏହି ଆଦିମ କବି ମହାଶୟ ଉତ୍କଳର ଦକ୍ଷିଣସ୍ଥ ଦେଶ-ମାନଙ୍କରେ ସଞ୍ଚାର କରିଥିବାର କେତେକ ପ୍ରମାଣ ଇତଃପୂର୍ବେ ପ୍ରସ୍ତାବାନୁସାରେ ପ୍ରକାଶ କରିଅଛୁଁ । ସେହିପରି ଆଉ ଗୋଟିଏ ପ୍ରମାଣ ଏଠାରେ ସୂଚିତ କରିବୁଁ । ଏ ମହାଶୟ ଗ୍ରନ୍ଥ ମଧ୍ୟରେ ଅନେକ ସ୍ଥଳରେ ଜଙ୍ଗମ ନାମକ ଏକ ଜାତିର ଉଲ୍ଲେଖ କରି ଅଛନ୍ତି । ଏହି ଜାତି ତେଲିଙ୍ଗି । ଉତ୍କଳର ଉତ୍ତରାଞ୍ଚଳରେ କିମ୍ବା ଗଞ୍ଜାମ ବିନା ଅନ୍ୟ ଓଡ଼ିଆ ସ୍ଥାନରେ ଏମାନଙ୍କର ବସତି ଥିବାର ଜଣାଯାଉ ନାହିଁ । ବୋଧହୁଏ, ସେ ସେ ସ୍ଥାନମାନଙ୍କରେ ଏମାନେ ନାହାନ୍ତି । ଏ ଜାତି ବିଶେଷତଃ ଉତ୍କଳର ଦକ୍ଷିଣାଞ୍ଚଳରେ ଏବଂ ଦକ୍ଷିଣ କଳିଙ୍ଗ ଦେଶରେ ଅଛନ୍ତି । ଏମାନେ

---

(୧) ନୀଳସୁନ୍ଦରଗିରି ଉତ୍ତର ଦିଗ କୋଣେ ।
ସାରସ୍ୱତ ଭୂମି ଭରତଖଣ୍ଡ ଐଶାନ୍ୟେ ॥
ଚନ୍ଦ୍ରଭାଗା ବୋଲି ନଦୀ ଏକ ଗୋଟି ।
ବୃଦ୍ଧମାତାଙ୍କ ପାଶୁଣେ ମହୋଦଧି ଭେଟି ॥

ଅନ୍ୟାନ୍ୟ କର୍ମ କରୁଥିଲେ ସୁଦ୍ଧା ମହାଦେବ ସେବା ଏମାନଙ୍କର ପ୍ରଧାନ କର୍ମ । ଏମାନେ ମହାଦେବ ପୂଜକ ଓ ମାଳପ୍ରାପ୍ତ ଶଙ୍ଖବାଦକରୂପେ ଥିଲେ । ଅନୁମାନ ହୁଏ, ସାରଳାଦାସେ ଦେଶଭ୍ରମଣ ବା ନାନା ତୀର୍ଥଯାତ୍ରାରେ ଯାଇ ଏ ଜାତିର ନାମାଦର ପରିଚୟ ପାଇଥିବେ । (୧)

ମୌଳିକ ଯୁଦ୍ଧ ପ୍ରକରଣମାନଙ୍କରେ ଯେ ଯେ ଅସ୍ତ୍ର ଶସ୍ତ୍ରମାନଙ୍କର ନାମ ଉଲ୍ଲେଖ ଅଛି, ସେଥିରୁ ସମଧିକ ଏହି ଭାରତରେ ଦେଖାଯାଏ ନାହିଁ, ତତ୍ପରିବର୍ତ୍ତରେ ଅନ୍ୟାନ୍ୟ କେତେକ ନାମର ପ୍ରୟୋଗ ଦେଖାଯାଏ । ଏହାର କାରଣ, କବିଙ୍କ ବର୍ଣ୍ଣନା ଶକ୍ତିର ସ୍ୱତନ୍ତ୍ରତା । ଯଦି କବି ମୂଳଗ୍ରନ୍ଥରେ ଏକାନ୍ତ ନିର୍ଭର ରହି ବିଷୟମାନ ଲେଖି ଯାଇଥାନ୍ତେ, ତେବେ ଅବଶ୍ୟ ମୂଳଗତ ଅସ୍ତ୍ର ଶସ୍ତ୍ରମାନଙ୍କର ନାମ କିଛି ରୂପାନ୍ତରିତ କରି ସୁଦ୍ଧା ନିଜ ଗ୍ରନ୍ଥରେ ନିବଦ୍ଧ କରିଥାନ୍ତେ । କବି ତ ତାହା କରି ନାହାନ୍ତି, ସେହି ମାର୍ଗରେ ଯାଇ ନାହାନ୍ତି । ଆପଣାର ସ୍ୱାତନ୍ତ୍ର୍ୟ ସର୍ବଦା ଅକ୍ଷୁର୍ଣ୍ଣ ରଖି ମୂଳଗ୍ରନ୍ଥର ଧାରାବାହିକ କଥା ପ୍ରଣାଳୀକୁ କେବଳ ଆଶ୍ରୟ କରି ଗ୍ରନ୍ଥ ଲେଖାରେ ତତ୍ପର ଥିବାରୁ ମୌଳିକ ନାମମାନ ନ ଦେଇ କିମ୍ବା ଦେଇ ନ ପାରି ନିଜର କଳ୍ପିତ ନାମମାନ ଦେଇ ଅଛନ୍ତି । ଏଥିରୁ କବିଙ୍କର ଖୁବ୍ ବୁଦ୍ଧି କୌଶଳ ମଧ୍ୟ ପ୍ରତିପନ୍ନ ହେଉଅଛି । ପାଠକଗଣ ! ନିମ୍ନଭାଗରେ ଉଲ୍ଲିଖିତ ଉଭୟ ଗ୍ରନ୍ଥର ଅସ୍ତ୍ର ଶସ୍ତ୍ର ନାମାବଳୀ ଦେଖିଲେ ଏହାର ସତ୍ୟତା ଉପଲବ୍ଧି କରି ପାରିବେ ।

ମୂଳଗ୍ରନ୍ଥଗତ ଅସ୍ତ୍ର ଶସ୍ତ୍ର ନାମ:—

ଶତଘ୍ନୀ, ପରିଘ, ପରଶ୍ୱଧ, ମୁଦ୍‌ଗର, ମୁଷଳ, ପ୍ରାସ, ଶକ୍ତି, ତୋମର, କମ୍ପନ, ଭୁଶୁଣ୍ଡି, ବତ୍ସଦନ୍ତ, ପଟ୍ଟିଶ, ନିସ୍ତ୍ରିଂଶ, ବିପାଠ, କ୍ଷୁରପ୍ର, ଭଲ୍ଲ, ଅଞ୍ଜଳିକ, କର୍ଣ୍ଣି, କୁଣପ, ଋଷ୍ଟି, ଗୁଡ଼, କୂର୍ମନଖ, ବାଣ, ଭୁଷଣ୍ଡୀ, ଗୋଶୀର୍ଷ, ଉଲୂଖଳ, ବୈତସିକ ଶର, ପ୍ରଦର, ବିକର୍ଣ୍ଣି, ବଜ୍ରାସ୍ତ୍ର, ବ୍ରହ୍ମାସ୍ତ୍ର, ପାଶୁପତାସ୍ତ୍ର, ବାୟୁବାସ୍ତ୍ର, ମେଘାସ୍ତ୍ର, ଦହନାସ୍ତ୍ର, ମୋହନାସ୍ତ୍ର ଇତ୍ୟାଦି ।

ସାରଳା ଭାରତର ଅସ୍ତ୍ର ଶସ୍ତ୍ର ନାମ:—

ଜ୍ୱାଳାବଳୀ ନାରାଚ, ଅର୍ଦ୍ଧଚନ୍ଦ୍ର ବାଣ, ହିଦଶ ନାରାଚ, ନିଦାଘ ବାଣ, ଆର୍ଦ୍ରାବଳୀ ଧନୁ, ମେଘାସ୍ତ୍ର, ପର୍ବତା ଶର, ବଜ୍ରାସ୍ତ୍ର, ବଜ୍ରାଶର, ପତଙ୍ଗା ବାଣ,

(୧) ସୁଜାତ ଈଶ୍ୱର ବୋଲି ଜଙ୍ଗମ ଏକ ଜାତି ।
ସେ କାଳିନ୍ଦୀ ନଗ୍ରେ ତାଙ୍କୁ କଲେ ଚକ୍ରବର୍ତ୍ତୀ । ବ. ପ.

ଖଗବର ନାଗାଚ, ଗରୁଡ଼ ଶସ୍ତ୍ର, ଅନଳ ଶର, ତପତଶତାଂଶୁ ଶର, ନରସିଂହ ଶର, ଜଳବମ୍ବ ଶର, ବଜ୍ରମୁନା ଶର, ପଞ୍ଚମୁନା ଶର, ବଜ୍ରସୂଚୀ ଶର, ବାଦଲ ଶର, ତମ୍ବୁରୁ, ମୋହନା ଶର, କୁନ୍ତ, ମୁଦୁଗର, ଅନନ୍ତ ଶକ୍ତି ଇତ୍ୟାଦି ।

କବି ପ୍ରସ୍ତାବିତ ଚରିତମାନଙ୍କ ମଧ୍ୟରେ ସଂପ୍ରାପ୍ତ ସମସ୍ତ ଦେବ-ଦେବୀ-ମାନଙ୍କର ଏପରି କି ଚିତ୍ତ ଉନ୍ମାଦକ କନ୍ଦର୍ପ ଦେବଙ୍କର (୧) ମଧ୍ୟ ସ୍ତୁତିଗୁଡ଼ିଏ ଲେଖିପାରି ଅଛନ୍ତି ସତ୍ୟ କିନ୍ତୁ, ସେ ପ୍ରଧାନତଃ ଜଗଦମ୍ବା ସାରଳା ଦେବୀଙ୍କର ଏକାନ୍ତ ଭକ୍ତ ଥିବାରୁ ଦେବୀମହିମାସୂଚକ ସ୍ତୁତିମାନ ବହୁ ସ୍ଥଳରେ ନିଜର ଓଜସ୍ୱିନୀ ଭାଷାରେ ସବିସ୍ତାର ଲେଖି ଥିବାର ଇତଃପୂର୍ବେ ସୂଚନା ପ୍ରକାଶ କରିଅଛୁ ; ଦେବୀଙ୍କ ପ୍ରତି ଏହାଙ୍କର ଭକ୍ତିନିଷ୍ଠା ସମଧିକ ଥିବାରୁ ଭାରତକୁ ସ୍ଥାନେ ସ୍ଥାନେ କାଳିକାପୁରାଣ ବୋଲି ସୂଚନା ଅଭିହିତ କରିଦେଇ ଅଛନ୍ତି । (୨) ସ୍ଥାନେ ସ୍ଥାନେ ଦେବୀ ସ୍ତୁତି ମଧ୍ୟରେ ସେ ଯେପରି ନିଜର ବହୁ ପୁରାଣପାରଦର୍ଶିତା ଓ ବହୁ ଚରିତ ତତ୍ତ୍ୱବେତ୍ତୃତା ପ୍ରକାଶ କରି ଅଛନ୍ତି, ବର୍ତ୍ତମାନ ତାଦୃଶ ଗୋଟିଏ ସ୍ଥଳ ପାଠକମାନଙ୍କୁ ପ୍ରଦର୍ଶନ କରିବୁଁ । ଦ୍ରୋଣପର୍ବର ଅଭିମନ୍ୟୁ ବଧ ପରେ ଗୋଟିଏ ଅନଳ୍ପପ୍ରସର ସ୍ତୁତିପାଠ ନିବଦ୍ଧ ଅଛି । କବି ଏଥିରେ ଅନନ୍ୟସାଧାରଣ-ବୋଧଗମ୍ୟ ପୁରାଣାନ୍ତରମାନଙ୍କରେ ବର୍ଣ୍ଣିତ ବିଷୟ ସନ୍ନିଧାନମାନଙ୍କ ସ୍ତୁତି ବିଷୟର ବିଶେଷଣରୂପେ ଅନ୍ତର୍ଭୁକ୍ତ କରି ଦେବୀଙ୍କ ସୁମହିମାପୁଞ୍ଜର ପ୍ରଦ୍ୟୋତନ କରି ଅଛନ୍ତି ଏବଂ ତାହା ସଙ୍ଗେ ସଙ୍ଗେ ଦେବୀଙ୍କ ପ୍ରତି ନିଜର ଆତ୍ୟନ୍ତିକ ଭକ୍ତି ନିଷ୍ଠା ଗରିଷ୍ଠତ୍ୱ ଦେଖାଇ ଅଛନ୍ତି । ଏହି ସ୍ତୋତ୍ର ମଧ୍ୟରେ ଦେବୀଙ୍କର ଶିଷ୍ଟରକ୍ଷଣ ଦୁଷ୍ଟନାଶନର ସ୍ୱାଭାବିକତା, ଶୁମ୍ଭନିଶୁମ୍ଭ ହନନରେ ଦେବଗଣଙ୍କର ସୁଖସନ୍ନିଧାନ, କାତ୍ୟାୟନୀ ବିମଳାଦି ରୂପ ଧାରଣରେ କାଳଖଣ୍ଡ ରକ୍ତବୀର୍ଯ୍ୟାଦିଙ୍କର ନିର୍ମୂଳନ, ଜଟୀ ନାମକ ବଟ ମହାବୃକ୍ଷ ନିକଟରେ ବିକଟ ଜଟୀ ଅସୁର ବା ଜଟାସୁରର ବିନାଶରେ ରକ୍ତକଲ୍ଲୋଲମାଳିନୀ ତରଙ୍ଗିଣୀର ଆବିର୍ଭାବ, ତ୍ରୈଲୋକ୍ୟବିଜୟୀ ଘୋର-ଦୁର୍ଦ୍ଦାନ୍ତ ମଦୋନ୍ମତ୍ତ କାମରୂପୀ ମହିଷାସୁରର ଅକ୍ଷୟ ତମ-ଶରୀର-ଧ୍ୱଂସନାର୍ଥ ବହୁ ଚେଷ୍ଟାନୁଷ୍ଠାନ ପରେ ସ୍ୱକୀୟ ଅଂଶରୁ ପିଶାଚୀ ଇନ୍ଦ୍ରାଣୀ ବ୍ରହ୍ମାଣୀ ନାରସିଂହୀ ବ୍ୟାଘ୍ରମୁଖୀ ଭୈରବୀ ଡାକୁଣୀ ବାସେଳୀ ଉଗ୍ରତାରା ଚଣ୍ଡିକା ବା

---

(୧) ବ୍ୟାସ ଓ ଅମ୍ବିକାଙ୍କ ସଙ୍ଗସ୍ଥଳରେ ଦେଖିବେ । ଆ. ପ.

(୨) ଇତିଶ୍ରୀ ମହାଭାରତ କାଳିକା ପୁରାଣ ।

ସଂସାର ଜନ ହିତେ ମୁଁ କରିଲି ବଖାଣ । ସ. ପ. ୮୪ ପୃ.

ଚର୍ଚ୍ଚିକା ଡ଼ାକେଶ୍ୱରୀ ପ୍ରଭୃତି ଉପଦେବୀମାନଙ୍କର ସର୍ଜନ, ଅସୁର ସହ ଯୁଦ୍ଧ ସମ୍ବନ୍ଧରେ ସଙ୍ଘଟିତ ଉପଦେବୀଗଣଙ୍କର ଦୁରବସ୍ଥାନକ୍ରମ, ବହୁ ଚେଷ୍ଟା ବୈଫଲ୍ୟରୁ ଦେବୀଙ୍କ ଧୃତି ନିରସନରେ ଅସୁର ପ୍ରତି ତ୍ୟାଗର ସଂକଳ୍ପ, ତଦନନ୍ତରରେ ମହାଭୀତ ଦେବତାମାନଙ୍କର ସ୍ତୁତିନତିକରଣ, ତଦା ଅମାପ କୋପରେ ଆବିଷ୍ଟା ଦେବୀଙ୍କ ହୃଦୟରୁ ସମ୍ଭୂତା ସର୍ବମଙ୍ଗଳାଙ୍କର ଅସୁରବିନାଶାର୍ଥ ଉପାୟ କୀର୍ତ୍ତନ, ଭବସ୍ୱରୂପା ଦେବୀଙ୍କ ସହ ଦିଗମ୍ବର ମହାଦେବଙ୍କର ମିଳନକ୍ରମ ପ୍ରଭୃତି ବିଷୟମାନ ଧାର୍ମିକାତ୍ମକ ଚରିତରେ ଅନୁପ୍ରାଣିତ ଭଙ୍ଗି କବି ମହାଶୟ ଦେବୀଙ୍କର ଅସୀମ ମହିମାର ପ୍ରଖ୍ୟାପନ କରି ଅଛନ୍ତି ।

ଇତଃପୂର୍ବେ ସୂଚିତ କରିଅଛୁଁ କି, କବି ଅନେକ ସ୍ଥଳରେ ଶାଖୋଟକ (ସାହାଡ଼ା) ବୃକ୍ଷରେ ସୁଖ ସୌଭାଗ୍ୟ ପ୍ରଦତ୍ତ୍ୱ ଆରୋପିତ କରି ଅଛନ୍ତି । ଦେଖିବେ, ଆଦିପର୍ବରେ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ବିବାହ ପ୍ରସ୍ତାବରେ ବନପର୍ବରେ ବନବିହାରୀ ପାଣ୍ଡବମାନଙ୍କ ଭ୍ରମଣାବସରରେ ଭୀମସେନ ସୁଖ ସୌଭାଗ୍ୟ କାମନାରେ ଏହାର ପତ୍ର ମସ୍ତକସ୍ଥ କରିଥିବା ସ୍ଥଳରେ ଏହାର ସର୍ବଶୁଭକାରକତ୍ୱ ଓ ଉଦର୍କ ସୁଖଦାୟକତ୍ୱ ପ୍ରତିପାଦିତ କରି ଅଛନ୍ତି । ପୁରାଣାଦିରେ ଶାଖୋଟକ ବୃକ୍ଷର ଏକ ପ୍ରକାର ଦେବାଙ୍ଗତ୍ୱ ଉକ୍ତ ଥିଲେ ସୁଦ୍ଧା ଏତାଦୃଶ ଶୁଭକରତ୍ୱ ଓ ସୁଖଦାୟକତ୍ୱ କୁତ୍ରାପି କଦାପି ଉକ୍ତ ହୋଇ ନାହିଁ । ପ୍ରତ୍ୟୁତ ଆମ୍ଭମାନଙ୍କ ଦେଶରେ ଶନି ଓ ରବିବାରମାନଙ୍କରେ ସାୟଂ ଓ ରୌଦ୍ର ସମୟରେ ଏହାର ଅଶୁଭକରତ୍ୱ ଓ ଅମଙ୍ଗଳଦାୟକତ୍ୱ ପ୍ରଥିତ ଅଛି । ଏହି ବୃକ୍ଷଟି ତାଦୃଶ ଉପଯୋଗକାରକ ମନୋରମ କିମ୍ବା ସୁପୁଷ୍ପଫଳ-ଭରିତ ମଧ୍ୟ ନୁହେଁ; ନିତାନ୍ତ କର୍କଶ ଓ ଜଟିଳାଙ୍ଗ ଅଟେ । ଦନ୍ତମାର୍ଜନ କାଠି ଓ ଚୁଲ୍ଲୀଜାଳ ଛଡ଼ା ଅନ୍ୟ କୌଣସି କାର୍ଯ୍ୟରେ ଏହା ପ୍ରାୟଶଃ ଲାଗେ ନାହିଁ । ଭୂତ ପ୍ରେତାଦିର ଆସ୍ଥାନ ବୋଲି ଏହାକୁ ଲୋକରେ ସମସ୍ତେ ଅନାଦର କରିଥାନ୍ତି । ତଥାପି କବି ମହାଶୟ, କେଜାଣି ଅବା କାହିଁକି ଏହାକୁ ଏତେଦୂର ପ୍ରଶଂସା କରି ଅଛନ୍ତି, ତାହାପାଇଁ ନିଜର ବିଚିତ୍ର କଳ୍ପନାର ସନ୍ଦର୍ଭ ତିଆର କରି ଅଛନ୍ତି, ବୃଥା ଆରୋପିତ ଗୌରବର ଦୃଢ଼ୀକରଣାର୍ଥ ଜଗଦମ୍ବାଙ୍କ ଅକରଣୀୟ ରଚନା ପର୍ଯ୍ୟନ୍ତ ସାହସୀ ହୋଇ ଅଛନ୍ତି, ତାହାର କାରଣ କିଛି ଜଣାଯାଉ ନାହିଁ, ଠିକ୍ ଧାର୍ଯ୍ୟ ହୋଇପାରୁ ନାହିଁ । କିନ୍ତୁ ଅନୁମାନ ହୁଏ, ଏଥି ମଧ୍ୟରେ କୌଣସି ପ୍ରକାର ଆଶ୍ରୟାର୍ଥ ଲୁକ୍କାୟିତ ଥାଇପାରେ ।

କବି ଏ ଗ୍ରନ୍ଥ ମଧ୍ୟରେ ପ୍ରାୟଶଃ ସମସ୍ତ ଦେବସ୍ତୁତି ପ୍ରଭୃତି ବିଷୟମାନଙ୍କର ଅବତାରଣାରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ଅପିଚ ସମସ୍ତ ଦେବତାଧାର ଶ୍ରୀ ଜଗନ୍ନାଥ କ୍ଷେତ୍ରକୁ ହୃଦୟର ଗଭୀରତମ ପ୍ରଦେଶରେ ସୁଉଚ୍ଚ ଭକ୍ତ୍ୟାସନୋପରି ଆରୂଢ଼ ରଖିଥିବାର ଅନୁମିତ ହୁଏ । କାରଣ, ଏ ଯେଉଁଠି ଯେଉଁ ଦେବତାଙ୍କର ସ୍ତବ ଆରମ୍ଭ କରନ୍ତି, ତତ୍ ତତ୍ ସ୍ଥାନମାନଙ୍କରେ ସ୍ତୋତବ୍ୟ ଦେବତାଙ୍କର ଅଧିଷ୍ଠିତ ସ୍ଥାନର ସମ ଶ୍ରୀ ଜଗନ୍ନାଥ ମନ୍ଦିରାନ୍ତର୍ଗତ ତତ୍ ତତ୍ ଦେବତାଙ୍କ ଅବସ୍ଥିତି ଅନୁସାରେ ନିର୍ଦ୍ଧାରିତ କରି ଅଛନ୍ତି । ଏହାର ପ୍ରମାଣସ୍ୱରୂପ ଗୋଟିଏ ସ୍ଥଳ ଦେଖନ୍ତୁ । ବିରାଟପର୍ବ ପ୍ରାରମ୍ଭରେ ଗଣେଶଙ୍କର ସ୍ତୋତ୍ର ରଚନା କରି ସେଠାରେ ତାହାଙ୍କର ଦକ୍ଷିଣ-ଦିଗବସ୍ଥିତିକି ଯାହା ପ୍ରକାଶ କରି ଅଛନ୍ତି, ପାଠକେ ଦେଖିବେ, ଗଣେଶଙ୍କ ସେହି ସମବସ୍ଥାନ ପୁଣ୍ୟ ମନ୍ଦିରର ଦିମାନ୍ତର୍ଗତ କେବଳ । (୧) ଉଦ୍ୟୋଗପର୍ବରେ ଯାହାକି ସୁଦେଷ୍ଣାଙ୍କର ଭଗ୍ନୀ ଜନ୍ମରେ ଇନ୍ଦ୍ରଦ୍ୟୁମ୍ନଙ୍କ ପତ୍ନୀ ଗୁଣ୍ଡିଚ୍ଚବତୀଙ୍କର କଥାର ଗ୍ରହଣ ପ୍ରକାଶିତ ହୋଇଅଛି, ସେଥିରୁ କବି ମହାଶୟଙ୍କର ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରଧାନ ଯାତ୍ରା ଗୁଣ୍ଡିଚାର ସମ୍ପୂର୍ଣ୍ଣ ତତ୍ତ୍ୱାଭିଜ୍ଞତା ଆଉ ତଦ୍‌ପ୍ରତି ତାହାଙ୍କ ଅକ୍ଷୁଣ୍ଣ ଅନୁରକ୍ତି ଅନୁମିତ ହୁଏ । ତଥାଚ କେତେକ ସ୍ଥଳରେ ଯାହାକି ଭରଦ୍ୱାଜ ଋଷିଙ୍କର ଆଶ୍ରମ ବା ନିବାସର ସ୍ଥାନ ଉତ୍କଳ ଦେଶ ବୋଲି ଏ ଲେଖି ଅଛନ୍ତି, ତହିଁରେ ସୁଦ୍ଧା ଶ୍ରୀ ଜଗନ୍ନାଥ କ୍ଷେତ୍ର ପ୍ରତି କବିଙ୍କର ପ୍ରଗାଢ଼ ଗୌରବ ପ୍ରକାର ଜଣାଯାଏ । ଭରଦ୍ୱାଜଙ୍କ ଆଶ୍ରମତ ଚିତ୍ରକୂଟର ଅନତିଦୂର ଅର୍ଥାତ୍ ପ୍ରାୟ ଦଶକୋଶ ବ୍ୟବଧାନରେ ଅବସ୍ଥିତ । ତେବେ ଉତ୍କଳ ଦେଶପ୍ରତି ତାହାଙ୍କୁ ଓଟାରି ଆଣିଲେ କିପରି ? ଏହାର ଉତ୍ତର ସ୍ୱରୂପ କି ସମାଧାନ ଦିଆଯାଇ ପାରେ ? ବୋଧହୁଏ, ଉତ୍କଳର ସ୍ୱର୍ଗାତିରେକ ସ୍ଥାନ ଶ୍ରୀ ପୁରୁଷୋତ୍ତମକ୍ଷେତ୍ର ସର୍ବଦେବତା ଓ ଋଷିବର୍ଗଙ୍କ ଆବାସଭୂତ ବା ବିହାରନିଳୟ ଥିବାରୁ ତତ୍ପ୍ରାଗ ମାତୃଦେଶର ଗୌରବ ବଢ଼ାଇବା ପାଇଁ କବି ମହାଶୟ ଏପରି ଲେଖିଥିବେ; ଆହୁରି ସେ ମନେ କରିଥିବେ ଯେ, ଯେ କୌଣସି ପ୍ରକାର ମହତ୍ତ୍ୱସୂଚନା କରି ସ୍ୱର୍ଗାଦପି ଗରୀୟସୀ ମାତୃଭୂମିର ମହତ୍ତ୍ୱ ସମ୍ପାଦନ କିମ୍ବା ମହତ୍ତ୍ୱ ପ୍ରତିଷ୍ଠାନ ସାଧୁସନ୍ତତିର ପ୍ରଧାନ କର୍ତ୍ତବ୍ୟ ।

---

(୧) ଦକ୍ଷିଣ ଦ୍ୱାର ଆବୋରି ଥାଅ ସବୁବେଳେ ।
ସୁମରନ୍ତେ ହନୁମାନ ହରି ଅବହେଳେ । ବି. ପ.

ଅତଏବ ତ୍ରିକାଳଚକ୍ରବର୍ତ୍ତୀ ଜ୍ଞାନୈଶ୍ୱର୍ଯ୍ୟ-ସମ୍ପନ୍ନ ସୁରଗୁରୁ-ପୂଜ୍ୟପାଦ ଭରଦ୍ୱାଜଙ୍କୁ ଉତ୍କଳର ନିବାସୀ ବୋଲି ନିର୍ଦ୍ଦେଶ କରି ଅଛନ୍ତି । [୧]

## ଅନ୍ୱୟ ବାଧା

ଅନ୍ୱୟ କବିତାର ଅର୍ଥାତ୍ କାବ୍ୟ ବା ପଦ୍ୟପ୍ରଣାଳୀର ପ୍ରାଣ ଅଟେ । କବିତାଟି ଅନ୍ୟାନ୍ୟ ଗୁଣମାନଙ୍କରେ ସମଧିକ ସମଲଂକୃତ ଓ ଚମତ୍କୃତ ହୋଇ-ଥାଉ ପଛକେ ଯଦି ସମନ୍ୱୟ ବାଧାରେ କଳଙ୍କିତ, ତାହାହେଲେ ଜୀବନ୍ତ ଶବ ପ୍ରାପ୍ତ ହେବନି; ଜୀବନ୍ତ ଶବ କାହିଁକି ? ଯଥାର୍ଥ ଶବ ପ୍ରାପ୍ତ କହିଲେ ହେଲା । ଏହି ଗ୍ରନ୍ଥ ମଧ୍ୟରେ ଯେ ଯେ ସ୍ଥାନମାନ ଦୁର୍ମେଧ ଅନୁଲେଖକମାନଙ୍କ ଦ୍ୱାରା ଏକାନ୍ତ ଅନ୍ୱୟହୀନ ଓ କଦର୍ଯ୍ୟ ହୋଇ ପଡ଼ିଅଛି, ସେ ସବୁ ସ୍ଥଳରୁ, ସେ ସବୁ ନିଷ୍ପ୍ରାଣ କହିବାକୁ ହେବ, ସେଗୁଡ଼ିକୁ ପୁନରପି ପ୍ରାଣଦାନରେ ଅର୍ଥାତ୍ ଅନ୍ୱୟ ସାଙ୍ଗତ୍ୟରେ ପୁନରୁଜ୍ଜୀବିତ କରିବା ପାଇଁ ବହୁ ଉଚେଷ୍ଟା ଓ ସମୁଚିତ ଯତ୍ନ ଦରକାର । ସେ ସବୁ ଛଡ଼ା ଆଉ କେତେକ ସ୍ଥଳରେ କବିଙ୍କର ଆଶୁଲେଖା ପରିପାଟୀରେ ମଧ୍ୟ ପ୍ରମାଦତଃ ଅନ୍ୱୟ ବାଧା ଘଟି ଯାଇଅଛି । ସେଗୁଡ଼ିକ ଅଳ୍ପମାତ୍ର ଯତ୍ନରେ ସାନ୍ୱୟ ଓ ସଙ୍ଗତ ହୋଇପାରେ । ତାଦୃଶ ହିମର ଦିଗ୍‌ଦର୍ଶନରୂପେ କେତେକ ସ୍ଥଳମାତ୍ର ନିମ୍ନଭାଗରେ ଦେଖାଉଅଛୁଁ । ତଦନୁକ୍ରମରେ ଅନ୍ୟାନ୍ୟ ସ୍ଥଳମାନ ପାଠକଗଣ ଅନୁମେୟ କରିନେବେ ।

ଯଥା—

(୧) ପୁଣ୍ଡରୀକ ଉପୁଜିଲ୍ଲ ଯେ ମହାବଳବନ୍ତା ।
କୋପେଣ ଧଇଲେ ଶାମ୍ବନ୍ତନୁ ମନେ ଚିନ୍ତା । ଆ. ପ.

ମନେ ଚିନ୍ତା—ଏ ସ୍ଥଳରେ କରି ଧାତୁର କ୍ରିୟାପଦର ଅଧ୍ୟାହାର ନ କଲେ ଅନ୍ୱୟ ବାଧା ଘଟୁଅଛି ।

(୨) ଶାନ୍ତନଙ୍କୁ ପ୍ରଣପତ୍ୟ ହୋଇ ଜୟନାଭ ।
ତାହାଙ୍କୁ କପାଳି ନ କଲେ ସ୍ୱାଷ୍ଟ ଦେବ । ଆ. ପ.

ଏ ସ୍ଥଳରେ ପରୃଚ୍ଛିଲେ କ୍ରିୟା ପ୍ରଶ୍ନକାରକ କ୍ରିୟାପଦର ଅଭାବରୁ ଅନ୍ୱୟ ବାଧା ଘଟୁଅଛି ।

---

[୧] ଉତ୍କଳ ଦେଶରେ ଭରଦ୍ୱାଜ ମହାଋଷି ।
ଦ୍ରୋଣ ମହାରଥୀ ଏହୁ ତାହାଙ୍କର ଶିଷି । ବ. ପ.
କୁରୁସୈନ୍ୟ ଦର୍ଶନ ସ୍ଥଳେ ।

(୩) ଯେତେବେ କୀଚକକୁ ନ ମାରିବ ସଖି ! ଆଜ ।
ବେନି ପାଦ ଦ୍ରୋହ ମୁଁ କରିବି ଦେବରାଜ । ବି. ପ.

ଏ ସ୍ଥଳରେ "ଦେବରାଜଙ୍କ ବେନି ପାଦକୁ କିମ୍ବା ବେନି ପାଦରେ ଦ୍ରୋହ କରିବି" ଏମନ୍ତ ଅର୍ଥରେ ଯଥାଯଥ ପଦବିନ୍ୟାସ ଓ ଆବଶ୍ୟକୀୟ ବିଭକ୍ତିଯୋଗ ଅଭାବରୁ ଅନ୍ୱୟ ବାଧା ଘଟିଅଛି । ଇତ୍ୟାଦି, ଇତ୍ୟାଦି ।

## ଛନ୍ଦୋନିୟମ

ଉତ୍କଳ-ଆଦିକବି ଶ୍ରୀ ସାରଳାଦାସେ ନିଜର ଭାରତୀୟ ପଦ୍ୟ ରଚନାରେ କୌଣସି ଏକ ନିର୍ଦ୍ଦିଷ୍ଟ ଛନ୍ଦର ନିୟମ ବା ଲକ୍ଷଣକୁ ସମ୍ପୂର୍ଣ୍ଣତଃ ରକ୍ଷା କରିବା ପାଇଁ ଯତ୍ନବାନ୍ ହୋଇ ନାହାନ୍ତି । ତଥାପି ଏହା କୁହାଯାଇ ପାରେ ଯେ, ଚତୁର୍ଦ୍ଦଶାକ୍ଷର ଛନ୍ଦର ପଢ଼ା ବା ଢଳ ଅନୁସରଣରେ ସ୍ୱୟଂ ଗାନ କରି ଆଶୁ-କବିତା ଲେଖନପରିପାଟୀରେ ସ୍ୱକୀୟ ଅନର୍ଗଳ ବାକ୍‌ବୈଖରୀକୁ ପଦ୍ୟରେ ନିବଦ୍ଧ କରି ଅଛନ୍ତି । ଅତଏବ ସମଧିକ ସ୍ଥଳରେ ପଦ୍ୟର ଉଭୟ ଦଳ ଚତୁର୍ଦ୍ଦଶାକ୍ଷର-ବିଶିଷ୍ଟ ହେଲେହେଁ ବହୁ ସ୍ଥଳରେ ବର୍ଣ୍ଣ ସଂଖ୍ୟାର ବ୍ୟତିକ୍ରମ ଘଟିଯାଇ ଅଛି । ଏହା କେବଳ ଏହାଙ୍କ କବିତାରେ ଦେଖାଯାଏ, ଏହା ମନେ କରନ୍ତୁ ନାହିଁ । ବଳରାମ ଦାସ ପ୍ରଭୃତିଙ୍କ (ଯାହା ଯାହା କି ଅତି ପ୍ରାଚୀନ) ରାମାୟଣାଦିର ତାଳପତ୍ର ପୁସ୍ତକମାନ ଫିଟାଇ ଦେଖନ୍ତୁ, ଅନେକ ସ୍ଥଳରେ ଚତୁର୍ଦ୍ଦଶାକ୍ଷରିକ ଛନ୍ଦର ପଦ୍ୟଗୁଡ଼ିକର ବର୍ଣ୍ଣସଂଖ୍ୟାର ବ୍ୟତିକ୍ରମ ନ୍ୟୂନାଧିକତଃ ଦେଖିବାକୁ ପାଇବେ । କିନ୍ତୁ ଏହା ବୋଲାଯାଇ ପାରେ ଯେ, ଏନ୍ଥି କିମର୍ଥି ଏଥି ଭାରତରେ ଅତିବକ୍ତ । ପଦ୍ୟର ବର୍ଣ୍ଣମାନଙ୍କର ନିୟମିତ ସଂଖ୍ୟାର ଅତିକ୍ରମ ସମ୍ବନ୍ଧରେ ଆମ୍ଭମାନଙ୍କର ମନ୍ତବ୍ୟ ଏହି ଯେ, ଯେ କୌଣସି ଭାଷା ହେଉ, ପ୍ରାଥମିକ ପଦ୍ୟ ରଚନାର ଅବଶ୍ୟ ଏଭଳି କ୍ରମ ଘଟିବା ଅସମ୍ଭବ ନୁହେ । ପଦ୍ୟ ରଚନାର ପ୍ରଥମାବସ୍ଥାରେ ଛନ୍ଦୋନିୟମ ପ୍ରତି ସେତେଦୂର ଲକ୍ଷ୍ୟ ରହେ ନାହିଁ, ଯେ କୌଣସି ପ୍ରକାର ପଢ଼ାଧୋରଣୀରେ କେବଳ ମନ ନିବିଷ୍ଟ ଥାଏ, ଦେଶୀୟ ଭାଷା ପଦ୍ୟରେ ଏହା ହେବା ସହଜ କଥା । ଦେଶୀୟ ଭାଷାମାନଙ୍କ ଅପେକ୍ଷା ସଂସ୍କୃତ ଭାଷାର କେବଳ ଛନ୍ଦୋନିୟମ କାହିଁକି, ଯାବତୀୟ ବିଷୟ ସମ୍ପୂର୍ଣ୍ଣତଃ ଲକ୍ଷଣଲକ୍ଷିତ, ଏହା କହିବା ବାହୁଲ୍ୟ ମାତ୍ର । ତଥାପି ମହାଭାରତ ଗ୍ରନ୍ଥ ଅତି ପ୍ରାଚୀନ ଓ ଅତି ପ୍ରକାଣ୍ଡ ଥିବାରୁ ତାହାର କେତେକ ସ୍ଥଳରେ ପଦ୍ୟଗୁଡ଼ିକ ବର୍ଣ୍ଣସଂଖ୍ୟା ବ୍ୟତିକ୍ରମଣ-ବିଶିଷ୍ଟ ବା ଦୁଇଗୋଟି ଛନ୍ଦ କିମ୍ବା ବୃତ୍ତର ଲକ୍ଷଣବିଶିଷ୍ଟ ହୋଇଯାଇ ଥିବାରୁ

ଦେଖାଯାଏ । * ଅତଏବ ସାରଳାଦାସ କବି ଓଡ଼ିଆରେ ପ୍ରଥମତଃ ଅତି ପ୍ରକାଣ୍ଡ ଗ୍ରନ୍ଥ ଲେଖିବାକୁ ଯାଇ ମଧ୍ୟେ ମଧ୍ୟେ ପଦ୍ୟମାନଙ୍କର ଯେଉଁ ବର୍ଣ୍ଣସଂଖ୍ୟା ବ୍ୟତିକ୍ରମ ବା ଛନ୍ଦ ଲକ୍ଷଣର ବ୍ୟତିକ୍ରମ କରି ଅଛନ୍ତି, ତାହା ଦୋଷାବହ ନୁହେ । ପଦ୍ୟ ଗାନର ସାମୟିକ ଅବସ୍ଥାନୁସାରେ ତାହା ଘଟିଅଛି । ସମୟର ସଂସ୍କାରବଶତଃ ଅବଚ୍ଛିନ୍ନଭାବରେ ସେ ସବୁ ସଂଯତ କରାଯାଇ ପାରେ । ଏ ସମ୍ବନ୍ଧରେ ଏହି ଭାରତରୁ ବହୁ ପଦ୍ୟମାନ ଉଦ୍ଧୃତ କରି ପ୍ରମାଣ ଦେଖାଇବା ଅନାବଶ୍ୟକ । ପାଠକ ଏହାର ଯେ କୌଣସି ତାଳପତ୍ର ପୁସ୍ତକ ଦେଖିନେଲେ, ତାହା ସହଜରେ ଉପଲବ୍ଧି କରି ପାରିବେ, ଏହା ସଂପୂର୍ଣ୍ଣ ସତ୍ୟ ବୋଲି ବିଶ୍ୱାସ କରିବେ । କିନ୍ତୁ ଏହି ବ୍ୟତିକ୍ରମଣରେ ଯେ ଉଚ୍ଛୃଙ୍ଖଳ, ଦୁର୍ମତି ଅନୁଲେଖକମାନଙ୍କର ବିପ୍ଳବ ଘଟିନାହିଁ, ଏହା କିଏ କହି ପାରିବ ? ଏହି ଭାରତୀୟ ପଦ୍ୟ ସନ୍ଦୋହରେ ସ୍ଥାନେ ସ୍ଥାନେ ପଦ୍ୟାର୍ଦ୍ଧର ବର୍ଣ୍ଣସଂଖ୍ୟା ଚତୁର୍ଦ୍ଦଶାବଧି ପଞ୍ଚବିଂଶତି ପର୍ଯ୍ୟନ୍ତ ଅତିକ୍ରାନ୍ତ; ତଥାତ ସ୍ଥାନେ ସ୍ଥାନେ ଏକାଦଶ ପର୍ଯ୍ୟନ୍ତ ହ୍ରାସପ୍ରାପ୍ତ ହୋଇଯାଇ ଥିବାର ଦେଖା ଯାଉଅଛି । ଏହାର ପ୍ରାମାଣ୍ୟ ସ୍ଥିର କରିବା ପାଇଁ ନିମ୍ନରେ ଦୁଇ ଗୋଟି ପଦ୍ୟ ଉଦ୍ଧୃତ କରୁଅଛୁଁ ।

[୧] ବଦନ୍ତି ଅଗସ୍ତି ଶୁଣ ହୋ ଯୁଗପତି ।
ଏମନ୍ତେ ବିଦ୍ୟା ଶିଖିଲ୍ଲ ଚଉବିଂଶ ବର୍ଷ ପର୍ଯ୍ୟନ୍ତେ ନୀତି । ଆ. ପ.

ଏହି ପଦ୍ୟରେ ପ୍ରଥମ ଦଳରେ ୧୩, ଦ୍ୱିତୀୟ ଦଳରେ ୧୯ ଅକ୍ଷର ।

[୨] ସେ ରମ୍ଭାକୁ ପ୍ରତି ଆଜ ମାଗସିରେ ବଳା ।
କର୍ଣ୍ଣ ବୋଇଲେ ତାତ ସମସ୍ତ ପଦାର୍ଥେ ତୋର ଆଶା ଯେ ବଳିଲ୍ଲା । ଉ. ପ.

ଏହି ପଦ୍ୟର ପ୍ରଥମ ଦଳରେ ୧୪, ଦ୍ୱିତୀୟ ଦଳରେ ୨୧ ଅକ୍ଷର ।

---

* (୧) ରହଃ ଶରୀରଂ ପୁରୁଷସ୍ୟ ରାଜନ୍ !
ଆତ୍ମାନିୟନ୍ତେନ୍ଦ୍ରିୟାଣ୍ୟସ୍ୟ ଚାଶ୍ୱାଃ । ଉ. ଭ. ୬୩ ଅ:

(୨) ନ ଦେବାନାଂ ନାପି ଚ ମାନୁଷାଣାଂ ।
ଭବିଷ୍ୟପି ତ୍ୱଂ ତର୍କଣୀୟୋ ନରେନ୍ଦ୍ର । ଉ. ପ. ୩୨ ଅ:

ଇତ୍ୟାଦି ସ୍ଥଳରେ ଦେଖନ୍ତୁ ପଦ୍ୟର ଉଭୟ ଦଳ ଉଭୟ ବୃତ୍ତର ଲକ୍ଷଣବିଶିଷ୍ଟ ହୋଇ ଯାଇଅଛି ।

[୩] ବାସବର ହସ୍ତେ କର୍ଣ୍ଣ ଘୃଷ୍ଟନ୍ତେଣ ଅମ୍ବୁ ।
ବ୍ରାହ୍ମଣ ହୋଇଲେ ଅଭେଦ କବଚ ବିଜ୍ଞ ଛେଦଦ଼ ଅମୃତକୁଣ୍ଡଳ ଦେବୁ । ଉ. ପ.
ଏହି ପଦ୍ୟର ପ୍ରଥମ ଦଳରେ ୧୪, ଦ୍ୱିତୀୟ ଦଳରେ ୨୫ ଅକ୍ଷର ।

[୪] ତୋତେ ନ କହି ମୁଁ ଯିବ କେମନ୍ତେ ।
ତୋହର ଆଜ୍ଞା ଶିରୋଧାର୍ଯ୍ୟ ମୋତେ । ଉ ପ.

ଏହି ପଦ୍ୟର ପ୍ରଥମ ଓ ଦ୍ୱିତୀୟ ଦଳ ୧୧ ଏକାଦଶାକ୍ଷର ବିଶିଷ୍ଟ । ଇତ୍ୟାଦି ।

## ମିତ୍ରାକ୍ଷର ମିଳନ

ପଦ୍ୟର ଅନ୍ତ୍ୟରେ ମିତ୍ରାକ୍ଷର ମିଳନାର୍ଥ ବିଶେଷତଃ ଅଭିନ୍ନାକ୍ଷରକୁ (୧) ଓ ତୁଲ୍ୟାକ୍ଷରର ସଂସ୍ଥାପନ ଏବଂ ଶ ଓ ସ ବା ଷ, ଲ ଓ ଳ, ଡ଼ ଓ ଲ, ଡ ଓ ର, ଜ ଓ ଯ, ମ ଓ ନ, ଣ ଓ ନ ପ୍ରଭୃତିର ତୁଲ୍ୟତା ସମ୍ପାଦନପୂର୍ବକରୁ ସମସ୍ତ ଭାଷାର ସମସ୍ତ କବିମାନଙ୍କ ଲେଖାରେ ଚଳି ଆସୁଅଛି । (୨) ତଥାତ କେତେକ ସ୍ଥଳରେ ପଦ୍ୟାର୍ଦ୍ଧର ଅବସାନରେ ସଂଯୁକ୍ତ ବର୍ଣ୍ଣର ଅନ୍ତମାତ୍ରର ଓ କେତେକ ସ୍ଥଳରେ ସଂଯୁକ୍ତ ଆଦିମାକ୍ଷରକୁ ଅଗ୍ରାହ୍ୟ କରି ତତ୍ପୂର୍ବ ବା ପରବର୍ତ୍ତୀ ଅକ୍ଷର ସହ ପଦ୍ୟର ଅନ୍ୟ ଦଳର ଅନ୍ତ୍ୟସ୍ଥ ତଦଭିନ୍ନ ବର୍ଣ୍ଣ ବା ତତ୍ତୁଲ୍ୟ ଧ୍ୱନିଯୁକ୍ତ ବର୍ଣ୍ଣର ମିତ୍ରତା କଳ୍ପନା ମଧ୍ୟ ପ୍ରାଚୀନ ପଦ୍ୟ ଗ୍ରନ୍ଥମାନଙ୍କରେ ଦେଖା ଯାଉଅଛି । ଯେ ଯେ ସ୍ଥଳରେ ଅନ୍ତ୍ୟସ୍ଥ ସଂଯୁକ୍ତାକ୍ଷରର ଏକ ଭାଗ ଅଗ୍ରାହ୍ୟ ହୋଇଥାଏ, ସେ ସ୍ଥଳରେ ପଦ୍ୟର ଅନ୍ୟ ଦଳସ୍ଥ ଶେଷାକ୍ଷରର ଧ୍ୱନିର ସାମ୍ୟ ସମଧିକରୂପେ ଧାର୍ଯ୍ୟ ହୋଇଥାଏ; ଧ୍ୱନିର ତାଦୃଶ ସାମ୍ୟ ନ ଥିଲେ ସଂଯୁକ୍ତାକ୍ଷରର ଏକଦେଶ ମିତ୍ରବର୍ଣ୍ଣସ୍ୱରୂପ ଗ୍ରହଣ କରାଯାଇ ନ ପାରେ । ଏହି ମହାଭାରତରେ ଏ ସବୁ ପ୍ରକାର ଭାବରେ ଦେଖାଯାଏ ଏବଂ ଏତଦ୍‌ଭିନ୍ନ ଅନ୍ୟ ପ୍ରକାର ଆକ୍ଷରିକ

---

(୧) ଅଭିନ୍ନାକ୍ଷର = କକାରକୁ କକାର, ଚକାରକୁ ଚକାର । ଇତ୍ୟାଦି ।
ତୁଲ୍ୟାକ୍ଷର = କକାରକୁ ଖକାର, ଡ଼କାରକୁ ଢ଼କାର । ଇତ୍ୟାଦି ।

(୨) ରଳୟୋ ର୍ଡଳୟୋ ସ୍ତଦ୍ଵତ୍ ଜଯୟୋ ର୍ବବୟୋ ରପି ।
ଶସୟୋ ର୍ମନୟୋ ସ୍ତଦ୍ଵନ୍ତେ ସବିସର୍ଗାବିସର୍ଗୟୋଃ ।
ସବିନ୍ଦୁକାବିନ୍ଦୁକୟୋଃ ସ୍ୟାଦଭେଦେନ କଳ୍ପନଂ । ଇତ୍ୟାଦି ।
କବି ଚିନ୍ତାମଣି ।

କୃତ୍ରିମ ମିତ୍ରତାର ସଂସ୍ଥାପନ ମଧ୍ୟ ବିରଳ ନୁହେ । ତାହାର ପ୍ରମାଣ ସ୍ୱରୂପ କେତେଗୋଟି ପଦ୍ୟମାନ ନିମ୍ନରେ ଉଦ୍ଧୃତ ହେଲା ।

ତ୍ର—ତ-ଉତ୍ପଳକୁମୁଦ ପ୍ରାୟେ ବିଶଦ ବେନି ନେତ୍ର ।
ବଦନ ଦେଖିଣ ପୁଣ ଉପ୍ରୋଧ ବହୁତ । ବି. ପ.

ନ୍ତେ—ତ୍ରେ-ଅନେକ ମଧୁର ବାକ୍ୟ ବଦସୂତ୍ରି କୋନ୍ତେ ।
ପରମ ସାନନ୍ଦ ଶୁଣି ହେଲେ ପିତା ପୁତ୍ରେ । ବି. ପ.

ତ୍ୟ—ର୍ଥ-ସହଦେବ ବୋଲେ ଦେବ! ତୁମ୍ଭ ବାକ୍ୟ ସତ୍ୟ ।
ଶମୀବୃକ୍ଷ ତଳେ ଦେବ! ଅଛି ମହାସ୍ତାର୍ଥ । ବି. ପ.

ତ୍ୟ—ସ୍ତ୍ର-କର୍ଣ୍ଣ ବୋଇଲେ ତାତ ଅନେକ କଲୁ ସତ୍ୟ ।
ଦଅ ପିତା ମୋତେ ଏବେ ବଜ୍ରଶକ୍ତି ଅସ୍ତ୍ର । ଜ. ପ.

ନ୍ତ୍ରୀ—ଥି-ପାଣ୍ଡବଙ୍କର ତଳେ ସହଦେବ ମହାମନ୍ତ୍ରୀ ।
ଭୂତଭବିଷ୍ୟ ଜାଣଇ କରେ ମନ୍ତ୍ରପୋଥି । ବି. ପ.

ହ୍ୟ—ଜ-ସ୍ୱାମୀ ତୁ ସିନା ଆମ୍ଭଙ୍କୁ କଣାନ୍ତୁ ଯେ ଦହ୍ୟ ।
ମୁଁ ଏବେ ତୁମ୍ଭଙ୍କୁ ଦହନ କରୁଅଛି ଆଜ । ଇତ୍ୟାଦି ।

ଓଡ଼ିଆର କେତେକ ତଦ୍ଭବ ଶବ୍ଦମାନଙ୍କରେ ମୂଳପ୍ରକୃତିସ୍ଥ ତକାରର ଟକାର ହୋଇଥିବାରୁ ତଥାଚ ଟକାର ଓ ଠକାର ତୁଲ୍ୟାକ୍ଷର ଥିବାରୁ ପଦ୍ମ ସାରଳାଦାସେ ତକାର ଓ ଠକାରର କୃତ୍ରିମ ମିତ୍ରତା କଳ୍ପନା କରି ପ୍ରୋକ୍ତ ଅକ୍ଷରଦ୍ୱୟକୁ ଅନେକ ସ୍ଥଳରେ ମିତ୍ରାକ୍ଷରରୂପେ ମିଳାଇ ଅଛନ୍ତି । ତଥାଚ କ୍ଷକାର ଓ ଚକାର, କ୍ଷକାର ଓ ଖକାର ପଦ୍ୟରେ କେତେକ ସ୍ଥଳରେ ମିତ୍ରାକ୍ଷରସ୍ୱରୂପ ହୋଇଥିବାରୁ ଅପିଚ ଷକାର ଓ ଛକାରର ଉଚ୍ଚାରଣ ଧ୍ୱନି ପ୍ରାୟ ସମାନ ଥିବାରୁ ଖ ଓ ଷ କୁ ଷ ଓ କ୍ଷ କୁ ଆଉ ଖ ଓ ଛ କୁ ମଧ୍ୟ ମିତ୍ରାକ୍ଷର ପରି ମିଳାଇ ଦେଇ ଅଛନ୍ତି ।

ତ—ଠ-ଯାହାକୁ ଇଚ୍ଛା ତୋର ବର ଗୋ ସୁତତେ ।
ପାରିଜାତ ପୁଷ୍ପମାଳା ଦଅ ତାର କଣ୍ଠେ । ଆ. ପ.

କ୍ଷ—ଛ-ବୃଷରଦଗେ ବୃଷମେଧେ ତୁମ୍ଭେ ହୁଅ ସାକ୍ଷୀ ।
ହେ ଧର୍ମଦେବତା ଦଣ୍ଡେ ରହ କର୍ଣ୍ଣ ମୋତେ ଦାନ ଦେଉଛି । ଜ. ପ.

ଖ—ଛ-ଶୁଣିଣ ଶ୍ରୀକୃଷ୍ଣ ବୁଝିଲେ ଅର୍ଜୁନର ମୁଖ ।
କର୍ଣ୍ଣର ଚର୍ମ କବଚ କୁଣ୍ଡଳ କେମନ୍ତେ ଆଣିବୁ ବାଉଛ । ଉ. ପ.

ଏ ପଦ୍ୟଟିକୁ ଗ୍ରନ୍ଥକାର ପରବର୍ତ୍ତୀ କରି ଦେଇ ଅଛନ୍ତି । ଉ. ପ. ୨୨ ପୃ: ଦେଖନ୍ତୁ ।

କ୍ଷ—ଛ-ଉତ୍ତରକୁମାର ଯେ ବରାଟ ଜ୍ୟେଷ୍ଠବନ୍ଧୁ ।
ମଧ୍ୟଦେଶ ମତ୍ସ୍ୟଦେଶ କରଇ ସେ ରକ୍ଷା । ବି. ପ.

କ୍ଷ—ଛ-ତୁମେ ଯେବେ ସମରକୁ କରିଅଛ ଇଚ୍ଛା ।
ପ୍ରତ୍ୟକ୍ଷରେ ଜାଣିକି ଶ୍ରୀକୃଷ୍ଣଙ୍କର କକ୍ଷା । ଉ. ପ.

ଅଳ୍ପ କେତେକ ସ୍ଥଳରେ ତକାର ଓ ଛକାରର, ସକାର ଓ ଛକାରର, ଚକାର ଓ କ୍ଷକାରର ଏବଂ ଥକାର ଓ ଛକାରର ମଧ୍ୟ ଉଚ୍ଚାରିତ ଧ୍ୱନିର ସାମ୍ୟକଳ୍ପନା କରି ମିତ୍ରତା ସମ୍ପାଦନ କରି ଦେଇ ଅଛନ୍ତି ।

ତ—ଛ-ଆପଣେ ଆପଣେ ବସିଲେ ହୋଇ ଶାନ୍ତମୂର୍ତ୍ତି ।
ଦେଖି କୁନ୍ତେ ସମାସ୍ୟା ଯେ ନ ଦେଲେକ କଛି । ଦ୍ରୋ. ପ.

ସ—ଛ-ଯୁଧିଷ୍ଠିର ଦେବ ତାକୁ ବଚନ ପ୍ରକାଶି ।
ବାବୁ ଅଜ୍ଞାତ ଲେଖ ହେ କେତେଦିନ ଅଛି । ବି. ପ.

ଚ—କ୍ଷ-ଶସ୍ତ୍ର ନ କାଟନ୍ତେ ଯେ ରହିଲେ ବାରେ ଧୃଷ୍ଟ ।
ସାମ ବୋଇଲେ ତୁମ୍ଭେ ଯେ ହୋଇଲ ନିର୍ମାକ୍ଷି । (ନିର୍ମାଣି) ବି. ପ.

ଥ—ଛ-ଏକ ଶରେ ରହିଅଛି ଶଲ୍ୟଙ୍କର ରଥ ।
କୃଷ୍ଣାର୍ଜୁନେ ଶର ବନ୍ଧେ ହୋଇ ସମକଚ୍ଛ । ଦ୍ରୋ. ପ.

କିନ୍ତୁ ଖ ଓ ଛ, ଥ ଓ ଛ ଏବଂ ଚ ଓ କ୍ଷ ର ମିଳନରେ ଆଦୌ କିଛିହିଁ ସମୀଚୀନତା ନାହିଁ । ଏହାଛଡ଼ା ଆହୁରି କେତେକ ସ୍ଥଳରେ ଅନ୍ୟ ଲେଖକମାନଙ୍କର ଏକାନ୍ତ ଉଚ୍ଛୃଙ୍ଖଳତାରେ ଗଠିତ ମିତ୍ରାକ୍ଷର କଳ୍ପନା ସମ୍ପୂର୍ଣ୍ଣ ବିକୃତ ହୋଇ ପଡ଼ିଅଛି । ଏ ସବୁ ସ୍ଥଳମାନ ସଂସ୍କର୍ତ୍ତବ୍ୟ ।

ଏହି ପ୍ରକାଣ୍ଡତମ ମହାଭାରତର ଅନେକ ସ୍ଥଳରେ ଦେଖିବେ, କବି ମହାଶୟ ପଦ୍ୟଗତ ଅନ୍ତ୍ୟ ବର୍ଣ୍ଣମାନଙ୍କର ପରସ୍ପର ମିତ୍ରତା ଘଟାଇବା ପାଇଁ ଅଯଥା ସ୍ୱର ଯୋଗ ଓ ସ୍ୱର ବିଯୋଗ ମଧ୍ୟ କରି ଅଛନ୍ତି । ଏତଦ୍ୱାରା ସ୍ଥାନେ ସ୍ଥାନେ ପଦମାନ ବିକୃତାର୍ଥ ହୋଇ ଯାଇଅଛି ।

(୧) ଏହା ଶୁଣି ବୋଇଲେ ଶାନ୍ତନୁ ନୃପମଣି ।
ତୋତେ ଦେଖିଲେ ଚିତ୍ତେ ଲାଗଇ ମହାବାଧି । ଆ. ପ.

(୨) ଶାଳଗ୍ରାମ ବୋଇଲେ ପଶୁରାମ ଆଜ୍ଞା ମେଣ୍ଟି ।
ଅବଶ୍ୟ ହୋଇବ ଯେ ତୋହର ଶିର କାଟି । ଆ. ପ.

(୩) ଅଣଜପଶ୍ୱେଧୀ ଏ ଭିଲ୍ଲେକେ ମହାଯୋଦ୍ଧି ।
ଏହାଙ୍କ ତୋହର ଆରେ କିସ ଅଛି ବୁଦ୍ଧି । ଆ. ପ.

(୪) ଅତି ଶ୍ରମ ହୋଇ ପଳାଇଲା ଶତଧନୁ ।
ଶରଣ ପଶିଲା ଯାଇ ପାର୍ଥ ଅରଜୁନୁ । ମ. ପ.

ଅରଜୁନେ ଶରଣ ପଶିଲା – ଏପରି ହେବାକୁ ଥିବାସ୍ଥଳେ ଅରଜୁନୁ ଶରଣ ପଶିଲା କରି ଅଛନ୍ତି ।

(୫) ହସ୍ତେ ଅଛି ମହାତ୍ମାର ସପ୍ତସ୍ୱର ବେଣୀ ।
ଦେଖି କରି ପୂଜା କଲେ ଦେବ ଚକ୍ରପାଣି । ସ. ପ.

ବୀଣାକୁ ବେଣୀ କରି ଅଛନ୍ତି ॥

(୬) ପାଣ୍ଡବେ ରହିଛନ୍ତି ଅଷ୍ଟକ ନାମେ ବନେ ।
ଗଙ୍ଗା ବହଇ ସେଠାରେ ଉତ୍ତର ବାହିନେ । ବ. ପ.

ଉତ୍ତର ବାହିନୀକୁ ଉତ୍ତର ବାହିନେ କରି ଅଛନ୍ତି ।

(୭) ମୁଁ ଯେ ଆଶା କଲି ତୋହର ବଚନେ ।
କ୍ଷୁଧାରେ ଶରୀର ମୋର ହେଉଅଛି ଦହନେ । ବ. ପ. ଇତ୍ୟାଦି ।

ଦହନକୁ ଦହନେ କରି ଅଛନ୍ତି ।

କିନ୍ତୁ ଏଥି ମଧ୍ୟରେ ଯେ ଯେ ସ୍ଥଳରେ ବ୍ୟକ୍ତିବାଚକ ଆକାରାନ୍ତ ପଦକୁ ମାନ୍ୟାର୍ଥରେ ଏକାରାନ୍ତ ଆଉ ଆଦର କିମ୍ବା ଅନାଦର ଅର୍ଥରେ ଆକାରାନ୍ତ କରି ଅଛନ୍ତି, ସେହି ସ୍ଥଳଗୁଡିକ ମାତ୍ର ପ୍ରାଚୀନ ସାହିତ୍ୟର ରୀତିସଙ୍ଗତ ।

(୧) ଅତି ଗହନ ବନକୁ ନ ଯିବୁଟି ପାର୍ଥ ।
ଦୂତ ମୁଖରୁ ଆମ୍ଭେ ପାଇବୁ ବାରତ । ମ. ପ. । ଆକାରଲୋପ ।

(୨) ପୂର୍ବର ଭବିଷ୍ୟ କଥା କେ କରିବ ଆନ ।
ତୋର ପୁଅ ନୁହଇଟି କୁମାର ଅଭିମନ୍ୟ । ଉ. ପ. । ଉକାରଲୋପ ।

(୩) ଦଶ ସହସ୍ର ରଜା ପଡ଼ନ୍ତେ ଅଶୀ ସହସ୍ର ସେନା ।
ତିନ ପ୍ରହରେ ପଡ଼ିବ କୁମାର ଅଭିମନ୍ୟା । ଜ. ପ.

ଅଭିମନ୍ୟୁ ଶବ୍ଦର ଉକାର ଲୋପ କରି ଆକାର ଯୋଗ କରି ଅଛନ୍ତି । ମାତ୍ର ଏତାଦୃଶ କେତେକ ସ୍ଥଳରେ କବିଦତ୍ତ ପଦକୁ ଗ୍ରୁପାକାର ବଦଳାଇ ଦେଇ ଅଛନ୍ତି । ଜ. ପ. ୧୮ ପୃ: ଦେଖନ୍ତୁ ।

(୧) ଶୁଣିଣ ଗାଲବ ଋଷି ସୈନ୍ୟବଳ ସାଜେ ।
ଯାନ୍ତି ଅମନାତ୍ୟ ଭୂଲେ ଚଳେ ମହାରାଜେ । ମୃ. ପ.

(୨) ଏ ଜନ୍ମେ ମୋହର କେବେ ନାହିଁ ତୋରେ ସେବା ।
ମୋତେ କସ ଅର୍ଥେ କଷ୍ଟ ଦେଲୁ ବାସୁଦେବା । ଭ. ପ.

(୩) କର୍ଣ୍ଣ ବୋଇଲେ ତୋର କଷ୍ଟ ଦେଇ ନାହିଁ ଇଚ୍ଛା ।
ଆବର କେତେ ସର୍ବୈଷ୍ଣବ ହେଉ ସହସ୍ରାକ୍ଷା । ଜ. ପ.

ଇତ୍ୟାଦି ।

(୧) ଏ ମହାକ୍ଷେତ୍ର ହୋଇଲା ଅମୂରଙ୍କ ଲାଗି ।
ପଥିକ ଜନଙ୍କୁ ଥାନ୍ତି ବାଟରେ ସେ ଜଗି । ବ. ପ.

(୨) ଏତେ ଭକ୍ତିକୁ ଉଶ୍ୱାସ କଲା ଫାଲଗୁନି ।
ମାନବ ଜନ୍ମ ହୋଇ ମହିମା ଧନ ଧନି । ବ. ପ.

ଭୋଗ୍ୟ ପଦକୁ ଭୋଗି ଓ ଧନ୍ୟ ପଦକୁ ଧନି କରି ଅଛନ୍ତି ।

(୧) କୁମର ବୋଇଲା ତାତ ବଚନ କ ମୋତେ ।
ତାହା ଶୁଣିଣ ହରଷ ହୋଇଲା ନୃପତ୍ତେ । ମ. ପ.

(୨) ଏଥୁଅନ୍ତେ ଶୁଣ ଜନେ ଦେଇ ମନ କର୍ଣ୍ଣ ।
ଯୁଧିଷ୍ଠି ଆଗେ କହନ୍ତି କଉଶିକ ମୂନ୍ୟ । କ. ପ.

ଇତ୍ୟାଦି ସ୍ଥଳରେ ଇକାର ଯକାରବେ ପରିଣତ ଥିବା ଦେଖାଯାଏ ।

(୧) ଦେବୀ ଯେ ହୋଇଥିଲେ କାକ ରୂପ ଗୋଟିଏ ।
କାକ ରୂପ ଦେଖି ହର ରମଣ ଇଚ୍ଛେ । ଭ. ପ.

"ଇଚ୍ଛିଲେ" ପଦ ଇଚ୍ଛେ ହୋଇଅଛି ।

(୨) ସ୍ନାହାନ କରଣ ସେ ରାକ୍ଷସ ଗଲା ରାସେ୍ତ ।
ନିଜ ପୁର କଥା ହୃଦେ ସୁମରଣ କଏ । ବ. ପ.
"କରେ" ପଦ କଏ ହୋଇଅଛି । ଇତ୍ୟାଦି ।

କେତେକ ସ୍ଥଳରେ ଏହି ଆଶୁ କବିତା ଧୋରଣୀର ଆବେଗରେ ହଠାତ୍ ମିତ୍ରାକ୍ଷରର ସଂଯୋଗରେ ଅପ୍ରାପ୍ତିରୁ ଯକାରକୁ ଇକାରରେ ଆଉ ଇକାରକୁ ଯକାରରେ ପରିଣତ କରିଦେଇ ଅଛନ୍ତି । ଅପିଚ କେତେକ କ୍ରିୟା ପଦର ବ୍ୟଞ୍ଜନର ଲୋପ କରି ତଦନ୍ତ୍ୟସ୍ଥ ସ୍ୱରରେ କେବଳ ମିତ୍ରାକ୍ଷର ମିଳନର ଯୋଗାଡ଼ କରି ଅଛନ୍ତି । ପାଠକେ! ଏତାଦୃଶ ସ୍ଥଳମାନଙ୍କରେ ଅବଶ୍ୟ ବିଶ୍ୱାସ କରିବ ଯେ, ଶ୍ରୀମାନ୍ ସାରଳାଦାସ କବି ମିତ୍ରାକ୍ଷର ଓ ସମସ୍ୱର ମିଳାଇବା ପାଇଁ ଅନର୍ଥତଃ ସ୍ୱରମାନଙ୍କର ଯୋଗ ବିଯୋଗାଦି କରି ଅଛନ୍ତି ସତ୍ୟ; ତଥାପି ତନ୍ମଧ୍ୟରେ ଅନଭିଜ୍ଞ ଅନୁଲେଖକମାନଙ୍କର ବୁଦ୍ଧି ଦୁର୍ବିଧାତାର ବିପ୍ଳବ ସୁଦ୍ଧା ଅପେକ୍ଷାକୃତ ସମଧିକ ଘଟିଅଛି, ଏଥିରେ କିଛି ସନ୍ଦେହ ନାହିଁ ।

ଆଚାର ଓ ନୀତି ସମ୍ବନ୍ଧରେ ମୂଳ ଗ୍ରନ୍ଥରେ ଯେପରି ସୁବିସ୍ତୃତ ବକ୍ତୃତା-ମାନ ଦେଖିବାକୁ ପାଉଁ, ଏହି ଭାରତ ଗ୍ରନ୍ଥରେ ସେପରି ସମଧିକ ଲେଖାଥିବାର ଦେଖାଯାଏ ନାହିଁ । କବି ମହାଶୟ ଯାହା ଯାହା ଆବଶ୍ୟକ ମନେ କରି ଅଛନ୍ତି, ଅଥଚ ଯେତେଦୂର ପାରି ଅଛନ୍ତି, ତାହା ଅତି ସଂକ୍ଷିପ୍ତ କରି ନିଜର ଆଉ ତାତ୍କାଳିକ ଲୋକ ବ୍ୟବହାରର ଅନୁକୂଳତାରେ କେତେକ ଆଚାର ଓ ନୀତି ବୁଝାଇ ଅଛନ୍ତି । ସ୍ଥାନେ ସ୍ଥାନେ ସେପରି ଯାହା ଯାହା କିଛି ଉକ୍ତ ଅଛି, ତାହା ନେଇ ବିଚାର କଲେ ତଦାନୀନ୍ତନ ଓ ଆଧୁନିକ ଉତ୍କଳୀୟ ଆଚାର ଓ ନୀତିର ତାଦୃଶ ପ୍ରଭେଦ ପରିଦୃଶ୍ୟମାନ ହୁଏନାହିଁ । ବର୍ତ୍ତମାନ ଉତ୍କଳରେ ସାଧାରଣତଃ ପ୍ରଚଳିତ ଆଚାର ଓ ବ୍ୟବହାରଗୁଡ଼ିକ ଯେପରି ଅଛି, ବୋଧହୁଏ ସାରଳାଦାସଙ୍କ ସମୟରେ ମଧ୍ୟ ପ୍ରାୟଶଃ ସେହିପରି ଥିଲା । ସ୍ଥୂଳରେ କହିଲେ, ଉତ୍କଳର ଆଚାର ଓ ବ୍ୟବହାରକ୍ରମ ତାଙ୍କ ଦିନାବଧି ଏ ଦେଶରେ ଏକ ପ୍ରକାର ଚଳି ଆସୁଅଛି ବୋଲିବାକୁ ହେବ, ତଥାପି ପାଠକଙ୍କ ତୃପ୍ତି ନିମନ୍ତେ ଏ ସମ୍ବନ୍ଧରେ ଗ୍ରନ୍ଥ ମଧ୍ୟରୁ କେତେକ ବିଶିଷ୍ଟ କ୍ରମମାନ ଉଦ୍ଧୃତ କରି ନିମ୍ନରେ ସମାସତଃ କିଛି ଲେଖୁଅଛୁଁ ।

ଗାନ୍ଧାରୀ ଓ ପାଣ୍ଡୁଙ୍କର ଉପସ୍ଥିତ ଘଟଣାର ବର୍ଣ୍ଣନା ବିଚାର କଲେ ବୋଧହୁଏ କବିଙ୍କ ସମୟରେ ରାଜ ସ୍ତ୍ରୀ ବା ରାଜ ମହିଷୀମାନେ ମଧ୍ୟ ସଂପ୍ରାପ୍ତ ବୟସ୍କ ଦେବରଙ୍କ ସମ୍ମୁଖରେ ଆଉ ଗୁରୁବର୍ଗଙ୍କ ନିକଟରେ ପ୍ରତ୍ୟକ୍ଷତଃ ନିଃଶଙ୍କ

ଘବରେ ଉପସ୍ଥାନ ବା ଉପବେଶନ କରୁ ନ ଥିଲେ । ପାଣ୍ଡୁଙ୍କ ନିକଟରେ ଦେବଗଣଙ୍କ ସମାଗମ ଜାଣି, ସ୍ତ୍ରୀକଏ ଅନ୍ତରାଳରେ ରହୁଥିଲେ କିମ୍ବା କଞ୍ଚୁକ ଅନ୍ତର ହେଉଥିଲେ [୧] ଯଦିଚ ସେ ସମୟରେ ଦେବର ଓ ଜ୍ୟେଷ୍ଠଭ୍ରାତୃଜାୟାଙ୍କର ଏକତ୍ର ପ୍ରାତ୍ୟକ୍ଷିକ ଉପସ୍ଥିତ ହେବାର ନ ଥିଲା, ତେବେ କନିଷ୍ଠଭ୍ରାତୃଜାୟା ପ୍ରଭୃତିଙ୍କର ଦେବଗଣଙ୍କ ସହ ଏକତ୍ରାବସ୍ଥାନର ଏକାନ୍ତ ଅଭାବ ଥିଲା ବୋଲି କହିବା ବାହୁଲ୍ୟ ମାତ୍ର । ଏଥିରୁ ପୁଣି ଜଣା ଯାଉଅଛି କି, ସେହି ସମୟରେ ନାରୀମାନଙ୍କର ଅବରୋଧ ପ୍ରଥା ଇଦାନୀଂତନତମ ଅପେକ୍ଷା ଗାଢ଼ତର ଥିଲା । ବର୍ତ୍ତମାନ ତାହା ଅନେକ ପରିମାଣରେ ଶିଥିଳ ହୋଇ ପଡ଼ିଲାଣି ।

ପୂର୍ବେ ଏହି ମିତ-ବ୍ୟୟୀ ଉତ୍କଳରେ ମଧ୍ୟ ଧନଶାଳୀମାନେ ପରସ୍ୱଲୋଲୁପ ଧନୈକପ୍ରାଣ ଅଧର୍ମାଶ୍ରିତ କେତେକ ରାଜା ଓ ଦସ୍ୟୁମାନଙ୍କର ଅପହରଣେଚ୍ଛା ଭୟରେ ନିଜର କଷ୍ଟୋପାର୍ଜିତ କିମ୍ବା ପୈତୃକ ସମ୍ପତ୍ତିରାଶି ଗୁପ୍ତତଃ ଭୂଗର୍ଭସ୍ଥ କରୁଥିଲେ; ଘରେ ପର୍ଯ୍ୟାପ୍ତ ଧନ ଥିଲେ ସୁଦ୍ଧା ଲୋକେ ରାଜଭୟରୁ ଭିକ୍ଷୁକ ବା ଦରିଦ୍ର ପ୍ରାୟ କୁଚେଲ ଓ କୁବେଶ ହୋଇ ସଞ୍ଚରଣ କରୁଥିଲେ । ଏହାର ପ୍ରମାଣ ଏହି ଗ୍ରନ୍ଥର ଅନେକତ୍ର ଦେଖାଯାଏ [୨] ବର୍ତ୍ତମାନ ଇଂରାଜ ଆଧିପତ୍ୟର ସୁମଙ୍ଗଳାବଳିରୁ ଏହି ଅତ୍ୟାଚାର ବହୁ ସମୟରୁ ଏକାବେଳକେ ବିଲୁପ୍ତପ୍ରାୟ ହୋଇଯାଇ ଅଛି ।

ଦ୍ରୋଣାଚାର୍ଯ୍ୟ ପ୍ରଥମତଃ ଦ୍ରୁପଦାଧିପତିଙ୍କର ଆପତ୍କାଳୀନ ମିତ୍ର ଓ ସଦୁପଦେଶକ ଥିଲେ । ସୌଭାଗ୍ୟକ୍ରମେ ସମୟରେ ଦ୍ରୁପଦରାଜ ରାଜ୍ୟପ୍ରାପ୍ତ ହେବାରୁ କୌଣସି କାରଣବଶତଃ ଦ୍ରୋଣ ରାଜବିଦ୍ୱେଷୀ ହୋଇ ଦ୍ରୁପଦ ରାଜ୍ୟରେ ଉପଗତ ହୋଇଥିଲେ, ସେହି ସମୟରେ କେତେକ ରାଜପୁରୁଷ ବା ରାଜକର୍ମଚାରୀ ରାଜା ଓ ଦ୍ରୋଣଙ୍କର ପୂର୍ବସୌହୃଦ ସ୍ମରି ରାଜାଙ୍କଠାରେ ତଦାଗମନବାର୍ତ୍ତା

---

[୧] ଗାନ୍ଧାରୀ ଅନ୍ତର ହେଲେ ଦେଖିଣ ପାଣ୍ଡୁଙ୍କୁ ।
ସଞ୍ଜୟ ମନ୍ତ୍ରୀ କହେ ଧୃତରାଷ୍ଟ୍ର ରାଜାଙ୍କୁ । ଆ. ପ.

[୨] ଭଣ୍ଡାର ଫେଡ଼ିଣ ତାକୁ ଲକ୍ଷ ଧନ ଦେଲେ ।
ଆପଣାର ଘରେ ନେଇ ପୋତ ଯା ବୋଇଲେ ।
× × × ×
ଧନମାନ ନେଇ ସେ ପୋତିଲା ନିଜ ପୁରେ ।
ସର୍ବଦା ଗୋଡ଼ାଇ ଥାଇ ଝାଡୁର ସଙ୍ଗରେ । ଆ. ପ.

ଅବିଳମ୍ବେ ଜଣାଇ ଦେଇଥିଲେ । ଦ୍ରୁପଦ ସମାଗତ ଦ୍ରୋଣଙ୍କୁ ଭିକ୍ଷୁକ ବ୍ରାହ୍ମଣ ପ୍ରାପ୍ୟ ମଣି ସମ୍ବାଦଦାତା କର୍ମଗୃସ୍ତମାନଙ୍କ ପ୍ରତି ବିରକ୍ତ ଓ ସରୋଷ ହୋଇ ଦଣ୍ଡବିଧାନ କରିଥିଲେ ବୋଲି ଆଦି ପର୍ବରେ ଉକ୍ତ ଅଛି । ଏ ବଡ଼ ବିଲକ୍ଷଣ ବିବେକର ବିଚାର । କିନ୍ତୁ ଏଥିରେ ସମ୍ବାଦଦାତାମାନଙ୍କର ଦୋଷ କଣ ? ଏଥିରୁ ସ୍ପଷ୍ଟ ଜଣା ଯାଉଅଛି, ଆଜକୁ ପ୍ରାୟ ପାଞ୍ଚଶତ ବର୍ଷ ପୂର୍ବେ ସୁଦ୍ଧା ଏହି ଉତ୍କଳରେ ଏତାଦୃଶ ଅକୃତଜ୍ଞ ବିବେକଶୂନ୍ୟ ରାଜା କେତେକ ଥିଲେ, ଅବିବେକତା ରୂପ ଦୁଷ୍ଟଗ୍ରହାବେଶ ରାଜସମାଜରେ ମଧ୍ୟ କେତେକଙ୍କ ହୃଦୟକୁ ସମ୍ପୂର୍ଣ୍ଣତଃ ଅଧିକାର କରିଥିଲା ।

ଏହି ଭାରତ ଗ୍ରନ୍ଥରେ ବିଶେଷତଃ ଉରସଲ (ଶବୂର—ଉରଃଶଲ୍ୟ) ପଦ ରାଜବଂଶୀୟ ଉପାଧିରୂପେ ସାହାମଲ୍ଲ ବା ସାହସ ମଲ୍ଲ କିମ୍ବା ସାମଲ ପଦ ସାଧାରଣ ବୀରମାନଙ୍କର ଉପାଧିରୂପେ ପ୍ରଚଳିତ ଥିବାର ଅନେକ ସ୍ଥଳରେ ଲେଖା ଅଛି ।

ଜରାସନ୍ଧଙ୍କ ପୁତ୍ର ସହଦେବଙ୍କର ଅଭିଷେକ ବର୍ଣ୍ଣନାରେ ମଧ୍ୟ ଏପରି ଉପାଧିଯୁକ୍ତ ବ୍ୟକ୍ତିମାନଙ୍କର କଥା ଲେଖି ଅଛନ୍ତି । ଏଥିରୁ ଜଣା ଯାଉଅଛି, ଉତ୍କଳରେ ଆଜକୁ ପାଞ୍ଚଶତ ବର୍ଷ ପୂର୍ବରୁ ଏତାଦୃଶ ରାଜଦତ୍ତ ଉପାଧି ପଦ-ମାନଙ୍କର ବ୍ୟବହାର ଚଳି ଆସୁଅଛି । [୧] ସାହାଣୀଆ ପଦର ସାର୍ଥକତା ବା ବ୍ୟୁତ୍ପତ୍ତିକ୍ରମ ସମ୍ପୂର୍ଣ୍ଣତଃ ଧରିଯାଇ ନ ପାରେ ସତ୍ୟ, କିନ୍ତୁ ସାହା ମଲ୍ଲ ବା ସହ ମଲ୍ଲ ପଦଟି ସଦୃଶାର୍ଥ ସହ ଓ ମଲ୍ଲ ଶବ୍ଦର ଅର୍ଥାନୁକୂଲ୍ୟରେ ଗଠିତ ହୋଇଥିବା ସୁସ୍ପଷ୍ଟ ଜଣା ଯାଉଅଛି, ଅଦ୍ୟାପି ଉତ୍କଳରେ ସର୍ବତ୍ର ସାହାଣି ଓ ସାହା ମଲ୍ଲ ବା ସାମଲ ଉପାଧି ପ୍ରଚଳିତ ଅଛି । ଏହି ଉପାଧିରେ ଭୂଷିତ ଲୋକେ ପଦାତିମାନଙ୍କର ଏକପ୍ରକାର ଅଧିନେତା ବା ଅଧିପତି ଅଟନ୍ତି ।

ପୂର୍ବେ ଆମ୍ଭମାନଙ୍କ ଦେଶରେ ବଳବତ୍ତା ଓ ବୁଦ୍ଧିର୍ଷିତା ପ୍ରକାଶାର୍ଥ ବଳବାନ୍ ବା ବୀରପୁରୁଷମାନଙ୍କଠାରେ ବାହୁତ୍ୱ [୨] ଆରୋପିତ କରୁଥିଲେ । ତାହାର କାରଣ ଏହି ଯେ ଲୋକଙ୍କ ମନରେ ଏହି ଆସ୍ଥା ଜନ୍ମିଥିଲା କି ରାହୁ

---

[୧] ସାହାଣିଆ ସାହାମଲ୍ଲ ଅନେକ ନିଯୋଗୀ ।
ସମସ୍ତ ବେପାଶ୍ୱ ଯେ ଧାମନ୍ତି ବେଗି ବେଗି । ସ. ପ.

[୨] ସ୍ୱାମି ! କଳି ଦେଶ ରାଜା ହେଲେ ବୀରବାହୁ ।
ଦଣ୍ଡ ବାହିଲ ସେ ଯମରେ ଯେହ୍ନେ ରାହୁ । ବି. ପ.

ବିଦେଷିର ଅମୋଘ ଗୁରୁତର ଆଘାତରେ ଛିନ୍ନମସ୍ତକ ହୋଇ ସୁଦ୍ଧା ସଙ୍କଳ୍ପିତ କାର୍ଯ୍ୟରୁ ବିରତ ହୋଇ ନ ଥିଲେ, କୃତକାର୍ଯ୍ୟ ହେବାପାଏ ଅଗ୍ରସର ହୋଇ-ଥିଲେ। ଅତଏବ ତାଦୃଶ ଦୁର୍ଦ୍ଦମ୍ୟତାର ଉପଲକ୍ଷରେ ବୀରପୁରୁଷମାନଙ୍କୁ ସହୃତ୍ତ୍ୱରେ ଯୁକ୍ତ କରୁଥିଲେ। ଏହି ଗ୍ରନ୍ଥ ମଧ୍ୟସ୍ଥ ବୀର ବର୍ଣ୍ଣନାର ସମଧିକ ସ୍ଥଳରେ ବୀରମାନଙ୍କୁ କବି ମହୋଦୟ ତାହାହିଁ କରିଅଛନ୍ତି। ଅଦ୍ୟାପି ଉତ୍କଳରେ ତଦନୁକରଣରେ "ରଣବୀର" "ରଣସିଂହ" ପ୍ରଭୃତି ବୀରତ୍ୱପର୍ଯ୍ୟାୟନ-ଦ୍ୟୋତକ ଉପାଧିମାନ ପ୍ରଚଳିତ ରହିଅଛି।

ଉତ୍କଳରେ ସାରଳାଦାସଙ୍କ ସମୟରୁ କମ୍ବା ତତ୍ପୂର୍ବରୁ ଆଜି ପର୍ଯ୍ୟନ୍ତ ରାଜସମାଜରେ ବ୍ୟବହାରବିତ୍ମାନଙ୍କ ପାଇଁ ସୁମନ୍ତ (ସୁମନ୍ତ୍ର = ଯେ ଉତ୍ତମ ମନ୍ତ୍ରଣା କରିପାରନ୍ତି) ପ୍ରଭୃତି ଉପାଧିର ଦାନକ୍ରମ ପ୍ରଚଳିତ ହୋଇ ଆସୁଥିବାର ସ୍ପଷ୍ଟ ଜଣାଯାଉଅଛି। ପାଣ୍ଡବମାନେ ଏକଚକ୍ରାପୁରର ସନ୍ନିହିତ ଓଡ୍ଡାଦି ଶିବପୁରରେ ଯେତେବେଳେ ଅବସ୍ଥାନ କରୁଥିଲେ, ତଦା ଭୀଷ୍ମସେନ ତହିଁ ରାଜପଦରେ ଅଧିଷ୍ଠିତ ହୋଇ ତଦୀୟ ପୁରୋହିତଙ୍କୁ ସୁମନ୍ତ ଉପାଧି ପ୍ରଦାନ କରିଥିବାରୁ ଆଦିପର୍ବରେ ଉକ୍ତ ଅଛି। ବର୍ତ୍ତମାନ ସୁମନ୍ତ ପଦ କରଣମାନେ ମଧ୍ୟ ପାଇପାରୁ ଅଛନ୍ତି।

ଏ କବି ମହାଶୟ ପ୍ରାୟଶଃ ପ୍ରତ୍ୟେକ ଘଟନାରେ ଯେପରି ତିଥିବାରାଦିର ଓ ମୁହୂର୍ତ୍ତ, ଯୋଗ, ଲଗ୍ନାଦିର ଶୁଭାଶୁଭ ବିବରଣ ଦେଇଅଛନ୍ତି, ସେଥିରୁ ଜଣାଯାଏ, ସେ କାଳରେ ପ୍ରାୟ ସମସ୍ତଙ୍କୁ ନିତ୍ୟ ନୈମିତ୍ତିକ ଅନୁଷ୍ଠାନରେ ଜ୍ୟୋତିଃଶାସ୍ତ୍ରୀୟ ମତ ଅତ୍ୟାବଶ୍ୟକ ପଡୁଥିଲା। କାର୍ତ୍ତାନ୍ତିକମାନଙ୍କର ଆଦେଶ ଉପଦେଶ ନ ପାଇଲେ ଲୋକେ ବୋଧହୁଏ କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରୁ ନ ଥିଲେ।

ଆମ୍ଭମାନଙ୍କ ଦେଶରେ ଅଦ୍ୟାପି ଜ୍ୟୋତିଃଶାସ୍ତ୍ରସମ୍ମତ କୃଷି ଓ ବାଣିଜ୍ୟ ପ୍ରଭୃତି ବିଷୟକ ଯେଉଁ ଲୋକ ବଚନଗୁଡ଼ିକ (ଏକପ୍ରକାର ପ୍ରବଚନ) ପ୍ରଥିତ ଅଛି, ବିଶ୍ୱାସ ହୁଏ, ସେଗୁଡ଼ିକର ସୃଷ୍ଟି ଏହି ସମୟରୁ ଆରମ୍ଭ ହୋଇଥିଲା।

ଏହି ଭାରତର ଅନେକ ସ୍ଥଳରେ କବି ମହାଶୟ ତାତ୍କାଳିକ ରାଜା-ମାନଙ୍କର ବେହରଣ ବିଜୟୋତ୍ସାଦ କ୍ରମକୁ ମଧ୍ୟ ଚିତ୍ରଣ କରିଅଛନ୍ତି। ସେଥିରୁ ଜଣାଯାଏ, ତେତେବେଳେ ରାଜାମାନେ ମଣୋହି ପରେ ସୁଖଶୁପ୍ତ ରହିବା ପାଇଁ କେବଳ ପଦଭରେ ବିଜେ ନ ହୋଇ ଆପ୍ତ ଓ ବିଦ୍ୱଜ୍ଜନଙ୍କ ସହିତ ସଭାରେ ବା

ବେହରଣରେ ବଙ୍କେ କରୁ ନ ଥିଲେ । ସେପରି ସମୟରେ କୌଣସି ପ୍ରକାର ରାଷ୍ଟ୍ରୀୟ କାର୍ଯ୍ୟରେ ନ ଲାଗି ବିଦେଶାଗତ ଭଦ୍ରଲୋକଙ୍କ ସହ ପ୍ରୟୋଜନମତେ ଆଳାପ କରୁଥିଲେ, ନୁହେ ତ କୌଣସି ପ୍ରକାର ପୁରାଣ ବା ଶାସ୍ତ୍ର ସମ୍ବନ୍ଧୀୟ ଆଳାପରେ ଚିତ୍ତ ବିନୋଦନ କରୁଥିଲେ । ବର୍ତ୍ତମାନ ଯୁଗରେ ମଧ୍ୟ ତାଦୃଶ ନିରଳସପ୍ରକୃତିକ ସାହିତ୍ୟବିନୋଦ ରାଜାମାନେ ନିଦ୍ରାଦେବୀଙ୍କର ଅନ୍ତର୍ମାରସ ବହିଃରସ କୋଡ଼ରେ ପଡ଼ି ରହିବାକୁ ନ ରୁଚି 'କାବ୍ୟ ଶାସ୍ତ୍ର ବିନୋଦେନ କାଳୋଗଚ୍ଛତିଧୀମତାଂ' ଏହି ସଦୁପଦେଶର ପକ୍ଷପାତୀ ହୋଇ ଅମୂଲ୍ୟ ସମୟକୁ ଉଚିତ ରୂପରେ ଯାପିତ କରନ୍ତି । ପୂର୍ବ ଧୃତରାଷ୍ଟ୍ରଙ୍କର ଏହିପରି ସମୟରେ ଯୁଧିଷ୍ଠିରଙ୍କ ପ୍ରେରିତ ମହାମତି ବିଦୁର [୧] ଉପସ୍ଥିତ ହୋଇ ରାଜନୀତି ବ୍ୟବହାର ନୀତି ପ୍ରଭୃତି ଆଳାପ କରିଥିବା ରୂପର ଚିତ୍ରଣରେ କବି ମହାଶୟ ଉଦ୍ୟୋଗ ପର୍ବରେ ତାତ୍କାଳିକ ରାଜାମାନଙ୍କର ବ୍ୟବସ୍ଥାର ଆଭାସ ସୂଚନା କରି ଅଛନ୍ତି ।

ସାରଳାଦାସଙ୍କର ନୀତି ବାକ୍ୟ ଚିତ୍ରଣ ସୃଷ୍ଟି ଅତି ମନୋହର । ଏ ମହାଶୟ ମୂଳଗ୍ରନ୍ଥରେ ଉକ୍ତ ଯାବତୀୟ ନୈତିକ ସନ୍ଦର୍ଭକୁ ଯଥାଯଥ ଚିତ୍ରିତ କରି ନ ଥିଲେ ସୁଦ୍ଧା ନିଜର ଅଭିରୁଚି ଓ ମନୀଷା ଅନୁସାରେ ଯେ ଯେ ବିଷୟାବ-ତରଣସ୍ଥଳମାନଙ୍କରେ ତଦୁଚିତ ରୂପରେ ନୈତିକ ଚିତ୍ରଣର ପ୍ରତିମା ପ୍ରଦର୍ଶନ କରି ଅଛନ୍ତି, ସେଗୁଡ଼ିକ ଅବଶ୍ୟ ହୃଦୟ ସ୍ପର୍ଶ କରୁଅଛି । ତାଦୃଶରୂପର କେତେଗୋଟି ସ୍ଥାନ ଏକମାତ୍ର ବିରାଟ ପର୍ବରୁ ଉନ୍ନୟନ କରି ନିଦର୍ଶନରୂପରେ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରୁଅଛୁଁ ।

(୧) ବୈରାଟିକ ଭଦ୍ରାସନରେ ସମାରୂଢ଼ ପାଣ୍ଡବମାନଙ୍କ ପ୍ରତି ପରିକୁପିତ ଓ ଜିଘାଂସୋଦ୍ୟତ ବିରାଟରାଜଙ୍କୁ ତଦୀୟ ପୁତ୍ର ଉତ୍ତର ବୁଝାଉ ଅଛନ୍ତି:—

ପର୍ବତ ଭୁଟେ କି ନାଥ! ଟେଳାରେ ମାଇଲେ ?
ସମୁଦ୍ର ପୋତି ହୁଏ କି ଧୂଳି ପକାଇଲେ ?
ମୃଗର ବଳେ କାହିଁ ଯେ ସିଂହ ଜିଣିହୁଏ ?
ଭୁଜାହାର ପିଟିଲେ କି ଲୁହା ଭୁଟିଯାଏ ?

---

[୧] ମଣୋହ୍ମ ଉତ୍ତରେ କରି ବାହାର ବିଜୟେ ।
ଏକ ସ୍ଥାନେ ଛନ୍ତି ଧୃତରାଷ୍ଟ୍ର ଯେ ସଞ୍ଜୟେ । ଇତ୍ୟାଦି । ଉ. ପ.

ଭୂଜଙ୍ଗମ ବଳମାନ ଅପ୍ରମିତ ହେଲେ
ସେ କି ରହି ପାରନ୍ତି ବୈନତେୟ ଆସିଲେ ?
ବହୁ ପରିମାଣ ଗଜ ଏକତ୍ର ହୋଇଲେ
ଏକା କେଶରୀକୁ ଜିଣି ପାରିବେ କି ଭଲେ ? ବି. ପ.

ଏତାଦୃଶ ପଦ୍ୟଗୁଡ଼ିକ ପାଠ କଲାକ୍ଷଣି ମାତ୍ର କୋବିଦଙ୍କ ହୃଦୟରେ—

ତାବତ୍ ଗର୍ଜନ୍ତି ମାତଙ୍ଗାଃ, ବନେ ମତ୍ତମଦାଳସାଃ ।
ମସ୍ତକନ୍ୟସ୍ତଲାଙ୍ଗୂଳଃ, ଯାବନ୍ନାୟାତି କେଶରୀ ।

ଇତ୍ୟାକାରକ ପ୍ରାଚୀନ ନୀତିବାକ୍ୟଗୁଡ଼ିଏ ସହସା ସମାରୂଢ଼ ହୁଏ ।

(୨) ବାବୁ ! ବିଷ ଅମୃତ ଯେ ଜିହ୍ୱା ଅଗ୍ରେ ଥାଇ
ସଦ୍‌ବୁଦ୍ଧି ଥାଉଁ କି ଅସଦ୍‌ମାର୍ଗେ ଯାଇ ?
ବାବୁ ଧର୍ମଅଂଶେ ଥିଲେ ହେ ମାନଗୋବିନ୍ଦ !
କଦାଚିତେ ପ୍ରାଣିଙ୍କୁ ନ ପଡ଼େ ପରମାଦ ।

ବିରାଟ ପର୍ବରେ ଧୌମ୍ୟ ପୁରୋହିତଙ୍କ ମୁଖରୁ ଦୁର୍ଯ୍ୟୋଧନଙ୍କୁ ବୁଝାଉଥିବା ଏହି ବାକ୍ୟମାନଙ୍କରେ "ବାକ୍ ମାଧୁର୍ଯ୍ୟାତ୍ ସର୍ବଲୋକପ୍ରିୟତ୍ୱଂ ବାକ୍ ପାରୁଷ୍ୟାତ୍ ସର୍ବଲୋକାହିତତ୍ୱଂ" ଏହି ନୈତିକ ବାକ୍ୟର ଭାବ ନିହିତ ଥିବାର ପ୍ରତିପନ୍ନ ହେଉଅଛି ।

(୩) ପାଣ୍ଡବମାନେ ବିପଦ ସମୟରେ ବିରାଟ ରାଜଙ୍କ କର୍ତ୍ତୃକ ପରିରକ୍ଷିତ ଓ ଉପକୃତ ହୋଇଥିବାରୁ ଯୁଧିଷ୍ଠିର କୃତଜ୍ଞତାବେ ପ୍ରଣୋଦିତ ହୋଇ ତ୍ରିଗର୍ତ୍ତ ରାଜାଙ୍କଦ୍ୱାରା ବନ୍ଦୀକୃତ ବିରାଟ ନୃପତିଙ୍କୁ ମୁକ୍ତ କରିବା ଆମ୍ଭମାନଙ୍କର ପ୍ରଧାନ କର୍ତ୍ତବ୍ୟ ବୋଲି ଭୀମସେନଙ୍କୁ ବୁଝାଇ ଅଛନ୍ତି କି—

ଯେଉଁ ବୃକ୍ଷ ତଳରେ ଯେତେବେଳେ ବସି ।
ତାର ଗୁଣ ସୁମରଣା କର ଭବା ନିଶି ।
ଧିକ ଆମ୍ଭ ଜୀବନରେ ପୁଣ୍ୟ କିନା ଆଶି ।
ନର୍କେ ମୁଁ ରହୁଛି ବିରାଟ କଷ୍ଟ ଦେଖି ।

× × × ×

ବାବୁ ଜାଣ ଯାହାର ତାହାର କାର୍ଯ୍ୟ କରି ।
କଲା ଉପକାର ହୃଦଗତେ ନ ପାସୋରି ।

ଏ ସ୍ଥଳରେ ଭାବ ସାଦୃଶ୍ୟରୁ "ଉପକାରିଣି ବିଶ୍ରବ୍ଧେ, ଶୁଦ୍ଧମତୌ ଯଃ ସମାଚରତି ପାପଂ । ତଂ ଜନମସତ୍ୟସନ୍ଧଂ ଭଗବତି ବସୁଧେ କଥଂ ବହସି" "ଯତଃଗେନ ମୟା ଜଗଦ୍ଧିତେରୁପକୃତିର୍ୟ ତବ କଂ ପ୍ରଭୂଯ୍ୟତେ । ଇତି ବେଦ୍‌ନକୁ ତ୍ୟଜନ୍ତୁ ମାଂ ତଦପି ପ୍ରତ୍ୟୁପକର୍ତ୍ତୁ ମର୍ତ୍ତ୍ୟଃ" ଇତ୍ୟାକାରକ ପ୍ରାଚୀନ ନୀତିବାକ୍ୟ-ଗୁଡ଼ିଏ ହୃଦୟତନ୍ତ୍ରୀକୁ ତାଡ଼ନପୂର୍ବକ ଉତ୍ତେଜିତ କରିବେ ।

(୪) ଭୀଷ୍ମ ବୋଇଲେ ହେ ତେଣେ ପ୍ରୟୋଜନ କିସ ?
ପରଧନେ ଇଚ୍ଛା କଲେ ନିଜ ଧର୍ମ ନାଶ । ବି. ପ.

ଅଥବା ସମୁଦ୍ର ଯେବେ ଲଙ୍ଘିବେକ ମର୍ଯ୍ୟ ।
ପୃଥ୍ୱୀ ମାତ୍ର ଆଉ ତାହା ପାରିବ କି ସହି । ଦ. ପ.

କଲା ଉପକାର ନ ଘେନନ୍ତି ଯେଉଁ ଜନ ।
ସେ ପ୍ରାଣୀ ପ୍ରତ୍ୟକ୍ଷେ ନର୍କେ ହୁଅନ୍ତି ଯେ ଲୀନ । ବି. ପ.

ଇତ୍ୟାଦି ।

ଇତ୍ୟାକାରକ ସ୍ଥଳମାନ "ଅଙ୍ଗୀକୃତଂ ସୁକୃତିନଃ ପରିପାଳୟନ୍ତି" "କୋ ଧର୍ମ ବିନାଶ ହେତୁଃ ? ପରବିତ୍ତତା ପରଧନାକାଙ୍କ୍ଷା ।" "ବିପଶ୍ଚାର୍ଥ-ବୃଦ୍ଧୀନାଂ ମୂଲଶ୍ଚେ ବିପଦାଗମଃ" ଇତ୍ୟାଦି ନୀତିଗର୍ଭ ବାକ୍ୟମାନ ହୃଦୟପଟରେ ଅଙ୍କିତ କରିବେ ।

ମୂଳ ମହାଭାରତ ଗ୍ରନ୍ଥର ସ୍ଥାନେ ସ୍ଥାନେ ପ୍ରସ୍ତାବବଶତଃ ଅନେକଗୁଡ଼ିଏ ନୈତିକ ଗଳ୍ପ ନିହିତ ଅଛି । ଏହି ଭାରତକର୍ତ୍ତା ମହାକବି ମହାଶୟ ସେ ସବୁ ଆଶ୍ରୟ ନ କରି ସୁଦ୍ଧା ନିଜର ବୁଦ୍ଧି ସିଦ୍ଧି ଅନୁସାରେ ତାତ୍କାଳିକ ଦେଶପ୍ରଚଳିତ ଅନେକଗୁଡ଼ିଏ କିମ୍ବଦନ୍ତୀ ବା ଗଳ୍ପ କଳ୍ପନାର ସନ୍ଦର୍ଭ ଗ୍ରନ୍ଥ ମଧ୍ୟରେ ପ୍ରାସଙ୍ଗିକ-ରୂପେ ଅନେକବି ଲେଖି ରଖି ଅଛନ୍ତି । ସେ ସବୁ ଏକତ୍ରିତ କଲେ ଗୋଟାଏ ସ୍ୱତନ୍ତ୍ର ପୁସ୍ତକ ହେବ । ଅତଏବ ଏକମାତ୍ର ଉଦ୍ୟୋଗ ପର୍ବରୁ କେତେକ ଗଳ୍ପ ଉଦ୍ଧୃତ କରି ଗ୍ରନ୍ଥର ପରିସମାପ୍ତି ସ୍ଥଳରେ ପାଠକମାନଙ୍କୁ ଉପହାର ଦେଉଅଛୁଁ ।

ଉଦ୍ୟୋଗ ପର୍ବରେ (ଛାପାରେ ୬୦-୬୨ ପୃ:) ଦେଖିବେ, ମହାଦେବଙ୍କର କୃପାମୟତ୍ୱ ଓ ଆଶୁତୋଷତ୍ୱ ପ୍ରକାଶନାର୍ଥ କବି ଶକୁନିଙ୍କ ମୁଖରେ ଗୋଟାଏ ଗଳ୍ପ ଆରମ୍ଭ କରାଇ ଦେଇ ଅଛନ୍ତି । ଏହି ଗଳ୍ପଟିର ସାର ମର୍ମ ଏହି— ଏକଦା ସପାର୍ବତୀକ ଦେବଦେବ ମହାଦେବ ଜଗନ୍ନିଷ୍ଠାବଶତଃ ନାନା ସ୍ଥାନ ଭ୍ରମଣ

କରୁଅଛନ୍ତି । ନାମ ଶ୍ରବଣରେ ଦଦୃକ୍ଷା ଜନ୍ମିବାରୁ ବେଦପୁର ନାମକ ଏକ ଅଗ୍ରହାରରେ ଉପଗତ ହେଲେ । ଦେଖିଲେ ଯେ ସେହିଠାରେ ଆଠଗୋଟି ଅପ୍ରାପ୍ତ-ବୟସ୍କା ବାଳକା ଧୂଳି ଖେଳାରେ ରତ ଥାଇ ସ୍ୱଭାବସିଦ୍ଧ ମୁଗ୍ଧତାର କୌତୂହଳରେ ଅଯତ୍ନଲବ୍ଧ ଧୂଳିପାଳିରେ କେବଳ ଘୃତ ଓଅଣର ସୃଷ୍ଟି କରି ଖେଳା ଘର ଆରମ୍ଭ କରି ଅଛନ୍ତି । ଦୟାମୟ ଈଶ୍ୱର କୌତୂହଳାକ୍ରାନ୍ତ ହୋଇ ସେମାନଙ୍କୁ ଭିକ୍ଷା ପ୍ରାର୍ଥନା କଲେ । ବାଳିକାଗଣ ଚମତ୍କୃତା ହୋଇ ଧୂଳି ମୁଠାଏ ଲେଖାଏଁ ଆଣି ଯୋଗୀଶ୍ୱରଙ୍କୁ ଭିକ୍ଷାସ୍ୱରୂପ ସମର୍ପଣ କଲେ । ଧୂଳି ହେଉ ପଛକେ, ସେମାନେ ଭକ୍ତି ଓ ଶ୍ରଦ୍ଧାରେ ପ୍ରଦାନ କରି ଅଛନ୍ତି ବୋଲି ମହାଦେବ ତାହାକୁ ରତ୍ନରାଶି ଅପେକ୍ଷା ମହତ୍ତର ଭାବ ସାଦରେ ଗ୍ରହଣ କଲେ ଏବଂ ପରିତୁଷ୍ଟ ହୃଦୟରେ ସେମାନଙ୍କୁ ସ୍ୱର୍ଗରେ ଉମ୍ମାଦ ଅପ୍ସରା ହେବାପାଇଁ ବର ପ୍ରଦାନ କଲେ । ଆମ୍ଭମାନଙ୍କ ଦେଶରେ ଈଶ୍ୱର ପାର୍ବତୀ ବୁଲି ବାହାରିବା ସମ୍ବନ୍ଧରେ ଅନେକଗୁଡ଼ିଏ ଗଳ୍ପ ପ୍ରଚଳିତ ଅଛି, ଏହି ଗଳ୍ପଟି ସେଥି ମଧ୍ୟରୁ ଗୋଟିଏ ।

ପାଠକେ ଶୁଣିଥିବେ, ଆମ୍ଭମାନଙ୍କ ଦେଶରେ ବହୁବିଧ ଭୂତକଥା ଶୁଣା ଯାଇଥାଏ । ସେଗୁଡ଼ିକ ମଧ୍ୟରୁ କେତେକ ନୀତି ବା ଉପଦେଶବର୍ଣ୍ଣିକ ମଧ୍ୟ ହୋଇଥାଏ । ଏ ମହାଶୟ ଉଦ୍ୟୋଗ ପର୍ବରେ ତଦ୍ରୂପ ବାବନା ଭୂତର ଗୋଟିଏ କଥା ଲେଖି ଅଛନ୍ତି । ଦୁର୍ଯ୍ୟୋଧନ ଶକୁନିଙ୍କ ଦୁର୍ମନ୍ତ୍ରଣାରେ କେବଳ ଆସକ୍ତ ହୋଇ ତାହାର କଥାରେ ଭ୍ରୂକ୍ଷେପ ନ କରି ଉନ୍ମାର୍ଗଗାମୀ ହେବାରୁ ହନୁମନ୍ତ ତାହାଙ୍କୁ ଔପଦେଶିକ କଥାଟିଏ କହି ଅଛନ୍ତି (୧) ସେହି କଥାଟି ଏହି— ଅଜ୍ଞାନପୁର ନଗରରେ ଜଣେ ଶୂଦ୍ର ଜାତୀୟ ହଳଳ ନିବାସ କରିଥାଏ । ତତ୍ରତ୍ୟ ଭୃଙ୍ଗଭଦ୍ରା ନଦୀକୂଳରେ ପ୍ରେତମାନେ ପ୍ରତ୍ୟହ ରୁଣ୍ଡି ଭୂତ ହୁଅନ୍ତି । ସେହି ହଳଳ ପ୍ରୋକ୍ତ ନଦୀତଟସ୍ଥ ଧବଳ ପର୍ବତର ତଟରେ ଖଣ୍ଡିଏ ଭୂମି ଗ୍ରହଣ କରି ମାଘୀ ତିଳ ବପନ କରିଥିଲା । ସମୟରେ ତତ୍ରତ୍ୟ ଅନାହାର-ଭୂତମାନେ ଉକ୍ତ ତିଳ ସବୁ ଖାଇ ପକାଇଲେ । ହଳଳ ତାହାଜାଣି ପାରି କ୍ରୋଧଭରେ ମୁଦ୍ରା ପ୍ରୟୋଗ କରି ଭୂତମାନଙ୍କୁ ଆକ୍ରମଣପୂର୍ବକ ବାନ୍ଧି ପକାଇଲା । ତେତେବେଳେ ସେମାନେ ନିତାନ୍ତ ଭୀତ ହୋଇ ଉଚ୍ଛିଷ୍ଟ ତିଳ ସବୁ ଦେଇ ପକାଇ ଥିଲେ । ତାହାର କେତେକ ଦିନ ପରେ ଭୂତମାନଙ୍କର ଅଧିପତି ବାବନାଭୂତ ଆସି ପହଞ୍ଚିଲା । ନିଜ ଆହାପରି

(୧) ମାନଗୋବିନ୍ଦର ଆଗେ ହନୁମନ୍ତ ବୋଲିବେ ।
କାଳେ ତା ହେବ ବହୁତ ବଚନ ମେଣ୍ଟିଲେ । ଉ. ପ. ୬୬-୬୭ ପୃ:

ଅତିପ୍ରକୃଷ୍ଟରେ କୃଷ୍ଣ ଜମି ଦେଖି କ୍ରୋଧରେ ଏକାନ୍ତ ଅସ୍ଥିର ହୋଇ ପଚାରିଲେ, ଏହି ମୋର କ୍ରୀଡ଼ାଭୂମିରେ କିଏ ସେ ଚାଷ କରିଅଛି ? ଭୃତମାନେ ଆମୂଳାନ୍ତ ସମସ୍ତ ବିଷୟର ପରିଚୟ ଦେଲେ । ସେହି ଗଉଳର ଜମା ଯିବ ନାହିଁ ବୋଲି ଅନେକଥା ବୁଝାଇ କହିଲେ । ତଥାପି ବାବନା ମାନିଲା ନାହିଁ । ପ୍ରୋକ୍ତ ଗଉଳକୁ ପରାଭବ ଦେବା ଇଚ୍ଛାରେ ତାର ପୁଅକୁ ଲଗିଲା । ଗଉଳ ଜାଲ ବିନ୍ୟାସ କରି ବାବନାକୁ ବାନ୍ଧି ଲୋହଜାଲରେ କଳିବାକୁ ବାହାରିଲା । ତେତେବେଳେ ବାବନା ଅନନ୍ୟୋପାୟ ହୋଇ ଗଉଳକୁ ଶରଣ ବୋଲି ଆତ୍ମରକ୍ଷାର୍ଥ ତାହାଠାରେ କୃପାଭିକ୍ଷା କଲା ଇତ୍ୟାଦି ।

ଉଦ୍ୟୋଗ ପର୍ବରେ ଯୁଧିଷ୍ଠିର ଓ ଶକୁନିଙ୍କ ସମ୍ବାଦରେ ଆଉ ଗୋଟିଏ କିମ୍ବଦନ୍ତୀ ପ୍ରକାଶ କରି ଅଛନ୍ତି । କୃଷ୍ଣବେଣୀ ନଦୀତୀରସ୍ଥ କାମପୁର ନଗରରେ ଜଣେ ଶୂଦ୍ର ନିବାସ କରୁଥିଲା । ତାହାର ଆଉ କେହି ନ ଥିଲେ, ପୋଷ୍ୟବର୍ଗରୁ ଏକମାତ୍ର ଭାର୍ଯ୍ୟା ଥିଲା । ତଥାପି ସେ ସଂସାରଯାତ୍ରା ନିର୍ବାହରେ ଅସମର୍ଥ । ସେଇଟି ବଡ଼ ଅଳସୁଆ, ଅନ୍ୟାନ୍ୟ କାର୍ଯ୍ୟ କିଛି କରିପାରେ ନାହିଁ । କେବଳ କାଷ୍ଠ ବିକ୍ରିୟ କରି ଯେ କୌଣସି ପ୍ରକାରେ କାଳଯାପନ କରୁଥାଏ । ଦିନେ ବଡ଼ ବର୍ଷା ହେଲା, ଅଜସ୍ର ଧାରାପାତର ବିରାମ ହେଲା ନାହିଁ, ଅଳସୁଆ କାଷ୍ଠ ଆନୟନାର୍ଥ ଗୃହରୁ ଆଉ ଯାଇ ପାରିଲା ନାହିଁ । ତାହାର ପ୍ରଧାନ କାର୍ଯ୍ୟ ଶୟନ, ତହିଁରେ ସେ ପଡ଼ି ରହିଲା । ଦେଖୁଁ ଦେଖୁଁ ସୂର୍ଯ୍ୟଦେବ ଅସ୍ତମିତ ହୋଇ ଆସିଲେ । ତେତେବେଳେ ଘରଣୀର ଘୋର ଭର୍ତ୍ସନାରେ ଏକାନ୍ତ ବ୍ୟାକୁଳ ଅଳସୁଆ ଅଗତ୍ୟା କୁଠାର ହସ୍ତରେ ବହିର୍ଗତ ହେଲା, କିନ୍ତୁ ନିଦ୍ରାକୃତାବଶରୁ ନଗର-ପ୍ରାନ୍ତସ୍ଥିତ ଜୀର୍ଣ୍ଣ ଦେବମଣ୍ଡପରେ ସୁଖସୁପ୍ତ ହୋଇ ପଡ଼ିଲା । ପ୍ରଦୋଷ ଆରାଧନାର ଶଙ୍ଖ, ଘଣ୍ଟା ଧ୍ୱନିରେ ସଚେତ ହୋଇ ଭାବିଲା, ଏବେ କଣ କରିବି? କାଠ ନ ଧରି ଘରକୁ ଯିବି କିପରି ? ବେଳ ଉଣ୍ଡି ଦେବାଳୟର ଭିତରେ ପଶିଲା, ଆଉ କିଛି ଦେଖିଲା ନାହିଁ, ଦାରୁମୂର୍ତ୍ତି ବିଷ୍ଣୁଙ୍କୁ ହାଣିବାକୁ ଉଦ୍ୟତ ହେଲା । ସହସା ବିଷ୍ଣୁ ଆବିର୍ଭୂତ ହୋଇ ତାହାର ହାତ ଧରି ପକାଇଲେ, ତାକୁ ବୋଇଲେ ରେ ମୂର୍ଖ, ସମସ୍ତ ଲୋକେ ଏହି ଦେବତାଙ୍କୁ ପୂଜା କରୁଅଛନ୍ତି, ତୁ ଯାଙ୍କୁ ହାଣିବାକୁ ବସିଛୁ ? ସେ କହିଲା, ମୁଁ ଜାତିରେ ଶୂଦ୍ର, ଦେବଧର୍ମ କିଛି ଜାଣେ ନାହିଁ, ଅନ୍ନକଷ୍ଟରେ ମରୁଅଛି, ଏ ଗୁଣ୍ଡିକୁ ହାଣି ନେଲେ ଝିଙ୍କରେ କେତେକ ଦିନ ପର୍ଯ୍ୟନ୍ତ ଦୁଇ ପ୍ରାଣୀ ସୁସ୍ଥ ହେବୁଁ । ତେତେବେଳେ ଦେବତା କହିଲେ, ଆମ୍ଭେ ନାରାୟଣ, ଆମ୍ଭଙ୍କୁ

ହାଣିଲେ ତୋର ସର୍ବନାଶ ହେବ । ସେ କହିଲା, ଆଚ୍ଛା ତୁମେ ଯଦି ଧନଜନ-ରକ୍ଷକ ନାରାୟଣ, ତେବେ ଆମର ଅନ୍ନକଷ୍ଟ ଦୂର କର । ଗୃହେଲ ପାଞ୍ଚ ମାଣ, ଆଉ ପାଞ୍ଚ ବୋଡ଼ କଉଡ଼ି ମାତ୍ର ଦେଲେ, ଆମେ ଦୁହେଁ ସୁଖରେ ବଞ୍ଚିବୁଁ, ଏତିକି ମାତ୍ର ପ୍ରଦାନ କର । ନାରାୟଣ କହିଲେ, ହେଉ ତେବେ ଯାଅ, ତୋର ନିବାସ ଗୃହର ଦକ୍ଷିଣରେ ଗଣପତିଙ୍କ ମନ୍ଦିରରେ ଗୃହେଲ କଉଡ଼ି ରଖା ଅଛି, ଓଠେଇ ଯାଅ । ଶୂଦ୍ର ସନ୍ତୁଷ୍ଟ ମନରେ ସେତିକି ନେଇ ଝିଅଟିକି ସୁଖରେ ବଞ୍ଚିଲା । ଝିଅ ସରିଲା, ଗୃହେଲ ସରିଲା, ନାରାୟଣ ଅଜ ଦେଇଲ ନାହିଁ । ଅଳସୁଆ କଷ୍ଟ ପାଇ କଷ୍ଟ ନିବାରଣର ସୁଲଭ ଉପାୟଭୂତ ସେହି ଦେବ ମୂର୍ତ୍ତିକୁ ଫେର ହାଣିବାକୁ ଗଲା । ପୁନରପି ନାରାୟଣ ଦେଖା ହୋଇ ବୋଲିଲେ, କିରେ ? ଝିଅଟିକି ବଞ୍ଚିବାପାଇଁ ତ କହିଥିଲୁ, ଫେର କାହିଁକି ଆସିଲୁ ? ଶୂଦ୍ର କହିଲା ନାରାୟଣ ! ମୁଁ ବଡ଼ ଅଳସୁଆ, ଏ ଉପାୟ ବଡ଼ ସୁଲଭ ମିଳିଲା, ମୋଠାରେ ଯଦି ତୋର ଦୟା ଅଛି, ମୁଁ ଖାଇଁଥିବା ଯାଏ ଏପରି ଦେଉଥାଅ । ସେ ଯାହାହେଉ ନାରାୟଣ ତାହା କଥାରେ ସମ୍ମତ ହେଲେ । ଅଳସୁଆ ନିର୍ଦ୍ଦିଷ୍ଟ ସ୍ଥାନରୁ ନିତ ପାଉଣା ନେଇ ସୁଖରେ କାଳଯାପନ କଲା । ତାହାର ପଡ଼ୋଶୀ ଅନନ୍ତ ନାମକ ଚଷା, ମାଳାନାମ୍ନୀ ତାହାର ଭାର୍ଯ୍ୟା, ଏ ଦୁହେଁ ମଧ୍ୟ ପିଲାଦିନୁଁ ବଡ଼ ଅଳସୁଆ ଥିଲେ । ଦିନେ ଅନନ୍ତ ମାଳାକୁ ଜିଜ୍ଞାସା କଲା, ଆମର ପଡ଼ୋଶୀ ଏହି ଅଳସୁଆ, କି ଉପାୟ କରି ସୁଖରେ କାଳ କଟାଉଅଛି ? ତାର ଭାର୍ଯ୍ୟାକୁ ଥରେ ପଚାର ତ ? ମାଳା ପୂର୍ବ ଅଳସୁଆର ଭାର୍ଯ୍ୟାର ମୁଖରୁ ବିଶ୍ୱାସସୂତ୍ରରେ ସବୁ ଶୁଣି ଆସି ଭର୍ତ୍ତାକୁ କହିଲା, ଅନନ୍ତ ସେହି ସମୟରେ କୁଠାରହସ୍ତରେ ଦେଉଳ ଭିତରେ ପଶି ଖଡ୍ଗାଙ୍ଗପାଣିଙ୍କୁ ଆକ୍ରମଣ କଲା, ତେତେବେଳେ ପ୍ରତିମା ମଧ୍ୟରୁ ସହସା ନରହରି ମୂର୍ତ୍ତି ଆବିର୍ଭୂତ ହୋଇ ଅନନ୍ତକୁ ବିଦାରିତ କରିବାକୁ ଉଦ୍ୟତ ହେଲେ । ତାହା ଦେଖି ଅନନ୍ତ ବୋଇଲା, କି ହେ ମହାପ୍ରଭୁ ! ଏ କଣ ! ଅଳସୁଆ ତୁମକୁ ହାଣିବାକୁ ଯିବାରୁ ନିତ ତାକୁ ଗୃହେଲ କଉଡ଼ି ଦେଲ, ମୋତେ ପୁଣି କାହିଁକି ଏପରି କରୁଛ ? ଦେବତା କହିଲେ, ଆରେ, ସେ ଅଳସୁଆର ଜ୍ଞାନ ନାହିଁ, ତୋର ପାପ ପୁଣ୍ୟ ଜ୍ଞାନ ଅଛି, ତୁ ଅକର୍ମଣ୍ୟ ନୋହୁ, କାର୍ଯ୍ୟ କରି ପାରୁ, କଷ୍ଟ ସହି ପାରୁ । ସେ ଅଳସୁଆ ଅସୁର-ପ୍ରକୃତି, ତାକୁ ଦେବତା ଡରନ୍ତି । ତୁ ଦେବ-ପ୍ରକୃତି, ଏପରି ଲୋକଙ୍କୁ ଦାଣ୍ଡ ଦେବତା ଡରନ୍ତି ନାହିଁ । ଇତ୍ୟାଦି ।

ତୁ ଦୁଃଖୀ ହେଲେହେଁ ଦେବ ବ୍ରାହ୍ମଣେ ଭଗତା ।
ଏପରି ଲୋକକୁ ଡରେ କ ଦାରୁ ଦେବତା । ଜ. ପ.

ପାଠକେ ! ଗ୍ରନ୍ଥର ସର୍ବାବସାନରେ ନିବେଦନ ଏହି, ମୁଁ ବହୁଦିନ ଆଲୋଡ଼ନ ବିଲୋଡ଼ନପୂର୍ବକ ପରିଶୀଳନ କରିଯାଇ ଥିବାରୁ ଏହି ମହାଭାରତର ଗୌରବ ସମ୍ୟକ୍ ଉପଲବ୍ଧି କରି ପାରିଅଛି । ଏଥିରେ ଏପରି କେତେକ ମନୋହର କବିତା ଦେଖି ପାରିଅଛି ଯେ ଆଧୁନିକ କେତେକ ଅଲ୍ପଜ୍ଞ ପଦ୍ୟ ଲେଖକଙ୍କ ରଚିତ ପଦ୍ୟାବଳୀ ଅପେକ୍ଷା ସେଗୁଡ଼ିକ ବହୁଗୁଣରେ ସମୁତ୍କୃଷ୍ଟ । ସାରଳାଦାସ କବି ଯାହା କି ଦେବୀଙ୍କ ପ୍ରସାଦ ପାଇଥିଲେ, ତାହା ତେଣେ ଥାଉ, ସେ ଯାବତ୍ ପରିମିତ ଗୁଣଗରିମାରେ ସମଲଙ୍କୃତ ଥାଇ କବିତା ରଚନାରେ ପ୍ରବୃତ୍ତ ହୋଇଥିଲେ, ଆଧୁନିକ କେତେକ ଲେଖକ ତାହାର ଶତାଂଶରେ ଭୂଷିତ ନ ଥାଇ ସୁଦ୍ଧା କବିତା ଲେଖିବାପାଇଁ ବ୍ୟାକୁଳ । ଅନେକ ସ୍କୁଲ୍ କଲେଜର ଗୃହ ଆଭ୍ୟନ୍ତରିକ ଶ୍ରେଣୀରେ (ଇଣ୍ଟର କ୍ଲାସରେ) ପ୍ରବେଶ କରିବା ପୂର୍ବରୁ ପଢ଼ା ତ୍ୟାଗ କରି ଲେଖକଂମ୍ମନ୍ୟମାନ ହୋଇଯାନ୍ତି, ଆଉ କେତେକ ଯେ କୌଣସି ପ୍ରକାର ଦୁଇ ଖଣ୍ଡଖଣ୍ଡ ପୁସ୍ତକ ପଢ଼ି ସାରିଲେ ଅଧ୍ୟପୁନସ୍ତରର ପୃଷ୍ଠାଦୃଷ୍ଟ କରିଦେଇ ପଣ୍ଡିତଂମନ୍ୟମାନ ହୋଇ କବି ହେବାକୁ ସମୁତ୍କଣ୍ଠିତ ହୁଅନ୍ତି । ଅତଏବ ଆଜକାଲି ଆମ୍ଭମାନଙ୍କ ଦେଶରେ ଉପଯୁକ୍ତ ପାଠକ ଅପେକ୍ଷା ଯେ କୌଣସି ପ୍ରକାର ଲେଖକ ସଙ୍ଖ୍ୟା ଢେର ବେଶି । କେତେକ ନିଃସାର ଲେଖକ ପନସ-ପଲ୍ଲବଲବ୍ଧ ପ୍ରାପ୍ତ କୃତ୍ରିମ ସୌରଭ ମହକାଇବାକୁ ସତତ ସଚେଷ୍ଟ ଓ ବ୍ୟାକୁଳ ଅଛନ୍ତି । କିନ୍ତୁ କବିତା ଲେଖିବାପାଇଁ ଯାବତ୍ ପରିମିତ ଗୁଣ ସାମଗ୍ରୀ ଆବଶ୍ୟକ, ତାହାର ସମ୍ପାଦନ କରନ୍ତି ନାହିଁ କିମ୍ବା କରିବାର ଇଚ୍ଛା ସୁଦ୍ଧା କରନ୍ତି ନାହିଁ । କରନ୍ତି କେବଳ କବିତା ଲେଖନ ଇଚ୍ଛା । ଏପରି କରିବାରେ ଲେଖାଗୁଡିକ କିମ୍ଭୂତ କିମାକାର ହୋଇ ପଡ଼େ । ସ୍ଥାନେ ସ୍ଥାନେ ଗୀତ ଓ ଅନ୍ୱୟ-ହୀନତାରୁ ନିଷ୍ପ୍ରାଣ ହୋଇ ପଡ଼ିଥାଏ । ଲେଖକ ଯେଉଁ ଯେଉଁ ଶବ୍ଦ ଓ ପଦପ୍ରୟୋଗ କରନ୍ତି, ସେ ସେଗୁଡ଼ିକର ସାର୍ଥକତା ଓ ବ୍ୟୁତ୍ପତ୍ତିକ୍ରମକୁ ସମ୍ୟକ୍ ଅବଗତ ଥିବା ଏକାନ୍ତ ଆବଶ୍ୟକ । ଏଥିପାଇଁ ବିଶେଷ ପାଠ ଦରକାର । ଲେଖକଠାରେ ଅନ୍ତତଃ ଏତିକି ମାତ୍ର ଅଛି କି ନାହିଁ, ବିଚାର କର୍ତ୍ତବ୍ୟ । ଯଥାର୍ଥ କହିବାକୁ ହେଲେ, ଅନେକ ଏଥିରୁ ବଞ୍ଚିତ ଥାଇ ସୁଦ୍ଧା ଅଭ୍ୟାସବଶତଃ ଉଚ୍ଛୃଙ୍ଖଳତାର ସମାଶ୍ରୟରେ ଅଥଚ ଅନ୍ୟ କବିଙ୍କ କବିତାରୁ କିଛି ଆମଦାନି

କରି ଯାହା ଇଚ୍ଛା ତାହା ଲେଖିଯାନ୍ତି । ଏପରି କି ଅନେକେ ବର୍ଣ୍ଣାଶୁଦ୍ଧି ସୁଦ୍ଧା ଅବଗତ ହୋଇ ପାରନ୍ତି ନାହିଁ, ସମୟରେ ସାହାସରେ କହି ଦିଅନ୍ତି କି ଏହା ଛାପା ଭୁଲ୍ । ପଦ-ପଦାର୍ଥ-ଜ୍ଞାନବିହୀନ ଓ ଅବ୍ୟୁତ୍ପନ୍ନ ଥାଇ ଲେଖାରେ ପ୍ରବୃତ୍ତ ହେବା ବର୍ତ୍ତମାନ ଯୁଗରେ ବଡ଼ ବିଡ଼ମ୍ବନାର କଥା । ଏପରି ଲେଖକମାନଙ୍କୁ ସାନୁନୟ ବିନୟରେ କହୁଅଛୁଁ, ପାଠକ ମହାଶୟଗଣ ! ଆପଣମାନେ ମଧ୍ୟ କହନ୍ତୁ, ସେମାନେ ପ୍ରଥମତଃ ଏହି ଭାରତର କବିତାକୁ ଆଶ୍ରୟ କରନ୍ତୁ । ଏଥିରେ ଅନେକଗୁଡ଼ିଏ ଉତ୍ତମ ବର୍ଣ୍ଣନାବିଶିଷ୍ଟ ଚରିତ ସନ୍ନିଧାନମାନ ନିହିତ ଅଛି । ସେଥି ମଧ୍ୟରୁ ଯେ କୌଣସି ସନ୍ଦର୍ଭକୁ ନେଇ ସେଥିରେ ଆପଣାର ଯତ୍‌କିଞ୍ଚିତ୍ ବୁଦ୍ଧି-ସିଦ୍ଧି ବ୍ୟୟ କରନ୍ତୁ । ତଦ୍‌ଗତ ଅସଙ୍ଗତ ସ୍ଥାନମାନ ସଙ୍ଗତ କରି ବ୍ୟାକରଣିକାଦି ଦୋଷଯୁକ୍ତ ସ୍ଥାନଗୁଡ଼ିକୁ ଯଥାଯଥ ସଂସ୍କାର କରି ଉତ୍ତମ ଆକାରବିଶିଷ୍ଟ କରନ୍ତୁ । ପୌରାଣିକ କବିତା ସଂଗ୍ରହ ନାମରେ କବିତାଗୁଡ଼ିକୁ ପୁସ୍ତକାକାର କରନ୍ତୁ । ଏହା ହେଲେ ଲେଖନ ପ୍ରବୃତ୍ତି ସଙ୍ଗେ ସଙ୍ଗେ କବିତାଶକ୍ତି ସମୁଜ୍ଜ୍ୱଳ ହୋଇ ଉଠିବ । ପ୍ରାଚୀନ କବିତାଗୁଡ଼ିକ ଏପରି ସଂସ୍କୃତ ହେବ । ପରେ ଭାଷାର ଗୌରବ ବଢ଼ିବ । ଦେଖିବେ, ସେମାନେ (ଅଲ୍ପଜ୍ଞ ଲେଖକମାନେ) ଯେନକେନପ୍ରକାରେଣ ଯେ ଯେ କବିତା ଗଢ଼ି ଅଛନ୍ତି, ତଦପେକ୍ଷା ଏହି ସଂଗୃହୀତ ଓ କୃତସଂସ୍କାର କବିତାଗୁଡ଼ିକ ଅତି ମନୋହର ହେବ ଏବଂ ଅଭିଜ୍ଞ ସମାଜରେ ସମାଦୃତ ହେବ ।




ଜୟପୁର ବିକାଶ ପ୍ରେସ୍‌ରେ ଶ୍ରୀ ରାମନାଥ ପଣ୍ଡାଙ୍କଦ୍ୱାରା ମୁଦ୍ରିତ ।